ମହାକାବ୍ୟ

# ଶ୍ରୀକୃଷ୍ଣ ଚରିତ ମାନସ

( ମଥୁରା-ଦ୍ୱାରକା ଲୀଳା ଖଣ୍ଡ )

ବିପିନ ବିହାରୀ ଦାସ

ନୀଳାଚଳ ପ୍ରକାଶନୀ

କଟକ

Shrikrishna Charit Manas

By Bipin Behari Das

Published by Nilachal Prakashani

Barbil - 758 035

First Publication - 15th June - 2002

Price - Rs. 120. 00

ପ୍ରଥମ ପ୍ରକାଶ

୧୫ ଜୁନ୍ - ୨୦୦୨ ରଜସଂକ୍ରାନ୍ତି

ପ୍ରକାଶକ

**ବିପିନ ବିହାରୀ ଦାସ**

ନୀଳାଚଳ ପ୍ରକାଶନୀ

ବଡବିଲ - ୭୫୮ ୦୩୫, ଜିଲ୍ଲା - କେନ୍ଦୁଝର

ମୁଦ୍ରଣ :

ନୀଳାଚଳ ପ୍ରିଣ୍ଟିଂ ୱାର୍କସ

ବଡବିଲ - ୭୫୮ ୦୩୫, ଜିଲ୍ଲା - କେନ୍ଦୁଝର ।

ମୂଲ୍ୟ - ୧୨୦.୦୦

# ସଂକ୍ଷିପ୍ତ ଟିପଣୀ

ମହାକାବ୍ୟ **ଶ୍ରୀକୃଷ୍ଣ ଚରିତ ମାନସ** ର ପ୍ରଥମ ଖଣ୍ଡ **'ଗୋପଲୀଳା' ୨୦୦୦** ମସିହା ଅଗଷ୍ଟ ମାସରେ ପ୍ରକାଶ **ପାଇଥିଲା** । ତାହାର ପ୍ରାୟ **ଦୁଇବର୍ଷ ପରେ ୨୦୦୨** ମସିହା ଜୁନ୍ ମାସ ରଜ ସଂକ୍ରାନ୍ତି-ଦିନ ଶ୍ରୀକୃଷ୍ଣ ଚରିତ ମାନସର ଦ୍ୱିତୀୟ ଖଣ୍ଡ **'ମଥୁରା-ଦ୍ୱାରକାଲୀଳା'** ଆମ୍ଭ **ପ୍ରକାଶ କରିବା** ଆନନ୍ଦର **କଥା** । ଗୋପଲୀଳା ଖଣ୍ଡର ମୂଳ କାବ୍ୟାଂଶ ସର୍ବମୋଟ ୫୬ ଗୋଟି ଅଧ୍ୟାୟ ଓ ପୃଷ୍ଠା ସଂଖ୍ୟା ୫୦୪ ହୋଇଥିବା ସମୟରେ ଦ୍ୱିତୀୟ ଖଣ୍ଡ " ମଥୁରା - ଦ୍ୱାରକା ଲୀଳା " ସର୍ବମୋଟ ୫୨ ଅଧ୍ୟାୟ ଓ ପୃଷ୍ଠା ସଂଖ୍ୟା ୫୧୨ ଅଟେ ।

ପ୍ରୋକ୍ତ ଦୁଇଖଣ୍ଡର ମୋଟ ଅଧ୍ୟାୟ ସଂଖ୍ୟା ୧୦୮ ଓ ମୋଟ ପୃଷ୍ଠା ସଂଖ୍ୟା ୧୦୧୬ ଅଟେ । ଅନ୍ୟ ଦୁଇଖଣ୍ଡ ଯଥାକ୍ରମେ ବନଲୀଳା ଖଣ୍ଡ ଓ ଭାରତ ଖଣ୍ଡ ପ୍ରକାଶ ଅପେକ୍ଷାରେ ।

ଆଶାକରେ ଗୋପଲୀଳା ଖଣ୍ଡ ପରି **'ମଥୁରା-ଦ୍ୱାରକା ଲୀଳା ଖଣ୍ଡ'** ମଧ୍ୟ **କୃଷ୍ଣପ୍ରେମୀ ପାଠକ ପାଠିକା** ମାନଙ୍କୁ ଦିବ୍ୟ କାବ୍ୟରସ ପ୍ରଦାନରେ ସହାୟକ ହେବ ।

ସଂକ୍ଷେପରେ କହିବାକୁ ଗଲେ " ଶ୍ରୀକୃଷ୍ଣ ଚରିତ ମାନସ" **ହେଉଛି** ମହାକାବ୍ୟ ଶ୍ରୀମଦ୍‌ଭାଗବତ, ହରିବଂଶ ପୁରାଣ ଓ ମହାଭାରତର ସମୀକରଣ । ଏହି ମହାନ ତିନଗୋଟି ଶାସ୍ତ୍ର ପୁରାଣର କଥା **ବସ୍ତୁକୁ** ଆଧାର କରି ଏହାର ଜନ୍ମ ।

ମହାକାବ୍ୟ ମହାଭାରତରେ ମହାନାୟକ ତଥା 'ଲୀଳାମୟ' ଭଗବାନ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ବିଷୟରେ କ୍ୱଚିତ ବର୍ଣ୍ଣନା ଦେଖିବାକୁ ମିଳେ । ସେହିପରି ଭାଗବତ ଓ ହରିବଂଶ ପୁରାଣରେ ଲୀଳାମୟ ଶ୍ରୀକୃଷ୍ଣଙ୍କର ଦିବ୍ୟ-ଲୀଳାର ବର୍ଣ୍ଣନା କରାଯାଇଥିବା ସମୟରେ ମହାଭାରତର କଥା ବସ୍ତୁ ବିଷୟରେ କ୍ୱଚିତ ଜାଣିବାକୁ ମିଳେ ।

ମହାଭାରତ ରଚନା ପରେ ମହାକବି ବ୍ୟାସ ଦେବ ଆହୁରି ଅଧିକ କୃଷ୍ଣରସ ଆସ୍ୱାଦନ ମାନସରେ କୃଷ୍ଣଭକ୍ତ ଦେବର୍ଷି ନାରଦଙ୍କ ପରାମର୍ଶରେ ନିରୁଚା ଭକ୍ତିରସରେ ପରିପୂର୍ଣ୍ଣ ଶ୍ରୀମଦ୍‌ଭାଗବତ ରଚନା କରି ଆତ୍ମ-ସନ୍ତୋଷ ଲାଭକଲେ । ଏହି ଦୃଷ୍ଟିରୁ ବିଚାର କଲେ ହରିବଂଶ ପୁରାଣ ବାତ୍ସଲ୍ୟରସ, ମହାଭାରତ ବୀର/ବିଭତ୍ସ ରସ ଓ ଶ୍ରୀମଦ୍‌ଭାଗବତ ଭକ୍ତିରସ ପରିପୂର୍ଣ୍ଣ ମହାକାବ୍ୟ ରୂପେ ଅଟନ୍ତି । ମାତ୍ର ମହାକାବ୍ୟ 'ଶ୍ରୀକୃଷ୍ଣ ଚରିତ ମାନସ' ହେଉଛି ପ୍ରୋକ୍ତ ତିନିଗୋଟି ମହାକାବ୍ୟର ମହା ମିଳନରେ ସର୍ବରସ ପରିପୂର୍ଣ୍ଣ ପୂର୍ଣ୍ଣାଙ୍ଗ କୃଷ୍ଣକାବ୍ୟ । ଏହାର ଶୁଭାରମ୍ଭ ଭଗବାନ ବ୍ୟାସଦେବ ଓ ପରମ ପୂଜନୀୟ ପିତାମହ ଭୀଷ୍ମଦେବଙ୍କ ଜନ୍ମ ବିବରଣୀ ଠାରୁ ଆରମ୍ଭ ହୋଇ ପରମ କାରୁଣିକ ଭଗବାନ ଶ୍ରୀକୃଷ୍ଣଙ୍କ ମହାମାନବୀୟ ଲୀଳାର ପରିସମାପ୍ତି ଓ ଧର୍ମରାଜ ଯୁଧିଷ୍ଠିର ଦେବଙ୍କ ସ୍ୱର୍ଗାରୋହଣ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇଅଛି । ଏହାର ପ୍ରକାଶ ଭଙ୍ଗୀ ଅଭିନବ ଓ ଅନୁପମ ଅଟେ ।

କବିର ମାନସ ପୁତ୍ର " ଶ୍ରୀକୃଷ୍ଣ ଚରିତ ମାନସ " ଏହି କାରଣରୁ ଓଡ଼ିଆ ସାହିତ୍ୟ-କାବ୍ୟ ଜଗତରେ ସ୍ୱତନ୍ତ୍ର ଆସନର ଅଧିକାରୀ ଅଟେ । ଏହାର ପ୍ରଥମ ଖଣ୍ଡ " ଗୋପ ଲୀଳା " ପଠନ କରି ଅଗଣିତ ପାଠକ-ପାଠିକା ବୃନ୍ଦ ଇଦୃଶ ଅଭିମତ ପ୍ରଦାନ କରି ଶାଶ୍ୱତ ପ୍ରୋତ୍ସାହନ ପ୍ରଦାନ କରିଥିବାରୁ ସେମାନଙ୍କୁ ବିନମ୍ର କୃତଜ୍ଞତା ଜଣାଉଅଛି ।

ବଡ଼ବିଲ — ଜୟ ଜଗନ୍ନାଥ

ତା ୧୫ । ୬ । ୨୦୦୨ — ଲେଖକ

ରଜସଂକ୍ରାନ୍ତି

# ଶ୍ରୀକୃଷ୍ଣ ଚରିତ ମାନସ

## ମଥୁରା ଲୀଳା ଖଣ୍ଡ

## ସୂଚୀପତ୍ର

# ଶ୍ରୀକୃଷ୍ଣ ଚରିତ ମାନସ

## ଦ୍ୱାରକା ଲୀଳା ଖଣ୍ଡ

## ସୂଚୀପତ୍ର

# ସୂଚୀପତ୍ର

# ଶ୍ରୀକୃଷ୍ଣ ଚରିତ ମାନସ

## ( ମଥୁରା - ଦ୍ୱାରକା ଲୀଳା ଖଣ୍ଡ )

### ବନ୍ଦନା

" ଓଁ ନମୋ ଭଗବତେ ବାସୁଦେବାୟ ।

ନମୋ ଗୁରୁଂ ପରଂବ୍ରହ୍ମ କୃଷ୍ଣ କୈବଲ୍ୟ କାରଣଂ ।
ଭକ୍ତବନ୍ଧୁଂ ଜଗତ ପିତାଂ ତସ୍ମୈ ଶ୍ରୀ ଗୁରବେ ନମଃ ।

ବେଦାନୁଦ୍ଧରତେ ଜଗନ୍ତି ବହନ୍ତେ ଭୂଗୋଳମୁଦ୍‌ବିଭ୍ରତେ
ଦତ୍ୟାନା ଦାରୟତେ ବଳିଂ ଛଳୟତେ କ୍ଷତ୍ରକ୍ଷୟଂ କୁର୍ବତେ ।
ପୌଲସ୍ତ୍ୟଂ ଜୟତେ ହଳଂ କଳୟତେ କାରୁଣ୍ୟ ମାତନ୍ୱତେ ।
ମ୍ଳେଚ୍ଛାନ୍ ମୂର୍ଚ୍ଛୟତେ ଦଶାକୃତି କୃତେ କୃଷ୍ଣାୟ ତୁଭ୍ୟନମଃ ।।

ନାରାୟଣଂ ନମସ୍କୃତ୍ୟଂ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟ ମୁଦୀରୟେତ

ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଂଘୟତେ ଗିରିଂ
ଯତ୍‌କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।।

ଯଂବ୍ରହ୍ମା ବରୁଣେନ୍ଦ୍ର ରୁଦ୍ର ମରୁତଃ ସ୍ତୁନ୍ୱନ୍ତି ଦିବ୍ୟୈର୍ବେଦୈ-
ସାଙ୍ଗପଦ କ୍ରମୋପନିଷଦୈର୍ଗାୟନ୍ତି ଯଂ ସାମଗାଃ ।
ଧ୍ୟାନାବସ୍ଥିତ ତଦ୍‌ଗତେନ୍ ମନସା ପଶ୍ୟନ୍ତି ଯଂ ଯୋଗିନମ୍
ଯସ୍ୟାନ୍ତଂ ନ ବିଦୁଃ ସୁରାସୁର ଗଣାଃ ଦେବାୟ ତସ୍ମୈ ନମଃ ।।

ବ୍ୟାସଂ ବଶିଷ୍ଠ ନପ୍ତାରଂ ଶକ୍ତେ ପୌତ୍ରମ୍ କଳ୍ମଷଂ
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ।

ତତ୍ରୈବ ଗଙ୍ଗାଯମୁନା ଚ ତତ୍ର ଗୋଦାବରୀ ତତ୍ର ସରସ୍ୱତୀ ଚ ।
ସର୍ବତୀର୍ଥାନି ବସନ୍ତି ତତ୍ର ଯତ୍ରାଚ୍ୟୁତୋ ଦାର କଥା ପ୍ରସଙ୍ଗଃ ।।

ବେଦୋ ରାମାୟଣେ ଚୈବ ପୁରାଣେ ଭାରତେ ତଥା
ଆଦୌ ଅନ୍ତେ ମଧ୍ୟେଚ ହରିଃ ସର୍ବତ୍ର ଗୀୟତେ ।

ଜୟ ଜୟ ରାମକୃଷ୍ଣ ବସୁଦେବ ସୁତ
ଜୟ ହଳଧର ହରି ଅନନ୍ତ ଅଚ୍ୟୁତ ।
କଂସକେଶୀ ବିମର୍ଦ୍ଦନ ଭକ୍ତଜନ ବନ୍ଧୁ
ରାଧିକା ହୃଦୟହାର ଗୋପୀ ପ୍ରାଣସିନ୍ଧୁ ।
ଶରଣ ଯୋଦର ସ୍ୱାମୀ ବାରେ ଦୟାକର
ହୃଦୟରୁ ଦୂର କର ଅଜ୍ଞାନ ତିମିର ।
ଜ୍ଞାନଦୀପ ଜାଳି ଦିଅ ହୃଦୟେ ମୋହର
ରଚିବି କୃଷ୍ଣ ଚରିତ ମାନସ ସଭର
ପଦ ପଦ କରେ ପୂରିଥିବ କୃଷ୍ଣ ରସ
ମଥୁରା - ଦ୍ୱାରକା ଲୀଳା ଦ୍ୱିଷ୍ଟୟ ମାନସ ।
ବୃନ୍ଦାସ କରେ ତୁମ୍ଭ ପୟରେ ପ୍ରଣତି
ଶରଣ ରକ୍ଷଣ ସ୍ୱାମୀ ନୀଳାଚଳ ପତି ।
କରମଳା କଳାକର କୃଷ୍ଣ ପ୍ରାଣ ଧନ
ଅଭିନ୍ନ ସୁନ୍ଦର ଅଭିରାମ ଶ୍ୟାମ ଘନ ।
ଅନନ୍ତ ଗୁମ୍ଫାରେ ବସି ଅଜପା ଅମୃତ
ବିତରଣ କରୁଅଛ ଏକାକ୍ଷର ତତ୍ତ୍ୱ ।
କୃପାକର କୃପାମୟ କରେ ନିବେଦନ
କଣ୍ଠେ ବସି କହାଇଅ ଦିବ୍ୟ ପଦମାନ ।

# ପ୍ରଥମ ଅଧ୍ୟାୟ

## କୌଳିକ କର୍ମ ସମ୍ପାଦନ

ରାଗ – ବଙ୍ଗଳାଶ୍ରୀ

ଏଥୁଅନ୍ତେ ଶୁଣ ଆହେ ସୁଜ୍ଞ ଜନେ
କୃଷ୍ଣ ଚରିତ ମାନସ
ପଦପଦକରେ ରସ ଝରୁଅଛି
ପାନ କରି ହୁଅ ତୋଷ । ୧

ଋଷିୟ ମତରେ କୌଳିକ ସଂସ୍କାର
ତଥା ବ୍ରତୋପ ନୟନ
ଆୟୋଜନ କଲେ ପିତା ବସୁଦେବ
ପୁରୋଧା ଗାର୍ଗ୍ୟ ବରଣ । ୨

ଗୃହବେଦ ବିପ୍ରେ ବରଣ ହୋଇଲେ
ମୁନି ଋଷି ସହିତରେ
ନିମନ୍ତ୍ରଣ ପାଇ ବନ୍ଧୁ ପରିଜନେ
ମିଳିଲେ ମଥୁରାପୁରେ । ୩
ହସ୍ତିନା ପୁରରୁ ଆସିଲେ କୋଇନ୍ତା
ସଙ୍ଗେ ଘେନି ପାଞ୍ଚ ପୁଅ
ମହାତ୍ମା ବିଦୁର ସଙ୍ଗେ ଆସିଛନ୍ତି
ପୁଅଙ୍କର ଖଲ୍ୟ ତାତ । ୪
ଦେବକୀ ନନ୍ଦନ ରାମ କୃଷ୍ଣ ହାତେ
କଂସାସୁର ହେବା ହତ
ସମ୍ବାଦକୁ ପାଇ ପିଉଷୀ କୋଇନ୍ତା
ହୋଇ ଅତି ଆନନ୍ଦିତ । ୫
ସେମାନଙ୍କ ବ୍ରତ ଉପନୟନରେ
ଯୋଗ ଦେବା ପାଇଁ ଯାଇ
ଭାଇ ଭାଉଜଙ୍କୁ ଭେଟିବା ସହିତ
ଭେଟିଲେ ପୁତୁରା ଦୁଇ । ୬
ମାତାଙ୍କ ସହିତ ପାଣ୍ଡୁ ପାଞ୍ଚ ପୁଅେ
ଚଳିଲେ ମାତୁଳ ଘରେ
ମାମୁଁ ମାଇଁଙ୍କର ପାଦେ ପ୍ରଣମିଲେ
ଶିର ଲଗାଇ ଭୂମିରେ । ୭
ଆଦର କରଣ ମାମୁଁ ମାଇଁ ଦୁଇ
କୋଳ କରିଲେ ଭଣଜା
ପଣତ କାନରେ ମୁଖପୋଛିଦେଇ
ଭୁଞ୍ଜାଇଲେ ଲଡୁ, ଗଜା । ୮
ଅକ୍ରୂରଙ୍କ ପାଦ ତଳରେ ପଡ଼ିଲେ
ପ୍ରଣମିଲେ ଉଗ୍ରସେନ
ମଥୁରା ନଗରେ ଯେତେ ଗୁରୁଜନ
ଚରଣ କଲେ ବନ୍ଦନ । ୯

ମାମୁଁ ପୁଅ ଭାଇ ସ୍ନେହ ଶ୍ରଦ୍ଧା କଲେ
ବିଜୟୀ ପୁଅ ସୋଦରେ
ପ୍ରେମେ ଆଲିଙ୍ଗନ କରି ଘନ କୃଷ୍ଣ
ପ୍ରିତି ସମ୍ଭାଷଣ କଲେ । ୧୦

ପାଣ୍ଡୁ ପାଞ୍ଚ ପୁତ୍ରେ ଶଙ୍କର୍ଷଣ ପାଦେ
ବିନୟେ ହେଲେ ପ୍ରଣତ
ଯୁଧିଷ୍ଠିର ପାଦେ ପ୍ରଣମିଲେ କୃଷ୍ଣ
କୃଷପାଦେ ଗୃହଭ୍ରାତ । ୧୧

ଶ୍ରୀକୃଷ୍ଣ କହିଲେ ଥିଲୁ ଦୁଇ ଭାଇ
ଏବେହେଲେ ସାତ ଭାଇ
ଆମ୍ଭେ ସାତ ଭାଇ ମିଳିମିଶି ରହି
ଚଳିବା ଏକତ୍ର ହୋଇ । ୧୨

ଭାଇର ପୁଅଙ୍କୁ କୋଳରେ ବସାଇ
ପଣତ କାନରେ ଦେହ
ପୋଛି ଦେଇ କୁନ୍ତୀ ଆନନ୍ଦ ଲଭିଲେ
ନେତ୍ରୁ ଝରେ ଶ୍ରଦ୍ଧା ଲୁହ । ୧୩

ଭାବିଲେ ଅନାଦି ପରମ ବ୍ରହ୍ମଙ୍କୁ
କୋଳ କରି ହେଲି ଧନ୍ୟ
ଶ୍ରୀ ମୁଖେ ଚୁମ୍ବନ ଆଙ୍କିଲେ ଶ୍ରଦ୍ଧାରେ
ହସ୍ତେ ଛୁପିଲେ ଚରଣ । ୧୪

ଶ୍ରୀ କୃଷ୍ଣ କହିଲେ ଧନ୍ୟ ହେଲି ମାତ
ପାଇଏ ପାଞ୍ଚ ନନ୍ଦନ
ପଞ୍ଚ କଣ୍ଟକେତୋ ପୁତ୍ରେ ରଜା ହୋଇ
କରିବେ ଯଶ ଅର୍ଜନ । ୧୫

ନର ନାରାୟଣ ନରେଶ ଦେଖିଲେ
ଯୁଧିଷ୍ଠିରଙ୍କ ବଦନ
ଶୁକ୍ଳାମ୍ବର ବସ୍ତ୍ର ଧର୍ମ ନିରଞ୍ଜନ
ବପୁଧରି ଅବତୀର୍ଣ୍ଣ । ୧୬

ପ୍ରଣାମ କରିଲେ ଯୁଧିଷ୍ଠିର ପାଦେ
ଜ୍ୟେଷ୍ଠ ଭ୍ରାତା କରିଜ୍ଞାନ
ସମସ୍ୟା ନ ଦେଇ ଜନସ୍ଥ ସୋଦରେ
କଲେ ଧର୍ମ ଆଲିଙ୍ଗନ । ୧୭

ଜାଣିଲେ କୌନ୍ତେୟ ଏ ଅନାଦି ବ୍ରହ୍ମ
ହୋଇଛନ୍ତି ଅବତୀର୍ଣ୍ଣ
ଭୀମ ନେତ୍ରେ ନେତ୍ର ମିଳାଇ ଶ୍ରୀକୃଷ୍ଣ
କଲେ ସ୍ନେହେ ଆଲିଙ୍ଗନ । ୧୮

ଅର୍ଜ୍ଜୁନଙ୍କୁ ଦେଖି ବିଶେଷ ଆନନ୍ଦ
ହେଲେ ନର ନାରାୟଣ
କୋଳ କରି ହୃଦେ ଲଗାଇଲେ କୃଷ୍ଣ
ପ୍ରିୟ ସଖାଙ୍କୁ ଚିହ୍ନିଣ । ୧୯

ଆପଣା ଗଳାରୁ ଅର୍କ ମଣିହାର
କାଢି ପିନ୍ଧାଇଲେ ସଖା
ପରସ୍ପର ମଧ୍ୟେ ମିତ୍ରତା ବଢିଲା
ବେନିଙ୍କ ପ୍ରଥମ ଦେଖା । ୨୦

ନକୁଳ ଓ ସହ- ଦେବ ଦୁଇଭାଇ
କୋଳ କଲେ ଯଦୁନାଥ
ସହଦେବଙ୍କର ଗୋପାଳ ବେଶକୁ
ଦେଖି ହେଲେ ଚମତ୍କୃତ । ୨୧

ସହଦେବ କରେ ଗୋ ମୋହନ ବଂଶୀ
ଧରି କରନ୍ତେ ବାଦନ
ସେ ବଂଶୀ ନିଃସ୍ୱନ ଶୁଣି ବଂଶୀଧର
ହୋଇ ଗଲେ ମୁହ୍ୟମାନ । ୨୨

ସାକ୍ଷାତ୍‌ ଦର୍ଶନ ସ୍ନେହ ସମ୍ଭାଷଣ
ଶେଷ ଅନ୍ତେ ରାମକୃଷ୍ଣ
ବନ୍ଧୁଙ୍କୁ ପ୍ରଣି- ପାତ ହୋଇ ମାନ୍ୟେ
କଲେ ପ୍ରେମ ଆଲିଙ୍ଗନ । ୨୩

ନର ନାରାୟଣ ସ୍ୱରୂପ ଦେଖଣ
ଭକ୍ତ ବିଦୁର ମୋହିତ
ଅନ୍ତର ମଧ୍ୟରେ କଲେ ନମସ୍କାର
ବକ୍ଷେ ଗୃପି ଯଦୁ ନାଥ । ୨୪

ମଥୁରା ନଗରେ ଆତ୍ମୀୟ ସ୍ୱଜନ
ବନ୍ଧୁ ବାନ୍ଧବଙ୍କ ମେଳ
ଦେବକୀ ଓ ବସୁ ଦେବ ଉଗ୍ରସେନ
ବୃତ୍ତାନ୍ତ କାର୍ଯ୍ୟ ସକଳ । ୨୫

ବ୍ରତୋପନୟନ କାର୍ଯ୍ୟଶେଷପରେ
ପାଶେ ବସାଇ ଅର୍ଜ୍ଜୁନ
ବହୁ ଆଭରଣେ ଶ୍ରୀଅଙ୍ଗ ମଣ୍ଡନ
କଲେ ସ୍ୱହସ୍ତେ ଶ୍ରୀକୃଷ୍ଣ । ୨୬

କୋଇଲା ଦେବକୀ ନଣନ୍ଦ ଭାଉଜ
ଦେଖଙ୍କ ଦୁଇ ନନ୍ଦନ
ମାତୃ ଅଂଶେ ଦୁଇ ପରସ୍ପରର ଭାଇ
ସମରୂପ, ସମବର୍ଣ୍ଣ । ୨୭

ବୟସରେ ବଡ ଦେବକୀ ନନ୍ଦନ
କୁନ୍ତୀ ପୁତ୍ର ପାର୍ଥସାନ
ଦୁହିଙ୍କ ମଧ୍ୟରେ ବୟସେ ପାର୍ଥକ୍ୟ
ଏକ ବର୍ଷ ବଡ଼ ସାନ । ୨୮

ସଖା ସଙ୍ଗେ ଧେନ କାନନ ଭ୍ରମଣେ
ଚଳିଗଲେ ନାରାୟଣ
କୃଷ୍ଣ ଅର୍ଜ୍ଜୁନଙ୍କ ମଧୁର ମିଳନ
ଜାଣି ବ୍ୟାସ ତପୋଧନ । ୨୯

ଗହନ ବିପିନେ ମିଳନ୍ତେ ଆସିଣ
ମାନ୍ୟ କଲେ କୃଷ୍ଣାର୍ଜ୍ଜୁନ
ଶ୍ରଦ୍ଧାଭରେ ମୁନି କୋଳ କରି ନେଇ
ମସ୍ତକ କଲେ ଆଘ୍ରାଣ । ୩୦

କଲ୍ୟାଣ କରଣ ବ୍ୟାସ ତପୋଧନ
କହିଲେ ଏହା ଦୁର୍ଲ୍ଲଭ
ପ୍ରଥମ ଦେଖାରେ କପଟ ଉଦ୍ରେକ
ହୋଇଲା ନବତ ଭାବ । ୩୧
ସ୍ମିତ ହାସ୍ୟ କରି କହିଲେ ଶ୍ରୀକୃଷ୍ଣ
ଶୁଣ ଆହେ ତପୋଧନ
ଯୁଗେ ଯୁଗେ ପାର୍ଥ ପ୍ରାଣ ସଖା ମୋର
ତାଙ୍କୁ ଧରି ଅବତୀର୍ଣ୍ଣ । ୩୨
ଅର୍ଜ୍ଜୁନଙ୍କୁ ଛାଡ଼ି ଖେଳି ନ ପାରଇ
ତା ପ୍ରେମ ଭାବେ ବନ୍ଧନ
ଅନ୍ତରଙ୍ଗ ବନ୍ଧୁ ମିତ୍ର ସେ ମୋର
ତା ପାଇଁ ସଦା ପାଗଳ । ୩୩
ହିରଣ୍ୟ ସତ୍ୟରେ ନୃସିଂହାବତାରେ
ଅର୍ଜ୍ଜୁନ ପ୍ରହ୍ଲାଦ ଭକ୍ତ
ମେଖଳା ସତ୍ୟରେ ସତ୍ୟ ନାରାୟଣ
ଶ୍ରୀବତ୍ସ ବିପ୍ର ଏ ପାର୍ଥ । ୩୪
ବକ୍ଷେ ଗୋଇଠାଏ ମାରିଲା କ୍ରୋଧରେ
ବହିଅଛି ପାଦ ଚିହ୍ନ
ବାଧୂତ ସତ୍ୟରେ ଯମଦଗ୍ନି ଘରେ
ହେଲୁ ବେନି ଅବତୀର୍ଣ୍ଣ । ୩୫
ମୁହିଁ ପର୍ଶୁରାମ ପାର୍ଥ ମାଳରାମ
ଦୁଷ୍ଟ କରିଲୁ ସଂହାର
ତ୍ରେତାଯୁଗେ ଦଶ- ରଥ ରାଜା ଘରେ
ପୁଣି ହେଲୁ ଅବତାର । ୩୬
ମୁଁ ହେଲି ଶ୍ରୀରାମ ଅର୍ଜ୍ଜୁନ ଭରତ
ଅତିପ୍ରିୟ ସହୋଦର
ଭରତ ସମାନ ଭାଇ ଦେଖି ନାହିଁ
ଏସାରା ବିଶ୍ୱ ସଂସାର । ୩୭

ଏ ଦ୍ୱାପର ଯୁଗେ କୃଷ୍ଣାର୍ଜୁନ ନାମେ
ହୋଇଅଛୁ ଅବତାର
ଆମ୍ଭଙ୍କୁ ନ ଚିହ୍ନି ଆହେ ବ୍ୟାସ ମୁନି
କମ୍ପା କରୁଛ ଅନ୍ତର ? ୩୮
ତୋର ସମ୍ପର୍କ ରହିଛି ଆମ୍ଭର
ସୋମ ବଂଶେ ବେନି ଜାତି
ଯଦୁବଂଶୀ, କୁରୁ ବଂଶୀ ହେଲେ ମଧ୍ୟ
ପିତୃଅଂଶେ ଦୁଇଭ୍ରାତ । ୩୯
ମାତୃ ଅଂଶେ ମଧ୍ୟ ସମ୍ପର୍କ ରହିଛି
ଏ ପିଉଷୀ ପୁଅ ଭାଇ
କୋଇନ୍ତା, ଦେବକୀ ନଣନ୍ଦ ଭାଉଜ
ଜାଣିଅଛ ତପୀ ସାଇଁ । ୪୦
ପଶ୍ଚିଲେ ବ୍ୟାସ ସବୁ କୁନ୍ତୀ ସୁତ
ତୁମ୍ଭ ସଖା ସହୋଦର
ଦେଖା ବିଶ୍ୱରୂପ ଦେଖି ଡ଼ରୁଛୁକି
ନାହିଁ ବୁଝିବା ଖବର ? ୪୧
ଶ୍ରୀକୃଷ୍ଣ ପୁଚ୍ଛିଲେ ସତ୍ୟକି ଅର୍ଜୁନ
ଦେଖିବାକୁ ଇଚ୍ଛା ତୋର
ପାର୍ଥ ବୋଲୁଛନ୍ତି ଦେଖାଇ ସନ୍ଦେହ
ମୁନିମନୁ ଦୂର କର । ୪୨
ପାର୍ଥଙ୍କ ବଚନେ ଦେବକୀ ନନ୍ଦନ
ଧଇଲେ ବିରାଟ ରୂପ
ପୃଥିବୀରେ ପାଦ ଆକାଶରେ ଶିର
ବ୍ରହ୍ମଲୋକେ ଲାଗେ ଧାପ । ୪୩
ମହା ବିଷ୍ଣୁ ତେଜ ସହି ନ ପାରିଣ
ମୂର୍ଚ୍ଛାଗଲେ ଦେବବର
ଶ୍ୱେତ ରାଜା ଯଙ୍କ ପାଂଶ ଗଦାପରେ
ପଡ଼ିଲେ ଯାଇ ଶଙ୍କର । ୪୪

ଚରାଚର ବିଶ୍ୱ  ବିଲୁପ୍ତ ହୋଇଲା
ବିରାଟ କାୟାର କୋଳେ
ବିରାଟ ଶରୀରେ  ସର୍ବ ହରାଇଣ
ସର୍ବେ ଲୀନ ହୋଇଗଲେ । ୪୫

ପାର୍ଥ ଆଡେ ଗୃହିଁ  ଦେଖୁଛନ୍ତି ବ୍ୟାସ
ସେ ଅବା ଦଗ୍ଧ ହୋଇଲା
ଉଲ୍ଲସିତ ହୋଇ  ଦେଖନ୍ତି ଅର୍ଜ୍ଜୁନ
ମହାବିଷ୍ଣୁଙ୍କର ଲୀଳା । ୪୬

ଅଙ୍ଗାରେ ପୁଚ୍ଛିଲେ  ଏତିକି ନା ଆଉ
ବଢିବ ତୁମ୍ଭର କାୟା ?
ପାର୍ଥ କଥା ଶୁଣି  ସ୍ତବ୍ଧ ହେଲେ ବ୍ୟାସ
ବୁଝି ନ ପାରିଲେ ମାୟା । ୪୭

ବିଚାରିଲେ ବ୍ୟାସ  ଯେଉଁ ରୂପ ଦେଖି
ବ୍ରହ୍ମା ଶିବ ଗଲେ ମୋହି
ସେ ରୂପକୁ ଦେଖି  ଅର୍ଜ୍ଜୁନ ପୁଚ୍ଛଇ
ଆଉ କି ବଢିବ ଦେହ ? ୪୮

ମୁହିଁ ଭୟ କଲି  ଯେଉଁ ରୂପ ଦେଖି
ନିର୍ଭୟେ ଦେଖେ କୌନ୍ତେୟ
ଜାଣିଲି ମୋଠାରୁ  ବଡ ଭକ୍ତ ପାର୍ଥ
ପ୍ରଭୁଙ୍କର ପ୍ରାଣପ୍ରିୟ । ୪୯

କହିଲେ ଧନ୍ୟ ତୋ  ଜୀବନ ଅର୍ଜ୍ଜୁନ
କୃଷ୍ଣଙ୍କର ପ୍ରିୟଜନ
ତୋତେ ଦେଖି ନେତ୍ର  ପବିତ୍ର ହୋଇଲା
କୃଷ୍ଣ ପ୍ରେମେ ଭରପୂର୍ଣ୍ଣ । ୫୦

ଅର୍ଜ୍ଜୁନଙ୍କୁ କୋଳ  କରି ବ୍ୟାସ ମୁନି
କହିଲେ ଧୀର ବଚନେ
କୃଷ୍ଣ ଅଂଶେ ଜାତ  ହୋଇଛୁ ମହୀରେ
କୃଷ୍ଣ ରୂପ ଗୁଣ ବର୍ଣ୍ଣେ । ୫୧

ପ୍ରାର୍ଥନା କରିଲେ ବ୍ୟାସ ତପୋବନ୍ତ
ଧରିବାକୁ ନିଜରୂପ
ବ୍ୟାସଙ୍କ ବଚନେ ମହାବିଷ୍ଣୁ ରୂପ
ଗୁଢ଼ ହେଲେ କୃଷ୍ଣରୂପ । ୫୨

ଗୋବିନ୍ଦ ଗୋପାଳ ରୂପକୁ ଧଇଲେ
ଦ୍ୱିଭୁଜ ମୁରଲୀ ପାଣି
ଚରଣେ ପ୍ରଣାମ କଲେ ଭକ୍ତି ଭରେ
ପାର୍ଥ ସଙ୍ଗେ ବ୍ୟାସମୁନି । ୫୩

ସେହି ଦିନ ଠାରୁ ପାର୍ଥଙ୍କର ନାମ
ହୋଇଲାକ ଦ୍ୱିତୀୟକୃଷ୍ଣ
କୃଷ୍ଣ, ଦ୍ୱିତୀୟକୃଷ୍ଣ କୃଷ୍ଣ ଦ୍ୱୈପାୟନ
ତିନି କୃଷ୍ଣଙ୍କ ମିଳନ । ୫୪

ଭାବ ବିହ୍ୱଳିତ ହୋଇ ବ୍ୟାସଦେବ,
ଗାଇଲେ କୃଷ୍ଣ ବନ୍ଦନ
ବନସ୍ପତି ଗଣେ ମର୍ମର ଶବଦେ
ଉଚ୍ଚାରିଲେ କୃଷ୍ଣ, କୃଷ୍ଣ । ୫୫

ପଶୁ ପକ୍ଷୀଙ୍କର କଣ୍ଠରୁ ଶୁଭିଲା
ଜୟ କୃଷ୍ଣ ଭଗବାନ
କୃଷ୍ଣମୟ ହୋଇ ଉଠିଲା କାନନ
ଗିରି ନିର୍ଝର ନିଃସ୍ୱନ । ୫୬

ଗିରି କନ୍ଦରରେ ପ୍ରତିଧ୍ୱନି ହେଲା
ଜୟ କୃଷ୍ଣ ଭଗବାନ
କାନନ ଭ୍ରମଣ ଶେଷେ କୃଷ୍ଣାର୍ଜୁନ
ସ୍ୱଗୃହେ ପ୍ରତ୍ୟାବର୍ତ୍ତନ । ୫୭

ମଥୁରା ନଗରେ ପାଞ୍ଚ ସାତ ଦିନ
ରହି କୋଇନ୍ତା ଜନନୀ
ବିଦୁର ସହିତ ହସ୍ତିନା ଫେରିଲେ
ପାଞ୍ଚ ପୁତ୍ର ସଙ୍ଗେ ଘେନ । ୫୮

ସମ୍ମାନ ପାଇଣ ଆମନ୍ତ୍ରିତ ବନ୍ଧୁ
ବାନ୍ଧବେ ବିଦାୟ ନେଲେ
ମଥୁରା ନଗରେ ରହି ରାମ କୃଷ୍ଣ
ପିତାମାତା ସେବା କଲେ । ୫୯

ବ୍ରତ କାର୍ଯ୍ୟ ଶେଷ ହେବା କଟୁ ଦିନେ
ବିଦ୍ୟା ଅର୍ଜ୍ଜନ ନିମନ୍ତେ
ମାମୁଁ ପୁଅ ଭାଇ ସୁରଥ ସହିତ
ଚଳଲେ ଅବନ୍ତୀ ପଥେ । ୬୦

ପାଦ ଗତି କରି ଚଳି ଯାଇ ତିନି
ଗୁରୁ ଆଶ୍ରମେ ମିଳଲେ
ସାନ୍ଦପନୀ ଗୁରୁ- କୁଳାଶ୍ରମେ ଯାଇ
ଚରଣ ବନ୍ଦନ କଲେ । ୬୧

ସୁଦୀର୍ଘ, ବଳିଷ୍ଠ ଶରୀର ବଶିଷ୍ଟ
ବ୍ୟକ୍ତି ଥିଲେ ବିପ୍ରବର
କୃଷ୍ଣକେଶ, ଶ୍ମଶ୍ରୁ ମୁଖ ମଣ୍ଡଳରେ
ଦିଶଇ ଅତି ସୁନ୍ଦର । ୬୨

ବ୍ୟାସଦେବଙ୍କର ପଞ୍ଚ ଶିଷ୍ୟ ହେତୁ
ବ୍ୟାସଙ୍କ ସମ ବିଦ୍ୱାନ
ଗୁରୁ ପଶୁ'ରାମ ଠାରୁ ଧନୁର୍ବିଦ୍ୟା
କରିଥିଲେ ଶିକ୍ଷାର୍ଜ୍ଜନ । ୬୩

ପଚିଶ ବରଷ ଭାରତ ବର୍ଷରେ
ବୁଲି ବୁଲି ନାନା ସ୍ଥାନେ
ରାଜ କୁମାରଙ୍କୁ ଧନୁ ଅସ୍ତ୍ର ଶିକ୍ଷା
ଦେଉଥିଲେ ଅନୁକ୍ଷଣେ । ୬୪

ଗୁରୁ କୁଳାଶ୍ରମେ ତାଙ୍କର ପ୍ରତିଷ୍ଠା
ରହିଥିଲା ଉଚ୍ଚ ସ୍ଥାନେ
ବେଦ, ଧନୁର୍ବେଦ, ଏ ଉଭୟ ଶିକ୍ଷା
ଦେଉଥିଲେ ଶିଷ୍ୟ ଗଣେ । ୬୫

ବନ୍ଧ, ଅନୁବନ୍ଧ, ରଜ୍ଜୁ ଆଦି ଗଜ-
ପୃଷ୍ଠେ ଥିଲେ ତାଙ୍କ ଶିଷ୍ୟ
ଶିକ୍ଷା ଦେବା କ୍ଷେତ୍ରେ ସାନ୍ଦିପନିଙ୍କର
ସୁଖ୍ୟାତି ଥିଲା ବିଶେଷ । ୬୬

ଆଗୁ ନନ୍ଦ ଗୃହେ ରହି ସାନ୍ଦିପନି
ବିଦ୍ୟା ଶିକ୍ଷା ଦେଇଥିଲେ
ଯେଉଁ ଠାରେ ପାଠ ଥାଇ ରହିଥିଲା
ସେଠାରୁ ଆରମ୍ଭ କଲେ । ୬୭

ପଞ୍ଚ ବେଦ, ଷଡ଼- ଶାସ୍ତ୍ର, ଅଷ୍ଟାଦଶ
ପୁରାଣ, ଜ୍ୟୋତିଷ ଷଟ୍
ମନ୍ତ୍ର, ଯନ୍ତ୍ର, ତନ୍ତ୍ର, ଗୋଟିକା, ଅଞ୍ଜନ
ଶ୍ରୁତି, ସ୍ମୃତି, କାବ୍ୟ, ନାଟ୍ୟ । ୬୮

ଜ୍ୟୋତିଷ ଷଡ଼ଙ୍ଗ ବେଦ ଓ ବେଦାଙ୍ଗ
ତର୍କ, ମୀମାଂସା, ବିସ୍ତର
ନ୍ୟାୟ, ନଇଷଧ, କାବ୍ୟ, ବ୍ୟାକରଣ
ପ୍ରକରଣ, ଅଳଙ୍କାର । ୬୯

ଧନୁ ଅସ୍ତ୍ର ବିଦ୍ୟା ରଣଦଣ୍ଡ ନୀତି
ଷଡ଼ବିଧ ରାଜନୀତି
ଉପାୟ, କୌଶଳ ଆଦି ବିଦ୍ୟା ସଙ୍ଗେ
ରାଜନୀତି, କୂଟନୀତି । ୭୦

ଶ୍ରବଣ ମାତ୍ରକେ ବିଦ୍ୟା ସିଦ୍ଧି ହେଲା
ଗୁରୁଙ୍କର କୃପାବଳେ
ସର୍ବ ବିଦ୍ୟା ସାଧି ଲଭିଲେ ପ୍ରସିଦ୍ଧି
ବିଶ୍ୱ ବିଦ୍ୱାନ ମଣ୍ଡଳେ । ୭୧

ବିଚକ୍ଷଣ ବୁଦ୍ଧି ପ୍ରଖର ସ୍ମରଣ
ଶକ୍ତି ସଙ୍ଗେ ଧୀ ସମ୍ପନ୍ନ
ଏପରି ଶିଷ୍ୟଙ୍କୁ ବିଦ୍ୟା ଶିକ୍ଷା ଦେଇ
ଗୁରୁଙ୍କ ଜୀବନ ଧନ୍ୟ । ୭୨

କଲ୍ୟାଣ କରଣ ବ୍ୟକ୍ତ କଲେ ଗୁରୁ
ବିଦ୍ୟା ହୋଇଗଲା ଶେଷ
ସ୍ୱଗୃହେ ଗମନ କର ତୁମ୍ଭେ ମାନେ
କରୁଅଛୁ ଶୁଭାଶୀଷ । ୭୩

ବିନୟେ ବୋଇଲେ କୃଷ୍ଣ ସଙ୍କର୍ଷଣ
ଦକ୍ଷିଣା ନ ଦେଇ ଗଲେ
ଗୁରୁଦତ୍ତ ବିଦ୍ୟା ସିଦ୍ଧି ହେବ ନାହିଁ
ବୋଲି ମତ ଶାସ୍ତ୍ର ବୋଲେ । ୭୪

କହୁଛନ୍ତି ଗୁରୁ କେଉଁ ଧନ ଦେବ
ଧନେ ନାହିଁ ପ୍ରୟୋଜନ
କେବଳ ମୋ ମୃତ ପୁତ୍ରକୁ ପାଇଲେ
ଶାନ୍ତ ହେବ ମୋର ମନ । ୭୫

ପିତା ପ୍ରତିନିଧି ଅଟଇ ତ ପୁତ୍ର
ପିତାକୁ କରେ ତାରଣ
କୁଳ ଯଶ କୀର୍ତ୍ତି ପରମ୍ପରା ରକ୍ଷା
ପାଇଁ ପୁତ୍ର ପ୍ରୟୋଜନ । ୭୬

ପୁତ୍ର ନରକରୁ ଉଦ୍ଧାର କରଇ
ପିତାକୁ କୁମର ମଣି
ପୁତ୍ରକୁ ହରାଇ ଶୋକାତୁର ହୋଇ
କାନ୍ଦୁ ଅଛି ତା ଜନନୀ । ୭୭

ଗୋଟିଏ ବାଳକ ପୁତ୍ର ଜନ୍ମିଥିଲା
ପ୍ରଭାସ ତୀର୍ଥରେ ସ୍ନାନ
କରିବା ସମୟେ ଜଳେ ବୁଡ଼ିଗଲା
ସେ ଦିନୁ ମୋ କୋଳ ଶୂନ୍ୟ । ୭୮

ଗୁରୁଙ୍କ ଅନ୍ତର ବେଦନାକୁ ଜାଣି
କହିଲେ ନୃସିଂହ ବିଷର୍ଣ୍ଣ
ମୃତ୍ୟୁଆସ୍ତ୍ର ପୁତ୍ରରୁ ଭେଟାଇବି ଆଣି
ତୁମ୍ଭର ମୃତ ସନ୍ତାନ । ୭୯

ଶିଷ୍ୟଙ୍କର କଥା ଶୁଣି ବିପ୍ରବର
କହିଲେ ଏ ଅସମ୍ଭବ
ଗୁରୁଙ୍କ ସମ୍ମୁଖେ ମିଥ୍ୟା କହୁଅଛ
ଯୁବକ ସ୍ୱଭାବ ତୁମ୍ଭ । ୮୦

ଗୋବିନ୍ଦ କହିଲେ ଗୁରୁଙ୍କ କଥାରେ
କରୁ ନାହିଁ ପ୍ରତିବାଦ
ଶାସ୍ତ୍ର ପୁରାଣରେ ପ୍ରମାଣ ରହିଛି
ଅସାଧ୍ୟ ହୋଇଛି ସାଧ୍ୟ । ୮୧

ବହୁତ ଦୃଷ୍ଟାନ୍ତ ମଧ୍ୟୁ ଏକ ଦୁଇ
କହୁଅଛି ଗୁରୁ ଶୁଣ
ଶିବସୁତ କଚ ମୃତ ହୋଇ ପୁଣି
ପାଇ ଅଛନ୍ତି ଜୀବନ । ୮୨

ବୋଲୁଛନ୍ତି ଗୁରୁ ଏ ଯେଉଁ ଦୃଷ୍ଟାନ୍ତ
ଦେଲ ତା ଅଟେ ଦୁର୍ଲ୍ଲଭ
ଦେବ ଲୋକ କଥା ମାନବ ଲୋକରେ
କେବେ କି ହେବ ସମ୍ଭବ । ୮୩

ଗୁରୁପତ୍ନୀ କହୁ ଅଛନ୍ତି ସ୍ୱାମୀଙ୍କୁ
ପ୍ରତିବାଦ କର ନାହିଁ
ସୂର୍ଯ୍ୟ ଅସ୍ତଯାଏଁ ଅପେକ୍ଷା କରିବା
ସତ୍ୟ ଜାଣିବାର ପାଇଁ । ୮୪

ଗୁରୁ, ଗୁରୁପତ୍ନୀ ଚରଣେ ପ୍ରଣମି
ଦୁଇ ଭାଇ ଚାଲିଗଲେ
ନିମିଷକ ମଧ୍ୟେ ବରୁଣ ପୁରରେ
ଯାଇଣ ପ୍ରବେଶ କଲେ । ୮୫

ହରି ହଳପତି ଦେଖି ଜଳପତି
କଲେ ବହୁ ସ୍ତୁତି ଗାନ
ବିନମ୍ର ବଚନେ ଜିଜ୍ଞାସା କରିଲେ
ଆଗମନର କାରଣ । ୮୬

ପୂଜା କଲେ ରାମ ଆହେ ଜଳ ପତି
ତୀର୍ଥ ଜଳେ ସ୍ନାନ କାଳେ
ଗୁରୁପୁତ୍ର କମ୍ପା ବୁଡ଼ାଇ ମାଇଲ
ଗଭୀର ସାଗର ଜଳେ ? ୮୭

ତରଙ୍ଗ ନାମରେ ତୁମ୍ଭ ମନ୍ତ୍ରୀବର
କପଟ କଲେ ଅନ୍ୟାୟ
ବରୁଣ ପଦକୁ ଅଯୋଗ୍ୟ ହୋଇଲ
ଗାଦି ଛାଡ ଜଳସ୍ୱପ୍ନ ? ୮୮

ଶିରେ କର ଦେଇ ଠିଆ ହୋଇ ଚହି
କହିଲେ ରାଜା ବରୁଣ
ସବୁ ଜାଣି କମ୍ପା କୋପ କରୁ ଅଛ
ଆହେ ପ୍ରଭୁ ଶଙ୍କର୍ଷଣ ? ୮୯

ଯାହାକୁ ଯେମନ୍ତ ଦାୟିତ୍ୱ ଦେଇଛ
ତାହା କରନ୍ତୁ ପାଳନ
ମାରିବାର ଅଧି- କାର ସମନର
ଏ କଥା ଜାଣ ଆପଣ । ୯୦

ଯମ ନ ମାଇଲେ ନ ମରଇ ପ୍ରାଣୀ
ଯମକୁ ନ ଲଗେ ଦୋଷ
ଆଧି, ବ୍ୟାଧି, ସର୍ପ, ଅଗ୍ନି, ଜଳ, ବାୟୁ
ବ୍ୟାଘ୍ର, ନନ୍ଦ ନାମେ ଦୋଷ । ୯୧

ନିର୍ଲିପ୍ତ, ନିଷ୍ପାପ, ନିର୍ଦ୍ଦୋଷ ପୁରୁଷ
ହୋଇବାରୁ ନାଶ କର
ତାଙ୍କୁ ଜଣା ଥିବ ଗୁରୁ ପୁତ୍ର ମୃତ୍ୟୁ
ପୂଛିଲେ ଦେବେ ଉତ୍ତର । ୯୨

ବରୁଣ କଥାରେ କାଇଲ ହୋଇଣ
ଚଳିଗଲେ ରାମକୃଷ୍ଣ
ମୁହୂର୍ତ୍ତକ ମଧ୍ୟେ ସଞ୍ଜିବନୀପୁରେ
ପ୍ରବେଶିଲେ ବେନି ଜଣ । ୯୩

ଯମରାଜା ସଭା କରି ବସିଛନ୍ତି
ପାଶେ ମନ୍ତ୍ରୀ ଚିତ୍ରଗୁପ୍ତ
ବାଆସ୍ତର କାଳ ପୁରୁଷ ସହିତ
ଶୈରିଅଣୀ ଭୂତ ପ୍ରେତ । ୯୪

କାଳ ଓ'ବକାଳ ନାମେ ବେନି ଦୂତ
ପାର୍ଶ୍ୱେ ଠିଆଛନ୍ତି ରହି
ପ୍ରଭୁ ଆଗମନ ଦେଖି ଯମ ଲୋକେ
ପ୍ରଣମିଲେ ପାଦେ ଯାଇ । ୯୫

କ୍ରୋଧ କେଲେ ପ୍ରଭୁ ଯମଙ୍କୁ ପୁଚ୍ଛିଲେ
କଣ୍ଠାଇ ଅଧର୍ମ କଲ
ତୀର୍ଥ ଜଳେ ସ୍ନାନ କାଳେ ଗୁରୁ ପୁତ୍ର
ଜଳେ ବୁଡ଼ାଇ ମାରିଲ ? ୯୬

ମାରିବାର ଶକ୍ତି ଥିଲେ ହେଁ ତୁମ୍ଭର
ଅକାଳେ ନିଧନ ଶକ୍ତି
ଦେଇ ନାହୁଁ ଆମ୍ଭେ ଜାଣି ଅଛ ତୁମ୍ଭେ
କଣ୍ଠାଇଁ କଲ ଅନୀତି ? ୯୭

ଏକଶତ ଆଠ ବର୍ଷ ପରମାୟୁ
ମାନବ କଲ୍ପ ଅଟଇ
କଲ୍ପ-ଭୋଗ ଯିବା ଆଗରୁ ନିଧନ
କଣ୍ଠା କଲ ଜନ୍ତୁ ପାଇଁ ? ୯୮

କୃଷ୍ଣ କଥା ଶୁଣି କହୁଛନ୍ତି ଯମ
କରି ନାହିଁ ମୁଁ ଅନୀତି
ଯେଉଁ ଅଧିକାର ଦେଇଅଛ ମୋତେ
ତହିଁରୁ ନୁହେଁ ବିଚ୍ୟୁତ । ୯୯

କର୍ମ ଦୋଷେ ପ୍ରାଣୀ ନିହତ ହୁଅଇ
ଏହାହିଁ ସୃଷ୍ଟି ନିୟମ
ତାହା ମୁଁ ଅକ୍ଷରେ ଅକ୍ଷରେ ପାଳୁଛି
ନ କରଣ ବ୍ୟତିକ୍ରମ । ୧୦୦

କର୍ମ ଦୋଷ ଯୋଗୁ ଅକାଳେ ମରଣ
ଲଭିଥାନ୍ତି ପ୍ରାଣୀଗଣ .
ତାହାହିଁ ଘଟିଛି ଗୁରୁପୁତ୍ର ଯେବେ
ଦୋଷ ଦିଅ ଅକାରଣ । ୧୦୧

ଏହା କହି ଯମ ଗୁରୁ ପୁତ୍ର ଆଣି
ପ୍ରଭୁଙ୍କୁ କଲେ ଅର୍ପଣ
ତା ସଙ୍ଗେ ଦେବକୀ ମୃତ ଷଡ ପୁତ୍ର
ଦେଇ ବୋଇଲେ ବଚନ । ୧୦୨

ଦେବକୀ ଦେବୀଙ୍କ ଏଷଡ ତନୟ
ପଥରରେ ଛେଚି କଂସ
ବିନାଶ କରଣ ଥିଲା ଏମାନଙ୍କୁ
ନେଇ କର ଜଗଦୀଶ । ୧୦୩

କୀର୍ତ୍ତୀମାନ, ଭଦ୍ର ଭଦ୍ରସେନ, ଋଜୁ
ସମ୍ମର୍ଦ୍ଦନ ଓ ସୁଷେଣ
ଏହିଷଡ଼ ପୁତ୍ର ସଙ୍ଗେ ଗୁରୁପୁତ୍ର
ଘେନ ଫେରିଲେ ଶ୍ରୀକୃଷ୍ଣ । ୧୦୪

ପୂର୍ବ ଜନ୍ମେ ଏହି ଷଡ ଗୋଟି, ପୁତ୍ର
ମରୀଚୀଙ୍କ ଧର୍ମପତ୍ନୀ
ଊର୍ଣ୍ଣାଙ୍କ ଗର୍ଭରୁ ଜାତ ହୋଇଥିଲେ
ମାନବ ରୂପେ ଅବନୀ । ୧୦୫

ସ୍ମର, ଉଦ୍‌ଗୀଥ, ପରିଶଙ୍ଗ, ପତି,
କ୍ଷୁଦ୍ରଭୃଦ୍, ଘୃଣି ନାମରେ
ଋଷି ପୁତ୍ର ହୋଇ ବ୍ରହ୍ମାଶାପ ପାଇ
ଜନମିଲେ ମର୍ତ୍ତ୍ୟପୁରେ । ୧୦୬

ଅସୁର ନୃପତି ହିରଣ୍ୟ କଶ୍ୟପୁ
ପୁତ୍ର ହୋଇ ଜନ୍ମ ହେଲେ
ବିଷ୍ଣୁଙ୍କ କୃପାରୁ ଶାପ ମୁକ୍ତ ହୋଇ
ଦେବକୀ ଗର୍ଭୁ ଜନ୍ମିଲେ । ୧୦୭

ପୂର୍ବାର୍ଜିତ ପାପ କର୍ମର ଫଳରୁ
ଅଳ୍ପାୟୁଷ ହୋଇଗଲେ
ଜନମ ମାତ୍ରକେ କଂସ ଦ୍ୱାରା ପୁଣି
ଜଣ ଜଣ ହତ ହେଲେ । ୧୦୮

ପାପ କର୍ମ ଫଳ ଭୋଗ ଅନ୍ତେ ଏବେ
ଭୋଗିବେ ପୁଣ୍ୟର ଫଳ
ଆପଣଙ୍କ ଜ୍ୟେଷ୍ଠ ସୋଦର ଏମାନେ
ଘେନ କୃଷ୍ଣ କାମପାଳ । ୧୦୯

ମୃତ ଗୁରୁପୁତ୍ର ସଙ୍ଗେ ଦେବକୀର
ଷଡ଼ ଗୋଟି ମୃତ ପୁତ୍ର
ଯମପୁରୁ ଧରି ଫେରିବା ସମୟେ
ଦେଖିଲେ ପାଣ୍ଡୁ ନୃନାଥ । ୧୧୦

ଯମରାଜା ସିଂହା- ସନ ତଳେ ଠିଆ
ଶିରେ ପଡ଼େ ପାଦରଜ
ଏ ବିଚିତ୍ର ଦୃଶ୍ୟ ଦେଖି ରାମକୃଷ୍ଣ
ପୁଚ୍ଛିଲେ ହୋଇ ଆଶ୍ଚର୍ଯ୍ୟ । ୧୧୧

କାରଣ ପୁଚ୍ଛନ୍ତେ ସଧୀରେ ଯମଙ୍କୁ
ଉତ୍ତରିଲେ ଯମରାଜ
ବ୍ରହ୍ମହତ୍ୟା ପାପ କରି ତାହା ଫଳ
ଭୋଗୁଛନ୍ତି ପାଣ୍ଡୁରାଜ । ୧୧୨

ଶାସ୍ତ୍ରୀୟ ମତରେ ବ୍ରହ୍ମହତ୍ୟା ପାପ
ସହଜେ ନୁହେଁ ଖଣ୍ଡନ
ପିତା ପାଇଁ ପୁତ୍ର ରାଜ ସୂୟ ଯଜ୍ଞ
କଲେ ହେବେ ପାପ ଶୂନ୍ୟ । ୧୧୩

ନିରପେକ୍ଷ ମୁହିଁ ଉପ୍ରୋଧ ମୋ ନାହିଁ
ଦୋଷ ଦେଖି ଦିଏ ଦଣ୍ଡ
ସତ୍ୟ ନିର୍ଦ୍ଧାର କଥା ଶୁଣି ପ୍ରଭୁ
ଫେରିଲେ ନ ଖୋଲି ତୁଣ୍ଡ ।

ସୂର୍ଯ୍ୟାସ୍ତ ପୂର୍ବରୁ ଗୁରୁ ତନୟଙ୍କୁ
ଗୁରୁଙ୍କୁ କଲେ ପ୍ରଦାନ
ମୃତ ପୁତ୍ର ପାଇ ପିତା ମାତା ଦୁଇ
କଲେ ବହୁ ସ୍ତୁତି ଗାନ । ୧୧୫

ନମୋ ନାରାୟଣ, କୃଷ୍ଣ, ଶଙ୍କର୍ଷଣ
ନମୋ ହରି ହଳଧର
କୃଷ୍ଣ ଶୁକ୍ଳ ଦୁଇ ବର୍ଣ୍ଣରେ ଶୋଭିତ
ଶୁକ୍ଳାମ୍ବର, ନୀଳାମ୍ବର । ୧୧୬

ପଦ୍ମପାଦ, ପଦ୍ମ- ପାଣି, ପଦ୍ମମୁଖ
ପଦ୍ମ ପଲାଶ ନୟନ
ପଦ୍ମନାଭ, ପଦ୍ମା- ଳୟା ପ୍ରାଣପତି
ପତିତ ପାବନ କୃଷ୍ଣ । ୧୧୭

ଚପଳ, ଚଞ୍ଚଳ, ଚରାଚର ଚିତ୍ତ-
ଚୈର, ଚଞ୍ଚଳା ରମଣ
ଚରଣ ତଳରେ ରଖ ନାରାୟଣ
ଭବ ସାଗର କାରଣ । ୧୧୮

ଗୁରୁଙ୍କର ସ୍ତୁତି ଶୁଣି ରାମକୃଷ୍ଣ
ଦେଖାଇଲେ ବିଷ୍ଣୁ ରୂପ
ନମିଷେ ଦେଖାଇ ପୁଣି ମାୟା କରି
ସେ ରୂପ କରିଲେ ଗୋପ୍ୟ । ୧୧୯

ରାମକୃଷ୍ଣ ରୂପେ ଗୁରୁଙ୍କ ଚରଣେ
କରିଶତ ପ୍ରଣିପାତ
ବିଦାୟ ଘେନିଣ ମଥୁରା ଫେରିଲେ
ପାଦେ ଗ୍ଳି ନବ ଭ୍ରାତ । ୧୨୦

ଏକ ଶତ ବିଂଶ ପଦରେ ଅଧ୍ୟାୟ
ଏଠାରେ ହୋଇଲା ଶେଷ
ଗୀତରେ ଭଣିଲା ମୂଢ଼ ବୁଲୁ ଦାସ
ଗୁରୁ ଅଭିରାମ ଶିଷ୍ୟ । ୧୨୧

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ରାମକୃଷ୍ଣଙ୍କ କୈଶୋରିକ
କର୍ମ ସମ୍ପାଦନେ ନାମ ଦ୍ୱିତୀୟ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

**ବୋଲି :—**

ଗୁରୁମନ ଯିବା ବହନ କରି ଦର୍ଶନ
ଅନନ୍ତ ଗୁମ୍ଫାରେ ବସେ ସତ୍ୟ ନାରାୟଣ । ୧
ନବୀନ ନୀରଦକାନ୍ତ ନବଘନ ଶ୍ୟାମ
ଦ୍ୱିଭୁଜ ମୁରଲୀ କର ସୁନ୍ଦର ସୁଠାମ । ୨
ଶାନ୍ତ ଆନନ୍ଦ ଆଶ୍ରମେ କରନ୍ତି ବିଶ୍ରାମ
ଅନ୍ତରଙ୍ଗ ଭକ୍ତ ଗଣେ ଚରଣେ ପ୍ରଣାମ । ୩
ଅନନ୍ତ ସତ୍ୟ କଳରେ ବୌଦ୍ଧ ରୂପେ ଜାତ
ଏକାକ୍ଷର ମହାମନ୍ତ୍ର ବାଣ୍ଟିଲେ ଭକତ । ୪
ସିଦ୍ଧ ପ୍ରତିଷ୍ଠ ସମାଧି ଆସନରେ ସ୍ଥିର
ସତ୍ୟ ଆରାଧିଲା ଲୋକେ କରନ୍ତି ଉଦ୍ଧାର । ୫
ଆଠ ସତ୍ର ଅନ୍ତରଙ୍ଗ ଭକ୍ତଙ୍କ ସହିତ
ଅନ୍ତରଙ୍ଗ ସଂକୀର୍ତ୍ତନ କରୁଛନ୍ତି ନିତ୍ୟ । ୬
ଦ୍ୱାପର ଯୁଗର ଲୀଳା ଗୁପ୍ତରେ ରହସ
ଅଙ୍ଗଦେହୀ ଭକ୍ତ ସଙ୍ଗେ ରଜନୀ ଦିବସ । ୭
ସତ୍ୟ ନାରାୟଣ ସ୍ୱାମୀ ଶିରଣିରେ ମେଳ
ଅଜପା ସୂତ୍ରରେ କରୁ ଅଛନ୍ତି ସେ ଖେଳ । ୮
ପର୍ଶୁରାମ, ରାମ, ବଳରାମ, ଅଭିରାମ
ଚାରିଯୁଗେ ଚାରି ରାମ ସାର ରାମ ନାମ । ୯
"ରାମ" ଦୁଇ ଅକ୍ଷର ଏ ଜୀବ ପରଂବ୍ରହ୍ମ
'ର' କାର ଗୋଟି ରାଧିକା ମ'କାର ମୋହନ ।୧୦
ଜୀବ ପରମ ଏ ଦୁଇ ସର୍ବ ଘଟେ ବାସ
ହଂସସୋଽହଂ ସୂତ୍ରେ ଖେଳୁଛନ୍ତି ଅହର୍ନିଶ ।୧୧

ସର୍ବ ନାମ ମଧ୍ୟେ ରାମ ନାମ ଗୋଟି ସାର
ରାମ ନାମ ଗୋଟି ଭଜୁ ଅଛନ୍ତି ଶଙ୍କର । ୧୨
ଭୂଷଣ୍ଡି କାକ କରନ୍ତି ଯା' କାର ଭଜନ
ରାଧା ଭାବେ କୃଷ୍ଣ ପ୍ରେମ ସୁଧା ଆସ୍ୱାଦନ । ୧୩
କୃଷ୍ଣ ଦାସ ଭଜେ ନିତ୍ୟ ରାମ ନାମ ବ୍ରହ୍ମ
ହରେ ରାମ-କୃଷ୍ଣ-ଶ୍ୟାମ-ସତ୍ୟ ଅଭିରାମ । ୧୪

—●—

# ଦ୍ୱିତୀୟ ଅଧ୍ୟାୟ

## ମଥୁରା ରାଜସଭାରେ ରାମକୃଷ୍ଣଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା

( ରାଗ - ଶଙ୍କରା ଭରଣ )

ଶ୍ରୀକୃଷ୍ଣ ଚରିତ ମାନସ ଶୁଣ ସୁଜନେ
ଝରୁଛି ଅମିୟ ରସ ଝରଣା ଯେସନେ
ଝର ଝର ନିର୍ଝରିଣୀ
ଗୋନାସିକା ଶିଖରୁ ବା ଝରେ ବୈତରଣୀ । ୧
ବନ୍ଦେ ପତିତ ପାବନୀ ସୁର ତରଙ୍ଗିଣୀ
ପୁଣ୍ୟତୋୟା ଜଳପାନେ ତରିଯାଏ ପ୍ରାଣୀ
ସେ ଜଳେ ଯେ କରେ ସ୍ନାନ
ବସେ ଯାଇ ସ୍ୱର୍ଗପୁରେ ଶକ୍ର ସମାନ । ୨
ସେହି ପୁଣ୍ୟତୋୟା ନଦୀ ତୀରେ ମୋର ବାସ
ବାଲ୍ୟ କାଳୁ ରାମକୃଷ୍ଣ ଭଜେ ଅହର୍ନିଶ
ଜନ୍ମ ଜାତ ଜଳେଶ୍ୱର
ଜଅଁରା ଗ୍ରାମେ ପୂଜିତ ଜଗତ ଈଶ୍ୱର । ୩

ତାଙ୍କର କୃପାରୁ କବି ପ୍ରତିଭା ସ୍ଫୁରଣ
କୃଷ୍ଣ ଚରିତ ମାନସେ ବୋଲାଇଲି ମନ
ଶିବ ପାର୍ବତୀ ଚରଣେ
ଚିତ୍ତ ରଖି ବୁଲୁ ଦାସ ବୋଲେ ଶୁଣ ଜନେ । ୪

ଅବନ୍ତୀରୁ ରାମକୃଷ୍ଣ ମଥୁରା ଫେରିଲେ
ଦେବକୀ କୋଳରେ ଛଡ଼ପୁତ୍ର ନେଇ ଦେଲେ
ମୃତ ପୁତ୍ର ପାଇ ମାତ
ଅଶେଷ କଲ୍ୟାଣ କଲେ ହୋଇ ଆନନ୍ଦିତ ।୫

ମଥୁରା ବାସୀଏ ଦେଖି ହୋଇଲେ ଅବାକ
ନ ସ୍ଫୁରିଲା ମୁଖୁ ବାକ୍ୟ ସକଳେ ନିର୍ବାକ
କଲେ ସର୍ବେ ଜୟସ୍ୱନ
ଜୟଜୟ ରାମକୃଷ୍ଣ ଦେବକୀ ନନ୍ଦନ । ୬

ମଥୁରାରେ ରାମକୃଷ୍ଣ ସେ ଦିନୁ ରହିଲେ
ରାଜକାର୍ଯ୍ୟ ସମ୍ପାଦନେ ମନ ବଳାଇଲେ
ଭକ୍ତ ରଜାଏ ଆଶ୍ୱସ୍ତ
ଦୁଷ୍ଟ ରଜାଏ ପ୍ରମାଦ ଗଣନ୍ତ ଭୟଭୀତ । ୭

ବ୍ରାହ୍ମଣ-କ୍ଷତ୍ରିୟ-ବୈଶ୍ୟ ଶୂଦ୍ର ଗୃହବର୍ତ୍ତୀ
ଯେ ଯାହା ଧର୍ମରେ ଥାଇ ସମ୍ପାଦିଲେ କର୍ମ
ଗାର୍ଗ୍ୟ ଦେଲେ ଉପଦେଶ
ଧର୍ମରେ ପାଳନ୍ତି ପ୍ରଜା ଉଗ୍ରସେନ ଈଶ । ୮
ଅକାଳ ମରଣ ନାହିଁ ରୋଗ ଶୋକ ବାଧା
ପ୍ରାଣ ଠାରୁ ପ୍ରାଣୀ ଗଣେ ଧର୍ମେ କଲେ ଶ୍ରଦ୍ଧା
ଦେବକୀ ସୁତେ ସ୍ୱାଗତ
ପାଇଁ ଉତ୍ସବ ଯୋଗାଡ଼ କଲେ ନରନାଥ । ୯
ସଭାରେ ବସିଲେ ଯାଇ ଦେବକୀ ନନ୍ଦନ
ସଙ୍ଗେ ଦେନି ଷଡ଼ ଭ୍ରାତା ମିଶି ଆଠ ଜଣ
ମଣ୍ଡଳୀ ଭାଇ ସୁରଥ
ଆସନରେ ଉପବିଷ୍ଟ ହେଲେ ନବଭ୍ରାତ । ୧୦

ତାଙ୍କୁ ଆସି କଲେ ସ୍ୱାଗତ ଅଭିନନ୍ଦନ
ଗାର୍ଗ୍ୟାଚାର୍ଯ୍ୟ ବୋଲୁଛନ୍ତି ଶୁଣ ସଭାଜନ
ଯଦୁ ବଂଶେ ଉଗ୍ରସେନ
ମର୍ତ୍ତ୍ୟେନ୍ଦ୍ର ସମାନ ତାଙ୍କୁ କରିଥିବ ମାନ୍ୟ । ୧୧
କେଉଁ ତୀର୍ଥରେ ବସି କେତେ ତପ କଲେ
ଦେବକୀ ଦେବୀଙ୍କୁ କନ୍ୟା ରୂପରେ ପାଇଲେ
ତାଙ୍କ ଗର୍ଭୁ ବିଷ୍ଣୁ ଜାତ
ଧନ୍ୟଧନ୍ୟ ବସୁଦେବ ଶ୍ରୀହରିଙ୍କ ତାତ । ୧୨
ପତିପତ୍ନୀ ଭୋଗ କଲେ ଦୁଃଖ ଅସମ୍ଭବ
ମାନବ ଶରୀରେ ବିଷ୍ଣୁ ହୋଇଲେ ସମ୍ଭବ
ଧନ୍ୟ ହେଲା ଯଦୁବଂଶ
ତରି ଗଲେ ପିତୃପିତା ମହ ସାତ ବଂଶ । ୧୩
ଧନ୍ୟ ମଧୁପୁର ବାସୀ ପରଜା ସକଳ
ମାନବୀ ବିଷ୍ଣୁଙ୍କ ସଙ୍ଗେ କରୁଅଛ ଖେଳ
ଘେନାକର ଆମ୍ଭ ବୋଲ
ରାମକୃଷ୍ଣ ଆରାଧନା କର ହେ ସକଳ । ୧୪
ଅନନ୍ତ କୋଟି ବ୍ରହ୍ମାଣ୍ଡର ଯେ ସୃଷ୍ଟି କର୍ତ୍ତା
ଶରଣ ପଞ୍ଜର ବାନା ଗତି ମୁକ୍ତିଦାତା
ପ୍ରତ୍ୟକ୍ଷେ ଯେ କର୍ମ କଲେ
କୈଶୋର ବୟସେ କଂସ ବିନାଶ କରିଲେ ।୧୫
ମଥୁରାରେ ଜନ୍ମ ହୋଇ ଗୋପରେ ବଢ଼ିଲେ
ନନ୍ଦରାଜା ପୋଷ୍ୟ ପୁତ୍ର ହୋଇଣ ରହିଲେ
ମଥୁରା କରଦ ରାଜ୍ୟ
ଗୋପ ପତି ନନ୍ଦ ତହିଁ କରୁଛନ୍ତି ରାଜ୍ୟ । ୧୬
ଗୋପପୁର ବୃଦ୍ଧ ରାଜା ନାମଟି ପର୍ଜନ୍ୟ
ତାହାଙ୍କ ଔରସୁ ଜାତ ପାଞ୍ଚଟି ନନ୍ଦନ
ଉପନନ୍ଦ, ଅଭିନନ୍ଦନ,
ନନ୍ଦ, ସନନ୍ଦ, ନନ୍ଦନ, ମଧ୍ୟେ ଯୋଗ୍ୟ ନନ୍ଦ । ୧୭

ତୃତୀୟ ସନ୍ତାନ ଥାଇ ତାହାଙ୍କୁ ପର୍ଜନ
ଯୋଗ୍ୟ ପୁତ୍ର ଜାଣି କଲେ ଗୋପରେ ରାଜନ
ଗୋପର ସୀମାନ୍ତ ଗ୍ରାମ
ସେ ଗ୍ରାମ ମୁଖିଆ ସୁଖରାୟ ତାଙ୍କ ନାମ । ୧୮
ପାଟଳା ତାହାଙ୍କ ପତ୍ନୀ ଯଶୋଦା ନନ୍ଦମା
ଯଶୋଦାଙ୍କୁ ବିଭା ହେଲେ ଗୋପ ନରମଣି
ସନ୍ତାନ ନୁହଁନ୍ତେ ଜାତ
ବିପ୍ର ବୋଲେ ରାଜା କଲେ ଏକାଦଶୀ ବ୍ରତ ।୧୯
ଏକାଦଶୀ ବ୍ରତ ଫଳ ହୋଇଲା ପ୍ରାପାତ
କୃଷ୍ଣ ବାସୁଦେବ ହେଲେ ତାଙ୍କ ପୋଷ୍ୟ ପୁତ୍ର
ତାଙ୍କ ଆଗୁ ଶଙ୍କର୍ଷଣ
କରିଥିଲେ ଯାଇ ଗୁପ୍ତେ ଗୋପେ ଅବସ୍ଥାନ । ୨୦
ଭାଦ୍ରମାସ ଶୁକ୍ଳ ଷଷ୍ଠୀ ତିଥିରେ ଜନମ
ହୋଇ ଗୋପ ପୁରେ ବାସ କଲେ ବଳରାମ
ଆଖି ନ ଖୋଲି ରହିଲେ
କୃଷ୍ଣ ଯିବାଯାଏ ଧ୍ୟାନ ଯୋଗେ ମଗ୍ନ ହେଲେ । ୨୧
ଭାଦ୍ର ମାସ କୃଷ୍ଣ ପକ୍ଷ ଅଷ୍ଟମୀ ଯେତିଥି
ଅର୍ଦ୍ଧରାତ୍ରେ ଆକାଶରେ ଅର୍ଦ୍ଧଚନ୍ଦ୍ର ଜ୍ୟୋତି
ରୋହିଣୀ ନକ୍ଷତ୍ର କାଳ
ଗ୍ରହ ଅବସ୍ଥିତିରେ ବିଶେଷ ଅନୁକୂଳ । ୨୨
କଂସ କାରାଗାରେ ଜନ୍ମି ଗୋପକୁ ଚଳିଲେ
ନନ୍ଦରାଜା ଘରେ ଯାଇ ଗୋପନେ ରହିଲେ
ଜାଣି କୃଷ୍ଣ ଆଗମନ
ନେତ୍ର ଖୋଲି ରାମ କଲେ ଶ୍ରୀମୁଖ ଦର୍ଶନ । ୨୩
ରାମକୃଷ୍ଣ ଦୁଇ ଭାଇ ଅନନ୍ତ ଅଚ୍ୟୁତ
ଯୁଗେ ଯୁଗେ ଜନ୍ମି ହେବେ ତାରନ୍ତି ଭକତ
ଏବେ ଯଦୁ ବଂଶେ ଜାତ
ତାଙ୍କ ପାଖେ ବସିଛନ୍ତି ଜ୍ୟେଷ୍ଠ ବଡ଼ ଭ୍ରାତ । ୨୪

ଏହି ଷଡ଼ ଶିଶୁ ଜନ୍ମ ହୋଇବା କ୍ଷଣରେ
ମାଇଲା କଂସ ତାହାଙ୍କୁ କରୁଣ ଶିଳାରେ
ସେହି ଷଡ଼ ମୃତ ସୁତ
ଯମପୁରୁ ଆଣିଦେଲେ ରାମକୃଷ୍ଣ ଭ୍ରାତ । ୨୫

ମୃତ ଶିଶୁଗଣ ପୁଣି ଆଣିଲେ ବଞ୍ଚାଇ
ଏ ଅସମ୍ଭବ କଥା କେବେ କର୍ଣ୍ଣେ ଶୁଣି ନାହିଁ
ଅସାଧ୍ୟ କଲେ ସାଧନ
ଭଗବାନ ବିନା ଆନେ ହୁଏକି ସାଧନ ? ୨୬

କୀର୍ତ୍ତିମାନ, ସୁଷେଣ, ଉଦ୍ରସେନ, ଏତନ
ରଜୁ, ସମ୍ବର୍ଦ୍ଧନ, ଉଦ୍ର ନାମ ଏ ବଖାଣି
ଦେବକୀର ଷଡ଼ ସୁତ
ବ୍ରହ୍ମାଙ୍କ ଅଭିଶାପେ ହୋଇଥିଲେ ନିହତ । ୨୭

ପୂର୍ବ ଜନ୍ମରେ ଏମାନେ ମରୀଚି ନନ୍ଦନ
ପତ୍ନୀ ପର୍ଣ୍ଣାଙ୍କ ଉଦରୁ ହୋଇଥିଲେ ଜନ୍ମ
ସ୍ମର, ଉଦ୍‌ଗୀଥ, ପତ
ପରିଶ୍ୱଙ୍ଗ, କ୍ଷୁଦ୍ର କୁଦ୍, ଘୃଣି ଷଡ଼ ସୁତ । ୨୮

ଏମାନେ ବ୍ରହ୍ମାଙ୍କୁ ଦିନେ କରି ଉପହାସ
ହିରଣ୍ୟକଶିପୁ ଘରେ ଜନ୍ମିଲେ ରାକ୍ଷସ
ବିଷ୍ଣୁଙ୍କୁ ପ୍ରାର୍ଥନା କରି
ପୁଣ୍ୟଫଳ ପାଇ ପ୍ରାଣ ତେଜି ଗଲେ ମରି । ୨୯

ବିଷ୍ଣୁଙ୍କ ଦୟାରୁ ଦେବକୀ ନନ୍ଦନ ହୋଇ
ଜନ୍ମ ମାତ୍ରେ ନାଶ ଗଲେ ଛୁଇଁ ଜନ୍ମ ଭୂଇଁ
ଜନନୀ କଥାରେ କୃଷ୍ଣ
ଯମପୁରୁ ଷଡ଼ଭ୍ରାତା ଆଣିଲେ ବହନ । ୩୦

ଦେଖୁଛ ସମ୍ମୁଖେ ବସିଛନ୍ତି ଷଡ଼ଭ୍ରାତ
ଏମାନଙ୍କୁ କଂସ କରିଥିଲା ତ ନିହତ
ରାମକୃଷ୍ଣ ଜ୍ୟେଷ୍ଠ ଭ୍ରାତ
ସମ୍ମାନ ପ୍ରଦାନ କର ହେ ସୈନ୍ୟ ସାମନ୍ତ । ୩୧

ଏଡ଼େ ବଡ଼ କରମକୁ ଆନେ ହୁଏ କରି
ସର୍ବ ଶକ୍ତିବାନ୍ ପ୍ରଭୁ ହରି ହଳଧାରୀ
ଧର୍ମରକ୍ଷା ପାଇଁ ଜାତ
ଯଦୁବଂଶ ମୁକ୍ତିଦାତା ବସୁଦେବ ସୁତ । ୩୨
ରାମକୃଷ୍ଣ ସେବା କଲେ ଜନମ ସଫଳ
ଧର୍ମ-ଅର୍ଥ-କାମ-ମୋକ୍ଷ ଦାତା ଆଦିମୂଳ
ମାୟା ମନୁଷ୍ୟ ଶରୀରେ
ଅମର୍ତ୍ତ୍ୟ ଲୀଳା କରନ୍ତି ଜନ୍ମି ମର୍ତ୍ତ୍ୟପୁରେ । ୩୩
ଯଦୁବଂଶେ ଯେତେବୀର ଜାତ ହୋଇଥିଲେ
ବାହୁବଳେ ସ୍ୱର୍ଗ ଜିଣି ମେରୁ ଜୟ କଲେ
ବୀର ଗଣେ ଅଗ୍ରଗଣ୍ୟ
ବିଷ୍ଣୁ ନାମ ବହିବାକୁ ନ ଥିଲେ ଭାଜନ । ୩୪
କଲି କର୍ମମାନ କରି ପାରନ୍ତି ସେ ଆନ
ଦେବଙ୍କ ଉପରେ ଦେବ ଦେବକୀ ନନ୍ଦନ
ପୂଜିଲେ ପାଇବ ମୁକ୍ତି
ଶୁଣିଣ ଯାଦବେ କଲେ ଚରଣେ ପ୍ରଣତି । ୩୫
ଗାର୍ଗ୍ୟ ମୁନିଙ୍କ କଥାରେ ସର୍ବେ ଗଲେ ଦ୍ରୁତେ
ଜାଣିଲେ ଏ ଜନ୍ମେ ମୋକ୍ଷ ହୋଇବ ନିଶ୍ଚିତେ
ସେବା କଲେ ଶ୍ରୀପତି
ରାମକୃଷ୍ଣ ବିନା ଆନଠାରେ ନାହିଁ ଧୃତି । ୩୬

ଜୟଜୟ ଯଦୁନାଥ ଜଗତ ଜୀବନ
ଜଗତ ଜନ ରଞ୍ଜନ ଯାମଳା ଭଞ୍ଜନ
ଯଦୁ ବଂଶ ପୂର୍ଣ୍ଣ ଶଶି
ମାନବ ଦେହେ ଲୀଳା କରୁଛ ବ୍ରହ୍ମରାଶି । ୩୭

ଅଷ୍ଟ ବିଂଶ ପଦେ ଅଧ୍ୟାୟ ହେଲା ସମ୍ପୂର୍ଣ୍ଣ
ଭଣିଲା ଶ୍ରୀ ବୁଲା ଦାସ ଅଧମ ଅଜ୍ଞାନ
ସୁଜନେ ନ ଦେନ ଦୋଷ
କୃଷ୍ଣ କାବ୍ୟ ରସ ପାନେ ଚିତ୍ତ କର ତୋଷ । ୩୮

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରାଦ୍ୱାରକା ଲୀଳା ଖଣ୍ଡେ ମଥୁରା ସଭାରେ ରାମ
କୃଷ୍ଣଙ୍କ ସ୍ୱାଗତ ସମ୍ବର୍ଦ୍ଧନା ବର୍ଣ୍ଣନେ ନାମ ଦ୍ୱିତୀୟ
ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

**ବୋଲି—**

ମୋତେ ସେହି ରୂପ ଦେଖାଅ ହରି
ଯେଉଁ ରୂପ ଦେଖି ପ୍ରାଣ ଦେଲେ ବଳି
ସକଳ ଗୋକୁଳ ନାରୀ ।
ତ୍ରିଭଙ୍ଗିମାଠାଣି ହେ ମୁରଲୀପାଣି
ରାଧାମନ କଲ ଚୋରି
କାଳନ୍ଦୀ କୂଳରେ କଦମ୍ବ ମୂଳରେ
କୁଞ୍ଜବନେ କେଳି କରି । ୧
ଗୋବତ୍ସା ଗହଳେ ଗୋପାଳଙ୍କ ମେଳେ
ଗୋବନ୍ଦ ରୂପକୁ ଧରି
ଗଳେ ବନମାଳ ଦିଶଇ ମଞ୍ଜୁଳ
ଜୟ ନିକୁଞ୍ଜ ବିହାରୀ । ୨
ନଟବର ବେଶ ପଟାମ୍ବର ଲେଶ
କୁଞ୍ଚିତ କୁନ୍ତଳ କେଶ
ମଥାରେ ମୁକୁଟ ମୟୂର ଚନ୍ଦ୍ରିକା
କଟିତଟେ ପୀତବାସ । ୩
ଇନ୍ଦ୍ର କୋପାନଳେ ଗୋପର ମଙ୍ଗଳେ
ଗିରିଗୋବର୍ଦ୍ଧନ ଧାରୀ
ନାଶିଲ ଆଶ୍ରିତ ଜନଙ୍କ ଆରତ
ଶାସ୍ତି ଦେଇ ବଜ୍ରଧାରୀ । ୪

କୌଶଲ୍ୟା ନନ୍ଦନ ରାଜୀବ ଲୋଚନ
ଶ୍ରୀରାମ କୋଦଣ୍ଡ ଧାରୀ
ମୁରାସୁର ମାରି ବୋଲଅ ମୁରାରୀ
ସହସ୍ର ପାଦ ବିସ୍ତାରି । ୫
ଖମ୍ବରୁ ବାହାରି ହିରଣ୍ୟ ବିଦାରି
ପ୍ରହ୍ଲାଦ ଉଦ୍ଧାର କାରୀ
ବାମନ ରୂପରେ ବଳିକୁ ଗୃପିଲ
ବ୍ରହ୍ମପାଦ ଜାତ କରି । ୬
ସେ ପାଦ ସାରସ ସ୍ମରି ବୁଲିଦାସ
ଗ୍ରାମେ ଗ୍ରାମେ ଗାଏ ଘୂରି
ନାହିଁତାର ବାସ ଅବଧୂତ ବେଶ
ଶ୍ରୀହରି ପ୍ରେମେ ଭିକାରୀ । ୭
ମୋତେ ସେହିରୂପ ଦେଖାଅ ହରି
ଯେଉଁରୂପ ଦେଖି ପ୍ରାଣଦେଲେ ବକ
ସକଳ ଗୋକୁଳ ନାରୀ ।

- ●● -

# ତୃତୀୟ ଅଧ୍ୟାୟ
## ରଙ୍ଗ ସଭା
### ରାଗ – ଚଉତିଶା

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ କର ଆହେ ସୁଜ୍ଞଜନ
ରାଜ କୁମାରଙ୍କ ଅସ୍ତ୍ର ପରୀକ୍ଷାର ଆଜ୍ଞା ଦେଲେ ନରରାଣ । ୧
ରାଜାଙ୍କ ଆଦେଶ ପାଇ ଗୁରୁ ଦ୍ରୋଣ କ୍ଷେତ୍ର କରିଲେ ପ୍ରସ୍ତୁତ
ବିଶାଳ ପ୍ରାନ୍ତର ମଧ୍ୟେ ସୁସଜ୍ଜିତ ମଣ୍ଡପେକ ବିନିର୍ମିତ । ୨
ପୃଥ୍ୱୀ ରାଜସଭା ଯେନ ଧୃତରାଷ୍ଟ୍ର ବସିଲେ ସଭାରେ ଯାଇ
ଠେରାବାଡ଼ ମଧ୍ୟେ ବସିଲେ ନାରୀଏ ପରୀକ୍ଷା ଦେଖିବା ପାଇଁ । ୩
ଧନ୍ୱାସ୍ତ୍ର ପରୀକ୍ଷା ଦେଖିବା ନିମନ୍ତେ ଲୋକେ ବସିଲେ ସଭାରେ
ନିମନ୍ତ୍ରଣ ପାଇ କୃଷ୍ଣ ବଳରାମ ମିଳିଲେ ରଙ୍ଗସଭାରେ । ୪
ସଭାପ୍ରାରମ୍ଭରେ ରାମକୃଷ୍ଣ ଦୁଇ ଭାଇଙ୍କି ଅଭିନନ୍ଦନ
ଜ୍ଞାପନ କରିଲେ ମାନନୀୟ ଶ୍ରେଷ୍ଠ ସ୍ୱାଗତ ବାର୍ତ୍ତା ପଢ଼ିଣ । ୫
କଂସର ନିଧନକାରୀ ରାମକୃଷ୍ଣ ଆନନ୍ଦରେ ହେଲେ ପୂଜିତ
ନରନାରାୟଣ ନୟନେ ନିରେଖି ସଭାଜନେ ପ୍ରମୋଦିତ । ୬
ବିପ୍ରମାନେ ମୁଖେ ବେଦଗାନ କରି ଅକ୍ଷତ ଚନ୍ଦନ ଦେଇ
ଆଶିର୍ବାଦ କଲେ ସହସ୍ର ମୁଖରେ ମଙ୍ଗଳା ଚରଣ ଗାଇ । ୭
ଅଭ୍ୟର୍ଥନା ପର୍ବ ଶେଷହେବା ପରେ ଅସ୍ତ୍ର ପରୀକ୍ଷା ଆରମ୍ଭ
ନିମନ୍ତେ ଆହ୍ୱାନ ଦେଲେ ଗୁରୁ ଦ୍ରୋଣ ଶୁଭେ ଜୟ ଜୟ ରାବ । ୮
ବୀର ବାଦ୍ୟମାନ ବାଜଣ ଉଠିଲା ଘନଘନ ଶଂଖସ୍ୱନ
ତୂରୀଭେରୀ ନାଦେ ଦିଗପ୍ରକମ୍ପିତ ଦୁନ୍ଦୁଭି କରେ ଗର୍ଜ୍ଜନ । ୯
ଅସ୍ତ୍ର ପରୀକ୍ଷାର ଶୁଭ ଉଦ୍‌ଘାଟନ ଆଦ୍ୟେ କଲେ ଦୁର୍ଯ୍ୟୋଧନ
ଧନୁର୍ଗଦା ବିଦ୍ୟା କୌଶଳ ଦେଖାଇ ମୋହିଲେ ଦର୍ଶକ ମନ । ୧୦
ତାପରେ କୌନ୍ତେୟ ପ୍ରଦର୍ଶନ କଲେ ଧନୁର୍ବିଦ୍ୟା ସଭାସ୍ଥାନ
ଜଣଜଣ କରି କୌରବେ ପାଣ୍ଡବେ କଲେ କ୍ରୀଡା ପ୍ରଦର୍ଶନ । ୧୧
ସର୍ବ ଶେଷେ ପାର୍ଥ ଧନୁଅସ୍ତ୍ରଧରି ଦେଖାଇଲେ କଉଶଳ
ବିସ୍ମାରିତ ନେତ୍ରେ ଦେଖୁଛନ୍ତି ଲୋକେ ହୋଇଣ ଭାବ ବିହ୍ୱଳ । ୧୨

ଅଗ୍ନିବାଣ ଏକ ପ୍ରୟୋଗ କରନ୍ତେ ଅଦ୍ଭୁତେ ଜଳିଲା ଅଗ୍ନି
ବରୁଣାସ୍ତ୍ର ମାରି ବରଷା କରାନ୍ତେ ନିର୍ବାପିତ ହୋଇଲା ବହ୍ନି । ୧୩
ବାୟୁବାଣ ମାରି ବରଷା ବହ୍ନିକୁ ଉଡ଼ାଇଣ ଦେଲେ ଦୂରେ
ଏ ସବୁ କୌଶଳ ଦେଖିଣ ଦର୍ଶକେ କରତାଳି ଦେଲେ କରେ । ୧୪
ପର୍ଜ୍ଜନ୍ୟାସ୍ତ୍ର ମାରି ଆକାଶ ମଣ୍ଡଳେ ମେଘମାଳ କଲେ ସୃଷ୍ଟି
ପର୍ବତାସ୍ତ୍ର ମାରି ଆକାଶ ମଣ୍ଡଳୁ ପଥର କରିଲେ ବୃଷ୍ଟି । ୧୫
ଭୌମାସ୍ତ୍ର ପ୍ରୟୋଗ କରି ଭୂଗର୍ଭରେ ଖାତମାନ ସୃଷ୍ଟି କରି
ଅନ୍ତର୍ଦ୍ଧାନ ହୋଇ ଯାଉଥିଲେ ପାର୍ଥ ଭୂସୁଡ଼ଙ୍ଗେ ପଶିକରି । ୧୬
ପୃଥିବୀ ପୃଷ୍ଠରେ ଶରବଦ୍ଧ କରି ଜଳଧାର ସୃଷ୍ଟି କରି
ଆନନ୍ଦରେ ଜଳ ପାନ କରୁଥିଲେ ସଦର୍ପେ ଗାଣ୍ଡୀବଧାରୀ । ୧୭
ବୃଷଭ କୁଜରେ ଅଣ୍ଡା ଏକ ରଖି ପ୍ରୟୋଗ କରିଲେ ବାଣ
ଅଣ୍ଡା ଭେଦ କରି ଶର ଚାଲିଗଲା ଉମ୍ଭଥାଏ ଯଥା ସ୍ଥାନ । ୧୮
ପୁତ୍ରର ବୀରତ୍ୱ ଦେଖି କୁନ୍ତୀ ମାତା ମନମଧ୍ୟେ ଆନନ୍ଦିତ
ବରଫ ସମାନ ଗାନ୍ଧାରୀ ହୃଦୟ ହୋଇଗଲା ସଙ୍କୁଚିତ । ୧୯
ଦର୍ଶକ ମାନଙ୍କ ସମ୍ମୁଖରେ ପାର୍ଥ ଅସି, ଧନୁ ଗଦା ଯୁଦ୍ଧ
ଅପୂର୍ବ ନୈପୁଣ୍ୟ ପ୍ରଦର୍ଶନ କରି ଜିଣିଲେ ଦର୍ଶକ ହୃଦ । ୨୦
କୌରବ ମାନଙ୍କ ବଦନ ଦିଶିଲା ମଳିନ, ବିବର୍ଣ୍ଣ, ଶ୍ୱେତ
ପରାଜୟ ଚିନ୍ତା ଗ୍ରାସନ୍ତେ ଶରୀର ହୋଇଗଲା ଜଡ଼ବତ୍ । ୨୧
ମାତ୍ର ଦୁର୍ଯ୍ୟୋଧନ ଟାଣ କରି ମନ ବସିଥାନ୍ତି ସଭାସ୍ଥଳେ
ବିଭିନ୍ନ କୌଶଳ ଦେଖାନ୍ତି ଅର୍ଜ୍ଜୁନ ଧନୁର୍ବିଦ୍ୟା ସାଧ୍ୟବଳେ । ୨୨
ପୁଣି ଏକ ବାଣ ମାରିଲେ ଅର୍ଜ୍ଜୁନ ପୁଷ୍ପମାଳା ଏକ ଆସି
ଆଚାର୍ଯ୍ୟଙ୍କ କଣ୍ଠ ମଣ୍ଡନ କରିଲା ଦେଖି ଦ୍ରୋଣ ଗୁରୁ ଖୁସି । ୨୩
ଅତି ଆବେଗରେ କହିଲେ ଆଚାର୍ଯ୍ୟ ବୀରଗଣେ ଅଗ୍ରଗଣ୍ୟ
ଏପରି ବୀରତ୍ୱ ପ୍ରଦର୍ଶନ କ୍ଷେତ୍ରେ କିଏ ବା ତୋ'ତେ ଭାଜନ ? ୨୪
ପାର୍ଥଙ୍କ ଏକତ୍ୱ ବୀରତ୍ୱ ପ୍ରତିଷ୍ଠା ଆଚାର୍ଯ୍ୟଙ୍କ କଣ୍ଠସ୍ୱନେ
ପ୍ରତିଧ୍ୱନି ଶୂନ୍ୟେ ପ୍ରସାରିତ ହେଲା ପ୍ରତିବାଦ କଲେ ଜଣେ । ୨୫
କ୍ଷଣକ ମଧ୍ୟରେ କ୍ଷେପଣାସ୍ତ୍ର ପ୍ରାୟ ଔଦ୍ଧତ୍ୟ ପ୍ରାଚୀର ଡେଇଁ
ରଙ୍ଗ ସଭାସ୍ଥଳେ ଉଭାହୋଇ ବୋଲେ ପ୍ରତିଦ୍ୱନ୍ଦୀ ଅଟେ ମୁହିଁ । ୨୬

ଗର୍ବର ସହିତ ବୋଲେ ସେ ଯୁବକ ଏହାଠୁ ଭଲ କୌଶଳ
ଦେଖାଇବା ଶକ୍ତି ରହିଛି ମୋହର ଆଜ୍ଞା ହେଉ ଗୁରୁକୁଳ । ୨୭
ଏବଚନ୍ଧ ଦୃଶ୍ୟ ଦେଖି ସଭାଜନେ ବିସ୍ମୟାଭିଭୂତ ହୋଇ
ଚାହିଁ ରହିଛନ୍ତି ଦ୍ରୋଣଙ୍କ ମୁଖକୁ ଅନୁମତି ଦେବାପାଇଁ । ୨୮
ଅର୍ଜୁନ ପୁଚ୍ଛିଲେ ଏରଙ୍ଗ ସଭାକୁ ତୁମକୁ ଡାକିଛି କିଏ ?
ଯୁବକ କହିଲେ ଦ୍ରୋଣଙ୍କ ଆହ୍ୱାନେ ଆସିଛି ଆପଣାଛୁଏଁ । ୨୯
କ୍ଷତ୍ରିୟଉଚିତ ପୁରୁଷାକାରରୁ ଏଥେ ଆସିଅଛି ମୁହିଁ
ପୌରୁଷକୁ ଦ୍ରୋଣ ଧିକ୍କାର କରନ୍ତେ ଶୁଣି ନ ପାରିଲି ସହି । ୩୦
ତୁମଠୁ ଉତ୍ତମ କୌଶଳ ଦେଖାଇ ପାରିବାର ଅଛି ଶକ୍ତି
ଭାରତ ମାତାର ମୁଁ ଏକ ସନ୍ତାନ ରଖିବାକୁ ଚାହେଁ କୀର୍ତ୍ତି । ୩୧
ଅର୍ଜୁନ କହିଲେ ହୋଇପାର ବୀର କିନ୍ତୁ ବିନା ଆମନ୍ତ୍ରଣେ
ରଙ୍ଗସଭାସ୍ଥଳେ ଉପସ୍ଥିତ ହୋଇ କହୁଛ ଅଭଦ୍ର ପଣେ । ୩୨
ପାର୍ଥ କଥା ଶୁଣି କହିଲେ ଯୁବକ ଗର୍ବ କର ନାହିଁ ପାର୍ଥ
ପ୍ରତି ଯୋଗିତାରେ ତୁମଠୁ ଅଧିକ ହେବାକୁ ଅଛି ସାମର୍ଥ୍ୟ । ୩୩
ସଦର୍ପେ କହିଲେ ଆହେ ରାଜପୁତ୍ର ଦେଖ ମୋ ବାହୁ ଯୁଗଳ
ରାଜବାହୁ ଠାରୁ ଅଧିକ ବିଶାଳ ଶରୀରେ ଅସୀମ ବଳ । ୩୪
ଜାତିଗତ ପ୍ରତି- ଯୋଗିତା ଏ ନୁହେଁ ବିଦ୍ୟା ପରୀକ୍ଷାର ସ୍ଥଳ
ରାଜଦରବାରେ ବିଦ୍ୟା ପ୍ରଦର୍ଶନେ ସଭିଙ୍କର ଅଧିକାର । ୩୫

ଯଦି ତୁମେ ବୀର ଆସଏ ସଭାରେ ବିଦ୍ୟାର ହେଉ ପରୀକ୍ଷା
ଦେଖିବା କିପରି ବିଦ୍ୟା ସାଧିଅଛ କିସ ତୁମ ଗୁରୁଦୀକ୍ଷା । ୩୬

ଯୁବକ କଥାରେ ହେଉ ହେଉ-ବୋଲି ଶୁଭିଲା ଜନତା ସ୍ୱନ
କୌରବ ଶିବିରେ ଆନନ୍ଦ ଉଲ୍ଲାସ ନାରୀଗଣେ ଗୁଞ୍ଜରଣ । ୩୭

ଆସ ଆସ ବୋଲି ଡାକନ୍ତେ ଯୁବକ ଉଠି ବୋଲେ ଭୀମସେନ
ଆଗ ମୋହ ସଙ୍ଗେ ସମର ତୁ କର ପଛେ ଯୁଝିବେ ଅର୍ଜୁନ । ୩୮

ଭୀମ କଥା ଶୁଣି ଉତ୍ତରିଲେ ବୀର ତୁମ୍ଭ ସଙ୍ଗେ ଦ୍ୱନ୍ଦ ଯୁଦ୍ଧ
ଏ ରଙ୍ଗ ସଭାରେ ଆରମ୍ଭ କରିଲେ ହେବ ମୋତେ ଅପବାଦ । ୩୯

ଯୁବକକୁ ଚାହିଁ କହିଲେ ଆଚାର୍ଯ୍ୟ ହେଲେହେଁ କ୍ଷତ୍ରିୟବର
ପାର୍ଥ ସଙ୍ଗେ ତୁମେ ପ୍ରତିଯୋଗିତାକୁ ଯୋଗ୍ୟ ନୁହଁ ଆହେ ବୀର । ୪୦

ଅର୍ଜୁନ ଅଟନ୍ତି ପାଣ୍ଡୁଙ୍କ ତନୟ ସୋମବଂଶୀ ରାଜପୁତ୍ର
ତୁମ୍ଭେ କେଉଁ ରାଜ ବଂଶେ ଜନ୍ମିଅଛ କିବା ତୁମ୍ଭ କୁଳଗୋତ୍ର ? ୪୧
ଆତ୍ମ ପରିଚୟ ପ୍ରଦାନ କରିବା ଅପରିହାର୍ଯ୍ୟ ଅଟଇ
କାରଣ ଅଜ୍ଞାତ କୁଳଶୀଳ ବ୍ୟକ୍ତି ସଙ୍ଗେ ରାଜପୁତ୍ର କେହି । ୪୨
ସମରେ ପ୍ରବୃତ୍ତ ହେବାର ଦୃଷ୍ଟାନ୍ତ କୁତାପି ମିଳଇ ନାହିଁ ।
ଏଣୁ ପରିଚୟ ପ୍ରୟୋଜନ ଅଟେ କହ ସେକଥା ଫିଟାଇ । ୪୩
କୃପାଚାର୍ଯ୍ୟକଥା ଶୁଣିସେ ଯୁବକ ପୁଚ୍ଛିଲେ ହେ ମହାତ୍ମନ
ଅର୍ଜୁନ ମୋ ସଙ୍ଗେ ଯୁଦ୍ଧ କରିବେ ନା ଯୁଝିବେ ଜାତି ସଙ୍ଗେଣ ? ୪୪
ଆଚାର୍ଯ୍ୟ କହିଲେ ଯୁଦ୍ଧ ଏବଂ ପ୍ରେମ ସମାନ ପରିସ୍ଥିତିରେ
ସନ୍ନମୟ ହୁଏ ବୋଲି ଜାଣିଅଛ ତେଣୁ କହ ମୁଁ ପଙ୍କ୍ତିରେ ? ୪୫
ସଂସାରେ ତୁମର ପ୍ରତିଷ୍ଠା, ଯୋଗ୍ୟତା ପୌରୁଷ, ପରାକ୍ରମ
ବିଚାର ନକରି ଆଗ କୁଳଗୋତ୍ର, ଜନକ ଜାଣିବା ଧର୍ମ । ୪୬
ସେ କାରଣୁ ଆମ୍ଭେ ଜିଜ୍ଞାସା କରୁଛୁ ତୁମ୍ଭ ବଂଶ ପରିଚୟ
ଗୋପନ ନରଖି ପ୍ରକାଶ କରହେ ଜାଣନ୍ତୁ ଦର୍ଶକ ଚୟ । ୪୭
କାହା ପୁତ୍ର ତୁମ୍ଭେ କିସ କୁଳଗୋତ୍ର କେ ପିତା କହ ତୁମ୍ଭର
କୁଳଗୋତ୍ର ଜଣା ଗଲେ ସିନା ଯୁଦ୍ଧ କରିବ ପାର୍ଥ ସଙ୍ଗର । ୪୮
କୃପାଚାର୍ଯ୍ୟକଥା ଶୁଣିସେ ଯୁବକ ନତମୁଖେ ଠିଆ ହେଲେ
ପାର୍ଥପରିତାଙ୍କ ପିତୃପରିଚୟ ନାହିଁ ମନେ ବିଚାରିଲେ । ୪୯
ସେ ଜଣେ ସାମାନ୍ୟ ସୂତର କୁମର ଅର୍ଜୁନ ରାଜକୁମର
ଏହା ଚିନ୍ତା କରି ଧୀର ନମ୍ରସ୍ୱରେ ବ୍ୟକ୍ତ କଲେ ଯୁବବୀର । ୫୦
ଅଧିରଥର ମୁଁ ତନୟ ଅଟଇ ରାଧେୟ ନାମ ମୋହର
କ୍ଷତ୍ରିବିଦ୍ୟାସାଧି କରେ କ୍ଷତ୍ରି ବୃତ୍ତି ମୋଠାରୁ କଡ଼କେ ବୀର ? ୫୧
ହେୟ ଜ୍ଞାନ କରି କହିଲେ ଆଚାର୍ଯ୍ୟ ଶୁଣ ଆହେ ସୂତ ପୁତ୍ର
ରାଜପୁତ୍ର ସଙ୍ଗେ ଦ୍ୱନ୍ଦ କରିବାକୁ ଅଯୋଗ୍ୟ ତୋ କୁଳଗୋତ୍ର । ୫୨
ଆଚାର୍ଯ୍ୟଙ୍କ କଥା ଶୁଣିଣ ରାଧେୟ ସ୍ତମ୍ଭୀଭୂତ ହୋଇଗଲେ
ଏହି ସମୟରେ ଦୁର୍ଯ୍ୟୋଧନ ଦୃଢ଼େ ପ୍ରତିବାଦ କରି ବୋଲେ । ୫୩
ସର୍ବ ମୁଖ ଚାହିଁ ବେଳେ ଦୁର୍ଯ୍ୟୋଧନ ଆମ୍ଭର ବଚନ ଶୁଣ
ଶାସ୍ତ୍ରେ ଲେଖାଅଛି ଯେଉଁ ବୀରଅଟେ ଅସ୍ତ୍ର ଚାଳନେ ନିପୁଣ । ୫୪

ସେହି ବୀର ସଙ୍ଗେ ଅସ୍ତ୍ର ତୁଳନାରେ ବାଛ ବିଚାର ତ ନାହିଁ
ଯଦ୍ୟପି ବାରଣ ଅଛି କହୁଅଛ ଶୁଣ ଆହେ ବିପ୍ର ସାଇଁ । ୫୫
ରାଜପୁତ୍ର ବ୍ୟତିରେକେ ଅନ୍ୟ ସଙ୍ଗେ ଯୁଦ୍ଧ ନ ଲଢ଼ିବେ ପାର୍ଥ
ଅଧିରଥ ପୁତ୍ର ରାଧେୟଙ୍କୁ ଅଙ୍ଗ ବିଜେ୍ୟ କଲି ନରନାଥ । ୫୬
ଏହା କହି ନିଜ ବାମହାତ ବୁଢା ଆଙ୍ଗୁଳି କର୍ତ୍ତନ କରି
ସେ ରକ୍ତେ ତିଳକ ଲଗାଇ ଲଲାଟେ ବ୍ୟକ୍ତ କଲେ ଦୃଢ଼ କରି । ୫୭
ଆହେ ସୂତ ପୁତ୍ର ତୁମ ଧମନୀରେ ବହୁଥାଇ ଯେଉଁ ରକ୍ତ
ମାତ୍ର ଏ ତୁମ୍ଭର ଲଲାଟ ପଟ୍ଟରେ ଷର୍ଶି ଯୁ ରକ୍ତ ଶୋଭିତ । ୫୮
ଆଜି ଠାରୁ ତୁମ୍ଭେ ନୃପତି ହୋଇଲ କରୁଛି ତୁମ୍ଭଙ୍କୁ ମାନ୍ୟ ”
କରତାଳି ଦେଇ ଦୁର୍ଯ୍ୟୋଧନ କଥା ଲୋକେ କଲେ ସମର୍ଥନ । ୫୯
ଯୋଗ୍ୟତାକୁ ଦେଖି ସମ୍ମାନ କରିବା ବିବେଚିତ ରାଜଧର୍ମ
ତାହାହିଁ କରିଲେ ଶ୍ରୀମାନ ଗୋବିନ୍ଦ କରି ଅଙ୍ଗ ନରବ୍ରଣ । ୬୦
କୃତଜ୍ଞତା ସହ ଉତ୍ତରିଲେ କର୍ଣ୍ଣ ଧନ୍ୟ ହେ ରାଜ କୁମାର
ରାଜପଦ ଦେଇ ମୋତେ ଯେ ସମ୍ମାନ କଲ ଏ ରାଜ ସଭାର । ୬୧
ପ୍ରତିବଦଳରେ କେଉଁ କାର୍ଯ୍ୟ କରି କରିବି ପ୍ରୀତି ବର୍ଦ୍ଧନ
ଦୁର୍ଯ୍ୟୋଧନ ବୋଲେ କେବଳ ମିତ୍ରତା ଲଭି କଲେ ହେବି ଧନ୍ୟ ” ୬୨
“ ତାହା ହେଉ ” ବୋଲି ଉତ୍ତରିଲେ କର୍ଣ୍ଣ ପରସ୍ପରେ ଆଲିଙ୍ଗନ
ବୀରପୂଜା କରି ବୀର ଦୁର୍ଯ୍ୟୋଧନ ନିଜକୁ କରିଲେ ଧନ୍ୟ । ୬୩
ଅତ୍ୟନ୍ତ କୃତଜ୍ଞ ହୋଇ ଅଙ୍ଗରାଜ କହିଲେ ହେ ଦୁର୍ଯ୍ୟୋଧନ
ସୁଯୋଗ ଆସିଲେ ପ୍ରତି ଉପକାର କରି ସୁଝାଇବି ଋଣ । ୬୪
ବିନମ୍ର କଣ୍ଠରେ ବୋଲେ ଦୁର୍ଯ୍ୟୋଧନ ଏହା ନ କହ ରାଜନ
ଶୌର୍ଯ୍ୟ ବୀର୍ଯ୍ୟବାନ ବ୍ୟକ୍ତିକୁ ସମ୍ମାନ କରିବା ରାଜାର ଧର୍ମ । ୬୫
କର୍ତ୍ତବ୍ୟ ପାଳନ କରିଅଛି ମୁହିଁ ନୁହେଁ ନା ପ୍ରତ୍ୟୁପକାର
ସ୍ୱୀକୃତ ଦାୟିତ୍ୱ ଅଟେ ନୃପତିର ଏହାହିଁ ଆମ୍ଭ ବିଚାର ” ୬୬
କର୍ଣ୍ଣଙ୍କ ପୌରୁଷ ଦେଖି ଦୁର୍ଯ୍ୟୋଧନ ବହୁତ ପ୍ରଶଂସା କଲେ
ଅପ୍ରତିଦ୍ୱନ୍ଦୀର ପ୍ରତିଦ୍ୱନ୍ଦୀ ପାଇ ପରମ ପ୍ରୀତ ହୋଇଲେ । ୬୭

ଏହି ସମୟରେ ବୈଧାନିକ ପ୍ରଶ୍ନ ଉଠାଇଲେ ବିପ୍ରବର
ଜଣେ ସାଧାରଣ ବ୍ୟକ୍ତିକୁ ନୃପତି କରିବାର ଅଧିକାର । ୬୮

ମହାରାଜା ଥାଉଁ ପୂର୍ବରାଜଙ୍କର ଅଛି କି ବିଚାର କର
ଏହା ଶୁଣି ଧୃତ-ରାଷ୍ଟ୍ର ବ୍ୟକ୍ତ କଲେ " ଏଥିରେ ସମ୍ମତି ମୋର " ୬୯
ରାଜାଙ୍କ ଘୋଷଣା ଶୁଣି ସଭାଜନେ ସାଧୁ ସାଧୁ ଧ୍ୱନି କଲେ
ହର୍ଷ ଓ ବିଷାଦ ପ୍ରସନ୍ନତା, ଘୃଣା ଏକାଧାରେ ବ୍ୟକ୍ତ କଲେ । ୭୦
ଦୁଇଭାଗ ହୋଇ ଗଲେ ସଭା ଲୋକେ କରି ପକ୍ଷ ସମର୍ଥନ
ମତାନୈକ୍ୟ ଅଟେ ମନୁଷ୍ୟ ଚରିତ୍ର ବିଚିତ୍ର ସୃଷ୍ଟି ଘଟଣ । ୭୧
ସଭାରେ ଦର୍ଶକେ ମଜା ଦେଖିବାକୁ ଦୁଇ ଭାଗରେ ବିଭକ୍ତ
କେବୋଲେ ରାଧେୟ ପାର୍ଥଠାରୁ ଶ୍ରେଷ୍ଠ କେ ବୋଲନ୍ତି ଶ୍ରେଷ୍ଠ ପାର୍ଥ ।୭୨
ଏପରି ସମୟେ ବୃଦ୍ଧ ଅଧିରଥ ସଭାରେ କଲେ ପ୍ରବେଶ
ଅଙ୍ଗ ରାଜା ହୋଇ ଥିବାରୁ ରାଧେୟ ସସ୍ନେହେ କଲେ ଅଶିଷ । ୭୩
ଅଧିରଥ ପାଦ ଧୂଳି ନେଇ କର୍ଣ୍ଣ ମଥାରେ କଲେ ଲେପନ
ପୁତ୍ରେ ଆଲିଙ୍ଗନ କରି ଅଧିରଥ କଲେ ସ୍ନେହାଶ୍ରୁ ବର୍ଷଣ । ୭୪
ଏହା ଦେଖି ଭୀମ ପରିହାସ କରି କହିଲେ ହେ ସୂତପୁତ୍ର
ଅଶ୍ୱ ରଶ୍ମି ଧରି ପୈତୃକ କାର୍ଯ୍ୟରେ ନିବେଶ କର ତୋ ଚିତ୍ତ । ୭୫
ଯଜ୍ଞ ଘୃତ ପାନ କରିବାକୁ ଶ୍ୱାନ ଯେପରି ଯୋଗ୍ୟ ନୁହଇଁ
ଅଙ୍ଗରାଜପଦ ଲଭି କଲେ ମଧ୍ୟ ରାଜ ପୁତ୍ର ନୋହୁ ତୁହି । ୭୬
ତେଣୁ ତୁ ପ୍ରଖ୍ୟାତ ସୋମ ବଂଶୀ ବୀର ଅର୍ଜୁନ ସହିତ ରଣ
କରିବାକୁ ଯୋଗ୍ୟ ବିବେଚିତ ନୋହୁ ସୁତ କୁଳେ ତୋର ଜନ୍ମ । ୭୭
ପ୍ରତିବାଦ କରି କହେ ଦୁର୍ଯ୍ୟୋଧନ ଅନ୍ୟାୟ କହୁଛୁ ଭୀମ
ରାଧେୟଙ୍କ ପ୍ରତି କଟୂକ୍ତି ପ୍ରୟୋଗ ନୁହେଁ ଭଦ୍ରୋଚିତ କର୍ମ । ୭୮
କ୍ଷତ୍ରିୟର ଜନ୍ମ ବଂଶ ବିବରଣୀ ସମ୍ପର୍କେ ବିଶେଷାଗ୍ରହୀ
ହେବା ପ୍ରୟୋଜନ ନାହିଁ 'ବଳ' କ୍ଷତ୍ରି ପରିଚୟ ଦେଇଥାଇ । ୭୯
ଜାଣି ରଖ ମୃଗୀ ଗର୍ଭୁ ବ୍ୟାଘ୍ର ଜନ୍ମ ଯେଉଁ ପରି ଅସମ୍ଭବ
ସେପରି ସାମାନ୍ୟ ଜନନୀ ଗର୍ଭରୁ ଏ ବୀର ନୁହେଁ ସମ୍ଭବ । ୮୦
କବଚ, କୁଣ୍ଡଳ, ଛଉଣି ଧାରଣ କରି ସୁଲକ୍ଷଣ ଯୁକ୍ତ
ତପନ ସମାନ ତେଜସ୍ୱୀ ଅଟଇ ମହାନ ଯୁବ ବ୍ୟକ୍ତିତ୍ୱ । ୮୧
ନଗଣ୍ୟ ବ୍ୟକ୍ତିର ଔରସରୁ ଜନ୍ମ ହୋଇଥିବା ଅଟେ ମିଛ
ତାଙ୍କ ପରାକ୍ରମ ସୌର୍ଯ୍ୟ ତୁଳନାରେ ଅଙ୍ଗ ରାଜପଦ ତୁଚ୍ଛ । ୮୨

ଯୋଗ୍ୟ ବ୍ୟକ୍ତିଙ୍କର ସମ୍ମାନ କରିବା କ୍ଷତ୍ରିୟର ରାଜଧର୍ମ
ତାହାହିଁ ହୋଇଛି ଏ ରଙ୍ଗ ସଭାରେ ଗୁଣଙ୍କର ସନମାନ । ୮୩
ଏହି ବୀର ନିଜ ବାହୁର ବଳରେ ପୃଥ୍ୱୀ ଜିଣିବାକୁ କ୍ଷମ
ତାହାଙ୍କ ବୀରତ୍ୱ ତୁଳନାରେ ଅଙ୍ଗ ରାଜପଦ ତ ନଗଣ୍ୟ । ୮୪
ସେ ରଙ୍ଗ ସଭାରେ ବସିଥିଲେ କୁନ୍ତୀ ନେତ୍ରେ ଦେଖି ପୁତ୍ର କର୍ଣ୍ଣ
ବେହୋସ ହୋଇଣ ପଡ଼ିଲେ ଭୂମିରେ କେହି ନ ଜାଣିଲେ ମର୍ମ । ୮୫
ଦେବର ବିଦୁର ମୁଖେ ଛିଟି ନୀର କରାଇଲେ ଶାନ୍ତ ଚିତ୍ତ
ସଜ୍ଞା ଫେରି ପାଇ ଜାଣିଲେ ଜନନୀ ହସ୍ତିନାରେ ଅଛି ପୁତ୍ର । ୮୬
ସୂର୍ଯ୍ୟାସ୍ତ ହେବାରୁ ସେଦିନର ଦ୍ୱନ୍ଦ ସମର ହେଲା ସ୍ଥଗିତ
ତିକ୍ତତା ବଢ଼ିବ ବିଚାରି ବାରଣ କଲେ ରାଜା ଧୃତରାଷ୍ଟ୍ର । ୮୭
ଅନ୍ତର ମଧ୍ୟରେ ଭାବିଲେ ରାଧେୟ ଘଟଣା ଚକ୍ରରେ ମୁହିଁ
ରାଜା ସିନା ହେଲି ପ୍ରତିଯୋଗିତାର ସୁଯୋଗ ପାଇଲି ନାହିଁ । ୮୮
କୌଣସି ବ୍ୟକ୍ତିକୁ ଅବଶ୍ୟ ନୃପତି କରି ଦିଆଯାଇ ପାରେ
କିନ୍ତୁ ସୂତପୁତ୍ର ରାଜପୁତ୍ର ହେବା ସୃଷ୍ଟି ନିୟମ ବାହାରେ । ୮୯
ରାଧେୟଙ୍କ ହାତ ଧରି ନିଜ ପାଖେ ବସାଇଲେ ଦୁର୍ଯ୍ୟୋଧନ
ଅନ୍ତରଙ୍ଗ ମିତ୍ର ଜ୍ଞାନ କରି ତାଙ୍କୁ ଦେଲେ ଅଧିକ ସମ୍ମାନ । ୯୦
ରାଜପୁତ୍ରଙ୍କର ଅସ୍ତ୍ର ବିଦ୍ୟା ଶିକ୍ଷା ଦେଖି ତୋଷ ରାମକୃଷ୍ଣ
ମାତ୍ର ଗଦା ବିଦ୍ୟା ପ୍ରଦର୍ଶନେ କେହି ଜଣେ। ନ ଗଲେ ଉତ୍ତମ । ୯୧
ଏହା କହି ଗଦା ଗୃଜନା ସଭାରେ ପ୍ରଦର୍ଶନ କଲେ ରାମ
ଦେଖି ବୀରମାନେ ସ୍ତବ୍‌ଧ ହୋଇଗଲେ ମୁଗ୍‌ଧ ହେଲେ ଦୁର୍ଯ୍ୟୋଧନ ।୯୨
ଧାଇଁ ଯାଇ ରାମ ଚରଣେ ପଡ଼ିଣ ବୋଲୁଛନ୍ତି ଦୁର୍ଯ୍ୟୋଧନ
ଗଦା ବିଦ୍ୟା ମୋତେ ଶିକ୍ଷା ଦିଅ ପ୍ରଭୁ କରୁଛି ଗୁରୁ ବରଣ । ୯୩
କୌରବ ପାଣ୍ଡବ ମଧ୍ୟେ ଦ୍ରୋଣ ଗୁରୁ କରି ପାତର ଅନ୍ତର
ଭଲ କରି ବିଦ୍ୟା ଶିକ୍ଷା ନ ଦିଅନ୍ତି ତୁମ୍ଭେ ହେଲ ଗୁରୁ ମୋର । ୯୪
ଦୁର୍ଯ୍ୟୋଧନ ମନ କଥା ଜାଣି ରାମ ଗଦା ବିଦ୍ୟା ଶିକ୍ଷା ଦେଲେ
ଗଣ୍ଡି, ମୁଷ୍ଟି, ଆକର୍ଷଣ ସଂହରଣ, ଭେଦମାନ ବତାଇଲେ । ୯୫
ଭୀମଙ୍କୁ ଡ଼ାକାଇ କହିଲେ ଶ୍ରୀକୃଷ୍ଣ ତୁମ୍ଭେ ଯା ପଶ ଶରଣ
ରାମ୍ ଠାରୁ ଗଦା ବିଦ୍ୟା ଶିକ୍ଷା କରି ଯୁଦ୍ଧେ ଜିଣ ଦୁର୍ଯ୍ୟୋଧନ । ୯୬

ଭୀମ ବୋଲୁଛନ୍ତି ନୁହେଁ ମୁଁ ଦୁର୍ବଳ ଦ୍ରୋଣ ଗୁରୁ ଗୃହେ ମୁହିଁ
ଗୃହେ ଖାଇ ପାଠ ପଢ଼ି ଅଛି ମୁହିଁ ଆନ ଗୁରୁ ଲୋଡ଼ା ନାହିଁ । ୯୭
ଯେଉଁ ବିଦ୍ୟା ଶିକ୍ଷା ଦେଇଛନ୍ତି ଗୁରୁ ଜିଣିବ କୋଟିଏ ରାମ
ପର୍ଶୁରାମ ବିଦ୍ୟା ସାଧନ କରିଛି ମୋ ନାମ ଅଟଇ ଭୀମ । ୯୮
ପର୍ଶୁରାମ ବିଦ୍ୟା ଠାରୁ ବଳରାମ ବିଦ୍ୟାକୁ ନ ମଣେ ଉଚ୍ଚ
ପୃଥିବୀ ନିକ୍ଷତ୍ରି କରିବା ଶକତି ଶରୀର ମଧ୍ୟେ ସୁସଞ୍ଚ । ୯୯
ଏକ ଗୁରୁ ଠାରେ ଏକାନ୍ତ ବିଶ୍ୱାସ ଗୁରୁ କୃପା ବଳବାନ
ଦ୍ରୋଣ ଗୁରୁ ବିନା ମୋ ହୃଦ କନ୍ଦରେ ଅନ୍ୟ ପାଇଁ ନାହିଁ ସ୍ଥାନ । ୧୦୦
ଗୁରୁ କୃପା ବଳେ ଦିବ୍ୟ ଶକ୍ତି ମିଳେ ଗୁରୁ କୃପାହିଁ କେବଳ
ସଂସାର ସାଗର ତରିବାକୁ ପୋତ ଗୁରୁଙ୍କ ପାଦ କମଳ । ୧୦୧
ଗୁରୁଙ୍କ ଉପରେ ପାଣ୍ଡୁ ପୁତ୍ରଙ୍କର ରହିଛି ପୂର୍ଣ୍ଣ ବିଶ୍ୱାସ
ଗୁରୁ ନିନ୍ଦା କରି ଦୁଷ୍ଟ କଉରବେ ସମୂଳେ ହେବେ ବିନାଶ । ୧୦୨
ପର୍ଶୁରାମ ବିଦ୍ୟା ସାଧନେ କୌରବେ ବିଫଳ ମନା ହେବାରୁ
ବୃତଗଳ୍ପ ପ୍ରାଣୀ ପ୍ରାପ୍ତ ଭସ୍ମ ପାଇ ଧରୁଛନ୍ତି ତୃଣ ତରୁ । ୧୦୩
ଗୁରୁ ଅପବାଦ କରେ ଯେଉଁ ଶିଷ୍ୟ ଅବଶ୍ୟ ପଡ଼େ ପ୍ରମାଦ
ପରମ ଦୟାଳୁ ଅଟନ୍ତି ମୋ ଗୁରୁ ତ୍ରାଣକର୍ତ୍ତା ଶରଣଦ । ୧୦୪
ଦ୍ରୋଣ ଗୁରୁ ତେଜି ଆନ ଗୁରୁ ଭଜି ନ ପାରିବ ଭୀମସେନ
ଗୁରୁ କୃପା ବଳେ ଶତ ବଳରାମ ଜିଣିବାକୁ ଅଟେ କ୍ଷମ । ୧୦୫
ଭୀମର ମୁଖରୁ ନିନ୍ଦା କଥା ଶୁଣି ଲଜ୍ଜିତ ହୋଇଲେ ରାମ
ସେହି ଦିନ ଠାରୁ ଘୃଣା ନୟନରେ ଭୀମକୁ ଦେଖିଲେ ରାମ । ୧୦୬
ସେତିକ କଥାରୁ ପାଣ୍ଡୁଙ୍କ ସଙ୍ଗେ ବଳରାମଙ୍କ ଅପ୍ରିତି
ଶିଷ୍ୟ ଦୁର୍ଯ୍ୟୋଧନ ଠାରେ ରାମଙ୍କର ରହିଲା ଅଭେଦ ପ୍ରୀତି । ୧୦୭
କୌରବ ପକ୍ଷ ହେଲେ ବଳରାମ ପାଣ୍ଡବ ପକ୍ଷେ ଶ୍ରୀକୃଷ୍ଣ
ଆଦର୍ଶ ଦୃଷ୍ଟିରୁ ଦୁଇ ଭାଇ କଲେ ଦୁଇ ପକ୍ଷ ସମର୍ଥନ । ୧୦୮
ପାଣ୍ଡବ କୌରବ ମଧ୍ୟରେ ବିଭେଦ ନଦୀ ହୋଇଲା ପ୍ରବାହିତ
କୌରବଙ୍କ ଠାରୁ ଦୂରେଇ ରହିଲେ ପାଣ୍ଡୁଙ୍କର ପାଞ୍ଚପୁତ୍ର । ୧୦୯
ରଙ୍ଗସଭା ସ୍ଥଳେ ଅପମାନ ପାଇ ପାର୍ଥ ବିରୋଧ ବଢ଼ିଯାଏ
କୌରବ ସପକ୍ଷେ ରହିବା ସୁଯୋଗ ପାଇଣ ଭାଗ୍ୟ ଉଦୟ । ୧୧୦

ବସୁସରେ କର୍ଣ୍ଣ ସଭଙ୍କଠୁ ବଡ ବଳ ବୀର୍ଯ୍ୟରେ ଗରିଷ୍ଠ
ଅହଂକାରୀ ପଣେ ତା ସଙ୍ଗେ ସମାନ ଅଭିମାନୀ ଅଛିସୂତ । ୧୧୧
ଅଭିମାନୀ ସଙ୍ଗେ ଅହଂକାରୀ ମିଶି ଗଢିଲେ ସ୍ୱତନ୍ତ୍ର ଗୋଷ୍ଠି
କ୍ରୋଧୀ ବଳରାମ ଦୁର୍ବିଦ୍ଧି କୌରବ ମଧ୍ୟରେ ବଢିଲା ପ୍ରୀତି । ୧୧୨
ଅଧର୍ମର ଶକ୍ତି ଅଧିକ ହୋଇଲା ଧର୍ମଶକ୍ତି ସଙ୍କୁଚିତ
ଧର୍ମଙ୍କ ପକ୍ଷରେ ରହିଲେ ଶ୍ରୀକୃଷ୍ଣ ଅରକ୍ଷ ରକ୍ଷକ ସେତ । ୧୧୩
ରଙ୍ଗସଭା ସ୍ଥଳେ ପ୍ରକାଶ୍ୟେ ବିଭକ୍ତ ହୋଇଗଲେ ବେନି ପକ୍ଷ
ଘୂଚେ ସମର୍ଥନ କଲେ ଧୃତରାଷ୍ଟ୍ର ପୁତ୍ରୁ ହେଲେ ଅରକ୍ଷ । ୧୧୪
ଏକଶ ପନ୍ଦର ପଦରେ ଅଧ୍ୟାୟ ଏଠାରେ ହୋଇଲା ଶେଷ
ଗୁରୁ ଅଭିରାମ କୃପାରୁ ଭଣିଲା ମୂଢ ମତି ବୁଲୁ ଦାସ । ୧୧୫

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରାଦ୍ୱାରକାଲୀଳା ଖଣ୍ଡେ ରଙ୍ଗ ସଭା ବର୍ଣ୍ଣନେ ତୃତୀୟ ଅଧ୍ୟାୟ ସମାପ୍ତଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

ବୋଲି —

ବାଇ ମନରେ
ଅଦେଖା ହରିଙ୍କୁ ଦେଖ
ଭକ୍ତ ମନବାଞ୍ଛା ପୂର୍ଣ୍ଣ କରିବାକୁ
ଧରିଛନ୍ତି ରୂପ ରେଖ ॥ ଘୋଷା ॥

ଏକଦା ନାନକ ମିଳିଲେ ଶ୍ରୀକ୍ଷେତ୍ରେ
ହରିଙ୍କ ଦର୍ଶନ ପାଇଁ
ଖାଲଟା ପିନ୍ଧିଣ ଥିବାରୁ ପଣ୍ଡାଏ
ଦ୍ୱାରୁ ଦେଲେ ବାହୁଡ଼ାଇ । ୧

ପଣ୍ଡାଏ ବାରଣ କରନ୍ତେ ନାନକ
କହିଲେ ହେ ନାରାୟଣ
ମୋ କର କମଳେ ଦୃଶ୍ୟମାନ ହୋଇ
ରଖନ୍ତୁ ଭକ୍ତର ଟାଣ । ୨

ଭକ୍ତ ଇଚ୍ଛା ପୂର୍ଣ୍ଣ କରିବା ନିମନ୍ତେ
ନାନକ କର କମଳେ
ସ୍ୱରୂପ ଧରିଣ ଦେଖା ଦେଲେ ପ୍ରଭୁ
ପଣ୍ଡାଏ ଦେଖିଲେ ଡୋଳେ । ୩
ଏ ଅଦ୍ଭୁତ ଦୃଶ୍ୟ ଦେଖିଣ ସେବକେ
ଜାଣିଲେ ପରମ ଭକ୍ତ
କର ପ୍ରସାରଣ ଆହ୍ୱାନ କରନ୍ତେ
ବୋଲୁଛନ୍ତି ଦେବଦୂତ । ୪
ଭିତର ଦେବତା ବାହାରେ ପ୍ରକଟ
କି କାର୍ଯ୍ୟ ଅଛି ଭିତରେ
ଦେଉଳ ଦୁଆରୁ ଦଣ୍ଡ ଦିଗେ ଗଡି
କରି ଗଲେ ଭକ୍ତ ବରେ । ୫
ଭକ୍ତଙ୍କ ପଛରେ ଚଳେ ଜନ ସ୍ରୋତ
କି ଦେବା ତହିଁ କି ଲକ୍ଷ
ସାଗର ସୈକତେ ବସି ପଦ୍ମାସନେ
ଧ୍ୟାନ କଲେ ପଦ୍ମମୁଖ । ୬

# ଚତୁର୍ଥ ଅଧ୍ୟାୟ
## ହଂସ ଡିମ୍ବ ବଧ

ରାଗ - ରାମକେରୀ

ଶ୍ରୀକୃଷ୍ଣ ଚରିତ ମାନସ ଜନେ କର ଶ୍ରବଣ
ମଥୁରା ନଗର ପାଳିଲେ ଧର୍ମରେ ଉଗ୍ରସେନ । ୧
ହଂସ ଡ଼ିମ୍ଭ ନାମେ କଂସର ଦୁଇଗୋଟି ନନ୍ଦନ
ଜରାସନ୍ଧ ନାତି ସେମାନେ ଦୁଷ୍ଟ ଗଣରେ ଗଣ୍ୟ । ୨
ହେତ ପ୍ରହେତ ଅଟନ୍ତି ଦୁଇ ପୁତ୍ର ଜନମି
ଅବନୀ ଜିଣିବା ଶକତି ବହି ଅଛନ୍ତି ବେନି । ୩
କେଶୀର ନନ୍ଦନ ଉତଙ୍ଗ ଅଂଶୁମାଳୀ ଏ ଦୁଇ
ଶକଟାସୁରର ତନୟ ବେଲବାଳ ଅଟଇ । ୪
କାଞ୍ଚନ, କାଳନ୍ଦ, ସୌମିତ୍ର ନାଗମୋହ ଏ ଚାରି
ଷଣ୍ଢାସୁର ସୁତ ଏମାନେ ଦେବଗଣ ବଇରୀ । ୫
ପ୍ରତାପ, ଦବାନଳ ଦୁଇ ପୁତନାର ତନୟ
ଅର୍ଘାସୁର ଦୁଇ ନନ୍ଦନ ନାମ ଜୟ ବିଜୟ । ୬
ଦୁର୍ଗମ, ଜଗଜ୍ଜେଠି ଦୁଇ ଚାଣୂର ଦୈତ୍ୟ କୁମର
ମୁଷ୍ଟିକ ଦୈତ୍ୟର ନନ୍ଦନ ଦର୍ପିଷ୍ଟ, ମହୋଦର । ୭
ଏମାନଙ୍କୁ ସଙ୍ଗେ ଧରିଣ କଂସାସୁର କୁମରେ
ଅନୀତି କରନ୍ତି ନିର୍ଭୟେ ବୁଲି ମଥୁରା ପୁରେ । ୮
ପିତା ଗୁଣ ଘେନି କୁମରେ ହୋଇ ଅଛନ୍ତି ଜାତ
ଉଗ୍ରସେନ ବୃଦ୍ଧ ନୃପର ସଦା ଅଣ ଆୟତ୍ତ । ୯
କୃଷ୍ଣ ବଳରାମ ନିଧନ ଚିନ୍ତା କରୁ ଥାଆନ୍ତି
ଉଗ୍ରସେନ ହତ୍ୟା ନିମନ୍ତେ ଷଡଯନ୍ତ୍ର କରନ୍ତି । ୧୦
କହି ବୁଲନ୍ତି ଉଗ୍ରସେନ ହୋଇ ଅଛି ଅଜ୍ଞାନ
ପୁତ୍ରର ଶତ୍ରୁର ପାଦରେ ପଶିଅଛି ଶରଣ । ୧୧
ଚାଲି ଉଗ୍ରସେନ ବନାଶି ବଳେ ରାଜ୍ୟ ଘେନିବା
ରାମକୃଷ୍ଣ ଦୁଇ ଭାଇଙ୍କି ପ୍ରାଣେ ବଧ କରିବା । ୧୨

ଆମ୍ଭର ପିତାଙ୍କ ଅର୍ଜିତ ମଧୁପୁର ସମୃଦ୍ଧ
ବଳେ ଘେନି ଯିବା ଚାହିଁଲ ହୋ ଉଗ୍ରସେନଙ୍କୁ ବଧି ।୧୩
ଆମ୍ଭେ ତା ତନୟ ତନୟ ରାଜ୍ୟରେ ଯୁବରାଜ
ଆମ୍ଭଙ୍କୁ ନୃପତି ନ କରି ବୃଦ୍ଧ କରୁଛି ରାଜ୍ୟ । ୧୪
ଝିଅର ପୁଅଙ୍କୁ ଅଧିକ ଦେଉଅଛି ସମ୍ମାନ
ପୁଅର ପୁଅଙ୍କୁ ଆଦର କରୁ ନାହିଁ ରାଜନ । ୧୫
ଆମ୍ଭଙ୍କୁ ଉପେକ୍ଷି ଆମ୍ଭର ଶତ୍ରୁ ସେବା କରଇ
ଏହେତୁ ଦୋଷୀ ସେ ଅଟଇ ପ୍ରାଣଦଣ୍ଡ ଯୋଗାଇ ।୧୪
ଆପଣା ମରଣ ଆପଣେ କରୁଅଛି ବରଣ
ତାହାକୁ ମାରିଲେ ହୋଇବା ଆମ୍ଭେ କଣ କାଂକୂନ୍ୟ ।୧୭
ପିତା ବୈରୀ, ମାତା ବଇରୀ, ପତ୍ନୀ ବଇରୀ ତିନି
ଏମାନଙ୍କୁ ବଧ କରିଲେ ଧର୍ମ ନ ହୁଏ ହାନି । ୧୮
ଆମ୍ଭର ପିତାଙ୍କୁ ନିଧନ କରିଛନ୍ତି ସେମାନେ
ସେମାନଙ୍କୁ ବଧ କରିବା ନୀତି ଶାସ୍ତ୍ରରେ ଭଣେ । ୧୯
ଦେଖି ଦିନୁ ଦିନ ତାଙ୍କର ବଢୁ ଅଛି ସାହାସ
ସେମାନେ ଆମ୍ଭଙ୍କୁ ନିଶ୍ଚୟ ଦିନେ କରିବେ ନାଶ । ୨୦
ଷୋଳ ଜଣ ସଭା କରନ୍ତି ବସି ରହି ନିର୍ଜନେ
ବିଚାରନ୍ତି ରାମକୃଷ୍ଣଙ୍କୁ ବିନାଶିବେ କେସନେ ? ୨୧
ସର୍ବ ଅନ୍ତର୍ଯ୍ୟାମୀ ଶ୍ରୀକୃଷ୍ଣ ଜାଣି ଦୁଷ୍ଟଙ୍କ ମନ
ଚକ୍ରକୂଟ ମାୟା ରଚନ କଲେ ଶ୍ରୀ ନାରାୟଣ । ୨୨
ଚନ୍ଦନ ଯାତରା ଉତ୍ସବ କରାଇଲେ ଭିଆଣ
ବଇଶାଖ ଶୁକ୍ଳ ତୃତୀୟା ଗୁରୁବାର ସେଦିନ । ୨୩
ଯମୁନା ନଦୀରେ ଥୋଇଲେ ନେଇ ନୂତନ ନାବ
ଉତ୍ସବ ପାଳନ କରିଲେ ନାମ ଚନ୍ଦନୋତ୍ସବ । ୨୪
ଜଳେ ନାବ କେଳି ସୁଯୋଗ ପାଇ ଦୈତ୍ୟ ନନ୍ଦନ
ବିଚାରିଲେ ଜଳେ ନାବକୁ କରାଇବେ ନିମଗ୍ନ । ୨୫
ବୁଡାଇ ମାରିବେ ଜଳରେ ରାମକୃଷ୍ଣ ଦି ଭାଇ
ବସିଲେ ଗୋଟିଏ ନାବରେ ଦୁଷ୍ଟେ ଏକଜ ହୋଇ ।୨୬

ରାମକୃଷ୍ଣ ସଙ୍ଗେ ବସିଲେ ସୂନାସର ନନ୍ଦନ
ରାଜା ଉଗ୍ରସେନ ସେନାବେ କରିଲେ ଆରୋହଣ । ୨୭
ଜଳରେ ଭାସିଲା ତରଣୀ ଧୀର ମନ୍ଥର ଗତି
ଗମ୍ଭୀର ଜଳରେ ମିଳନ୍ତେ ଦୁଷ୍ଟେ ବସିଲେ ଚକ୍ର । ୨୮
ଚକ୍ରକୂଟ ମାୟା ରଚନ କଲେ ଶ୍ରୀ ନାରାୟଣ
ପବନଙ୍କୁ ଡ଼ାକି କହିଲେ ଯେନ ଆମ୍ଭ ବଚନ । ୨୯
ଅଷ୍ଟମଲ୍ଲ ସୁତ ସହିତ କଂସାସୁର ନନ୍ଦନ
ତାହାଙ୍କ ନାବକୁ ବୁଡ଼ାଇ କର ଜଳେ ନିମଗ୍ନ । ୩୦
ଆଦେଶ ପାଇଣ ପବନ ବନ୍ୟାକାରେ ବହିଲା
ଗଭୀରେ ଜଳରେ ନାବକୁ ନେଇ ବୁଡ଼ାଇ ଦେଲା ।୩୧
ସମୂଳେ ବିନାଶ ହୋଇଲା କଂସାସୁରର ବଂଶ
ଦେବତା ହୋଇଲେ ଆଶ୍ୱସ୍ତ ବସୁମତୀ ଉଶ୍ୱାସ । ୩୨
କଂସ ପତ୍ନୀ ବାର୍ତ୍ତା ପାଇଣ ମୂର୍ଚ୍ଛାଗତ ହୋଇଲେ
ଇନ୍ଦୁମତୀ ଦେବୀ ଶୁଣିଣ ଦୁଃଖେ କ୍ରନ୍ଦନ କଲେ । ୩୩
ରାମକୃଷ୍ଣ ନାମରେ ହେଲା ଅପବାଦ ରଚନ
ଇନ୍ଦୁମତୀ ରାଣୀ କହିଲେ ବାକ୍ୟ କରି କଠିନ । ୩୪
" ମୋହର ଆଗରେ ମୋ ବଂଶ କୃଷ୍ଣ କଲୁ ବିନାଶ
ପାଞ୍ଚ ପୁତ୍ର ସଙ୍ଗେ ନାତିଏ କୂଟେ କରିଲୁ ଧ୍ୱଂସ ।୩୫
ପୁତ୍ର ନାତି ହରା ହୋଇ ମୁଁ ମନ ଦୁଃଖେ ଅବଶ
ତୋହର ସମ୍ମୁଖେ ତୋ ବଂଶ ହେବ ସମୂଳେ ଧ୍ୱଂସ ।୩୬
ତେବେ ସିନା ତୁହି ବୁଝିବୁ ବଂଶ ନାଶର ଦୁଃଖ
ଇନ୍ଦୁମତୀ ସାପ ଦେଇଣ ହୋଇଗଲେ ବିମୁଖ । ୩୭
ପୁତ୍ର ଅଭିଶାପ ପାଇବା ଜାଣି ଦେବକୀ ମାତ
କ୍ରୋଧରେ କହିଲେ ମାତାଙ୍କୁ ଧିକ୍ ଧିକ୍ ତୁ ମାତ । ୩୮
ଗର୍ଭରୁ ଜନମ କରିଲୁ କୁଳ ବୁଡ଼ା ନନ୍ଦନ
ଭଉଣୀ ଭିଣେଇ ରଖିଲା କାରାଗାରେ ନେଇକି । ୩୯
ଗୋଟି ଗୋଟି କରି ମାରିଲା ଛଅ ଗୋଟି ନନ୍ଦନ
ସେତେବେଳେ ମାତା ହୋଇତୁ ରହିଥିଲୁ ମଉନ । ୪୦

ତୋ ଦୁଷ୍ଟ ପୁତ୍ରକୁ ବାରେକ କଲୁ ନାହିଁ ଆକଟ
ଶିଶୁ ହତ୍ୟା ଦୋଷେ ପଡ଼ଲା ତୋହ ବଂଶେ ସଙ୍କଟ ।୪୧
ଆପଣା ଅର୍ଜିତ ପାପରୁ ବଂଶ ହେଲା ବିନାଶ
ମିଛରେ ଦେଉଛ କାହିଁକି ମୋର ପୁତ୍ରର ଦୋଷ । ୪୨
ଭାଇଙ୍କ ତନୟ ହୋଇଲେ ମୋ ପୁତ୍ରଙ୍କର ବୈରୀ
ଭାଇ ହୋଇ ଭାଇଠାରେ ବଇରତା ଆଚରି । ୪୩
ରାମକୃଷ୍ଣ ବେନି ସୋଦର ମାରିବାକୁ ଚାହିଁଲେ
ଆପଣା ଅର୍ଜିତ ପାପରୁ ଦୁଷ୍ଟେ ବିନାଶ ହେଲେ । ୪୪
ପୁତ୍ରର ପୁତ୍ର ଭ୍ରାତ ସ୍ନେହ କନ୍ୟା ପୁତ୍ରେ ନ ଥାଇ
ବିଚିତ୍ର ସ୍ୱଭାବ ତୋହର ଦେଖି ଦୁଃଖ ଲାଗଇ । ୪୫
ମୁଁ ତୋର ଝିଆରୀ ଅଟଇ ତେଣୁ ମୋ ଠାରେ କ୍ରୋଧ
ମୋ ପୁତ୍ରେ ଶ୍ରଦ୍ଧା ତୋ ନ ଥାଇ ତେଣୁ ଚିନ୍ତୁ ପ୍ରମାଦ ୪୬
ବାପ ମା ଝିଆରୀ ମଧ୍ୟରେ ଲାଗିଗଲା କନ୍ଦଳ
ନଣନ୍ଦ ଭାଉଜ ଝଗଡ଼ା ବେଳୁ ବେଳ ପ୍ରବଳ । ୪୭
ଅଶାନ୍ତ ବଢ଼ିଲା ଗୃହରେ ଶାନ୍ତି ହେଲା ବିପନ୍ନ
ଗାର୍ଗ୍ୟ ମହାମୁନି ସାନ୍ତ୍ୱନା ଦେଇ କହିଲେ ଶୁଣ । ୪୮
ଭରା ନିବାରଣେ ଶ୍ରୀକୃଷ୍ଣ ଯଦୁ ବଂଶେ ଜନମ
ଅସାଧ୍ୟ ସାଧନ କରନ୍ତି ସଙ୍ଗେ ଘେନଣ ରାମ । ୪୯
ସେ ଯାହାକୁ ମାରିବେ ତାକୁ କିଏ ରକ୍ଷା କରିବ
ମୃତ ଲୋକଙ୍କ ପାଇଁ କଳହ କରି କି ଲାଭ ହେବ ।୫୦
କୃଷ୍ଣ ଅନୁରାଗ କରିଲେ କିସ ଅପ୍ରାପ୍ତ ତୋତେ
ମନବାଞ୍ଛା ପୂର୍ଣ୍ଣ କରନ୍ତି ଅନ୍ତର୍ଯ୍ୟାମୀ କଣ୍ଠତେ । ୫୧
ଶୁଭାଶୁଭ ଫଳ ଦାଅନ୍ତି ଅକର୍ମା କର୍ମ ଦାୟକ
ସେ ପ୍ରଭୁ ଅଭୟ ଚରଣେ ଚିତ୍ତ ନେଇଣ ରଖ । ୫୨
ଉପଦେଶ ଦେଇ ପୁରୋଧା ହୋଇ ଗଲେ ଅନ୍ତର
ଛିନ୍ନ ମସ୍ତ ଶୋକ ତେଜଣ ଧ୍ୟାନ କଲା ପଦ୍ମର । ୫୩
ହେ ପଦ୍ମ ପଲାଶ ନୟନ ଦେବକୀର ନନ୍ଦନ
ଦୈତ୍ୟ ନିସୂଦନ ଶ୍ରୀକୃଷ୍ଣ ବାରେ ବିନତି ଘେନ । ୫୪

ମଧୁପୁରେ ଲୀଳା କରନ୍ତି ପ୍ରଭୁ ମଧୁସୂଦନ
ବୃନ୍ଦାବନ ନିତ ସ୍ମରଇ ରାମକୃଷ୍ଣ ଚରଣ । ୫୫
ଛପନ ପଦରେ ଅଧ୍ୟାୟ ଆସି ହେଲା ସମ୍ପୂର୍ଣ୍ଣ
ବୃନ୍ଦାବନ ବୋଲେ ସୁଜନେ କର୍ଣ୍ଣ ପଥରେ ଘେନ ।୫୬

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରାଦ୍ୱାରକା ଲୀଳା ଖଣ୍ଡେ କଂସ ଡମ୍ଭ ବଧ ବର୍ଣ୍ଣନେ ନାମ
ନବମ ଅଧ୍ୟାୟ ସମାପ୍ତଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

—●—

ବୋଲି — ୨

ବାଇ ମନରେ
ଅଦେଖା ହଅଁକୁ ଦେଖ
ଭକ୍ତ ମନୋବାଞ୍ଛା ପୂର୍ଣ୍ଣ କରିବାକୁ
ଧରିଛନ୍ତି ରୂପ ରେଖ ॥ ଘୋଷା ॥

ସନ୍ଧ୍ୟା ଆଗମନେ ଅସ୍ତ ଗଲେ ସୂର୍ଯ୍ୟ
ପଶ୍ଚିମ ଅଚଳ ଚୂଳେ
ଦେଉଳେ ଆରତି ଦେଖିବା ନିମନ୍ତେ
ଦେଖଣାହାରି ଚଳିଲେ । ୧

ନାନକ କହିଲେ ଏଠାରେ ତ ପ୍ରଭୁ
ମନ୍ଦିରେ କି ପ୍ରୟୋଜନ
ଶୂନ୍ୟରେ ଆରତି ସମୟେ ଶୂନ୍ୟରେ
ଦେଖା ଦେବେ ଭଗବାନ । ୨

ଭକ୍ତ ନାନକଙ୍କ କଥା ଶୁଣି ଲୋକେ
ନ ଯାଇ ରହିଲେ ତହିଁ
ଧ୍ୟାନରେ ବସିଲେ ମହାତ୍ମା ନାନକ
ମହାବ୍ରହ୍ମେ ଚିତ୍ତ ଥୋଇ । ୩

ଯେତେବେଳେ ଯେଉଁ ଦେବତାଙ୍କ ନାମେ
ଆହୁତି ହୁଏ ଅର୍ପଣ
ସେତେବେଳେ ସେହି ମୂରତି ଶୂନ୍ୟରେ
ଦିଅନ୍ତି ନେତ୍ରେ ଦର୍ଶନ । ୪

ଦେଖି ଏହି ଦୃଶ୍ୟ ଦର୍ଶକେ ହରଷ
ଶୁଭେ ଜୟଜୟ ସ୍ୱନ
ଅଭିନବ ଜଳ- ଧର ସୁନ୍ଦରଙ୍କୁ
ପ୍ରତ୍ୟକ୍ଷେ କଲେ ଦର୍ଶନ । ୫

ଶୁକ୍ଳ, ପୀତ, କୃଷ୍ଣ ନିବର୍ଣ୍ଣ ରୂପକୁ
ଅଲକ୍ଷରେ କରି ଲକ୍ଷ
ଭକ୍ତିରେ ପ୍ରଣାମ କରିଣ ଦର୍ଶକେ
ଲଭି କଲେ ଦିବ୍ୟ ସୁଖ । ୬

ବାଇ ମନରେ
ଅଦେଖା ଦିଅଁଙ୍କୁ ଦେଖି
ଭକ୍ତ ମନୋବାଞ୍ଛା ପୂର୍ଣ୍ଣ କରିବାକୁ
ଧରିଛନ୍ତି ରୂପ ରେଖ । ୭

# ପଞ୍ଚମ ଅଧ୍ୟାୟ
# ଗୋଲକ ପୁତ୍ର ରହସ୍ୟ

ରାଗ - ଆହାରି

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ ଧୀର ଚିତ୍ତେ ଘେନ ସୁଜନ ।
ସିଂହାସନେ ବସି ମାମା ଦୁର୍ଯ୍ୟୋଧନ କରୁଥାଏ ବଡ଼ମା ପଣ ।
ସୁଜନେ । ଧୃତରାଷ୍ଟ୍ର ଶତ ତନୟ ।
ମାନଙ୍କ କାର୍ଯ୍ୟକୁ ସମର୍ଥନ କରନ୍ତ ହୋଇଣ ସେ ନିରୁପାୟ । ୧
ଅଶ୍ୱ ଅଶ୍ୱାରୋହୀ ଅନୁଶାସନକୁ ନ ମାନିଲେ ଯେମନ୍ତ ଫଳ ।
ହୁଏ ସେହିପରି ଦ୍ୱିଧାଗ୍ରସ୍ତ ଥିଲେ ଧୃତରାଷ୍ଟ୍ର ପୃଥିବୀ ପାଳ ।
ସୁଜନେ । ପ୍ରତ୍ୟହ ପାଣ୍ଡବ ସଭାରେ ।
ମିଳନ୍ତେ ତାହାଙ୍କୁ ଦେଖି ଦୁର୍ଯ୍ୟୋଧନ ବୋଲଇ ସକୂଟେ ଉଚ୍ଚରେ । ୨
ଜ୍ୟେଷ୍ଠ ଭ୍ରାତା ଯୁଧିଷ୍ଠିରଙ୍କୁ ବୋଲଇ ବସବସ ଧର୍ମ ନନ୍ଦନ
ଭୀମଙ୍କୁ ବୋଲଇ ବସ ବାୟୁ ସୁତ ପାର୍ଥଙ୍କୁ ମଘବା ନନ୍ଦନ ।
ସୁଜନେ । ନକୁଳ କୁମାରଙ୍କୁ ଗୃହିଁ
ବୋଲନ୍ତି ବସ ହେ ଅଶ୍ୱିନୀ କୁମାର ଠିଆ କେଉଁ କି ପାଇଁ ? ୩
ସହଦେବେ ଗୃହିଁ ସକୂଟେ ବୋଲଇ ବସ ବସ ପାଣ୍ଡୁଙ୍କ ସୁତ
ପାଞ୍ଚ ଭାଇଙ୍କର ପାଞ୍ଚ ବାପ ନାମ ଧରି ଡାକଇ କୁରୁନାଥ
ସୁଜନେ । ବିବେକ ବିଧ୍ୱଂସ ଚରିତ
ନିଶର ଦୁର୍ନାମ ମୁଖରେ ଗାଇଣ ଆପଣେ ହୁଅଇ ନିନ୍ଦିତ । ୪
ବିଗୁରନ୍ତି ମନେ ସଭାରେ ଗାଇଲେ ପାଣ୍ଡବଙ୍କ ଅପକୀର୍ତ୍ତି ।
ଅପମାନ ପାଇ ନ ଆସିବେ ପୁଣେ ସଭାସ୍ଥଳକୁ ନିତି ପ୍ରତି
ସୁଜନେ । ହୋଇଅଛି ତା ମତିଭ୍ରମ ।
ପିତା ନାମ ଧରି ଭ୍ରାତାଙ୍କୁ ସମ୍ବୋଧି ପ୍ରଚାର କରଇ ଦୁର୍ନାମ । ୫
ସଭାସଦଗଣେ ଜଣାଏ କୌଶଳେ କହନ୍ତି ପାଣ୍ଡୁଙ୍କ ନନ୍ଦନ
ତାଙ୍କ ମାତା କୁନ୍ତୀ ପାଞ୍ଚ ପତି କରି ପାଞ୍ଚ ତନୟ ଉତ୍ପନ୍ନ ।
ସୁଜନେ ! ଜଣାଏ ଏ ପଞ୍ଚ କଟକେ
ପାଣ୍ଡୁପୁତ୍ରଙ୍କର ଜନ୍ମ ଅଧିକାରେ ନାହିଁ ଜାରଜ ସନ୍ତାନ ପ୍ରତ୍ୟେକେ ।୬

ସଭାକୁ ଯେପରି ନ ଆସିବେ ପୁଣି କରୁଥାଏ ନାନାଦି କୁଚିନ୍ତ
ନିଶ୍ଚିନ୍ତକେ ରାଜ୍ୟ କରିବା ନିମନ୍ତେ ଦୁଷ୍ଟେ ବାନ୍ଧି ଅଛନ୍ତି ମେଣ୍ଟ
ସୁଜନେ । ମନ୍ଦ ବୁଦ୍ଧି ତାର ପ୍ରଖର
ଭାଇଭାଗୁ ଯେହ୍ନେ ଦେବାକୁ ନ ହେବ ତହିଁକି କରଇ ଫିକର । ୭
ନିତି ଦୁର୍ଯ୍ୟୋଧନ ଠାରୁ ଅପମାନ ପାଇଣ ପବନ ନନ୍ଦନ
ରାଗେ ଗରଗର କମ୍ପଇ ଶରୀର ପ୍ରତିଶୋଧ ଚାହିଁଇ ମନ
ସୁଜନେ । ବାଧା ଦିଅନ୍ତି ଧର୍ମ ନନ୍ଦନ
ମାତ୍ର ତା ଅନ୍ତର ମଧ୍ୟେ ପ୍ରତିହିଂସା ବହ୍ନି ଜାଗ୍ରତ ଅନୁକ୍ଷଣ । ୮
ଭୀମ ମନକଥା ଜାଣି ପାରି କୃଷ୍ଣ ବାରୁଣାବତରେ ମିଳିଲେ
ପବନ ତନୟ ବିଷର୍ଣ୍ଣ ଦେଖିଣ ସକୁଟେ ଜିଜ୍ଞାସା କରିଲେ
ସୁଜନେ । ଦୁଃଖରେ ବୋଲେ ଭୀମସେନ ।
ନିତି ଅପମାନ ପାଇ ବଞ୍ଚିବାରେ ଜୀବନେ କି ପ୍ରୟୋଜନ ? ୯
ବାପ ନାମ ଧରି ସମ୍ବୋଧନ କରି ବୋଲଇ ବସ ବାୟୁ ସୁତ
ଆଜ୍ଞା ହେଲେ ମାତେ ମାରିବ କୌରବେ ପ୍ରତି ହିଂସା ମୋ ପ୍ରଜ୍ଜ୍ୱଳିତ
ସୁଜନେ । କୃଷ୍ଣ କହିଲେ ଭେଦ ଶୁଣ ।
ଯେ ଭେଦ ପ୍ରକାଶ କଲେ ସଭାସ୍ଥଳେ ହେବ ତାହାର ଅପବାଦ । ୧୦
କାଲି ସେ ସଭାରେ ବୋଲିବ ଯେବେଳେ ବସ ହେ। ପ୍ରଭଞ୍ଜନ ସୁତ
ତୁମ୍ଭେ ସେତେବେଳେ ବୋଲିବ ଉଚ୍ଚରେ ବସୁଛି ହେ। ଗୋଲକ ସୁତ
ସୁଜନେ । ଛିଦ୍ର ପାଇ ପ୍ରୀତ ମାରୁତ ।
ତର ତର ହୋଇ ସଜବାଜ ହୋଇ ସଭାକୁ ଚଳିଲା ଝଟିତ । ୧୧
ପ୍ରତିଦିନ ପରି ବୋଲନ୍ତେ ସଭାରେ ବସ ବସ ପବନ ସୁତ
ପ୍ରତି ଉତ୍ତରରେ ବୋଲେ ଭୀମସେନ ବସୁଛି ହେ। ଗୋଲକ ସୁତ
ସୁଜନେ । ସଭା ମଣ୍ଡପ ମୁଖରିତ
ନିଜ ଛିଦ୍ର କଥା ଶୁଣି ଦୁର୍ଯ୍ୟୋଧନ ହୋଇଗଲା ଅପମାନିତ । ୧୨
ଲଜ୍ଜିତ ହୋଇଣ ମାନୀ ଦୁର୍ଯ୍ୟୋଧନ ସଭା ଭାଙ୍ଗି ପଳାଇ ଗଲା
ଗୋଲକ ସୂତ୍ରର ରହସ୍ୟ କଥାକୁ ଜନନୀଙ୍କୁ ଯାଇ ପୁଚ୍ଛିଲା
ସୁଜନେ । ଜନନୀ କହିଲେ ନନ୍ଦନ
ପର ଛିଦ୍ର କଥା ସଭାରେ ଗାଇଣ ହରାଇଲୁ ମାନସମ୍ମାନ । ୧୩

ପାଣ୍ଡବେ ତୋହର ସୋଦର ଅଟନ୍ତି ତାହାଙ୍କୁ ଦେଉ ଅପମାନ
ସଭାମଧ୍ୟେ ବସି ତାଙ୍କ ବାପ ନାମ ଧରି କରିଲୁ ସମ୍ବୋଧନ
ସୁଜନେ । ମାନ୍ୟଙ୍କୁ କଲୁ ଅମାନ୍ୟ
ପରଛିଦ୍ର ଖୋଜ ଆପଣାର ଛିଦ୍ର ପାଇ ହୋଇଲୁ ହତମାନ୍ୟ । ୧୪
ଧୃତରାଷ୍ଟ୍ର ପାଣ୍ଡୁ ଗୋଟିଏ ବାପର ଅଟନ୍ତି ଦୁଇଟି ସନ୍ତାନ
ଜ୍ୟେଷ୍ଠ ଓ କନିଷ୍ଠ ଅଟନ୍ତି ହ ଭାଇ ପରସ୍ପର ଭାବ ଅଭିନ୍ନ
ସୁଜନେ । କମ୍ପା ଗାଉ ତାଙ୍କ ଦୁର୍ଗୁଣ
ସୋଦରେ ଉପହାସ କରିବାରୁ ନତ ତାହାର ଏ ପ୍ରତି ଫଳନ । ୧୫
ଦୁର୍ଯ୍ୟୋଧନ ପୁଚ୍ଛେ କୁରୁବଂଶେ ଜାତ ଜନକ ମୋର ଧୃତରାଷ୍ଟ୍ର
ଗାନ୍ଧାରସେନଙ୍କ ବଂଶେ ତୋ ଜନମ କୁଳ ଓ ଗୋତ୍ରରେ ଗରିଷ୍ଠ
ସୁଜନେ । ଗୋଳକ ପୁତ୍ର ମୁଁ କେସନ
ସଭା ମଧ୍ୟେ ଏମ ସମ୍ବୋଧନ କଲ ପ୍ରକାଶ ତହିଁର କାରଣ । ୧୬
ବାରମ୍ବାର ଦୁଷ୍ଟ ପୁଚ୍ଛନ୍ତେ ମାତାଙ୍କୁ ଗୋଳକ ନନ୍ଦନର ଅର୍ଥ
ବଚନ ପ୍ରକାଶି ଜନନୀ କହିଲେ ଶ୍ରବଣ କର ସେହି ତଥ୍ୟ
ସୁଜନେ । ଥିଲା ଯା ସମ୍ପୂର୍ଣ୍ଣ ଅଜ୍ଞାତ
ଜାଣିବାକୁ ଯେବେ ବଳାଇଲୁ ମନ କହୁଅଛି ଶୁଣରେ ସୁତ । ୧୭
କୃତ୍ତିକା ନକ୍ଷତ୍ର ଜ୍ୟେଷ୍ଠ ଅମାବାସ୍ୟା ତଥିରେ ଜନମ ମୋହର
ଜାତରେ ଉଆଁସୀ ମୁଁ ବ୍ରହ୍ମରାକ୍ଷସୀ ବରଣ ମାନେ ହତବାକ୍
ସୁଜନେ । ଅନେକ ହୋଇଲେ ନାହାତ
ବାହା ଦେବା ପାଇଁ ନ ମିଳିଲେ ବର ଗାନ୍ଧାରସେନ ବିଷାଦିତ । ୧୮
ସ୍ୱ ନକ୍ଷତ୍ରେ ପିତା ବ୍ରହ୍ମାସୁର ଅଟେ କନ୍ୟାଙ୍କୁ କରନ୍ତି ନିଧନ
ବରିତ କନ୍ୟାଏଁ ନାଶ ଗଲେ ଯହୁଁ ନ ମିଳିଲେ କନ୍ୟାଁ ରତ୍ନ
ସୁଜନେ । ବ୍ୟାସଦେବ ପରାମର୍ଶରେ
ଗୋଳକ ବୃକ୍ଷକୁ ବାହା ଦେଲେ ମୋତେ ଜନକ ଗାନ୍ଧାର ନୃପରେ । ୧୯
ହସ୍ତଗ୍ରନ୍ଥି କାଳେ ବୃକ୍ଷ ନାଶ ଗଲା ବିଧବା ହୋଇଲା କୁମାରୀ
ଗଣ୍ଡ ଦୋଷ ନାଶ ଅନ୍ତେ ଧୃତରାଷ୍ଟ୍ର ସଙ୍ଗେ ବାହା ହେଲା ମୋହର
ସୁଜନେ । ଗାନ୍ଧାରୀ କହିଲେ ଏମନ୍ତ
ମାତା କଥା ଶୁଣି ବଚନରେ ମନରେ ଭୀମ ଯା କହିଲା ଏଥ ଅର୍ଥ । ୨୦

ସଭାରେ ବିଧବା କନ୍ୟାକୁ ବିବାହ କଲା ଦେଲେ ଗାନ୍ଧାରସେନ
ନିମ୍ନଳଙ୍କ କୁରୁ ବଂଶରେ କଳଙ୍କ ବୋଲି କଲେ ଦୋଷ ଅର୍ଜନ
ସୁଜନେ । ସେ ଦୋଷେ ହେତୁ ସେ ନିଧନ
ମାତୁଳବଂଶ ନାଶ କରିବା ମାନସେ ବିଚାର କରେ ନିଜ ମନ । ୨୧

ଅପମାନ ଭୟେ ସଭାରେ ନ ବସେ ସେହି ଦିନରୁ ଦୁର୍ଯ୍ୟୋଧନ
ଏକାନ୍ତରେ ବସି ମନ୍ତ୍ରଣା କରନ୍ତି ମେଳ ହୋଇଣ ଦୁଷ୍ଟଗଣ
ସୁଜନେ । ନାଶିବେ ମାତୁଳ ସବଂଶ
ବିବେକ ବିଧ୍ୱଂସ ସ୍ୱଭାବ ଯାହାର ନ ଶୁଣେ ହିତ ଉପଦେଶ । ୨୨

ଚଉତିଶି ପଦରେ ଅଧ୍ୟାୟ ସମ୍ପୂର୍ଣ୍ଣ ଗୀତେ ଗାଇଲା ବୃନ୍ଦାବାସ
ଆହେ ସୁଜ୍ଞଜନେ ଧୀର ଚିତ୍ତେ ଶୁଣ ଶ୍ରୀକୃଷ୍ଣ ଚରିତ ମାନସ
ସୁଜନେ । କୃଷ୍ଣ ରସରେ ପରିପୂର୍ଣ୍ଣ
କମଳାକାନ୍ତ କୃପା ହୋଇବାରୁ ହେଲା ଏ ଅଧ୍ୟାୟ ପୂରଣ । ୨୩

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା ଦ୍ୱାରକା ଲୀଳାଖଣ୍ଡେ ଗୋଲକ ପୁର ଆଖ୍ୟାନେ
ନାମ ପଞ୍ଚମ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

ବୋଲି — ( ୩ ) ବାଇ ମନରେ !
ଅଦେଖା ଦିଅଁଙ୍କୁ ଦେଖ
ଭକ୍ତ ମନବାଞ୍ଛା ପୂର୍ଣ୍ଣ କରିବାକୁ
ଧରିଛନ୍ତି ରୂପରେଖ ॥ ଘୋଷା ॥
ଶୂନ୍ୟରେ ବାଜଇ ବିଭିନ୍ନ ବାଜଣା
ଶୁଣିଲେ ସକଳ ଜନ
ସରିଲା ଆନନ୍ଦ ଚରଣେ ପ୍ରଣତ
କରିଲେ ଦର୍ଶକଗଣ । ୧
ମନ୍ଦିରରେ ଯେତେ ଆନନ୍ଦ ପଦାର୍ଥ
ଭକ୍ତ ନାନକ ପାଖରେ
ଥୁଆ ହୋଇଅଛି ଦେଖିଲେ ସିହାରି ।
ବିସ୍ମାରିତ ନୟନରେ । ୨
ଉଠେ ପାଠି କରି କହିଲେ ସିଂହାରି
ଏ କଥା ଯଦ୍ୟପି ସତ୍ୟ
ମାନବ ଶରୀରେ ଦେଖାଇ ଦିଅନ୍ତୁ
ଦେବ ଦେବ ଜଗନ୍ନାଥ । ୩
ନାନକ କହିଲେ ଅଦେଖା ଦିଅଙ୍କୁ
କିଏ ଅବା ଦେଖାଇବେ
ସେ ଯେବେ ଚାହିଁବେ ମାନବ ଶରୀରେ
ଆପେ ଆସି ଦେଖା ଦେବେ । ୪
ମୁନିରୁଷିମାନେ କଠୋର ତପସ୍ୟା
କରି ଯେଉଁ ପରଂବ୍ରହ୍ମ
ସତ୍ତ୍ୱକୁ କେବଳ ଉପଲବ୍‌ଧି କରେ
ନ ଦେଖଇ ଚର୍ମଚକ୍ଷୁ । ୫
ସେ ବ୍ରହ୍ମକୁ କିଏ ନିଜେ ଦେଖି ଆନେ
ଦେଖାଇ ଦେବ ପ୍ରତ୍ୟକ୍ଷ
ପ୍ରଭୁ ଇଚ୍ଛା ହେଲେ ଦେଖା ଦେବେ ଆସି
ଦେଖିବେ ଲୋକେ ଶ୍ରୀମୁଖ ? ୬

# ଷଷ୍ଠ ଅଧ୍ୟାୟ

## ଶକୁନି ମନ୍ତ୍ରୀ ଉପାଖ୍ୟାନ

ରାଗ - ଚୋଖି

କୃଷ୍ଣ ଚରିତ ମାନସ ପାନକର ସୁଧାରସ
ଗାନ୍ଧାରୀ ନନ୍ଦନ ମନେ କୋପିତ ହୋଇ
ପ୍ରତିଶୋଧ ନେବାପାଇଁ ଆଣିଲ କୂଟେ ଉପାଇଁ
ହସ୍ତିନାକୁ ଡକେ କଲେ ଗାନ୍ଧାର ସାଇଁ
ଶତପୁତ୍ର ସଙ୍ଗେ ତାଙ୍କର
ଛୟାନବେ ଭାଇବନ୍ଧୁ ଯେନ ବାହାର ।୧

ଶହେ ଶତାନବେ ଜଣ ପଥର ଘରେ ଭରଣ
ଦ୍ୱାର ରୁଦ୍ଧ କରିବୋଲେ କୁରୁ ରାଜନ
ନଦାନ ବଇରୀ ତୁମ୍ଭ ତୋ ବଂଶ ନାଶିବ ମୁହିଁ
କଳଙ୍କିତ କଲୁ କୁରୁ କୁଳ ସମ୍ମାନ
ବିଧବା କନ୍ୟାର ବିବାହ
ମୋ ପିତା ସହିତ କାହିଁ କଲୁ ନିର୍ବାହ ? ୨

ସେହି ଦୋଷେ ତୋର ବଂଶ ସମୂଳେ କରି ବିନାଶ
ପ୍ରତିଶୋଧ ନେଲେ ସିନା ମିଳିବ ଯଶ
କୁକଥା କହି କ୍ରୋଧରେ କରାଳ କପାଟ କରେ
କୋଳପ ପକାଇ ଦେଲ ଗାନ୍ଧାରୀ ଶିଷ୍ୟ
ଅନ୍ଧାର ଘରେ ବନ୍ଦୀ ହୋଇ
ମୃତ୍ୟୁକୁ ଅପେକ୍ଷା କଲେ ଗାନ୍ଧାର ସାଇଁ ।୩

ଶହେ ଶତାନବେ ଜଣ ପାଇଁ ଏକ ଥାଳି ଅନ୍ନ
ଠେକାଏ ମାତ୍ରକ ଜଳ କରେ ପ୍ରଦାନ
ଦେଖି କଠିନ ବେଭାର ବିଚାରିଲେ ନୃପବର
ବାଣ୍ଟି ଖାଇଲେ ଉଦର ନ ହେବ ପୂର୍ଣ୍ଣ
ଜଣକୁ ଖୁଆଇ ରଖିଲେ
ବଂଶନାଶ ପ୍ରତିଶୋଧ ନେବ ସେ ଭଲେ ।୪

କୁଟୁମ୍ବେ ଗୃହିଁ ରାଜନ ପୁଚ୍ଛିଲେ ନଷ୍ଟ ବଚନ
ଦୁର୍ଯ୍ୟୋଧନ ବଂଶ ନାଶେ କଏ ଭାଜନ ?
ଗାନ୍ଧାରସେନ ବଚନ ଶ୍ରବଣେ ଜ୍ୟେଷ୍ଠ ନନ୍ଦନ
ବୋଲେ ପିତୃ କାର୍ଯ୍ୟ କରି ପାରେ ସାଧନ
ଆଜ୍ଞା ହେଉ ମୋତେ ନୃପତି
ପ୍ରତିଶୋଧ ନେବା ପାଇଁ ଅଛି ମୋ ଶକ୍ତି । ୫
ଆଜ୍ଞାଦେଲେ ନରଗଣ "ଭୋଜନ କରନ୍ତୁ ଅନ୍ନ
ସଭିଙ୍କ ଆୟୁଷ ଦେଇ ବଞ୍ଚ ନନ୍ଦନ"
ଖାଇ ସେହି ଅନ୍ନଜଳ ବଞ୍ଚି ରହିଲ ଦୁଲଳ
ଶହେ ପଞ୍ଚାନବେ ଜଣ ତେଜିଲେ ପ୍ରାଣ
ଶକୁନିକୁ ଡାକି ଗାନ୍ଧାରି
ମରଣ ଶଯ୍ୟାରେ ଥାଇ କହିଲେ ଗିର । ୬
" ଶ୍ରବଣ କର ନନ୍ଦନ କହୁଛି ତଥ୍ୟ ବଚନ
ଯେତେବେଳେ ପ୍ରାଣେ ମୁହିଁ ହେବି ନିହତ
ଦକ୍ଷିଣ ପଞ୍ଜର ଅସ୍ଥି ତିଆରିବୁ ପଶାକାଠି
ବାମ ପଞ୍ଜରେ କରିବୁ ସାରି ପ୍ରସ୍ତୁତ
ତିରିଶିଟି କୋଠି କଟାଇ
ଖେଳାଇବୁ ପଶାପାଲି କପଟେ ତୁହି । ୭
ଯୁଧିଷ୍ଠିର-ଦୁର୍ଯ୍ୟୋଧନ ଖେଳାଇବୁ ଦୁଇଜଣ
ହରାଇବୁ ଯୁଧିଷ୍ଠିର ପକାଇ ଦାନ
ରାଜ୍ୟଦଣ୍ଡ ସିଂହାସନ ଦ୍ରୌପଦୀ ସହିତ ପଣ
ରଖାଇବୁ ପଶାଖେଳେ କୂଟେ ନନ୍ଦନ
ଦ୍ରୌପଦୀକୁ ବଳେ ଅଣାଇ
ବିବସନ କରାଇବୁ ସଭାରେ ତୁହି । ୮
ସେ କଥା ବାଧିବ ବଳେ ଭୀମସେନ ବକ୍ଷ ସ୍ଥଳେ
ସେହି ରାଗ ଦେବ ମନେ ପବନ ସୁତ
ଦୁର୍ଯ୍ୟୋଧନ ବଂଶନାଶ କରିବା ପାଇଁ ଅବଶ୍ୟ
ସଭାସ୍ଥଳେରେ କରିବ ସିବାର ସତ୍ୟ

ତୁମ୍ଭ କାହାକୁ ନ ମାରିବୁ
କୌରବେ ମରଇ ଶେଷେ ନହତ ହେବୁ " । ୯
ଗାନ୍ଧାରସେନ ବଚନ ଶୁଣି ପୁଚ୍ଛିଲ ନନ୍ଦନ
କମ୍ପା କରିବ ପଲ୍ଲବରେ କାଠି ସାର ?
ତହିଁର କାରଣ ମୋତେ ବୁଝାଇ କହ ନିଶ୍ଚିତେ
ଗାନ୍ଧାରସେନ କହିଲେ ଶୁଣ କୁମର
" ପଶା ଖେଳରେ ପରାଜିତ
ହୋଇବାରୁ ସେବା କଲି ଜାହ୍ନବୀ ମାତ । ୧୦
ପ୍ରସନ୍ନ ହୋଇ ପାବନୀ କାଠି ସାର ଦେଲେ ଆଣି
ତିନି ବର୍ଷେ ତିନି ପୁର ଖେଳେ ଜିଣିଲି
ଗଙ୍ଗାମାତା ଆଜ୍ଞା ପାଇ ତୀର୍ଥାଙ୍କର ତୀର୍ଥେ ଯାଇଁ
ଦେବୀଦତ୍ତ ସାରକାଠି ଫେରାଇ ଦେଲି
ଆନନ୍ଦ ହୋଇ ଗଙ୍ଗାମାତା
କହିଲେ ଶ୍ରବଣ କର ଆମ୍ଭର କଥା । ୧୧
"ତୋ ପ୍ରାଣ ପ୍ରୟାଣକାଳେ ଯଦି କେ ପୁତ୍ର ତୋ କୁଳେ
ବାମ-ଦକ୍ଷିଣ ପଲ୍ଲବ ଦୁଇଟି କାଟି
କରାଇବ ସାର କାଠି ଖେଳରେ ଜିଣିବ ପୃଥ୍ୱୀ
ଅନ୍ୟଥା ନୋହିବ ଆମ୍ଭ ବଚନ ଗୋଟି
ଏହା କହି ଗାନ୍ଧାରସେନ
ଅନ୍ନ ଜଳ ବିନା କଷ୍ଟେ ତେଜିଲେ ପ୍ରାଣ । ୧୨
ସମସ୍ତାନ୍ତେ ଦୁର୍ଯ୍ୟୋଧନ ଦେଲା ନାହିଁ ଅନ୍ନ-ଅର୍ଣ୍ଣ
ଅନାହାରେ ମାରିବାକୁ ମନେ ଚିନ୍ତଇ
ବଳକା ଯେତେକ ଅନ୍ନ କାନ୍ଥରେ ଗୁଞ୍ଜି ନନ୍ଦନ
ସଞ୍ଚୟ କରିଣ ଥିଲା ଭବିଷ୍ୟ ପାଇଁ
ଆହାର କରି ସେହି ଅନ୍ନ
ପ୍ରତିଶୋଧ ନେବା ପାଇଁ ଧଇଲା ପ୍ରାଣ । ୧୩
ଏଥୁ ଅନ୍ତେ ଚତ୍ତେ ଘେନ ଗତ ହେଲା କତ୍ଥୁ ଦିନ
ତଦନ୍ତେ ଘଟିଲା ଯାହା କର ଶ୍ରବଣ

ପରିସ୍ରା କରିବା କାଳେ    ବଟବୃକ୍ଷ ବୀଜ ଜଳେ
ଭାସି ଯିବାର ଦେଖି ବଗୃରେ ରାଜନ
ମହାଦ୍ରୁମ ଗର୍ଭେ ଭରିଣ
ମୂତ୍ର ଜଳ ଧାରେ ଭାସି ଗଲା କେମନ ? ୧୪
ବିସ୍ମିତ ହୋଇ ନୃପାଇଁ    ସ୍ମିତ ହାସ୍ୟ କଲେ ତହିଁ
ରାଜା ହସିବାର ଦେଖି ହସିଲା ଦାସୀ
ଜଳଘଟ କାଖେ ଧରି    ଆସୁଥିଲା ଯୁବାନାରୀ
ରୂପଗୁଣେ ପରିପୂର୍ଣ୍ଣ ଷୋଳ ବୟସୀ
ପ୍ରେମପ୍ରୀତି ଭାବକୁ ବହି
ହାସ୍ୟ ଛଳେ ସମ୍ମତି ଦେଲା ଜଣାଇ । ୧୫
ଦାସୀ ହସିବା କାରଣ    ଦେଖି ପୁଚ୍ଛିଲେ ରାଜନ
ନ କହିଲେ ପ୍ରାଣଦଣ୍ଡ ପାଇବୁ ଜାଣ
ରାଜାଙ୍କ ବଚନ ଶୁଣି    ପ୍ରାଣ ବିକଳେ ତରୁଣୀ
ପଥର ଘର ପାଖରେ କଲା କ୍ରନ୍ଦନ
ଆର୍ତ୍ତନାଦ ଶୁଣି ଶକୁନ
ଭିତରୁ ଡାକ କହିଲା ଶୁଣ ମୋ ବାଣୀ । ୧୬
"ରାଜା ବଟ ବୃକ୍ଷ ତଳେ    ପରସ୍ରା ବସିବା କାଳେ
ମୂତ୍ର ଜଳେ ବଟବୃକ୍ଷ ବୀଜ ଭାସିଲା
ଭାବେ ଏତେ ବଡ ବୀଜ    ମୂତ୍ରେ ଭାସି ଗଲା ଆଜ
ନିଜକୁ ବଡ଼ ଭାବଣ ଗର୍ବେ ହସିଲା
ଏ କଥା କହିବୁ ମିଠାଇ
ସନ୍ତୁଷ୍ଟ ହୋଇବେ ନୃପ ଉତ୍ତର ପାଇ । ୧୭
ରାଜାଙ୍କ ସମ୍ମୁଖେ ଦାସୀ    କହିଲା କଥା ଭରସି
ନୃପତି ପୁଚ୍ଛିଲେ କହ କାହାର ବୁଦ୍ଧି ?
ଦାସୀ ବୋଲେ ନରତ୍ରାଣ    ପଥର ଘରୁ କେ ଜନ
ମୋ କ୍ରନ୍ଦନ ଧ୍ୱନି ଶୁଣି କହିଲା ଫାଦ
ଦୂର୍ଯ୍ୟୋଧନ କଲେ ବିଚାର
ମନ କଥା ଜାଣିବାରୁ ସୁଜ୍ଞମୀ ନର । ୧୮

ପଥର ଘର ଖୋଲିଣ          ଶକୁନି ଦେଖି ରାଜନ
କାର୍ପଣ୍ୟ ହୋଇ କହିଲା ବଚନ ଧୀର
ତୁମ୍ଭେ ମାତୁଳ ମୋହର          ଆମ୍ଭେ ଭଣଜା ତୁମ୍ଭର
ଆମ୍ଭେ ନୃପତି ତୁମ୍ଭେ ମନ୍ତ୍ରୀ ଆମ୍ଭର
ତୁମ୍ଭର ବଚନ ପାଳିବି
ତୋ ବୁଦ୍ଧିରେ ବଶବର୍ତ୍ତୀ ହୋଇ ରହିବି । ୧୯

ମାନ୍ୟ ଗୌରବ କରିଣ          ମ ମୁଁକୁ ସଙ୍ଗେ ଘେନିଣ
ମାତା ପାଶେ ଚଳିଗଲା ହୋଇ ତତ୍ପର
ଶକୁନି ଦେଖି ଗାନ୍ଧାରୀ          କହିଲେ କଠିନ କରି
ତୋହର କପଟ ପଣ ମୋତେ ଗୋଚର
ସର୍ବଂଶ ହୋଇଲେ ନିଧନ
ପ୍ରତିଶୋଧ ନେବା ପାଇଁ ଧରିଛୁ ପ୍ରାଣ ? ୨୦

ତୋହର ସ୍ୱଭାବ ଖଳ          କୂଟେ ଭିଆଇ କନ୍ଦଳ
ମରାଇବୁ କୁରୁକୁଳ ନିଶ୍ଚେ ଜାଣିଲି
ପୁତ୍ରକୁ ଡାକି କହିଲେ          ବିଶ୍ୱାସ ନ କର ଛଳେ
ସୈତାନକୁ ଘରୁ ବେଗେ ଦିଅ ନିକାଳି
ନୋହିଲେ ପଡ଼ିବ ପ୍ରମାଦ
ନ ଶୁଣିଲା ଦୁର୍ଯ୍ୟୋଧନ ପ୍ରକୃତି ମନ୍ଦ । ୨୧

ଯେ ପାଞ୍ଚେ ପରର ମନ୍ଦ          ତା ମନ୍ଦ ପାଞ୍ଚେ ଗୋବିନ୍ଦ
ମନ୍ଦଚକ୍ରୀ କାଳ ଜନେ ପଡ଼େ ପ୍ରମାଦ
ମନ୍ଦବୁଦ୍ଧି ଦଣେ ଆସି          ଅବିଶ୍ୱାସରେ ବିଶ୍ୱାସୀ
ଅହିତକୁ ହିତ ମଣେ ହୋଇ ଆନନ୍ଦ
ହିତାହିତ ଜ୍ଞାନ ହରାଇ
ହରାଇଣ ହରକତ ହୁଅଇ ସେହି । ୨୨

ଦୁର୍ଯ୍ୟୋଧନ ନରପତି          ଶକୁନି ହୋଇଲା ମନ୍ତ୍ରୀ
କର୍ଣ୍ଣ ଦୁଃଶାସନ ଆଦି ଦୁଷ୍ଟେ ଏକତ୍ର
ହୋଇବ ଭାରତ ଖେଳ          ଲାଗିବ ଘୋର କନ୍ଦଳ
ସମୂଳେ ବିନାଶ ହେବେ ଗାନ୍ଧାରୀ ପୁତ୍ର

ଭାଇଭାଇ ମଧ୍ୟେ ସମର
କରାଇବ କୂଟେ ମନ୍ତ୍ରୀ ବୁଦ୍ଧି ପ୍ରଖର । ୨୩

ନମୋ ଗୁରୁ ପରଂ ବ୍ରହ୍ମ ନବୀନ ସୁନ୍ଦର ଶ୍ୟାମ
କରମଳା କଳକାର କର କଲ୍ୟାଣ
କରେ କେୟୂର କଙ୍କଣ କନକ ବଂଶୀ ଧାରଣ
କମନୀୟ-କାନ୍ତ - କୃଷ୍ଣା-କଣ୍ଠ ମଣ୍ଡନ
କରେ ବୃନ୍ଦାବନ ପ୍ରଣାମ
ଚରଣ ପଦେ ଅଧ୍ୟା ହୋଇଲା ସମାପ୍ତ । ୨୪

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ଶକୁନ ମନ୍ତ୍ରୀ ଆଖ୍ୟାନେ
ନାମ ଷଷ୍ଠ ଅଧ୍ୟାୟ ସମାପ୍ତଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

—*—

**ବୋଲି—**

ବାଇମନରେ
ଅଦେଖା ଦଈଁଙ୍କୁ ଦେଖି
ଭକ୍ତମନ ବାଞ୍ଛା ପୂର୍ଣ୍ଣ କରିବାକୁ
ଧରିଛନ୍ତି ରୂପ ରେଖ । ଘୋଷା
ନାନକ କହିଲେ ଏ ବିଶ୍ୱାସ କଥା
ମହାପ୍ରଭୁ ଜଗନ୍ନାଥ
ସନ୍ତନଙ୍କ ସଙ୍ଗେ ସନ୍ତ ସଙ୍ଗେ ବସିଣ
ଶୁଣୁଛନ୍ତି କଥା ମୃତ । ୧
ସେପରି ଯାହାର ସୁଭାଗ୍ୟ ହୋଇବ
ଦେଖିବ ମାନବ ମୂର୍ତ୍ତି
ଭକତ ନାନକ କଥା ଶୁଣି ଲୋକେ
ବସିଲେ ନକରି ପାଟି । ୨
ପାଖେ ବସିଥିବା କାଳିଆ ଲୋକର
ହାତକୁ ଧଇଲେ ଯାଇଁ
ଭକତ ହାତରେ ଧରିଦେଲେ ପ୍ରଭୁ
ଦେଖିଲେ ନେତ୍ର ପୂରାଇ । ୩
ଭକତ ଅଧୀନ ସଦା ଭଗବାନ
ଭକତ ଭାବରେ ବାଇ
ଭକତ କଥାକୁ ଶୁଣନ୍ତି କର୍ଣ୍ଣରେ
ଯେଣୁ ଭକ୍ତ ଭାବଗ୍ରାହୀ । ୪
ଯେଉଁଠି ନାନକ ଜଗନ୍ନାଥ ଧରି
ଦେଖାଇ ଥିଲେ ଜଗତ
ସେଠାରେ ଅଦ୍ୟାପି ବିଜେ ଜଗନ୍ନାଥ
ନାମଟା " ବାଉଳି ମଠ " । ୫
ନାନକଙ୍କ ଗାଦି ରହିଛି ସେଠାରେ
ପ୍ରଣାମ କରେ ଭକତ
ମୂଢ଼ ବୁଲିଦାସ ବସିସେ ସ୍ଥାନରେ
ମୁଣ୍ଡିଆ ମାରଇ ଶତ । ୬

# ସପ୍ତମ ଅଧ୍ୟାୟ

## ଜରାସନ୍ଧର ମଥୁରା ଆକ୍ରମଣ ଓ ରାମକୃଷ୍ଣଙ୍କ ବନକୁ ପଳାୟନ ।

ରାଗ - କୌଶିକ

ଧୀର ଚିତ୍ତେ ଶୁଣ ଆହେ ସୁଜ୍ଞ ଜନେ ଶ୍ରୀକୃଷ୍ଣ ଚରିତ ମାନସ
ଦୁର୍ଜନ ବିନାଶକାରୀ କଥାମୃତ ରାମକୃଷ୍ଣଙ୍କ ବନବାସ
ଅସ୍ତି,ପ୍ରାପ୍ତି ଜରାସନ୍ଧ ଦୁଇ ଦୁହିତା
କଂସର ଘରଣୀ, ସେ ବେନି ଭଗିନୀ ହଂସଡ଼ିମ୍ବ ଦୁହିଙ୍କ ମାତା । ୧

ଛଅ ପୁତ୍ର ହତ ହେବାରୁ ସେମାନେ ପିତୃଗୃହେ ପଳାଇ ଯାଇ
ପିତା ପାଦତଳେ ପଡ଼ିଣ ଗୁହାରି କଲେ ବିଷାଦ ଭାବ ବହି
ଦେବକୀସୁତ, ଅଷ୍ଟପୁତ୍ର କଲେ ନିହତ
ଆଗେ ଭର୍ତ୍ତାମାର ପଛେ ତନୟଙ୍କୁ ସକଳେ କଲେ ନିପାତ । ୨

ଅଷ୍ଟପୁତ୍ର ହରି ହୋଇ ଆମ୍ଭେମାନେ ପଶିଲୁ ଚରଣେ ଶରଣ
ତୁମ୍ଭପରି ପିତା କୋଳେ ଜନ୍ମ ହୋଇ ଭୋଗ କଲୁ ଘୋର କଷଣ
କନ୍ୟାଙ୍କକଥା, ଶୁଣି କରି ଜରା ରାଜନ
ସୈନ୍ୟ ବଳ ଧରି ମଥୁରା ବାହାରିଲା ଦଣ୍ଡ ଦେବାକୁ ରାମକୃଷ୍ଣ । ୩

ବିଚାରିଛି ମନେ ବଳେ ଧରି ଆଣି ଦେବ ତାଙ୍କୁ କଠିନ ଶାସ୍ତି
ଶୁଣି ଯଦୁବୀରେ ସୈନ୍ୟ ସଜାଇଲେ ଜରାସନ୍ଧେ ନ ଥାଏ ଭୀତି
ବଡ଼ ପ୍ରତାପୀ, ଅଧର୍ମୀ ମଗଧ ନୃପତି
ବର୍ଷ ବର୍ଷ ଧରି ଧର୍ମାବମାନନା କରି ଆସିଅଛି ଦୁର୍ମତି । ୪

ନାରୀ ନିର୍ଯ୍ୟାତନା ପରଜା ପୀଡନ ନିର୍ଦ୍ଦୋଷ ଋଷିପ୍ରେ ବିନାଶ
ଗୃହଆଡ଼େ ବଖାଣିକା ସୃଷ୍ଟିକରି ଧର୍ମ ସ୍ଥାନ କରିଛି ଧ୍ୱଂସ
ଧର୍ମ ପାଳନେ, ମନୁଷ୍ୟ ମାନଙ୍କର ସୁଖ
ନିର୍ଭର କରୁଣ, ଥିବାରୁ ଧର୍ମକୁ ପାଳନ କରିଥାନ୍ତି ଲୋକ । ୫

ଧର୍ମ ନୁହେଁ ନୃପତିଙ୍କ ଇଚ୍ଛାଧୀନ ଶାସନ ତନ୍ତ୍ରରୁ ସ୍ୱତନ୍ତ୍ର
ପରନ୍ତୁ ରାଜାଏ ରାଜନୀତି ମତେ ଅଟନ୍ତି ଧର୍ମ ଅନୁଗତ
ଧର୍ମ ପାଳନ, କରିବା ରାଜାଙ୍କ କରମ
ମାତ୍ର ଜରାସନ୍ଧ କଂସାଦି ରାଜନେ ବିନାଶ କରନ୍ତି ଧରମ । ୬

ଯେଉଁମାନେ ଧର୍ମ ରକ୍ଷା କରୁଥିଲେ ତାହାଙ୍କୁ ଦଣ୍ଡ ଦେଉଥିଲେ
ରାଜ ଦରବାରେ ଧର୍ମପ୍ରାଣ ଲୋକେ ପ୍ରତାଡିତ ହେଉଥିଲେ
ଭଦ୍ର, ଉତ୍ତମ, ଲୋକର ନ ଥିଲା ସମ୍ମାନ
ଧର୍ମ ଦ୍ରୋହୀ ଥାଇ ଶ୍ୱଶୁର ଜୁଆଁଇଁ ଲୋକେ ଦେଉ ଥିଲେ କଷଣ । ୭

ରାଜ ଚକ୍ରବର୍ତ୍ତୀ ରୂପେ ବାଞ୍ଛାପିତ ହୋଇସେ କରଇ ଅକାର୍ଯ୍ୟ
ଧାର୍ମିକ ନୃପଙ୍କୁ ବଳେ ଧରି ଆଣି ହରି ନେଇଛୁ ତାଙ୍କ ରାଜ୍ୟ
ଦୁଷ୍ଟ ଲୋକଙ୍କ, ମଗଧ ଆଶ୍ରୟ ଅଞ୍ଚଳ
ସାଧୁ ସନ୍ଥଙ୍କର ଜୀବନ ବିପନ୍ନ ଧର୍ମର ସେତ ମହାକାଳ । ୮

ଧର୍ମ ସଂସ୍ଥାପକ ଧର୍ମର ରକ୍ଷକ ମାନଙ୍କୁ ଦିଅନ୍ତି କ ଷ ଣ
ତାହାଙ୍କ ଅନୀତି ଦେଖି ବସୁମତୀ ଦୁଃଖରେ କରଇ କ୍ରନ୍ଦନ
ଦୁଷ୍ଟ ରାଜାଙ୍କୁ, ମତାଇ କରେ ଆକ୍ରମଣ
ଠିକଣା ଜବାବ ଦେବାକୁ ଯାଦବେ କରନ୍ତି ପ୍ରତି ଆକ୍ରମଣ । ୯

ବାରବାର କରି ସପ୍ତ ଦଶ ବାର ମଧୁପୁରକୁ ଦେଲା ଧାଡ଼ି
ପ୍ରତିଥର ଯୁଦ୍ଧେ ପରାଜିତ ହୋଇ ତଥାପି ମାରଇ ଭୁ ରୁ ଡ଼ି
ଅନେକ କ୍ଷୟ, କ୍ଷତି ହେଉଥିବାର ଜାଣି
ଲୋକ ମନୋବଳ ଭାଙ୍ଗିବା ଆଗରୁ କୂଟ କରିଲେ ଚକ୍ରପାଣି । ୧୦

ବହୁ ସୈନ୍ୟବଳ ଘେନ ଜରାସନ୍ଧ ପୁଣି କରନ୍ତେ ଆକ୍ରମଣ
ମଥୁରା ମଙ୍ଗଳ ଚିନ୍ତାକରି ମନେ ପୁରୁ ବାହାରି ରା ମ କୃ ଷ୍ଣ
ପାଦ ଗଡରେ, ପଳାଇ ଗଲେ ଧାଇଁ ଧାଇଁ
ପ୍ରଚୃର ହୋଇଲେ କାପୁରୁଷ ପଣେ ଭୟ ପାଇ ଗଲେ ପଳାଇ । ୧୧

ମଥୁରାବାସୀଙ୍କୁ ବିପଦେ ପକାଇ ପଳାଇଲେ ପ୍ରାଣ ଧରିଣ
ପ୍ରତିବାଦ କରି କହିଲେ ଅକ୍ରୂର ନୁହଇ ଏ ଭୀରୁତା ପଣ
ଆତ୍ମ ବଚୃରେ, ସାହସିକତାର ଲକ୍ଷଣ
ଭୀରୁତାର ସମ୍ମୁଖୀନ ହେବା ପାଇଁ ସାହସିକତାର ପ୍ରୟୋଜନ । ୧୨

ଧାର୍ମିକତା ହେତୁ ରାମକୃଷ୍ଣ ଦୁଇ ଶତ୍ରୁମାନଙ୍କ ସମ୍ମୁଖରେ
ଅସ୍ତ୍ରଶସ୍ତ୍ର ତେଜି ପାଦଗତି କରି ଚଳିଗଲେ ଗିରି ଗହ୍ୱରେ
ନିର୍ଭୟ ହୋଇ, ନବରୁ ଗଲେ ସେ ବାହାରି
ମନରେ ନ ଭାବି ଭୟେ ପଳାଇଲେ ନିର୍ଭୟ ଯେଉଁ ନରହରି । ୧୩
ବନପଥ ଦେଇ ଗତି କରି ଯାଇ ମିଳିଲେ ମହେନ୍ଦ୍ର ଶିଖରୀ
ସାନୁଦେଶେ ପର୍ଶୁରାମଙ୍କ ଆଶ୍ରମ ଦେଖି ଖୁସି ହୋଇଲେ ଭାରି
ଦୂରୁ ଦେଖିଲେ, ପର୍ଶୁରାମଙ୍କ ଶିଷ୍ୟଗଣ
ଦଳଦଳ ହୋଇ ବୃକ୍ଷ ତଳେ ବସି କରୁଅଛନ୍ତି ଅଧ୍ୟୟନ । ୧୪
ଭାରତ ପ୍ରସିଦ୍ଧ ସାଧୁଙ୍କ ମଧ୍ୟରେ ପରଶୁରାମଙ୍କ ସୁଗୁଣ
ଗଭୀର ଶରଧା ସମ୍ମାନ ସହିତ ଲୋକଙ୍କ ମୁଖେ ଗୁଞ୍ଜରଣ
ଆର୍ଯ୍ୟାବର୍ତ୍ତର, ଯୋଦ୍ଧାଏ ତାଙ୍କ ନାମ ଶୁଣି
ଭୟ ଆଶଙ୍କାରେ ମସ୍ତକାବନତ କରି ଥାଆନ୍ତି ଜାଣି ଜାଣି । ୧୫
ଭଗବାନ ପର୍ଶୁରାମ ରୂପେ ଲୋକେ କରୁଥାଆନ୍ତି ସମ୍ବୋଧନ
ଯାହାଙ୍କର ନାମ ଶ୍ରବଣେ ଶଙ୍କରେ ବିଦ୍ୟୁତର ଶକ୍ତି ସଞ୍ଚାଳନ
ଆର୍ଯ୍ୟ ଧରମ, ହେଲେପେ ବର୍ବର ଶକତି
ଯେତେବେଳେ ମୁଣ୍ଡ ଟେକିଲା ଭାରତେ ଜାଗିଲା ପର୍ଶୁରାମ ଶକ୍ତି । ୧୬
ପୃଥ୍ୱୀରେ କ୍ଷତ୍ରିୟମାନେ ଅହଂକାରୀ କ୍ରମେ କ୍ରମେ ହୋଇ ଉଠିଲେ
ସେମାନଙ୍କ ଆସୁରିକ ପ୍ରବୃତ୍ତିରୁ ଲୋକେ ଦୁଃଖ ଭୋଗ କରିଲେ
କ୍ଷତ୍ରିୟ ଧର୍ମ, ଛାଡ଼ିଣ ଅନ୍ୟାୟ କରିଲେ
ରକ୍ଷକ ହୋଇଣ ଭକ୍ଷକ ସାଜିଣ ବିପ୍ରଙ୍କର ବିତ୍ତ ହରିଲେ । ୧୭
ସହସ୍ର ଅର୍ଜ୍ଜୁନ ନାମେ ନରପତି ଜମଦଗ୍ନି ବିପ୍ରଙ୍କୁ ମାରି
ମୃଗୟା କାଳରେ ବଳେ ହରିନେଲା କାମ ଧେନୁକୁ ଦୁରାଚାରୀ
ନୃପତି ହୋଇ, ଘୋର ଅନ୍ୟାୟ ଆଚରଣ
କରିବାରୁ ବିପ୍ରସୁତ ପର୍ଶୁରାମ ଧନୁ ଅସ୍ତ୍ର କଲେ ଧାରଣ । ୧୮
ସେ ସହସ୍ରାର୍ଜ୍ଜୁନ ବହିଥିଲେ ଅଙ୍ଗେ ସହସ୍ର ଭୁଜର ଶକତି
ତାହାଙ୍କୁ ଯୁଦ୍ଧରେ ଜିଣି ପର୍ଶୁରାମ ଶାନ୍ତ କଲେ ବସୁମତୀ
କ୍ଷତ୍ରି ଅନ୍ୟାୟ, ହେଲେଡ ସାଧନ ନିମନ୍ତେ
ଏକ ବିଂଶବାର କ୍ଷତ୍ରିୟ ସଂହାର କଲେ ସେ ପୂରି ଭାରତେ । ୧୯

ବିପ୍ରସୁତ ଆଇ କ୍ଷତ୍ରିୟ ବୃତ୍ତିକୁ ଗ୍ରହଣ କଲେ ପରଶୁରାମ
ପୃଥ୍ୱୀରୁ କ୍ଷତ୍ରିୟ ବିନାଶ ନିମନ୍ତେ ସମର କଲେ ଅବିରାମ
ପିତୃ ପୁରୁଷେ, କ୍ଷତ୍ରି ରକ୍ତ କଲେ ତର୍ପଣ
ବାଳ, ବୃଦ୍ଧ, ଯୁବ, ଜନନୀ ଜଠର ଭ୍ରୂଣକୁ କରିଲେ ନିଧନ । ୨୦

କ୍ଷତ୍ରିୟ ନିଧନ କରି ବାହୁବଳେ ପିତୃଗଣେ କ୍ଷତ୍ରି ଶୋଣିତ
ତର୍ପଣ କରିଣ ଶାନ୍ତିକ ଭଜଲେ ଧକ୍ରମି ଯମଦଗ୍ନି ସୁତ
ପିତୃପୁରୁଷ, ବାରଣ କରିଲେ ବ୍ୟଥାରେ
ଶୂନ୍ୟବାଣୀ ଶୁଣି ସେଠାରୁ ଚଳିଲେ ଗଙ୍ଗାସ୍ନାନ ଚିନ୍ତା ଚିତ୍ତରେ । ୨୧

ସେଠାରେ ଶୁଣିଲେ ବ୍ରାହ୍ମଣଙ୍କ ମୁଖୁ ଭଗୀରଥ ନୃପବର
ବହୁତପ କରି ଆକାଶ ଗଙ୍ଗାକୁ ଆଣି ଅଛନ୍ତି ମର୍ତ୍ତ୍ୟପୁର
ଏକଥା ଶୁଣି,କ୍ଷତ୍ରିୟ ଆଗତ ଗଙ୍ଗାରେ
ସ୍ନାନ ତରପଣ ନକରିବେ କହି ପଳାଇଲେ ହିମ ଶିଖରେ । ୨୨

ଆଉଏକ ଗଙ୍ଗା ସୃଷ୍ଟି କରି ତହିଁ ସ୍ନାନ କଲେ ସେ ପୁଣ୍ୟ ଜଳେ
ରାମଗଙ୍ଗାନାମେ ବିଖ୍ୟାତ ହୋଇଲା କୀର୍ତ୍ତି ରଖିଲେ ଭୂମଣ୍ଡଳେ
ରେଣୁକା ସୁତ ,ଅସୀମ ଯାହାଙ୍କ କ୍ଷମତା
ଭଗବାନ ପରଶୁରାମ ସେ ଅଟନ୍ତି ଚରଣେ ଲୋଟେ ଲୋକ ମଥା । ୨୩

ଅଯୋଧ୍ୟା ନଗରେ ଅଶ୍ମକ ନନ୍ଦନ ମୂଳକ ନାମରେ ନୃପତି
ତାହାଙ୍କ ଶାସନ କାଳେ ପରଶୁରାମ ପୃଥିବୀକୁ କଲେ ନିକ୍ଷତ୍ରି
ସେ ସୂର୍ଯ୍ୟବଂଶୀ, ରାଜା · ନାରୀ ବେଶ ଧରିଣ
ନାରୀଙ୍କ ଗ୍ରହଣେ ରାଜାଃ ଅନ୍ତପୁରେ ବାସକଲେ ଭୟ ପାଇଣ । ୨୪

ସେହି ଜଣେ ମାତ୍ର ସୂର୍ଯ୍ୟବଂଶୀରାଜା ଜୀବିତ ଥିଲେ ଭାରତରେ
ପରକାଳେ ତାଙ୍କ ଠାରୁ ରାଜବଂଶ ବ୍ୟାପିଲେ ପୁଣି ଭାରତରେ
ରାଜାମୂଳକ, ରାଜବଂଶ ସ୍ରଷ୍ଟା କଥିତ
ନାରୀମାନେ ତାଙ୍କୁ ରକ୍ଷା କରିବାରୁ "ନାରୀ କବଚ" ପରିଚିତ । ୨୫

ମୂଳକ ନନ୍ଦନ ରାଜା ଅଜମୀଢ଼ ତାଙ୍କ ତନୟ ଦଶରଥ
ଜନମ ହୋଇଣ ଅଯୋଧ୍ୟା ନଗରେ ହୋଇଲେ ସୁଦକ୍ଷ ନୃନାଥ
ଏହି ଭାବରେ, ବ୍ୟାପିଲେ କ୍ଷତ୍ରିୟ ପୃଥ୍ୱୀରେ
ଭସ୍ମରୁ ଅଙ୍କୁର ଉଦଗମ ହୋଇ ବଢ଼ିଗଲା ମର୍ତ୍ତ୍ୟପୁରରେ । ୨୬

ଏକ ବିଂଶବାର ପୃଥ୍ୱୀ ନିକ୍ଷତ୍ରିୟ କରି ଯମ ଦଗ୍ନି ନନ୍ଦନ
ବିଜିତ ପୃଥ୍ୱୀକୁ କପିଳ ଋଷିଙ୍କୁ ଶେଷେ କରିଦେଲେ ସେ ଦାନ
ମଧ୍ୟ ତ୍ରେତାରେ, ହୋଇବାରୁ ଧର୍ମର ଗ୍ଳାନି
ଧର୍ମରକ୍ଷା ପାଇଁ ତପନ ବଂଶରେ ଜାତହେଲେ ରାମ ଅବନୀ । ୨୭

ଦଶରଥ ସୁତ ରୂପେ ହୋଇଜାତ ଶିବଧନୁ ଭଗ୍ନ କରିଣ
ଜାନକୀ ବିବାହ କରି ରାମଚନ୍ଦ୍ର ସୁକୀର୍ତ୍ତି କରିଲେ ଅର୍ଜ୍ଜନ
ରାଜ୍ୟେ ଫେରିବା, ପଥେ ପରଶୁରାମଙ୍କ ଭେଟ
ପାଇ ତାଙ୍କଠାରୁ କଳା ହରିନେଲେ ଧନୁର୍ଦ୍ଧରେ କୌଶଲ୍ୟା ଗୃହ । ୨୮

ବିଷ୍ଣୁ କଳା ଶୂନ୍ୟ ହୋଇ ପରଶୁରାମ ନ କରିଲେ ଧନୁଧାରଣ
ରମଣୀୟ ରାମ ସ୍ୱରୂପ ଦର୍ଶନେ ରାମ ଭକ୍ତେ ହେଲେ ନିମଗ୍ନ
ବମ ଭକତ, ନାମରେ ହୋଇଲେ ବିଖ୍ୟାତ
ଫଲଗୁପରିତାଙ୍କ ଅନ୍ତଃକରଣରେ ଶ୍ରୀରାମ ପ୍ରେମ ପ୍ରବାହିତ । ୨୯

ସେ ଏକ ଜୀବନ୍ତ ଦେବାଳୟ ପ୍ରାୟ ଆରତଙ୍କ ଆଶ୍ରୟ ସ୍ଥଳ
ଯହିଁ ଆରାଧନା କରି ଆଶ୍ୱାସନା ପାଉଥିଲେ ପ୍ରଜା ସକଳ
ମହେନ୍ଦ୍ରଗିରି, ରମ୍ୟ ମନ୍ଦିର ବିବେଚିତ
ଆର୍ତ୍ତୀ, ଆତୁରଙ୍କ ଆକର୍ଷଣ ପୀଠ ଦର୍ଶନେ ଜନତା ତୃପତ । ୩୦

ଗଞ୍ଜର ସନ୍ଧାନ ବୋଧରି ସହିତ ରାମକୃଷ୍ଣ ଦୁଇ ସୋଦର
ଦେଖିଲେ ଅଦୂରେ ବୃକ୍ଷ ଗୁଇତଳେ ବସିଛନ୍ତି ହୋଇଣ ସ୍ଥିର
ତାଙ୍କଶରୀର, ନଇଁ ଯାଇନାହିଁ ଟିକିଏ
ମେରୁଦଣ୍ଡ ସିଧା କରି ବସିଛନ୍ତି ଶିଷ୍ୟ ମେଳେ ସିଂହ ପହ୍ୟେ । ୩୧

ଦୀର୍ଘ କାୟ ଏକ ଶିରାଳ ଶରୀରେ କୁଞ୍ଚିତ କେଶିତ ଚରମ
ଦୀର୍ଘ ଶୁକ୍ଳ ଶ୍ମଶ୍ରୁ ଆବୃତ୍ତ ଶ୍ରୀମୁଖ ଦିଶୁଛି ଅତି ମନୋରମ
ସର୍ବ ଶରୀର, ଭସ୍ମ ବିଲେପନେ ଉଜ୍ଜ୍ୱଳ
କଟି ଦେଶେ ବ୍ୟାଘ୍ର ଚର୍ମ ଶୋଭାପାଏ ପ୍ରତେ ହୁଏ ନର-ଶାର୍ଦ୍ଦୁଳ । ୩୨

ବୀରାସନ କରି ବସି ରହିଛନ୍ତି ପାଖରେ ପରଶୁ କୁଠାର
ଅନ୍ୟ ଏକ ପାଖେ କମଣ୍ଡଳୁ ଏକ ପୂରି ରହିଛି ତୀର୍ଥ ନୀର
ଯେଉଁ ନୟନୁ, ବରଷୁଥିଲ ବହ୍ନି ଢଳେ
ଆଜ ସେ ନେତ୍ରରୁ ସୁଧା ବୃଷ୍ଟି ହୁଏ ଅନବରତ ପ୍ରୀତି ଦାନେ । ୩୩

ଭାର୍ଗବଙ୍କୁ ଦେଖି ରାମକୃଷ୍ଣ ଦୁଇ ପଦ୍ମରେ ପଡ଼ି ପ୍ରଣମିଲେ
ସ୍ନେହ ଶ୍ରଦ୍ଧାପୂର୍ଣ୍ଣ ଭାବରେ ଭାର୍ଗବ ଉଠାଇ ଧଇଲେ କୋଳେ
ଧବଳ ନୀଳ, କମନୀୟ ରୂପ ଦର୍ଶନ
କରି ପଚାରିଲେ ଶ୍ରୀରାମ ଲକ୍ଷ୍ମଣ କି ଅବା କଲେ ଆଗମନ ? । ୩୪

ବିସ୍ମାରିତ ନେତ୍ରେ ଅନାଇଁ ରହନ୍ତେ ସସ୍ମିତେ କହିଲେ ଶ୍ରୀକୃଷ୍ଣ
ମଥୁରା ନଗରେ ନିବାସ ଆମ୍ଭର ବସୁଦେବଙ୍କର ନନ୍ଦନ
ଇଏ ମୋ ଜ୍ୟେଷ୍ଠ, ସୋଦର ନାମ ବଳରାମ
ମୁଁ ତାଙ୍କ କନିଷ୍ଠ ସୋଦର ଶ୍ରୀକୃଷ୍ଣ ଯାଦବ ବଂଶରେ ଜନମ । ୩୫

ଦୁଷ୍ଟ ଜରାସନ୍ଧ ମଥୁରା ଆକ୍ରମଣ କରିବାରୁ ଆମ୍ଭେ ଦୁଜଣ
ଯାଦବଙ୍କହିତ କାମନା କରିଣ ପଳାଇ ପଶିଲୁ କାନନ
ଆତ୍ମ ଗୋପନ, ପାଇଁ ଘୂରୁଘୂରୁ ବିପିନେ
ଆପଣଙ୍କ କୃପା ଦର୍ଶନ ପାଇଣ ଧନ୍ୟ ହୋଇଲୁ ଆମ୍ଭେମାନେ । ୩୬

ରାମକୃଷ୍ଣ ନାମ କର୍ଣ୍ଣପଥେ ଶୁଣି ବିଚାର କଲେ ପର୍ଶୁରାମ
ଶ୍ରୀରାମ ଲକ୍ଷ୍ମଣ ସମ ରାମକୃଷ୍ଣ ଦିଶନ୍ତି ଗୌର ନୀଳ ବର୍ଣ୍ଣ
ବେନି ଯୋଡ଼ିରେ, ବର୍ଣ୍ଣର ସାମ୍ୟତା ସମାନ
ମାତ୍ର ଉଭୟଙ୍କ ମଧ୍ୟରେ ବହୁତ ତାରତମ୍ୟ ପ୍ରତୀୟମାନ । ୩୭

ନବ ଦୂର୍ବାଦଳ ଶ୍ୟାମଳ ବରନ ଦଶରଥ ନନ୍ଦନ ରାମ
ବୟସରେ ଜ୍ୟେଷ୍ଠ ଗୁଣରେ ଗରିଷ୍ଠ ଶରୀର ଶୋଭା ଅନୁପମ
ତାଙ୍କ କନିଷ୍ଠ, ସୌମିତ୍ରି ଗୋଉର ବରନ
ମାତ୍ର ଏ କ୍ଷେତ୍ରରେ ଦେଖେ ବିପରୀତ ଜ୍ୟେଷ୍ଠ କନିଷ୍ଠ ବର୍ଣ୍ଣେ ଭିନ୍ନ । ୩୮

ବସୁଦେବ ଜ୍ୟେଷ୍ଠ ସୁତ ବଳରାମ ଅଟନ୍ତି ଗୋଉର ବରନ
ତାହାଙ୍କ କନିଷ୍ଠ ଭ୍ରାତା କୃଷ୍ଣଚନ୍ଦ୍ର ସ୍ୱରୂପ ଦିଶେ ନୀଳ ବର୍ଣ୍ଣ
ତ୍ରେତୟା ଯୁଗେ, ରାମ ଜ୍ୟେଷ୍ଠ ଶ୍ୟାମଳ ବର୍ଣ୍ଣ
କିନ୍ତୁ ଏ ଦ୍ୱାପରେ ବଳରାମ ଜ୍ୟେଷ୍ଠ ଧରିଛନ୍ତି ଗୋଉର ବର୍ଣ୍ଣ । ୩୯

ତ୍ରେତାରେ କନିଷ୍ଠ ସୋଦର ଲକ୍ଷ୍ମଣ ଶରୀର ଶୋଭା ଗୌର ବର୍ଣ୍ଣ
ଏ ଦ୍ୱାପର ଯୁଗେ କନିଷ୍ଠ ସୋଦର କୃଷ୍ଣ ଶରୀର ନୀଳବର୍ଣ୍ଣ
ତ୍ରେତୟା ଯୁଗେ, ଜ୍ୟେଷ୍ଠ ସୋଦର ପରଂବ୍ରହ୍ମ
ମାତ୍ର ଏ ଦ୍ୱାପରେ କନିଷ୍ଠ ସୋଦର ଅଟନ୍ତି ପରଂବ୍ରହ୍ମ କୃଷ୍ଣ । ୪୦

ତ୍ରେତୟା ଯୁଗରେ ଜ୍ୟେଷ୍ଠ ପରଂବ୍ରହ୍ମ ଦୁର୍ବାଦଳ ଶ୍ୟାମ ତନ
ଦ୍ୱାପରେ କନିଷ୍ଠ ପରଂବ୍ରହ୍ମ କୃଷ୍ଣ ଧରିଛନ୍ତି ଶ୍ୟାମଳ ; ବର୍ଣ୍ଣ
ଜ୍ୟେଷ୍ଠ କନିଷ୍ଠ, ସ୍ୱରୂପେ ଶ୍ରୀରାମ ଶ୍ରୀକୃଷ୍ଣ
ନାମରେ ପାର୍ଥକ୍ୟ ରହିଥିଲେ ମଧ୍ୟ ରୂପରେ ବେନିଏ ଅଭିନ୍ନ । ୪୧

ତ୍ରେତାରେ ଯେ ଜ୍ୟେଷ୍ଠ ଦ୍ୱାପରେ କନିଷ୍ଠ ସୋଦର ହୋଇ ମର୍ତ୍ତ୍ୟେଜାତ
ତ୍ରେତୟା ଯୁଗର କନିଷ୍ଠ ସୋଦର ଦ୍ୱାପରେ ଜ୍ୟେଷ୍ଠ ସମ୍ଭୂତ
ତ୍ରେତାରେ ସେବ୍ୟ, ଦ୍ୱାପର ଯୁଗରେ ସେବକ
ସେବ୍ୟ ସେବାକରି ସେବ୍ୟଙ୍କ ଆସନେ ବସିଲେ ସମ୍ମାନେ ସେବକ । ୪୨

ସେବ୍ୟ ଓ ସେବକ ମଧ୍ୟରେ ପାର୍ଥକ୍ୟ ତ୍ରେତୟା, ଦ୍ୱାପର ଦୁଇ ଯୁଗେ
ନୀଳ ହେଲ ଗୌର ଗୌର ହେଲ ନୀଳ ଗୌର ନୀଳ ରାଗାନୁରାଗେ
ଦେଖି ଏ ଦୃଶ୍ୟ, ପର୍ଶୁରାମ ଚିନ୍ତାରେ ନିମଗ୍ନ
ଜାଣିଲେ ଦ୍ୱାପରେ ଲୀଳା କରିବାକୁ ରାମକୃଷ୍ଣ ଅବତରଣ । ୪୩

ଶ୍ରୀମୁଖ ଦର୍ଶନ ଶ୍ରୀଅଙ୍ଗ ପରଶେ ଆହ୍ଲାଦିତ ପ ର ଶୁ ରା ମ
ଅନ୍ତର ମଧ୍ୟରେ ପ୍ରଣାମ କରିଣ କହିଲେ ବିନୟ ବଚନ
ବର୍ଣ୍ଣ ତୁଳନେ, ରୁଚିକର ଗୌର ବରନ
ସପ୍ତବର୍ଣ୍ଣ ମଧ୍ୟେ ଶ୍ରେଷ୍ଠ ବର୍ଣ୍ଣ ଅଟେ ଏଥିରୁ ମିଳଇ ପ୍ରମାଣ । ୪୪

ଏଣୁ କରି ନୀଳ କନିଷ୍ଠ ହୋଇଲ ଜ୍ୟେଷ୍ଠତା ଲଭିଲ ଗୋଉର
ଗୌର ବର୍ଣ୍ଣ ପ୍ରତି ସଭିଙ୍କର ଶ୍ରଦ୍ଧା ରହିଥାଏ ନିରନ୍ତର
ଶଙ୍କରଷଣ, ବୋଲନ୍ତି ଏମନ୍ତ ନ ବୋଲ
ଦେଖଏ ସୃଷ୍ଟିରେ ନୀଳରଙ୍ଗ ସଙ୍ଗେ ଗୋଉର ନୁହେଁ ସମତୁଲ । ୪୫

ନୀଳବର୍ଣ୍ଣରେ ହିଁ ସୃଷ୍ଟିର ପ୍ରକାଶ ଆକାଶର ବର୍ଣ୍ଣ ପରାପୁ
ବିଶ୍ୱ ସ୍ରଷ୍ଟାଙ୍କର ସ୍ୱରୂପ ଆକାଶ ବରନରେ ଅ ତୁ ଳ ନୀ ଳ
ତେଣୁ ସରଗ, ସାଗର, ଭୂଧର ସୁନୀଳ
ବାରିଦ ସୁନୀଳ,ଜଳଧାର ନୀଳ,କାନନର ଶୋଭା ଶ୍ୟାମଳ । ୪୬

ନୀଳବର୍ଣ୍ଣେ ସୃଷ୍ଟି ଯେପରି ପ୍ରକାଶ ସେପରି ନୁହଇଁ ଗୋଉରେ
ନୀଳ ଯୋଗୁ ଗୌର ସ୍ୱରୂପ ସୁନ୍ଦର ନିଜତ୍ୱ ନାହିଁତ ତାହାରେ
ଜ୍ୟେଷ୍ଠ ସୋଦର, ମୁଖେ ନିଜ ପ୍ରଶଂସା ଶୁଣି
ପର୍ଶୁରାମ ମୁଖ ଚୁମ୍ବି ନୀଳମଣି କହନ୍ତି ମଧୁକ୍ଷରା ବାଣୀ । ୪୭

" ଚରାଚର ସୃଷ୍ଟି ମଧ୍ୟେ ଗୌରବର୍ଣ୍ଣ ଜ୍ୟୋତିର ସୁଦିବ୍ୟ ପ୍ରକାଶ
ମାତ୍ର ନୀଳ ବର୍ଣ୍ଣ ଅନ୍ଧକାର ସମ ଅସ୍ପଷ୍ଟ ନୁହେଁ ତା ସୁଦୃଶ୍ୟ
ଅନ୍ଧକାରତ, କୃଷ୍ଣ ବର୍ଣ୍ଣ ରୂପେ କଥିତ
ଏଣୁ ଅନ୍ଧକାରେ ଜଗତ ଅଦୃଶ୍ୟ କାଳିମା ଦ୍ୱାରା ସେ ଆବୃତ୍ତ । ୪୮

ପ୍ରଶ୍ନ ଉତ୍ତରରେ ବୋଲୁଛନ୍ତି ରାମ ଅନ୍ଧକାର ସଦା ଶାଶ୍ୱତ
କାରଣ ଆଲୋକ ଶାଶ୍ୱତ ନୁହଇଁ ନାହିଁ ତାର ସତ୍ତା ସ୍ୱତନ୍ତ୍ର
ପ୍ରତ୍ୟେକ ଜ୍ୟୋତି, ଅମା ଅନ୍ଧକାରେ ବିଲୀନ
ସେପରି ବ୍ରହ୍ମାଣ୍ଡ ସମ୍ମୁଖରେ ବିଲୀନ ହେବାକୁ ମୋର ଗୌରବର୍ଣ୍ଣ । ୪୯

କୃଷ୍ଣ ବରନର ସତ୍ତାରୁ ଗୋଉର ବରନ ଗୋଟି ପ୍ରକଟିତ
କୃଷ୍ଣ ବିନା ଗୌର ବର୍ଣ୍ଣର ସ୍ୱାତନ୍ତ୍ର୍ୟ ନ ଥାଏ ବସ୍ତୁରେ ମୋ ଚିତ୍ତ
ସବୁ ବର୍ଣ୍ଣର, ଆଧାର ଅଟେ ଶୁକ୍ଳ ବର୍ଣ୍ଣ
ପ୍ରକାଶମୟ ସେ ଜାଗ୍ରତାବସ୍ଥାରେ ଆଧାର ଅବା ଅଧିଷ୍ଠାନ । ୫୦

ମାତ୍ର କୃଷ୍ଣ ବର୍ଣ୍ଣ ସବୁଠୁ ଅଲଗା କାହାରି ସଙ୍ଗେ ମିଶେ ନାହିଁ ।
ସପତ ବର୍ଣ୍ଣର ମୂଳ ବୀଜ ତହିଁ ଅନ୍ତର୍ନିହିତେ ରହିଥାଇ
ଯା ନୁହେଁ ଶୁକ୍ଳ, କୃଷ୍ଣ ବର୍ଣ୍ଣ ରୂପେ କଥିତ
କୃଷ୍ଣ ବର୍ଣ୍ଣେ ଶୁକ୍ଳ ନିହିତ ରହିଛି ମାତ୍ର ବିପରୀତ ନୁହେଁତ । ୫୧

ଏଣୁ କୃଷ୍ଣଠାରେ ସକଳ ବର୍ଣ୍ଣର ସତ୍ତା ଗୋଟିକ ଅନୁମେୟ
ଉପନିଷଦରେ ଭଗବାନ କୃଷ୍ଣ ଅଚିନ୍ତ୍ୟ, ଅବର୍ଣ୍ଣନୀୟ
ଗାଢ଼ ସୁଷୁପ୍ତି, ପ୍ରଜ୍ଞମାତ୍ମକ ଜଗନ୍ନାଥ
ଯେଉଁ ଅବସ୍ଥାରେ ଥାଇ ସଧ ପ୍ରାଣୀ ହୋଇଥାଏ ଆନନ୍ଦ ପ୍ରାପ୍ତ । ୫୨

ଶ୍ରୀକୃଷ୍ଣ ନୁହନ୍ତି ସାମାନ୍ୟ ମନୁଷ୍ୟ ସେ ଅଟନ୍ତି ପରମ ସତ୍ୟ
ତାଙ୍କର ଶରୀର ମନ ଓ ସେ ନିଜେ ଅଟନ୍ତି ଏକ ଓ ଏକତ୍ର
ବିଶ୍ୱ ବ୍ରହ୍ମାଣ୍ଡ, ବ୍ୟାପକତାହିଁ ତାଙ୍କ ଗୁଣ
ନିର୍ଗୁଣରୁ ଆସି ଗୁଣବନ୍ତ ହୋଇ ଧରିଛନ୍ତି ଆକାଶ ବର୍ଣ୍ଣ । ୫୩

ସୂର୍ଯ୍ୟ କିରଣର ତେଜରୁ ଯେପରି ପଙ୍କରୁ ପଙ୍କଜ ସମ୍ଭବ
ସେହିପରି କୃଷ୍ଣ ଦିବ୍ୟ କରୁଣାରୁ ମୋ ଦିବ୍ୟ ଦେହ ଉଦ୍‌ଭବ
ହେଲେ ମୁଁ ଜ୍ୟେଷ୍ଠ, କନିଷ୍ଠ ସେବାରେ ନିଯୁକ୍ତ
ମୋହରତ କିଛି ସ୍ୱାତନ୍ତ୍ର୍ୟତା ନାହିଁ କୃଷ୍ଣ ମୋର ପରମ ଇଷ୍ଟ । ୫୪

ଜ୍ୟେଷ୍ଠ ଭ୍ରାତାଙ୍କର ପ୍ରିତି ପୂର୍ଣ୍ଣ କଥା ଶୁଣି କୃଷ୍ଣ ଦ୍ରବୀଭୂତ
ଆଲିଙ୍ଗନ କଲେ ଭ୍ରାତାଙ୍କୁ ଶ୍ରଦ୍ଧାରେ ନୀଳ ଗୌର ଏକତ୍ରିଭୂତ
ବିଚିତ୍ର ଦୃଶ୍ୟ, ଦେଖି ପର୍ଶୁରାମ ମୋହିତ
ରାମକୃଷ୍ଣ ଦୁଇ ଭାଇଙ୍କ ଦର୍ଶନେ ଶରୀର ହେଲା ପୁଲକିତ । ୫୫

ଯାଗରୁ ସମ୍ଭୂତ ସୋମ ଯେଉଁ ପରି ସାଗର ସନ୍ଦର୍ଶନେ ପ୍ରୀତ
ହୋଇ ସାଗରକୁ ଆକୃଷ୍ଟ କରଇ ତରଙ୍ଗ ମାଳେ ଉଦ୍‌ବେଳିତ
ସେପରି କୃଷ୍ଣ, ନୀଳିମା ଦର୍ଶନେ ମୋହିତ
ଜାଣିଲେ କନିଷ୍ଠ ହେଲେ ହେଁ ଶ୍ରୀକୃଷ୍ଣ ଗୋଜର ରାମଠୁ ଗରିଷ୍ଠ । ୫୬

ନୀଳ ଗୌର ବେନି ଭାଇଙ୍କ ମଧ୍ୟରେ ନିବିଡ ଭ୍ରାତୃତ୍ୱ ସଂପ୍ରୀତି
ଦେଖି ପର୍ଶୁରାମ ଭୂଜନ କରନ୍ତି ଶ୍ରୀରାମ ଭରତ ପ୍ରୀରତି
ତାଙ୍କ ହୃଦୟେ, ଜାଗି ଉଠିଲା ଦିବ୍ୟଭାବ
ନରନାରାୟଣ ଦର୍ଶନ ପରଶେ ଭାବିଲେ ଜନମ ଦୁର୍ଲ୍ଲଭ । ୫୭

ରାମକୃଷ୍ଣ ଅତି କ୍ଳାନ୍ତଥିବା ଦେଖି ଭଗବାନ ପରଶୁରାମ
କୁଟୀରକୁ ଯାଇ ବିଶ୍ରାମ ନେବାକୁ ବିନୟେ କଲେ ନିବେଦନ
ଆଦର କରି, କୁଟୀର ଦିଗେ ନେଇଗଲେ
ପ୍ରଭୁଙ୍କ ସେବାରେ ନିମଜ୍ଜି ରହିଣ ଆତିଥ୍ୟ ପ୍ରଦାନ କରିଲେ । ୫୮

ସ୍ନାନ ଭୋଜନାନ୍ତେ କ୍ଳାନ୍ତି ବିନୋଦନେ ସମ୍ୟକ ଭାବେ ସୁସ୍ଥ ହୋଇ
ଭାର୍ଗବଙ୍କ ପାଦ ବନ୍ଦନା କରିଲେ ଶ୍ରୀମୁଖେ ସ୍ତୁତି ଗୀତ ଗାଇ
ପୁଚ୍ଛିଲେ ରାମ, କିମ୍ପାଇଁ ଆସିଲ ବିପିନେ
ପ୍ରଶ୍ନର ଉତ୍ତରେ ସେ ପୁଣି କହିଲେ "ଯା କରିଛ ଉଚିତ ମଣେ" । ୫୯

ଧର୍ମ ପାଇଁ ମୃତ୍ୟୁ ବରଣ କରିଲେ ତହିଁରେ ନିହିତ ପୌରୁଷ
ଅଯଥା ମରିବା କାପୁରୁଷ କାର୍ଯ୍ୟ ବୋଲି ଘେନ ଦେବଜ୍ଞ ଶିଷ୍ୟ
ପୁଚ୍ଛିଲେ କୃଷ୍ଣ, ଭୟରେ ଆସିଛୁ ବୋଲିଣ
ଲୋକମାନେ ନିନ୍ଦା କରିବେ ନାହିଁକି ଏହା ବିଚାରି ଦୁଃଖେ ମନ । ୬୦

ଭାର୍ଗବ କହିଲେ ଲୋକେ ଯା ଭାବନ୍ତି ସାଧାରଣତ ତାହା ଭ୍ରମ
ବେଳେ ବେଳେ କାର୍ଯ୍ୟୁ ପଳାୟନ ପନ୍ଥା ବୀରତ୍ୱରେ ହୁଏ ଗଣନ
ଘଟଣାକ୍ରମେ, ଦୂରେଇ ରହିବାର ଅର୍ଥ
ବୀରତ୍ୱର ପରି-ଗୃପ୍ତକ ଅଟଇ ଏହା ମୋର ନିଜସ୍ୱ ମତ । ୬୧

ତୁମ୍ଭେ ଯା କରିଛ ଠିକ୍ କରି ଅଛ ତ୍ରୁଟି ବିଚ୍ୟୁତି ଏଠି କାହିଁ
ଏଥି ପାଇଁ ତୁମ୍ଭେ ଶୋଚନା ନ କର ଲୋକ କଥାକୁ ଶୁଣ ନାହିଁ
ପରନ୍ତୁ ତୁମ୍ଭେ, ମଥୁରାରୁ ଆସିବା ପରେ
କେଉଁ ପ୍ରତିକ୍ରିୟା ପ୍ରକାଶ ପାଇବ ନାଗରଙ୍କେ ବୋଲ ମୋ ଆଗରେ । ୬୨

ଶ୍ରୀକୃଷ୍ଣ କହିଲେ ମୋହର ଧାରଣା ଆମ୍ଭର ଅନୁପସ୍ଥିତିରେ
ଯାଦବ ମାନଙ୍କୁ ଭୟ ଦେଖାଇଣ ନିଜ ସପକ୍ଷେ ନେଇ ପାରେ
ଆମକୁ ଲୋକେ, ତା ହାତେ ଦିଅନ୍ତୁ ଧରାଇ
ମାତ୍ର ଆମ୍ଭେ ତହୁଁ ପଳାଇ ଆସିବା ହେତୁ ତା ସମ୍ଭବ ନୁହଇଁ । ୬୩

କେଉଁ ଆଡ଼େ ଆମେ ପଳାୟନ କଲୁ ଏହି କଥା ଜାଣିବା ପାଇଁ
କେତେକଙ୍କୁ ଧରି ଦଣ୍ଡ ଦେଇ ପାରେ ଏପରି ଆଶଙ୍କା ହୁଅଇ
ଆମ ଖବର, ସଂଗ୍ରହ କରିବା ନିମିତ୍ତ
ଆମର ଆସିବା ପଥେ ସୈନ୍ୟ ବାହି ଆସି ପାରଇ ମହାଦୁଷ୍ଟ । ୬୪

କଂସ ମାମୁଁଙ୍କୁ ମୁଁ ହତ କରିବାରୁ ଜରାସନ୍ଧ ଲଜ୍ଜିତ ହୋଇ
ଭାବୁଛି ତା ମାନ ସମ୍ମାନରେ ଆଞ୍ଚ ହୋଇଅଛି ଆମରି ପାଇଁ
ତା ଜ୍ୱାଇଁ ନାତି, ନିହତ ହେତୁ କୋପାନ୍ୱିତ
ଏଣୁ ସେ ଆମ୍ଭଙ୍କୁ ଖୋଜି ବୁଲୁଅଛି କରିବାକୁ ପ୍ରାଣେ ନିହତ । ୬୫

ତାହାର ପ୍ରଧାନ ସାମନ୍ତ ନିଧନେ ଅନ୍ୟ ନୃପତିଙ୍କ ଉପରେ
ଥିବା ପ୍ରଭାବକୁ ଦୋହଲାଇ ଦେଇ ଅଛଇ ପ୍ରକାଣ୍ଡ ଭାବରେ
ଯେତେ ରାଜନ, ଅଛନ୍ତି ତାହା ସପକ୍ଷରେ
ସେମାନେ ଭାବନ୍ତି ଯଦ୍ୟପି ମଥୁରା ଚଳଇ ଆମ୍ଭ ନିର୍ଦ୍ଦେଶରେ । ୬୬

ତାହା ହେଲେ ତାହା ଶାସନ ପ୍ରତି ଏ ହୋଇବ ବିପଦ କାରଣ
ଏହି କାରଣରୁ ଆମ୍ଭଙ୍କୁ ନିଧନ କରିବାକୁ ସୈନ୍ୟ ଗୃଜନ
ଆମ୍ଭର କକା, ତାହାଙ୍କ ନାମ ଦେବଶ୍ରବ
କଂସ ନିଜ ଭଗ୍ନୀ କଂସାକୁ ବିବାହ କରି କଲେ କୁମର ଲାଭ । ୬୭

ତାହାଙ୍କର ଜ୍ୟେଷ୍ଠ ତନୟର ନାମ ଦେଇଅଛନ୍ତି ବୃହଦ୍‌ବଳ
ମାତାଙ୍କ କଥାରେ ପଡ଼ି ଆମ୍ଭ ସଙ୍ଗେ ନିରନ୍ତର କରେ କନ୍ଦଳ
ରାଜା ଭଣଜା, ହେତୁ ରାଜା ହେବାକୁ ବ୍ୟସ୍ତ
ଏଣୁ କକାପୁଅ ଭାଇ ସେ ହୋଇଣ ଷଡ଼ଯନ୍ତ୍ରେ ସର୍ବଦା ଲିପ୍ତ । ୬୮

ଜରାସନ୍ଧ ସମର୍ଥନେ ବୃହଦ୍‌ବଳ ହେବାକୁ ମଥୁରା ନୃପତି
ମନମଧ୍ୟେ ଆଶା ବାନ୍ଧି ବସିଅଛି ତେଣୁ ଆମ୍ଭ ସଙ୍ଗେ ଅପ୍ରୀତି
ତା ମା କଂସାର, ତା ମଧ୍ୟ ଇଚ୍ଛା ଅଟଇ
ମାଆ ପୁଅ ଦୁଇ ଷଡଯନ୍ତ୍ରେ ଲିପ୍ତ ଜରାସନ୍ଧ ପକ୍ଷରେ ରହି । ୬୯

ଯେବେ ସେଉଁ ଯଦୁ, ବୃଷ୍ଣି, ଶୂରାନ୍ଧକ କୁଳରେ ଜନମ ହୋଇଣ
ନିଜର ଜୀବନ ବିତନ୍ତି କରିଣ କରୁଥିଲେ ଧର୍ମ ପାଳନ
କଥା କାର୍ଯ୍ୟରେ, ଅନ୍ୟମାନଙ୍କୁ ଧର୍ମ ପ୍ରତି
ଆକୃଷ୍ଟ କରାଇ ପୁଷ୍ଟ କରୁଥିଲେ ଆର୍ଯ୍ୟ ଧର୍ମର ମୂଳଭିତ୍ତି । ୭୦

ସେମାନଙ୍କ ଯୋଗୁ ଆର୍ଯ୍ୟ ଧରମର ପ୍ରଚାର, ପ୍ରସାର କ୍ଷେତ୍ରରେ
ଏକକ ଦୁର୍ଜ୍ଜୟ ଶକ୍ତିର ଉଦ୍‌ଭବ ହୋଇଥିଲା ଆର୍ଯ୍ୟାବର୍ତ୍ତରେ
ମୁନି ରୁଷିଙ୍କୁ, ଦେଉଥିଲେ ବିପୁଳ ଦାନ
ଗୁରୁକୁଳାଶ୍ରମ ପ୍ରତିଷ୍ଠା କରାଇ ରକ୍ଷା କରୁଥିଲେ ଧରମ । ୭୧

ସେହି ବଂଶେ ଜାତ ହୋଇ କଂସାସୁର ଥିଲା ତାହାର ବ୍ୟତିକ୍ରମ
ତେଣୁ ଧର୍ମବନ୍ତ ସ୍ୱବଂଶୀୟ ଲୋକେ ତାହା ବିରୋଧୀ ରୂପେ ଗଣ୍ୟ
ବଂଶ ସମ୍ମାନ, ରକ୍ଷା କରିବାକୁ ଉଦ୍ୟତ
ହୁଅନ୍ତେ କଂସର କ୍ରୋଧାନଳେ ପଡ଼ି ବହୁଳଭାବେ ନିର୍ଯ୍ୟାତିତ । ୭୨

କଂସ ଶାସନର ବିରୋଧ କରିଣ ରାଜ୍ୟଛାଡ଼ି ପଳାଇ ଗଲେ
ପରବର୍ତ୍ତେ ରହି କଂସ ବିପକ୍ଷରେ ଷଡଯନ୍ତ୍ରେ ଲିପ୍ତ ରହିଲେ
କଂସ ମୃତ୍ୟୁରେ, ଫେରି ଆପଣା ବିତ୍ତ ପାଇଁ
ନିଜନିଜ ମଧ୍ୟେ କଳହରେ ଲିପ୍ତ ଶକତି, ସାମର୍ଥ ଖଟାଇ । ୭୩

ସେମାନଙ୍କ ନେତା ବିକଦ୍ରୁ ଓ ଗଦ ମଥୁରାକୁ ଘର ସ୍ୱରୂପ
ରାଜ୍ୟର ଭିତର ଅବସ୍ଥା ଅଶାନ୍ତ ତାସଙ୍ଗେ ବହିଃ ଶତ୍ରୁ କୋପ
କଂସ ଶାସନେ, ମାଗଧୀ ସଇନ୍ୟ ଯେତେକ
ସେମାନେ ସୈନିକ ବିଭାଗେ ଥାଇଣ ଜରାସନ୍ଧର ସମର୍ଥକ । ୭୪

ଜରାସନ୍ଧ ଠାରୁ ବହୁ ଅର୍ଥ ପାଇ ସମ୍ବାଦବାଦ କାର୍ଯ୍ୟେ ଲିପ୍ତ
ତଦ୍ୱାରା ମଥୁରା ଆଭ୍ୟନ୍ତରାବସ୍ଥା ସମ୍ପୂର୍ଣ୍ଣ ଭାବେ ବିପର୍ଯ୍ୟସ୍ତ
ମୋ ଅନୁଭବ, ଜରାସନ୍ଧ ମାନ ଇଜ୍ଜତ
ଭୂଲୁଣ୍ଠିତ ହୋଇ ଥିବାରୁ କ୍ରୋଧରେ ଇଚ୍ଛାଇ କରିବାକୁ ହତ । ୭୫

ସବୁଠାରୁ ଶକ୍ତିଶାଳୀ ସମ୍ରାଟ ର ଯେହେତୁ ଯାଇଛି ସମ୍ମାନ
ପ୍ରତିଶୋଧ ନେବା ମାନସରେ ଖୋଜ ନିଶ୍ଚୟ ଆସିବ ଏ ସ୍ଥାନ
ତାହା ଇଚ୍ଛା, ଆମ୍ଭ ସଙ୍ଗେ କରିବାକୁ ଯୁଦ୍ଧ
ଆମ୍ଭେ ଦୁଇଭାଇ ଶକତ ଖଟାଇ କରିବୁ ତାର ପ୍ରତିରୋଧ ।୭୬

ଯଦୁବଂଶେ ଏକ ଶାଖା ଭୋଜ ବଂଶ ଅଟନ୍ତି ଆମ୍ଭର କୁଟୁମ୍ବ
ବିଦର୍ଭ ଓ ଚେଦି ଦୁଇ ରାଜ ବଂଶ ଭୋଜବଂଶ ବନ୍ଧୁ ବାନ୍ଧବ
ମାତ୍ର ସେମାନେ. ଜରାସନ୍ଧ ସପକ୍ଷେ ରହି
ମିତ୍ରତାର ହାତ ବଢାଉ ନାହାଁନ୍ତି ଆପଣା ସ୍ୱାର୍ଥ ସିଦ୍ଧି ପାଇଁ ।୭୭

ଚେଦି ରାଜା ଦମଘୋଷ ମୋ ପିଉସା ତାଙ୍କ ସନ୍ତାନ ଶିଶୁପାଳ
ଜରାସନ୍ଧ ପକ୍ଷ ସମର୍ଥନ କରି ଆମ୍ଭ ସଙ୍ଗେ କରେ କନ୍ଦଳ
ବିଦର୍ଭରାଜା, ଭୀଷ୍ମକ ରୁକ୍ମୀ ତାଙ୍କ ସୁତ
ଜରାସନ୍ଧ ପକ୍ଷ ସମର୍ଥନ କରି ଆମର ବଇରୀ କଥିତ ।୭୮

ଏ ଦୁଇ ରାଜାଙ୍କ କଥାରେ ଚଳିତ ନୁହନ୍ତି ତାହାଙ୍କ କୁମରେ
ପରନ୍ତୁ ପୁତ୍ରଙ୍କ କଥାରେ ଚଳିତ ଅଟନ୍ତି ସେ ଦୁଇ ନୃପବରେ
ତାଙ୍କ ନନ୍ଦନ, ଯେଣୁ କଂସର ପ୍ରିୟଜନ
କଂସର ମରଣେ କ୍ରୋଧାନ୍ୱିତ ହୋଇ ରହି ଅଛନ୍ତି ବେନି ଜନ ।୭୯

ପିତା ବସୁଦେବ ପିତୃବ୍ୟ ଅକ୍ରୂର ଚେଷ୍ଟା ସତ୍ତ୍ୱେ ତାହାଙ୍କର
ମୋ ପ୍ରତି ଶତ୍ରୁତା ଦୂର ହୋଇ ନାହିଁ ବିଦ୍ୱେଷ ଭାବ ଉଭୟଙ୍କର
ବ୍ରତ ଉତ୍ସବେ, ଯୋଗ ଦେଲେ ନାହିଁ ସେମାନେ
ଏଣୁ ଜଣାଯାଏ ଆମ ପ୍ରତି ତାଙ୍କ ଅନୁରାଗ ନାହିଁତ ମନେ ।୮୦

ପରନ୍ତୁ ସେମାନେ ଗୋପାଳ କହିଣ ଦେଉ ଅଛନ୍ତି ଅପମାନ
ନିଜକୁ ବିଶୁଦ୍ଧ କ୍ଷତ୍ରିୟ ବିଚାରି ଗର୍ବ ଅଭିମାନରେ ପୂର୍ଣ୍ଣ
ଆମ ବିପକ୍ଷେ, ରାଜନୈତିକ ଷଡଯନ୍ତ୍ର
ସଙ୍ଗଠିତ ଭାବେ ଆରମ୍ଭ ହୋଇଛି ଆର୍ଯ୍ୟାବର୍ତ୍ତଟା ସନ୍ତୁଳିତ ।୮୧

ଏ ବିପଦ କାଳେ ହସ୍ତିନା ପୁରରୁ ସାହାଯ୍ୟ ମିଳିବା କଠିନ
ଭ୍ରାତୃ ବିଦ୍ରୋହରେ ହସ୍ତିନା ଉଚ୍ଛନ୍ନ ହେବାକୁ ଯାଉଛି ନିଶ୍ଚିନ୍ତ
କୁରୁ ପାଣ୍ଡବ, ଭାଇଙ୍କ ମଧ୍ୟରେ କଳହ
ଏଣୁ ହସ୍ତିନାରୁ ସାହାଯ୍ୟ ପାଇବା ସନ୍ଦୋତଭାବରେ ଦୁରୂହ ।୮୨

କୁରୁପାଣ୍ଡବଙ୍କ ଗୁରୁ ଦ୍ରୋଣ ବିପ୍ର କରି ଅଛନ୍ତି କୂଟନୀତି
ଦୁଇମିତ୍ର ରାଷ୍ଟ୍ର ପାଞ୍ଚାଳ ହସ୍ତିନା ମଧ୍ୟରେ ହୋଇଛି ଅପ୍ରୀତି
ମିତ୍ର ରାଜାଙ୍କ, ଜରାସନ୍ଧଙ୍କୁ ବନ୍ଧୁଭାୟୁ
ଆମ୍ଭଙ୍କୁ ସୁରକ୍ଷା ପ୍ରଦାନ ଦିଗରେ ଏହାହିଁ ବଡ ଅନ୍ତରାୟୁ ।୮୩
ଏଣୁ ଏ ସମୟରେ ନିଃସଙ୍ଗ ଭାବରେ ଶତ୍ରୁ ଶକ୍ତିର ସମ୍ମୁଖୀନ
ନହେବା ଛଡ଼ା ଅନ୍ୟ ଗତି ଆଉ ନାହିଁ ପ୍ରକାଶ କରିଲେ ଶ୍ରୀକୃଷ୍ଣ
ପୁଣି କହିଲେ, ଭାରତରେ ଧର୍ମ ବିପନ୍ନ
ଧର୍ମ ଅବତାର ଯେଉଁ ଭୀଷ୍ମବୀର ତାହାଙ୍କୁ ଗ୍ରାସିଛି ଅଧର୍ମ ।୮୪
ଧର୍ମବନ୍ତ ହୋଇ ଅଧର୍ମ ବିପକ୍ଷେ ସଂଗ୍ରାମେ ନୁହନ୍ତି ଭାଜନ
ମୁନିଶ୍ରେଷ୍ଠ ବ୍ୟାସ ଆଧ୍ୟାତ୍ମିକ ଶକ୍ତି ଥାଇ ରହିଛନ୍ତି ମଉନ
ଧର୍ମ ଭୂମିରେ, ଆର୍ଯ୍ୟ ଧର୍ମ ଆଜି ବିପନ୍ନ
ସାଧୁ, ସନ୍ଥ, ବିପ୍ର, ପୁଣ୍ୟାତ୍ମା, ସଜ୍ଜନ ଜଣେକେ ନୁହଁନ୍ତି ଭାଜନ ।୮୫
ବୃଷ୍ଣିଆଡେ ଘୋର ନୈରାଶ୍ୟ ଗ୍ରାସିଛି ରାଜୁତି କରୁଛନ୍ତି ଦୁଷ୍ଟ
ମଥୁରାରେ ହତ୍ୟା, ଲୁଣ୍ଠନ, ଧର୍ଷଣ, ଅଗ୍ନିଦାହ, ରକ୍ତପାତ
ଦେଶବାସୀଙ୍କୁ, ଉଦ୍ଧାର କରିବା ଚିନ୍ତାରେ
ମଥୁରା ଛାଡ଼ିଣ ପଳାଇ ପଶିଲୁ ଗହନ କାନନେ ବ୍ୟଥାରେ ।୮୬
ଆମ୍ଭର ଜୀବନ ଦେଇଣ ରଖିବୁ ମଥୁରାବାସୀଙ୍କ ଜୀବନ
ଏହା ଚିନ୍ତା କରି ରାଜସୁଖ ଛାଡି ଦୁଃଖକୁ କରିଲୁ ବରଣ
ଜୀବନେ ବ୍ରତ, ଅଧର୍ମ କରିବୁ ନିପାତ
ଯେତେ ଦୁଃଖ ଆସୁ କର୍ତ୍ତବ୍ୟ ପଥରୁ ହେବୁ ନାହିଁ କେବେ ବିରତ ।୮୭
ଭାର୍ଗବ କହିଲେ ବୁଝି ପାରୁଛି ମୁଁ ପଡ଼ିଛ ବଡ଼ ଅଡୁଆରେ
ତହିଁରୁ ନିସ୍ତୃତି ପାଇବା ନିମନ୍ତେ ଭ୍ରମଣ କର କାନନରେ
ଗୋପନେ ରହି, କର ଶକତି ସଞ୍ଚରଣ
ଶକ୍ତି ବିନା ଶତ୍ରୁ ଦମନ କରିବା ସମ୍ଭବ ନୁହେଁ କଦାଚନ ।୮୮

ଆମ୍ଭର ବିଚାରେ ବନବାସ ଗୋଟି ହେଲେ ହେଁ ଅତ୍ୟଧିକ କଷ୍ଟ
କୌଣସି ରାଜାର ଆଶ୍ରୟ ନେବାକୁ ନ ବଳାଅ ତୁମ୍ଭର ଚିତ୍ତ
ସ୍ୱାର୍ଥ ସାଧନେ, ଆଶ୍ରୟ ଦାତା ନିରସାଇଁ
ଶତ୍ରୁହାତେ ଟେକି ଦେବାର ନିମନ୍ତେ କେବେ କୁଣ୍ଠିତ ହେବେ ନାହିଁ ।୮୯

ଏ ବିଷୟରେ ମୋର ପରାମର୍ଶ ଅଟେ ତୁମ୍ଭେ ଜନେ ଶକ୍ତିଶାଳୀ
ହୋଇବା ନିମନ୍ତେ ଦୃଢ଼ ବ୍ରତ ପାଳ ଅନ୍ୟର ସାହାଯ୍ୟ ଯା ଭୁଲି
କୃଷ୍ଣ କହିଲେ, ଅନୁରୂପ ମୋହର ଇଚ୍ଛା
ଆପଣଙ୍କ କୃପା ହେଲେ ନିଶ୍ଚିତ ପୂର୍ଣ୍ଣ ହୋଇବ ମନୋବାଞ୍ଛା । ୯୦
ଭାର୍ଗବ କହିଲେ ଅଦୂରେ ସାଗର ତା ତଟରେ ଗୋମନ୍ତକ ଗିରି
ସେଠାରେ ରହିଲେ କାର୍ଯ୍ୟ ସିଦ୍ଧି ହେବ ଅରାତି ନ ପାରିବ ଧରି
ଅଭେଦ୍ୟ ଗିରି, ଅତିକ୍ରମ ଅତ୍ୟନ୍ତ କଷ୍ଟ
ରଥ, ଗଜ, ଅଶ୍ୱ, ପଦାତି ପ୍ରବେଶ ଦୁରୂହ ସେ ଗିରି ସଙ୍କଟ । ୯୧
ସେ ଗିରି ବାସିନ୍ଦା ଅଦମାଧିବାସୀ ଅତିଅନ୍ତ ଅତିଥି ପ୍ରିୟ
ତୁମ୍ଭଙ୍କୁ ଆତିଥ୍ୟ ଦେବାରେ ତାଙ୍କର ଆନନ୍ଦ ହେବ ଅତିଶୟ
ସେଠି ଯା ରହ, ଶ୍ରବଣେ ରାମକୃଷ୍ଣ ପ୍ରୀତ
ଭାର୍ଗବ କହିଲେ ବିଳମ୍ବିତ ନହି ବିଶ୍ରାମ କର ଦୁଇଭ୍ରାତ । ୯୨
ବାଖ୍ୟାନଦେ ପଦେ ଅଧ୍ୟାୟ ସମ୍ପୂର୍ଣ୍ଣ ସୁଜନେ କରହୋ ଶ୍ରବଣ
ବୋଲେ ବୃନ୍ଦାବନ ନ ଧରିବ ଦୋଷ କ୍ଷମା କରିବ ସାଧୁଜନ
କାଳ କୂଳରେ, କରେ ବସି କାବ୍ୟ ରଚନ
ଶ୍ରୀକୃଷ୍ଣ ଚରିତ ମାନସ କାବ୍ୟରେ ବିଭିନ୍ନ ରସ ପରିପୂର୍ଣ୍ଣ । ୯୩

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ମଥୁରା-ଦ୍ୱାରକା ଲୀଳାଖଣ୍ଡେ
ଜରାସନ୍ଧ ମଥୁରା ଆକ୍ରମଣେ ରାମକୃଷ୍ଣଙ୍କ ବନକୁ ପଳାୟନ ଓ ପର୍ଶୁରାମଙ୍କ
ସହିତ ବିଷୟର ବିମର୍ଷେ ନାମ ସପ୍ତମ ଅଧ୍ୟାୟ ସମାପ୍ତଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

**ବୋଲି —** ମନଟାଇରେ
ରାଧା - କୃଷ୍ଣ ରାସରେ ରସ
ଭ୍ରମର ଗୁମ୍ଫାରେ ବାନ୍ଧ ବାଇ ପାତିପାଶ ।
ଯୋଗାଙ୍ଗରେ କୃଷ୍ଣ ରହିଲେ ବାହାରେ
ରାଇ ଅନାହତ ପୁରରେ
ଅନାହତ ପୁରେ କୃଷ୍ଣ ବାସ କଲେ
ରାଈ ବାସ ମଣିପୁରେ । ୧

ଅନାହତେ ଖୋଜ    କୃଷ୍ଣ ବାହାରନ୍ତେ
ଅନାହତେ ଗମନ୍ତ ରାଈ
ଗୋଟିଏ ଘଟରେ    ରାଧା କୃଷ୍ଣଥାଇ
ଭେଟଘାଟ ହୁଅ ନାହିଁ । ୨
ଭୋଗାଙ୍ଗରେ ରାଈ    ବାହାରେ ରହିଲେ
ଅନହତ ପୁରରେ କୃଷ୍ଣ
ଅନହତ ପୁରେ    ରାଈ ଚଳିଗଲେ
ମଣିପୁରେ ବାସ କୃଷ୍ଣ ।୩
ଅନହତ ପୁରୁ    ରାଧା ବାହାରିଲେ
କୃଷ୍ଣ ବାସ ଅନହତରେ
ଏହି ସୂତ୍ରେ ଘଟେ    ଖେଳ ଲାଗିଅଛି
ଯୋଗାଙ୍ଗରେ ଭୋଗ ଅଙ୍ଗରେ । ୪
ରାଧାକୃଷ୍ଣଙ୍କର    ଗୁହ୍ୟ ରହସ
ଚିନ୍ମୟ ବିଜ୍ଞାନ ସୂତ୍ର
ପରକିୟା ପ୍ରୀତି    ହୋଇଲା ଜପତ
ସ୍ୱକୀୟ ପ୍ରଣୟ ଚରିତ ୫।
ଏ ସୂତ୍ରେ ଭଜନ    କରଇ ଯେ ଜନ
ପାନ କରଇ ସୁଧାରସ
ରାଧା କୃଷ୍ଣଙ୍କର    ଏକାଙ୍ଗ ଭଜନ
ସୁବିଜ୍ଞ ଜନେ ବସି ଘୋଷ । ୬
ଦ୍ୱାପର ଯୁଗରୁ    ରହିଥିଲା ବାକି
ଅନନ୍ତ କଳରେ ପ୍ରକାଶ
ଅନନ୍ତ ଗୁମ୍ଫାରେ    ଆଠ ସପ୍ତ ଭକ୍ତ
କରୁଛନ୍ତି ଗୁହ୍ୟ ରସ । ୭
ଗୁପ୍ତ ଅଭିରାମ    ସହଜ ସୂତ୍ରଏ
ହଂସ ସୂତ୍ର ନାମେ ପ୍ରକାଶ
ଅଜପାସୂତ୍ରରେ    ଅଭିନ୍ନ ସୁନ୍ଦର
କରୁଛନ୍ତି ଗୁହ୍ୟ ରସ । ୮
ବାଇ ମନରେ
ରାଧାକୃଷ୍ଣ ରସରେ ରସ ।

- ● -

# ଅଷ୍ଟମ ଅଧ୍ୟାୟ

## ରାଜା ଧୃତରାଷ୍ଟ୍ରଙ୍କ ମନ୍ତ୍ରଣା

### ରାଗ - କଲ୍ୟାଣ ଆହାରୀ

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ କର ଆହେ ସୁବିଜ୍ଞଜନ
ପଦପଦକରେ ରସ ପୂରି ଅଛି ରସ କଲ୍ଲୋଳର ସମାନ
ରାଜନ, ଗାଙ୍ଗେୟ, ସଞ୍ଜୟ, ବିଦୁର
ଦ୍ରୋଣ, ଭୂରିଶ୍ରବା ପାଶରେ ବସାଇ କରନ୍ତି ଗମ୍ଭୀର ବିଚାର । ୧
ବୋଲନ୍ତି ରାଜନ ମୋ ଶତ ନନ୍ଦନ ସହିତ ପାଣ୍ଡୁ ପାଞ୍ଚପୁତ୍ର
ଯୋଗ୍ୟ ହୋଇଲେଣି କୁମାର ସକଳେ ବୁଝିବାକୁ ଶାସନତନ୍ତ୍ର
ବୋଲନ୍ତୁ, କାହାକୁ କରିବା ନୃପତି
ସ୍ୱାଧୀନ ଭାବରେ ମତ ବ୍ୟକ୍ତ କର ମନ ମଧ୍ୟେ ନ ରଖି ଭ୍ରାନ୍ତି । ୨
ଧୃତରାଷ୍ଟ୍ର କଥା ଶୁଣି ଭୂରିଶ୍ରବା କହିଲେ ଏହା ମୋର ମତ
କୁରୁ କୁଳ ଜ୍ୟେଷ୍ଠ ସୁତ ଯୁଧିଷ୍ଠିର ରାଜ୍ୟରେ ହେଉ ନରନାଥ
ଜ୍ୟେଷ୍ଠ ଥାଉଁ, କନିଷ୍ଠ ନ ହୁଏ ରାଜା
ସର୍ବ ଗୁଣେ ଯୋଗ୍ୟ ପୁତ୍ର ଯୁଧିଷ୍ଠିର ପ୍ରଜା କରନ୍ତି ପାଦ ପୂଜା । ୩
ଧାର୍ମିକ - ଦୟାଳୁ - ପ୍ରଜାନୁରଞ୍ଜନ ସତ୍ୟସନ୍ଧ ଓ ପ୍ରଷ୍ଟ ବାଦୀ
ଶରଣବତ୍ସଳ - ଅଜାତଶତ୍ରୁ ସେ ନୁହନ୍ତି କାହାରେ ପ୍ରତିବାଦୀ
ବିଶେଷେ, ଶାନ୍ତଶିଷ୍ଟ ଗୁଣ ସମ୍ପନ୍ନ
ତାଙ୍କ ହାତେ ରାଜ୍ୟଭାର ଦେଇ ତୁମ୍ଭେ ସୁଖଶାନ୍ତିରେ କାଟ ଦିନ । ୪
ଯୁଧିଷ୍ଠିରେ ରାଜା କରାଇଲେ ରାଜ୍ୟେ ଧର୍ମ ରାଜ୍ୟ ସ୍ଥାପିତ ହେବ
ନିର୍ଦ୍ୱନ୍ଦରେ ରାଜ୍ୟ ଶାସନ ଚାଲିବ ସତ୍ୟ ଶାନ୍ତି ବୃଦ୍ଧି ପାଇବ
ବିବେକ, ବିଧ୍ୱଂସ ମାନୀ ଦୁର୍ଯ୍ୟୋଧନ
ଅଳପ ଦୋଷକୁ ବହୁ ଦଣ୍ଡ ଦିଏ ସେ ପ୍ରତିହିଂସା ପରାୟଣ । ୫
ଗର୍ବୀ, ଅହଂକାରୀ ଅତି ଅଭିମାନୀ ଗୁରୁ ଇଷ୍ଟ ନ କରେ ମାନ୍ୟ
ଡାକି ଆଣି ନିଜ ମାତୁଳ ବଂଶକୁ ଅନାୟସେ କଲା ନିଧନ
ଦୁର୍ଜନ, ସ୍ୱଭାବେ କରେ ମନ୍ଦ କର୍ମ
ସେ ଯେବେ ରାଜ୍ୟରେ ନୃପତି ହୋଇବ ବିଘ୍ନିତ ହେବ ରାଜଧର୍ମ । ୬

ପାଣ୍ଡୁର ସଞ୍ଚିତ ଏ ପଞ୍ଚ କଣ୍ଟକ ଚୂର୍ଣ୍ଣ ହାତେ ଅର୍ପଣ କଲ
ଭାତୃସ୍ନେହ ରକ୍ଷା ନିଜେ ହୋଇ ଦୁଃଖୀ କାନନେ ଜୀବନ ତେଜିଲ
ତୁମ୍ଭେ ତ, ଭୋଗୁଛ ପାଣ୍ଡୁର ଅର୍ଜନ
ପାଣ୍ଡୁ ପୁତ୍ରେ ରାଜ୍ୟେ ରାଜା କରାଇଣ ମୁକ୍ତି ହଅ ଭାଇର ଋଣ । ୭

ଜ୍ୟେଷ୍ଠ ସୁତ ଥାଉଁ କନିଷ୍ଠ ନୃପତି ରାଜତନ୍ତ୍ର ବିଧି ନୁହଇ
ଏଣୁ ମୋ ବିଚାରେ ଯୁଧିଷ୍ଠିର ରାଜା ହୋଇବା ଉଚିତ ଅଟଇ
ଉଚିତରେ, ପ୍ରତିବାଦ କଲେ ନୃପତି
କହିଲେ ପୂର୍ବରୁ ଦୃଷ୍ଟାନ୍ତ ରହିଛି କିମ୍ପା ନ କହ ଭାବିଚିନ୍ତି ? ୮

ସୂର୍ଯ୍ୟ ବଂଶେଜାତ ଦଶରଥସୁତ ରାମ ହେଲେହେଁ ଜ୍ୟେଷ୍ଠ ସୁତ
ତାଙ୍କୁ ତେଜିରାଜ୍ୟ କପରି ଦେଲେ ସେ ଅନୁଜ ତନୁଜ ଭରତ ?
ବିଦୁର, କହିଲେ ଖଳ ବାକ୍ୟ କଲି
ସେ କଥା ନୋହିଲା ରାଜା ପ୍ରାଣ ଗଲା କେବଳ କଥା ଯା ରହିଲା । ୯

ଆହେ ଜ୍ୟେଷ୍ଠଭ୍ରାତ ହେଲଯା ଦୃଷ୍ଟାନ୍ତ ବୁଝି ନାହିଁ ତହିଁର ତତ୍ତ୍ୱ
ରାଜ୍ୟ ଲଭ ପାଇଁ ଶ୍ରୀରାମ ଭରତ ମଧ୍ୟରେ ନଥିଲା ଦ୍ୱିମତ
ମନ୍ଥରା, କୁମନ୍ତ୍ରଣା ପାଇ କୈକେୟୀ
ପୂର୍ବେ ଦେଇଥିବା ବର ଅନୁଯାୟୀ ନେଲେ ରାଜ୍ୟ ସତ୍ୟ କରାଇ । ୧୦

ପିତା, ମାତା, ଭ୍ରାତା, ଗୁରୁ, ମନ୍ତ୍ରୀ, ସେନା, ରାଜ୍ୟବାସୀ, ପରିଜନ
ସର୍ବେ ଏକ ମୁଖେ କାନନେ ଯିବାକୁ କରୁଥିଲେ ମଧ୍ୟ ବାରଣ
ଶ୍ରୀରାମ, ନିଜ ବଚନରେ ଅଟଳ
ପିତୃ ସତ୍ୟ ପାଳି ବନବାସ କଲେ କୌଶଲ୍ୟା ଦେବୀଙ୍କ ଦୁଲାଳ । ୧୧

ପିତା ନାଶ ଗଲେ ମାତାଏ ବିଧବା ବୈରାଗୀ ହୋଇଲେ ଭରତ
ତଥାପି ରାଜ୍ୟକୁ ନ ଫେରି କାନନେ ରହିଲେ ପାଳି ପିତୃସତ୍ୟ
କାନନେ, ଯିବା କାଳେ ଦୁଇ ସୋଦର
ନ ଥିଲେ ଗୃହରେ ମାତୁଳାଳୟରେ ରହିଥିଲେ ଦୁଇ କୁମର । ୧୨

ମରଣ ପ୍ରପନ୍ନ ପିତା ଦଶରଥ ଜନନୀ ଅତ୍ୟନ୍ତ ବିକଳ
ପରିବାର ତଥା ପାରିଷଦ ବର୍ଗ ହରାଇଛନ୍ତି ଅକଳକୂଳ
ଅତ୍ୟନ୍ତ, ନିଷ୍ଠୁର ହୃଦୟ ହୋଇଣ
ପିତାଙ୍କର ସତ୍ୟ ପାଳନ ବ୍ୟଥାକୁ ବରିବା ସୁପୁତ୍ର ଲକ୍ଷଣ । ୧୩

ପିତାଙ୍କର ମୃତ୍ୟୁ ବାର୍ତ୍ତା ପାଇ ମଧ୍ୟ ଭରତଙ୍କ ଅନୁରୋଧରେ
ବନବାସ ତେଜି ରାଜ୍ୟେ ନ ଫେରିଲେ ଅଟଳ ନିଜ ନିଷ୍ପତ୍ତିରେ
ଶ୍ରୀରାମ, ମର୍ଯ୍ୟଦା ପୁରୁଷ ଉତ୍ତମ
ଲୋକଙ୍କ ମୁଖରେ ପ୍ରଶଂସିତ ହେଲା ଶ୍ରୋତା କଲେ ଶତ ପ୍ରଣାମ । ୧୪
ଏଥିରୁ ଏକଥା ସ୍ୱତଃ ପ୍ରମାଣିତ ବିରୋଧରେ ଶତ୍ରୁତା ବୃଦ୍ଧି
ନିଜ ଅଧିକାର ସାବ୍ୟସ୍ତେ ବିବାଦ ଉପୁଜେ ଥାଏ ନିରବଧି
ତ୍ୟାଗରେ, ଜୟ କରାଯାଏ ଅନ୍ୟରେ
ତ୍ୟାଗରେ ଆନନ୍ଦ ଭୋଗେ ନିରାନନ୍ଦ ନିହିତ ଥାଏ ନିରନ୍ତରେ । ୧୫
ନୀଚ ଲୋକ ମାନେ ଭୋଗରେ ଆକୃଷ୍ଟ ହୋଇଲେ ବେଳେ ଉଚ୍ଚ ମାନେ
ଭୋଗକୁ ଉପେକ୍ଷା କରିଣ ଆଦର୍ଶ ମାର୍ଗରେ ଥାନ୍ତି ଅନୁକ୍ଷଣେ
ନୀଚଙ୍କ, ପ୍ରତି ପ୍ରେମ ଦରଶନେ
ଉଚ୍ଚମନା ବ୍ୟକ୍ତି ପ୍ରୀତି ଅନୁରାଗେ ସୃଷ୍ଟି କରେ ପ୍ରେମ ବିଧାନେ । ୧୬
ବାହୁ ବଳେ ହୃଦ ଜୟ ନ କରିଣ ତ୍ୟାଗ, କ୍ଷମା, ସହୃଦୟତା
ବଳେ ସଭିଙ୍କର ହୃଦୟକୁ ଜୟ କରୁଥିବା ଲୋକ ଦେବତା
ତାହାହିଁ, କରିଛନ୍ତି ପ୍ରଭୁ ଶ୍ରୀରାମ
ସୂର୍ଯ୍ୟ ବଂଶ ପରଂପରା ଅନୁକ୍ରମେ ପ୍ରତିଜ୍ଞା ପାଳନ ସ୍ୱଧର୍ମ । ୧୭
ପରିବାର, ପାରିଷଦ ତଥା ପ୍ରଜା ଭଲ ପାଉଥିଲେ ଅତି
ଏଣୁ ଯେତେବେଳେ ଚାହିଁବେ ରାଜ୍ୟରେ ହୋଇ ପାରିବେ ନରପତି
ଏ କଥା, ଜାଣି ତେଜିଲେ ସିଂହାସନ
ଅଧିକନ୍ତୁ ଲୋକ ମତ ସୃଷ୍ଟି ପାଇଁ ବନବାସେ କଲେ ଗମନ । ୧୮
ସେ ବନକୁ ଯାଇ ନ ଥିଲେ କୈକେୟୀ ହୋଇ ନ ଥାନ୍ତେ ନିନ୍ଦିତ
ପିତା ଦଶରଥ ସତ୍ୟଭ୍ରଷ୍ଟ ତଥା ଧର୍ମ ଦ୍ରୋହୀ ରୂପେ କଥିତ
ଶ୍ରୀରାମ, ଆଦର୍ଶ ସ୍ଥାପିଲେ ଜଗତେ
ବନକୁ ନ ଯାଇ ରାଜା ହୋଇଥିଲେ ନୋହି ଥାନ୍ତା ସୁଖ୍ୟାତି ଏତେ ।୧୯
ତାହାଙ୍କ ମନରେ ସିଂହାସନ ପ୍ରତି ନ ଥିଲା ଏତେଟିକେ ଲୋଭ
ସେ ଘର କଳିକୁ ସହଜେ ମେଣ୍ଟାଇ ଦେବା ହେତୁ ମହାନୁଭବ
ଶ୍ରୀରାମ, କଲେ ଯେ ବ୍ରତାନୁସରଣ
ତଦ୍ୱାରା ସଭିଙ୍କ ହୃଦ ଜୟ କରି ମର୍ଯ୍ୟାଦା ପୁରୁଷ ପ୍ରମାଣ । ୨୦

ଏତେ ବଡ ତ୍ୟାଗ କରିବା ସହଜ ବ୍ୟାପାର ନୁହଇଁ ଜଗତେ
ଜାଣୁ ଜାଣୁ ଦୁଃଖ କଷ୍ଟକୁ ବରଣ କିଏ କରେ ଅପରହ୍ନତେ
ଶ୍ରୀରାମ, କେବଳ ଦୈତ୍ୟ ନିସୂଦନ
ପାଇଁ ଅବତାର ନ ହୋଇ ପରନ୍ତୁ ଲୋକ ଶିକ୍ଷା ଦେବା କାରଣ । ୨୧
ରାମ ଅବତାରେ ଯାହା କରିଛନ୍ତି ନାହିଁ ତାହାର ପଟାନ୍ତର
ସେଥିପାଇଁ ଲୋକେ ରାମ ରାଜ୍ୟ କଥା ଘୋଷୁଅଛନ୍ତି ନିରନ୍ତର
ଅହଲ୍ୟା, କେତେ କାଳ ହୋଇ ପାଷାଣ
ପଡ଼ି ରହିଥିଲେ ତାହାଙ୍କୁ ଉଦ୍ଧାର କରିଲେ କୌଶଲ୍ୟା ନନ୍ଦନ । ୨୨
ସୀତା ଅନ୍ୱେଷଣ କାଳେ ରଘୁନାଥ ଜଟାୟୁର ଦୁଃଖ ଦେଖିଣ
ନିଷ୍କାମ ଭକତ କରି ପକ୍ଷୀ ଜାତି ପାଇଲା ପ୍ରଭୁଙ୍କ ଦର୍ଶନ
ସ୍ୱହସ୍ତେ, ସତ୍କାର କଲେ ତା ଶରୀର
ପତିତପାବନ ରଘୁପତି ରାମ ଜଗତେ ହୋଇଲେ ପ୍ରଚାର । ୨୩
ହଠ ଯୋଗ ଜାଣି ନ ଥିଲା ଶବରୀ ନିଷ୍କାମ ଭକତି ବଳରେ
ପ୍ରଭୁଙ୍କ ଦର୍ଶନ ଇଚ୍ଛି ବର୍ଷ ବର୍ଷ ବସି ରହିଥିଲା କୁଟୀରେ
ଦର୍ଶନ, ଦେଇ କରିଲେ ଇଚ୍ଛା ପୂର୍ଣ୍ଣ
ତା କର କମଳୁ ବରକୋଳି ଖାଇ ହେଲେ ଭକ୍ତର ଭଗବାନ । ୨୪
ସକାମ ଭକତି ତା ସଙ୍ଗେ ସମାନ ହୁଅଇ ନାହିଁ କଦାଚନ
ରାଜା ଦଶରଥ ଜ୍ୱଳନ୍ତ ଦୃଷ୍ଟାନ୍ତ ପ୍ରମାଣ କରେ ରାମାୟଣ
ତାଙ୍କର, ନ ଥିଲା ସେପରି ସୁଭାଗ୍ୟ
କାମନା ରଖିଣ ଥିବାରୁ ମନରେ ବଞ୍ଚିତ ହୋଇଲେ ସୁଯୋଗ । ୨୫
ମରଣ ସମୟେ ପାଖରେ ନ ଥିଲେ ଦେବାକୁ ତୁଣ୍ଡରେ ସଲିଳ
ପୁଣି ପିଣ୍ଡଦାହ ସମୟେ ମୁଖାଗ୍ନି ଦେବାକୁ ନ ଥିଲେ ଦୁଲାଳ
ନୃପତି, ନ ଦେଖିଲେ ପୁତ୍ରଙ୍କ ମୁଖ
ଏହାଠାରୁ ବଳି ପିତାଙ୍କ ଭାଗ୍ୟରେ ଅଧିକ କିବା ଥାଇ ଦୁଃଖ ? ୨୬
ମିତ୍ରପଣେ ରାମ ରଖି ଯାଇଛନ୍ତି ଜଗତେ ଅକ୍ଷୟ କୀରତି
ମିତ୍ର ପାଇଁ ମିତ୍ର କଣ କରି ପାରେ ଦୃଷ୍ଟାନ୍ତ ଦେଖାଇ ଅଛନ୍ତି
ପ୍ରଥମେ, ଆପଦୁ କରିବ ତାରଣ
ତାପରେ ନିଜର ଉଦ୍ଦେଶ୍ୟ ପୂରଣେ ଅବଶ୍ୟ କରିବ ଚିନ୍ତନ । ୨୭

ଆଗେ ଦୁଇ ଗୁଣ ଉପକାର କରି ପ୍ରତ୍ୟୁପକାର ଲଭ ପାଇଁ
ମିତ୍ରର ସାହାଯ୍ୟ କାମନା କରିବା ପରୋକ୍ଷେ ଅଛନ୍ତି ସୂଚାଇ
ସୁଗ୍ରୀବ, ପାଖକୁ ସୌମିତ୍ରି ପଠାଇ
ମିତ୍ର ପ୍ରତି ମିତ୍ର କର୍ତ୍ତବ୍ୟ ବୋଧତା ଧ୍ୟାନେ ଦେବାକୁ ସୂଚାଇ । ୨୮

ଏକଦା କାନନେ ଭ୍ରମଣ ସମୟେ ଦେଖିଣ ଭ୍ରାତାଙ୍କୁ ବିଷର୍ଣ୍ଣ
ଭାବିଲେ ଲକ୍ଷ୍ମଣ ବୋଧେ ଭାଉଜଙ୍କୁ କରୁଛନ୍ତି ହୃଦେ ସ୍ମରଣ
ବିଚାରି, ବିନୟେ ବୋଇଲେ ବଚନ
ସିଂହାସନ ତେଜି ବନେ ଆସିବାକୁ କରୁଥିଲି ମୁହିଁ ବାରଣ । ୨୯

ମାତ୍ର ମୋ କଥାକୁ ଶ୍ରବଣ ନ କରି ବନକୁ ଆସି ରଘୁବୀର
ରାଜ୍ୟ-ପତ୍ନୀ ହରା ହୋଇ ବହୁ ଦୁଃଖ ଭୋଗ କରୁଛ ନିରନ୍ତର ;
ଘେନିଲ, ନାହିଁ ଏହି ଦାସର ଗିର
ଆପଣଙ୍କ ଦୁଃଖ ଦେଖି ମୋ ହୃଦୟ ଫାଟି ଯାଉଛି ଶତଧାର । ୩୦

ଅନୁଜ ବଚନ ଶ୍ରବଣେ ଅଗ୍ରଜ କୋହ ମିଶା କଣ୍ଠେ କହିଲେ
ପତ୍ନୀ ପାଇଁ ମୁହିଁ ବ୍ୟସ୍ତ ନୁହେଁ ଭାଇ ସିଂହାସନେ ମନ ନ ବଳେ
ନୁହଇ, କାନନ ବାସ କଷ୍ଟେ ବ୍ୟସ୍ତ
ମୋ ଭାଇ ଭରତ କଷ୍ଟକୁ ସୁମରି ମୋହର ପ୍ରାଣ ଦଗ୍ଧୀଭୂତ । ୩୧

କେତେ ଅଲଅଳେ ବଢ଼ିଥିଲା ଭାଇ ଆଜ ସେ ବିରହେ ଜଳଇ
ସର୍ବ ତ୍ୟାଗ କରି ଯତି ବେଶ ଧରି ଜୀବନରେ ବଞ୍ଚି ଅଛଇ
ତା କଥା, ସ୍ମରଣେ ବ୍ୟଗ୍ରର କାରଣ
ମନ କଥା ଖୋଲି କହି ରଘୁରାଣ କାରୁଣ୍ୟ ସଲିଳେ ନିମଗ୍ନ । ୩୨

ଶରଣାଗତ ପ୍ରତିବତ୍ସଳତାର ଏ ଅପୂର୍ବ ଉ ଦା ହ ର ଣ
ତାରୁ ବଳି ବଡ଼ ଆଉ କଣ ଅଛି ବିଚାର କରିଲେ ଲକ୍ଷ୍ମଣ
ସମସ୍ୟା, ନ ଦେଇ ହୋଇଲେ ମଉନ
ନୟନରୁ ନୀର ଧାର ଗଡ଼ିଯାଇ ଧୋଇ ଦେଲା ପ୍ରଭୁ ଚରଣ । ୩୩

ଅନୁଜ ଲକ୍ଷ୍ମଣ ବିଚାରିଲେ ଚିତ୍ତେ ମର୍ତ୍ତ୍ୟପୁରେ ପ୍ରଭୁ ଜନ୍ମିଣ
ଯେ କରୁଣ ରସ ଧାର ବୁହାଇଲେ ଶୀତଳ କଲେ ବିଶ୍ୱପ୍ରାଣ
ସର୍ବଦା, ପରହିତ ଚିନ୍ତନେ ମନ
ବୈଦେହୀ ବିରହ ସନ୍ତାପିତ ପ୍ରାଣ ହେଲେ ହେଁ ସେ ଦୁଃଖ ନଗଣ୍ୟ ।୩୪

ବନବାସେ ଯୋଗୀ ଜୀବନ ଯାପନେ ଦୁଃଖ-କଷ୍ଟେ କଟିଛି ଦିନ
ଧୋବଣୀ କଥାରେ ପତ୍ନୀ ବିୟୋଗରେ ହୋଇଅଛି ଶେଷ ଜୀବନ
କରୁଣ, ରସରୁ ସମାପ୍ତ ସୃଷ୍ଟି
ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କେବଳ କରୁଣ କରୁଣାର ବୃଷ୍ଟି । ୩୫

ସେ ଯେଉଁ ଆଦର୍ଶ ରଖି ଯାଇଛନ୍ତି ଜନଗଣ ତାଙ୍କ ପାବନ
ଚରିତକୁ ପାଠ କରି ଆତ୍ମ ହରା ହେଉ ଅଛନ୍ତି ସଦା ଦିନ
ଶ୍ରୀରାମ, ଚରିତର ଏ ବିଶେଷତ୍ୱ
କୁଳ ପରମ୍ପରା ବଂଶର ମର୍ଯ୍ୟାଦା ରକ୍ଷଣରେ ଶ୍ରେଷ୍ଠ ଭରତ । ୩୬

ଜ୍ୟେଷ୍ଠ ଆସନରେ କନିଷ୍ଠ ତନୟ ବସିବାକୁ ଅନୁପଯୁକ୍ତ
ଏଣୁ ଜ୍ୟେଷ୍ଠ ଭ୍ରାତା ପାଦେ ସମର୍ପିଲେ ରାଜ୍ୟ ସିଂହାସନ ଭରତ
ତହିଁକି, ନ ଥିଲା ଭାଇରେ ବିବାଦ
ପରନ୍ତୁ ଭରତ ପ୍ରସ୍ତାବେ ଶ୍ରୀରାମ କରିଥିଲେ ପ୍ରତିବାଦ । ୩୭

ତପନ ବଂଶର କୀର୍ତ୍ତି ସୁବିଦିତ ଜ୍ୟେଷ୍ଠଙ୍କ ପ୍ରତି ଅନୁରକ୍ତ
ଥିବାରୁ ଭରତ ଭ୍ରାତାଙ୍କ ପାଦୁକା ପୂଜନ କଲେ ଶ୍ରେଷ୍ଠ ଚିତ୍ତ
ହୋଇଲେ, ସେବକ ରାଜ ପ୍ରତିନିଧି
ରାଜା ନ ହୋଇଣ ରାଜ୍ୟ ରକ୍ଷା କଲେ ତେଜ୍ୟା କରି ସୁଖ ସମୃଦ୍ଧି । ୩୮

ନିଷ୍ଠାପର ଭ୍ରାତୃ ପ୍ରେମ ନିଦର୍ଶନ ଦେଖାଇ ଅଛନ୍ତି ଭରତ
ଜ୍ୟେଷ୍ଠର ସେବକ ସର୍ବଦା କନିଷ୍ଠ ରହିଗଲେ ଏହି ଦୃଷ୍ଟାନ୍ତ
ଆଦର୍ଶ, ରାଜତନ୍ତ୍ର ତତ୍ତ୍ୱ ଅଟଇ
ଯୁଗ ଯୁଗ ଧରି ଜଗତକୁ ଶିକ୍ଷା ଦେଉଅଛି ଜାଣ ହେ ଭାଇ । ୩୯

ସେହି ଆଦର୍ଶକୁ ଗ୍ରହଣ କରିଣ ପାଣ୍ଡୁ ହସ୍ତିନା ନୃପବର
ତୁମ୍ଭେ ରହିଁବାରୁ ଜ୍ୟେଷ୍ଠର ଦେଇ ବାସ କଲେ ବିପିନ ଘୋର
ଅନ୍ଧତ୍ୱ, ଯୋଗୁ ରାଜ କାର୍ଯ୍ୟେ ଅକ୍ଷମ
ଥିଲେ ମଧ୍ୟ ତୁମ୍ଭେ ତୁମ୍ଭ ହାତେ ରାଜ୍ୟ ଦେଇ କଲେ ରାଜ୍ୟ ରକ୍ଷଣ । ୪୦

ରାଜକୋଷୁ ଧନ ଦୌଲତ ନ ନେଇ କାନନରେ କାଟିଲେ ଦିନ
ବନ୍ୟ ଫଳମୂଳ ଝରଣାର ଜଳ ପତିପତ୍ନୀ କଲେ ଭୋଜନ
କାନନେ, ରହିଲେ କରିଣ କୁଟୀର
ପାଣ୍ଡୁଙ୍କ ସଞ୍ଚିତ ଏ ହସ୍ତିନା ରାଜ୍ୟ ମୋ ଅଭିଷେକେ ନୃପବର । ୪୧

ପାଣ୍ଡୁ ରାଜ୍ୟ ପାଣ୍ଡୁ ପୁତ୍ରଙ୍କୁ ଫେରାଇ ଦାନ ହେ କର୍ତ୍ତବ୍ୟ ତୁମ୍ଭର
କୁଳେ ଯୁଧିଷ୍ଠିର ଜ୍ୟେଷ୍ଠ ସୁତ ହେତୁ ରାଜ୍ୟରେ ପୂର୍ଣ୍ଣ ଅଧିକାର
ଫେରାଇ, କର ଜ୍ୟେଷ୍ଠ ପିତାର କାର୍ଯ୍ୟ
ଆଦର୍ଶ ଦେଖାଇ ଏ ପୁଣ୍ୟ ଭାରତେ ହୋଇ ରହ ପୁତ୍ରଙ୍କ ପୂଜ୍ୟ । ୪୨

ଆହେ ଜ୍ୟେଷ୍ଠ ଭ୍ରାତା ମାନ ମୋର କଥା କର ନା ପୁତ୍ରଙ୍କୁ ପର
ସ୍ୱଅ ପୁତ୍ରଙ୍କ ସମାନ ବିଚାରି ଯଶ କୀରତ ବୃଦ୍ଧି କର
ନୋହିଲେ, ରାଜ୍ୟର ହୋଇବ ଅନିଷ୍ଟ
ବୁଦ୍ଧି ଓ ବିଚାର ସମାଧାନ କର ଭୁଲି ଯାଇ ଛନ୍ଦ କପଟ । ୪୩

ସେମାନେ ତୋ ପାଦେ ଭକ୍ତ କରୁଥାନ୍ତି ଜ୍ୟେଷ୍ଠ ଜନକ ଜ୍ଞାନ କରି
ନିତ ପ୍ରତି ଆସି ପ୍ରଣାମ କରନ୍ତି ପଞ୍ଚ ପତ୍ନୀଙ୍କ ପାଦ ଧରି
ତୋହର, ପୁତ୍ରେ ତ ନ କରନ୍ତି ମାନ୍ୟ
ବଡ ଅଭିମାନୀ ପୁଣି ଅବିବେକୀ ହିତ ଅହିତ ଜ୍ଞାନ ଶୂନ୍ୟ । ୪୪

ବିଶ୍ୱସ୍ତ ପୁତ୍ରଙ୍କ ପ୍ରତି ବୈରଭାବ ନ ଧର ହସ୍ତିନା ନୃପାଇଁ
ଧର୍ମ ଛଡା ହେଲେ ବିପତ୍ତି ପଡିବ ହଠ ନଠା ହୋଇବ ଭାଇ
କରନ୍ତୁ, ଧର୍ମ ନ୍ୟାୟମତେ ବ୍ୟବସ୍ଥା
ପକ୍ଷପାତ କଲେ ପକ୍ଷାଘାତ ରୋଗୀ ପ୍ରାୟକ ହୋଇବ ଅବସ୍ଥା । ୪୫

ବିଦୁର କଥାରେ କୋପେ ପ୍ରଜ୍ୱଳିତ ହୋଇଣ ଅନ୍ଧ ନୃପମଣି
କହିବାକକରେ ଉଆଇ ଧଇଲେ ବିଦୁରଙ୍କୁ ଦେବାକୁ ହାଣି
ଉପୁରେ, ବିଦୁର ତେଜିଲେ ଆସନ
କହିଲେ ତୋହର ସର୍ବନାଶ ବେଳ ହରାଇ ବସି ଅଛୁ ଜ୍ଞାନ । ୪୬

ବିଦୁର କଥାକୁ ସମର୍ଥନ କଲେ ଭୂରିଶ୍ରବା, ଗାଙ୍ଗେୟ ଦ୍ରୋଣ
ସମବେତ କଣ୍ଠେ ସେମାନେ କହିଲେ ଯୁଧିଷ୍ଠିର ହେଉ ରାଜନ
କଥାକୁ, କଲନା ଅନ୍ଧ କର୍ଣ୍ଣପାତ
ପୁତ୍ର ମୋହ ତାକୁ ଗ୍ରାସ କରି ଅଛି ହିତକୁ ମଣଇ ଅହିତ । ୪୭

ବହୁମତ ପ୍ରତି ସମ୍ମାନ ନ ଦେଇ ଏକମତ କଲା ଗ୍ରହଣ
ଏକଛତ୍ରବାଦୀ ନୃପତିର କାର୍ଯ୍ୟ କରଣେ ବଳାଇଲା ମନ
ମନ୍ତ୍ରଣା, ନ କଲା ବୁଦ୍ଧିମତ ଗ୍ରହଣ
ଭାରତୀୟ ରାଜତନ୍ତ୍ର ପରଂପରା ପାଳନେ ଘୋର ବ୍ୟତିକ୍ରମ । ୪୮

ବୋଲେ ବୃନ୍ଦାଦାସ କଳଙ୍କୀଡ଼ ବୁଣି ଦେଲେ ନୃପତି ଧୃତରାଷ୍ଟ୍ର
ବୀଜ ଯେବେ ବୃକ୍ଷ ରୂପକୁ ଧରିବ ରାଜ୍ୟ ହୋଇବ ନଷ୍ଟଭ୍ରଷ୍ଟ
ଅଧ୍ୟାୟ, ଅଣଚାଶ ପଦେ ସମ୍ପୂର୍ଣ୍ଣ
ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣେ ସୁଜ୍ଞଜନେ ଲୋଭ ମନ । ୪୯

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ଧୃତରାଷ୍ଟ୍ରଙ୍କ ମନ୍ତ୍ରଣା ବୃତ୍ତାନ୍ତେ ନାମ ଅଷ୍ଟମ ଅଧ୍ୟାୟ ସମ୍ପୂର୍ଣ୍ଣ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

ବୋଲି— ୧

ବାଇ ମନରେ
ଦିଅଁଙ୍କୁ ହୋଇଛି ଜ୍ୱର
ଦେଉଳ ଦୁଆରେ କୋଲପ ପଡ଼ିଛି
ମନା ଯିବାକୁ ଭିତର । ( ଘୋଷା )

ଜଗତ କରତା ଅଟନ୍ତି ଯେ ପ୍ରଭୁ
ସ୍ନାନ ପୂନେଇ ଦିନରେ
ସୁନା କୂଅ ଜଳେ ସ୍ନାନ କରିବାରୁ
ନ ଯମ ଧରିଛି ଶିରେ । ୧

ମଣ୍ଡପରୁ ଆସି ଦେଉଳରେ ପଶି
ଅଣସର ଘରେ ବାସ
ନୈବେଦ୍ୟ ତଳେ ତୃଣ ଶଯ୍ୟା କରି
ଶୋଇଛନ୍ତି ଉପବାସ । ୨

ପ୍ରତିପଦାଠାରୁ ଅମାବାସ୍ୟା ଯାଏଁ
ପନ୍ଦର ଦିନର ପକ୍ଷ
ଦେଉଳ ଦୁଆର ମନା ହୋଇଅଛି
ଦିଅଁଙ୍କ ଦେହ ଅସୁଖ । ୩

ଏ ପନ୍ଦର ଦିନ ସଭିଙ୍କୁ ବାରଣ
କେବଳ ଦଇତାପତି
ଅଙ୍ଗଦେହ୍ନା ଭକ୍ତେ ଶ୍ରୀଅଙ୍ଗ ମର୍ଦ୍ଦନ
କରନ୍ତି ରହିଣ ତହିଁ । ୪

ପଇତାଙ୍କ ଛଡ଼ା ଅନ୍ୟ ସମସ୍ତଙ୍କୁ
ବାରଣ ଦେଉଳ ଦ୍ୱାର
ବସ୍ତି କରତାଙ୍କୁ ଜ୍ୱର ହୋଇଅଛି
ବିଶ୍ରାମ ଦିନ ପନ୍ଦର । ୫

ଦେହର ତାତରେ କ୍ଷୀର ଫୁଟିଯାଏ
ଶ୍ରୀ ଅଙ୍ଗେ ଘାରୁଛି ଜ୍ୱର
ପଥି ପାଙ୍ଗରେ କାଳ କାଟୁଛନ୍ତି
ନ ଛୁଚେ ଅନ୍ନ ଆହାର । ୬

ଭାଇ ମନରେ
ଦିଅଁଙ୍କୁ ହୋଇଛି ଜ୍ୱର ।

# ନବମ ଅଧ୍ୟାୟ
## ଗୋମନ୍ତକ ଯୁଦ୍ଧ ଓ ଜରାସନ୍ଧର ପରାଜୟ
### ରାଗ - ବଙ୍ଗଳାଶ୍ରୀ

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ କର ଆହେ ସୁଧୀଜନ
ମହେନ୍ଦ୍ର ଗିରିରେ କିଛି କାଳ ରହି ଗୋମନ୍ତେ କଲେ ଗମନ । ୧
ଯାତ୍ରାପଥେ ବଳରାମ ପଚାରିଲେ ହେ ଭାର୍ଗବ ଧୀରେ ଦେଇ
ପୃଥିବୀ ରାଜାଙ୍କୁ ଜୟ କରି କାହିଁ ନ କଲ ରାଜ୍ୟ ଶାସନ । ୨
ଆପଣ ପୃଥ୍ୱୀର ରାଜା ହୋଇଥିଲେ ତଦ୍ୱାରା ଦୁଷ୍ଟ ରାଜାଏ
ମୁଣ୍ଡ ଟେକିବାକୁ ଶକତି ନ ଥାନ୍ତା ନାଶ ଯାଇଥାନ୍ତେ ଜୁଇଁ । ୩
ଜରାସନ୍ଧ ପରି ଦୁଷ୍ଟ ନରପତି ପୃଥ୍ୱୀ ଜୟ କରିବାକୁ
ସ୍ୱପ୍ନ ଦେଖିବାକୁ ସମର୍ଥ ନୁହନ୍ତେ ଇଚ୍ଛା ତାହା ଜାଣିବାକୁ । ୪
ବଳରାମ କଥା ଶୁଣି ପରଶୁରାମ କହିଲେ ଶୁଣ ରହସ୍ୟ
ପୃଥିବୀର ଲୋକେ ଜାଣନ୍ତି ନାହିଁତ ମୋ ମନର କି ଉଦେଶ୍ୟ । ୫
ମୁଁ କାହିଁକି କାର୍ତ୍ତବୀର୍ଯ୍ୟ ବଧ କଲି ହୋଇଣ ପରଶୁ ହସ୍ତ
ସମରରେ ପଶି ଦୁଷ୍ଟ ନୃପଙ୍କୁ ପୃଥ୍ୱୀରୁ କଲି ନିହତ । ୬
ଏତେ ଶକ୍ତିଶାଳୀ ହେଲା କାର୍ତ୍ତବୀର୍ଯ୍ୟ ନ ମାନିଲା ଧର୍ମାଧର୍ମ
ଦେବତା ବ୍ରାହ୍ମଣେ ଉପହାସ କଲା ପରଂପରା କରି ଭଗ୍ନ । ୭
ସତ୍ୟ ନ୍ୟାୟ ବୋଲି ତା ପାଖରେ କିଛି ନ ଥିଲା ଅନୁଶାସନ
ଭାବିଲା ସଭିଙ୍କ ଉପରେ ତା ସ୍ଥାନ ତାହା ଆଦେଶ ଆଇନ । ୮
ବଶିଷ୍ଠ ଋଷିଙ୍କ ଆଶ୍ରମକୁ ଧ୍ୱଂସ କରି ଦେଲା ଜାଳି ଅଗ୍ନି
ମୋ ପିତା ଆଶ୍ରମ ଧ୍ୱଂସ କରି ଦେଇ ବନାଶିଲା ତାଙ୍କୁ ପୁଣି । ୯
ବଳାତ୍କାରେ ବିପ୍ର ବଉକୁ ହରଣ କଲା ହୋଇ ନରଗଣ
ରକ୍ଷକ ହୋଇଣ ଭକ୍ଷକ ହେବାରୁ ମୃତ୍ୟୁ ଥିଲା ପ୍ରୟୋଜନ । ୧୦
ପଚାରିଲେ ରାମ ସେହି ସମୟରେ ଅନ୍ୟ ନରପତି ଗଣ
ବିରୋଧ ନ କରି ତାହା ଅନୀତିକୁ କାହିଁ କଲେ ସମର୍ଥନ ? ୧୧
ଭାର୍ଗବ କହିଲେ ନରପତି ମାନେ ନିଜ ନିଜର ମଧ୍ୟରେ
ଲଢିବା କାର୍ଯ୍ୟରେ ବ୍ୟସ୍ତ ରହିଥିଲେ ପରଶ୍ରୀ ବୈର ଭାବରେ । ୧୨

ଦୁଷ୍ଟ କାର୍ତ୍ତବୀର୍ଯ୍ୟ ସେମାନଙ୍କ ପ୍ରତି ଥିଲା ବିପଦ କାରଣ
ସେ କଥାକୁ ବୁଝି ନ ପାରି ରାଜାଏ କଳହେ ଥିଲେ ନିମଗ୍ନ । ୧୩
ପ୍ରଚଣ୍ଡ ଆସୁରୀ ବଳର ପ୍ରତୀକ ଥିଲା ଦୁଷ୍ଟ କାର୍ତ୍ତବୀର୍ଯ୍ୟ
ମିଥ୍ୟା, ପ୍ରବଞ୍ଚନା, ଈର୍ଷା, ଅହଂକାରେ ମାତି କରୁଥିଲା କାର୍ଯ୍ୟ ।୧୪
ତେଣୁ ରାଜାମାନେ ତାକୁ ଭୟ କରି ହୋଇଥିଲେ ହୀନବୀର୍ଯ୍ୟ
ଦୁଷ୍ଟ ରାଜାଗଣେ ତା ସଙ୍ଗେ ମିଶିଣ କରୁଥିଲେ ଘୃଣ୍ୟ କାର୍ଯ୍ୟ । ୧୫
ଜୀବନେ ନେଉଛି ତପ ଓ ସଂଯମ ମନୁଷ୍ୟର ଶ୍ରେଷ୍ଠ କର୍ମ
ତାହା ବ୍ୟତିରେକେ ମନୁଷ୍ୟ ଜୀବନ ହୋଇଥାଏ ଦୁଃଖପୂର୍ଣ୍ଣ । ୧୬
ଯେତେବେଳେ ଏହି ଆସୁରୀ ଶକତି ନିଜକୁ ପ୍ରତିଷ୍ଠା କରେ
ସେ କାହାରି କଥା କର୍ଣ୍ଣେ ଶୁଣେ ନାହିଁ ଗର୍ବ ଦମ୍ଭ ଅହଂକାରେ । ୧୭
ସେତେବେଳେ ତାକୁ ଧ୍ୱଂସ କରିବାହିଁ ଏକମାତ୍ର ଶ୍ରେଷ୍ଠ ପନ୍ଥା
ଆଧ୍ୟାତ୍ମିକ ମାର୍ଗେ କର୍ମ ସମ୍ପାଦନ ସାଧିତ ହୁଏ ସର୍ବଥା । ୧୮
ଆସୁରୀ ଶକ୍ତିର ବିନାଶ ନିମନ୍ତେ ପରଶୁ କଲି ଧାରଣ
ଯେଉଁମାନେ ସତ୍ୟ ତପ ଆଚରଣ କରିବାକୁ ଭୟ ଶୂନ୍ୟ । ୧୯
ସେମାନଙ୍କ ପାଇଁ ଏହି ପୃଥିବୀକୁ ନିରାପଦ କରି ଦେଲି
ଏଣୁ ମୁଁ କ୍ଷମତା ଲାଳସେ ଆଗ୍ରହୀ ବା ବଶବର୍ତ୍ତୀ ନ ଥିଲି । ୨୦
ପୃଥିବୀ ଶାସନ କରିବାକୁ ମୁହିଁ ବସିଛି ନ ଥିଲି ମନେ
କେବଳ ଧର୍ମର ସୁରକ୍ଷା କରିବା ବ୍ରତ ଥିଲା ମୋ ଜୀବନେ । ୨୧
ସେ ବ୍ରତ ପୂରଣ ହେବା ପରେ ମୁହିଁ ପୃଥିବୀକୁ ଦାନ ଦେଲି
ଧର୍ମାନୁଶାସନ ପ୍ରବର୍ତ୍ତନ ପାଇଁ କଶ୍ୟପଙ୍କୁ ଦେଇ ଦେଲି । ୨୨
ଅଧର୍ମ ବିନାଶ ପାଇଁ ବେଳେବେଳେ ଲୋଡ଼ା ଅଛି କ୍ଷାତ୍ର ତେଜ
ମାତ୍ର ଧର୍ମ ପାଇଁ ଆବଶ୍ୟକ ପଡ଼େ ସବୁବେଳେ ବ୍ରହ୍ମ ତେଜ । ୨୩
କଥାବାର୍ତ୍ତା ହୋଇ ଗୋମନ୍ତକ ଗିରି ଶୀର୍ଷଦେଶେ ତିନିଜଣ
ପଦାର୍ପଣ କରି ଦେଖିଲେ ନୟନ ସୁଷମାରେ ପରିପୂର୍ଣ୍ଣ । ୨୪
ତାହା ଏକ ଶାନ୍ତ, ଶୀତଳ, ସୁନ୍ଦର ସ୍ୱାସ୍ଥ୍ୟପ୍ରଦ ଉପତ୍ୟକା
ସେଠାରେ ସେମାନେ ଅବସ୍ଥାନ କଲେ ଭାର୍ଗବ ଫେରିଲେ ଏକା । ୨୫
ଫେରିବା ସମୟେ ବ୍ୟକ୍ତ କଲେ ରାମ ମୁହିଁ ଜାଣେ ତୁମ୍ଭେ କିଏ
କଣ କରୁଅଛ କଣ ବା କରିବ ବାସ କରି ମହାକୁହେ । ୨୬

ତୁମ୍ଭ ଜୀବନର ଲକ୍ଷ୍ୟ ମୁଁ ଜାଣଇ ତୁମ୍ଭେ ଅଟ ଧର୍ମବ୍ରହ୍ମ
ଜୀବନ ଠାରୁ ଯା ପଳାୟନ କରେ ତାହା ତ ଧର୍ମ ନୁହଇଁ । ୨୭

ଜୀବନକୁ ଯାହା ପ୍ରତିଷ୍ଠା କରଇ ମନୁଷ୍ୟକୁ ଦେବ ତୁଲ୍ୟ
କରେ ସେ ଧରମ ନାମରେ କଥିତ ତୁମ୍ଭ ଜୀବନେ ତା ମୂଲ୍ୟ । ୨୮

ତୁମ୍ଭର ଲୋକେ ତ ତୁମ୍ଭଙ୍କୁ ବିଶ୍ୱାସ କରୁଛନ୍ତି ଦେଇ ପ୍ରାଣ
ମାନବ ରୂପରେ ଜାତ ହୋଇଅଛ ହୋଇ ତୁମ୍ଭେ ଭଗବାନ । ୨୯

ନିଜର ଉପରେ ଯଦି ଏ ବିଶ୍ୱାସ କରି ପାରିବ ସ୍ଥାପନ
ତାହା ହେଲେ ତୁମେ ବିଷ୍ଣୁଦେବ ରୂପେ ଜଗତେ ପାଇବ ମାନ୍ୟ" । ୩୦

ଏହା କହି ପରଶୁରାମ ହାତ ଯୋଡ଼ି ପ୍ରଭୁଙ୍କୁ କଲେ ପ୍ରଣାମ
ବିଦାୟ ନେଲେଣ ସେତେବେଳେ ଭାର୍ଗବ ରହିଲେ କି ରାମକୃଷ୍ଣ । ୩୧
ପାର୍ବତ୍ୟାଧିବାସୀ ନରନାରୀପୁଣ ଚରଣେ କଲେ ପୂଜନ
ଫଳମୂଳ ଜଳ ଯୋଗାଇଣ ଦେଲେ ଆତିଥ୍ୟ କରି ପ୍ରଦାନ । ୩୨

ସମ୍ବାଦ ସଂଗ୍ରହ କରି ଜରାସନ୍ଧ ମିଳିଲା ଗିରି ପ୍ରଦେଶ
ଶତଚେଷ୍ଟା କରି ଗିରି ଶୃଙ୍ଗ ଦେଶେ କରି ନ ପାରି ପ୍ରବେଶ । ୩୩
ଗୃହଦ୍ୱାରୁ ଘେରି ରଖିଲା ଗିରିକୁ ସୈନ୍ୟସାମନ୍ତ ଗହଣେ
ବିଦୁର ବିମର୍ଶ କରେ ଏକାନ୍ତରେ ବସାଇ ନୃପତି ଗଣେ । ୩୪
ଜରାସନ୍ଧ ସାମରିକ ବାହିନୀରେ ଦମଘୋଷ, ଅନୁବିନ୍ଦ,
ରୁକ୍ମି, ଦନ୍ତବକ୍ର, ଶାଲ୍ୱ, ଶିଶୁପାଳ, ଗାଲବା, ଦରଦ, ବିନ୍ଦ । ୩୫
ଆଦି ଦୁଷ୍ଟ ନୃପେ ମେଣ୍ଟ ବାନ୍ଧିଥିଲେ ରାମକୃଷ୍ଣ ବିପକ୍ଷରେ
ବିଭିନ୍ନ ରାଜ୍ୟର ସେନାଧ୍ୟକ୍ଷ ମାନେ ରହିଥିଲେ ଶସ୍ତ୍ର କରେ । ୩୬
ଚେଦି ରାଜା ଦମଘୋଷ ଜରାସନ୍ଧ ସପକ୍ଷରେ ରହିଥିଲେ
ମାତ୍ର ଜରାସନ୍ଧ ଶକ୍ତି ବଢ଼ିବାକୁ ପସନ୍ଦ କରୁ ନ ଥିଲେ । ୩୭
କାରଣ ସେ ଜାଣିଥିଲେ ନିଶ୍ଚିତରେ ଜରାଶକ୍ତି ବୃଦ୍ଧି ଫଳେ
ତାଙ୍କ ପରି ବହୁ ରାଜାଙ୍କ ବିପଦ ବଢ଼ିଯିବ ଅବହେଳେ । ୩୮
କେବଳ ରାଜାଙ୍କ ବିପଦ ନୁହଇଁ ସମଗ୍ର ଆର୍ଯ୍ୟ ଜୀବନ
ପ୍ରତି ଜରାସନ୍ଧ ନିଶ୍ଚିତ ଭାବରେ ଅଟେ ବିପଦ କାରଣ । ୩୯
ନିଜ ଅଭିଳାଷ ଚରିତାର୍ଥ ପାଇଁ ଧର୍ମ ଅଧର୍ମ ବିଚାର
ନ କରି ସେ ନିଜ ଉଦ୍ଦେଶ୍ୟ ପୂରଣେ ରହିଥାଏ ତତ୍ପର । ୪୦

ଆର୍ଯ୍ୟ ଧର୍ମ ପ୍ରତି ବିପଦ କାରଣ ଅଟଇ ମଗଧ ପତି
ମାଙ୍ଗାଳ, ନସ୍ତ୍ରିନା ଜୟ କରି ସିଏ ବୋଲାଇବ ଚକ୍ରବର୍ତ୍ତୀ । ୪୧
ଏ ଆର୍ଯ୍ୟାବର୍ତ୍ତକୁ ପଦାନତ କରି ରଖିବ ଚରଣ ତଳେ
ଜଣେ ହେଲେ ରାଜା ସ୍ୱାଧୀନ ନ ରହି ପରାଧୀନ ହେବେ ବଳେ । ୪୨
ଯଦି ଦମଘୋଷ ଜରାସନ୍ଧ ପକ୍ଷ କରୁଥିଲେ ସମର୍ଥନ
ମାତ୍ର ତା ଶକତି ଖର୍ବ କରିବାକୁ ଷଡ଼ଯନ୍ତ୍ରେ ଥିଲେ ମଗ୍ନ । ୪୩
ରାମକୃଷ୍ଣଙ୍କର କାର୍ଯ୍ୟକୁ ଅନ୍ତରେ କରୁଥିଲେ ସମର୍ଥନ
ସେମାନଙ୍କ ପ୍ରାଣ ରକ୍ଷା କରିବାରେ କରୁଥିଲେ ଗୁପ୍ତୋଦ୍ୟମ । ୪୪
କାରଣ ସେ ଜାଣି ଥିଲେ ନିଶ୍ଚିତରେ ରାମକୃଷ୍ଣ ବିନା ଅନ୍ୟ
ମଗଧ ନୃପଙ୍କୁ ଆଘାତ ଦେବାକୁ ଭାରତେ ନୁହଁନ୍ତି କ୍ଷମ । ୪୫
ମନକଥା ମନେ ରଖି ଦମଘୋଷ ଜରାସନ୍ଧ ବାହିନୀରେ
ସୈନ୍ୟବଳ ନେଇ ଯୋଗ ଦେଇଥିଲେ କପଟ ରଖି ମନରେ । ୪୬
କହୁଁ କହୁଁ ତିନ ମାସ ଗତ ହେଲା ପଡ଼ିଛି ସୈନ୍ୟ ଗୁଡ଼ଣି
ରାମକୃଷ୍ଣ ଧରିବାକୁ ଅସମ୍ଭବ ଜାଣି ମଗଧ ନୃମଣି । ୪୭
ମିତ୍ର ନୃପତିଙ୍କ ସଙ୍ଗେ ପରାମର୍ଶ କଲା ବସି ନରଗଣ
କପରି ଗୋମନ୍ତ ଗିରି ଭେଦକରି ବିନାଶିବ ରାମକୃଷ୍ଣ ? ୪୮
ଦମଘୋଷ ନୃପ ବୋଲନ୍ତି ସତ୍ୟରେ ଦୁର୍ଭେଦ୍ୟ ଅଟେ ଏ ଗିରି
ମୋ ମତରେ ଅଗ୍ନି ଲଗାଇଣ ଦେଲେ ବଳେ ଆସିବେ ବାହାରି । ୪୯
ଗିରିରୁ ବାହାରି ଆସିଲେ ପଦାକୁ ଆଉକ ପାଇବେ ପ୍ରାଣ
ସୈନ୍ୟ ଘେରାଇଣ ଧରି ଆଣି ତାଙ୍କୁ କରିବା ପ୍ରାଣେ ନିଧନ । ୫୦
ଦମଘୋଷ ପରାମର୍ଶେ ଜରାସନ୍ଧ ପ୍ରତିଶୋଧ ନେବାପାଇଁ
ପର୍ବତ ବକ୍ଷରେ ଲଗାଇଲା ଅଗ୍ନି ପୋଡି ମାରିବାର ପାଇଁ । ୫୧
ଗ୍ରୀଷ୍ମଋତୁ ହେତୁ ପ୍ରଖର ବେଗରେ ଜଳିଲା ବାଡ଼ବାଅଗ୍ନି
ନିମିଷକ ମଧ୍ୟେ ଷେପିଗଲା ବନ ପୋଡ଼ି ମଲେ ବନ୍ୟପ୍ରାଣୀ । ୫୨
ବନ୍ୟଜନ୍ତୁ ତଥା ବନାସୀ ମାନେ ଆକୁଳେ କଲେ କ୍ରନ୍ଦନ
ନିର୍ଦ୍ଦୋଷ ପ୍ରାଣୀଙ୍କ ଦୁଃଖ କଷ୍ଟ ଦେଖି କ୍ରୋଧ କଲେ ରାମକୃଷ୍ଣ । ୫୩
ପ୍ରଭୁଙ୍କ ଆଶ୍ରୟ ଦାତା ବନବାସୀ ସୁରକ୍ଷା ଚିନ୍ତିଣ ମନେ
ସେମାନଙ୍କ ସହଯୋଗେ ଗିରିପାଦ ଦେଶ ଖୋଳାଇ ତତକ୍ଷଣେ । ୫୪

ସାଗର ପର୍ଯ୍ୟନ୍ତ ସୁଡ଼ଙ୍ଗ ଖୋଳାଇ ଦେବାରୁ ସାଗର ଜଳ
ପ୍ରଖର ବେଗରେ ପ୍ରବାହିତ ହୋଇ ମାଡ଼ିଗଲା ଗିରି ଖାଲ । ୫୫

ଉତ୍ତାଳ ତରଙ୍ଗ ଉଠି ସାଗରରେ ମିଶାଇ ଦେଲା ଅନଳ
ଜଳ ସୋତରେ ରହି ଜରା ସୈନ୍ୟ ବଳ ହେଲେ ବହୁ କଳବଳ । ୫୬

ପ୍ରାଣ ବିକଳରେ କେତେ ପଳାଇଲେ ନ ରହିଲା ଥଳକୂଳ
ବହୁ ସାମରିକ କ୍ଷତିକୁ ସହିଲେ ଆସିଥିବା ନରପାଳ । ୫୭

ଜରାସନ୍ଧର ଏ ଅନୀତି କାର୍ଯ୍ୟକୁ ଦେଖି ପ୍ରଭୁ ସଙ୍କର୍ଷଣ
ଲମ୍ଫ ଦେଇ ଗିରି ଅତିକ୍ରମ କରି ଧାଇଁଲେ କରି ଗର୍ଜନ । ୫୮

ଦୁଷ୍ଟ ଜରାସନ୍ଧ ସଙ୍ଗେ ମଲ୍ଲଯୁଦ୍ଧ କରି କରୁଥିଲେ ହତ
ମାତ୍ର ଯଦୁନାଥ କଥାରେ ଜରାକୁ ଛାଡିଦେଲେ ହଳହସ୍ତ । ୫୯

ଛାଡ଼ିଦ୍ୟନ୍ତେ ରାମ ପଳାଇଲା ଜରା ମଗଧେ ପ୍ରାଣ ବିକଳେ
ଆଉ ଆଉ ରାଜା ମାନେ ଯେତେ ଥିଲେ ସକଳେ ପଳାଇ ଗଲେ । ୬୦

କୃଷ୍ଣରେ ଦୋରେହୀ ହୋଇଣ ଥିବାରୁ ଗାଲ ମାଧବ ରାଜନ
ଯୁଦ୍ଧ କରି ତାକୁ ନିଧନ କରିଲେ ଦେବକୀ ଦେବୀ ନନ୍ଦନ । ୬୧

କରବୀର ପୁରେ ଗାଲବ ନନ୍ଦନ ଶଙ୍ଖ ଦେବଙ୍କୁ ନୃପଙ୍କ
କରାଇ ଶ୍ରୀକୃଷ୍ଣ ଉଡ଼ାଇଲେ ଊର୍ଦ୍ଧ୍ୱେ ବିଜୟ ବାନାର ଛଟୀ । ୬୨

ଗାଲବ ନିଧନ ସଙ୍ଗେ ଜରାସନ୍ଧ ପରାଜିତ କରି କୃଷ୍ଣ
ଭ୍ରାତା ସଙ୍କର୍ଷଣ ସଙ୍ଗେ ବେଦ ନୃପ ମଥୁରା ପ୍ରତ୍ୟାବର୍ତ୍ତନ । ୬୩

ସମ୍ବାଦ ପାଇଣ ରାଜା ଉଗ୍ରସେନ ସୈନ୍ୟ ସାମନ୍ତ ସହିତ
ମଥୁରା ବାସୀଙ୍କ ଗହଣେ ପାଛୋଟି ଗଲେ ଖଣ୍ଡେ ଦୂର ପଥ । ୬୪
ମଥୁରା ନଗର ନରନାରୀ ଗଣେ ଶୋଭାଯାତ୍ରା କରି ଗଲେ

ବିଭିନ୍ନ ପ୍ରକାର ବାଦ୍ୟ ବଜାଇଣ ଗୀତ ନୃତ୍ୟ କରୁଥିଲେ । ୬୫
ଏକଶତ ସୁଶ୍ରୀ କୁମାରୀ ମଥାରେ ଘେନି ଚର୍ଚ୍ଚିତ କଳସୀ
ଆମ୍ବ ପତ୍ର ନାରିକେଳ ସଜାଇଣ ଯାଥିଲେ ହସିହସି । ୬୬
କୁଳଗୁରୁ ଗର୍ଗାଚାର୍ଯ୍ୟଙ୍କ ଗହଣେ ବିପ୍ରେ ମନ୍ତ୍ରଗାନ କରି
ରାମକୃଷ୍ଣଙ୍କର ଶୁଭ ମନାସିଣ ସିଞ୍ଚୁଥିଲେ ତୀର୍ଥ ବାରି । ୬୭
ରାଜଚକ୍ରବର୍ତ୍ତୀ ଜରାସନ୍ଧ ଜିଣି ଆସୁଥିଲେ ରାଜ୍ୟ ଫେରି
ନିଜ ମୁକ୍ତିଦାତା ଦେଖି ପୁରବାସୀ ଆନନ୍ଦିତ ହେଲେ ଭାରି । ୬୮

କମ୍ବୁ ବିମକୁଷ୍ଟ ଶୁଭୁଥିଲା ଧ୍ୱନ ଚତୁର୍ଦ୍ଦିଗ ପ୍ରକମ୍ପିତ
ନୃତ୍ୟ ଗୀତ ବାଦ୍ୟ ଆତପ ବାଜରେ ମଥୁରା ଦାଣ୍ଡ କମ୍ପିତ । ୬୯
ବଳରାମଙ୍କର ଧଳ ସମ୍ବର୍ତ୍ତିକ ଲଙ୍ଗଳ ନାମ ସୌନନ୍ଦ
ରଥ ତାଳଧ୍ୱଜ ଗର୍ଜ୍ଜନ ଶ୍ରବଣେ ଦୁଷ୍ଟେ ଗଣିଲେ ପ୍ରମାଦ । ୭୦
କୃଷ୍ଣଙ୍କ ଧନୁର ନାମ ଶାର୍ଙ୍ଗ ଅଟେ କୌମୁଦକୀ ଗଦା ନାମ
ଚକ୍ର ସୁଦର୍ଶନ ରଥ ନନ୍ଦଘୋଷ କରେ ଶଙ୍ଖ ପାଞ୍ଚଜନ୍ୟ । ୭୧
କୃଷ୍ଣ ବଳରାମ ପୂର୍ଣ୍ଣ ସାମରିକ ଶକ୍ତିରେ ସଜ୍ଜିତ ହୋଇ
ସଦର୍ପେ ମଥୁରା ଦାଣ୍ଡେ ବିଜେ କରି ଯାଉଛନ୍ତି ବେନି ଭାଇ । ୭୨
କଟି ଦେଶେ ପୀତାମ୍ବର ପରିଧାନ ମୁକୁଟେ ମୟୂର ଚୂଳ
କଣ୍ଠଦେଶେ ଶୋଭା ପାଉଥାଏ ସଦ୍ୟ ତୁଳସୀ ମାଳତୀ ମାଳ । ୭୩
ରଥର ଧ୍ୱଜାରେ ଗରୁଡର ଚିହ୍ନ ଉଡ଼ଇ ରକ୍ତ ଚିରାଳ
ଧଳାକଳା ଦୁଇ ଭାଇଙ୍କି ଦେଖିଣ ଦର୍ଶକେ ହୋଇଲେ ଭୋଳ । ୭୪
ଯିଏ ଯେଉଁ ପରି ଭାବନ୍ତି ତାହାଙ୍କୁ ସେ ରୂପେ ଦିଅନ୍ତି ଦର୍ଶନ
ଦିବ୍ୟ କମନୀୟ କାନ୍ତି ଦେଖି ଲୋକେ ଭାବୁଛନ୍ତି ନରରତ୍ନ । ୭୫
ଦୁଷ୍ଟ ବିଜାତେ ଦଣ୍ଡ ଦାନ ଦକ୍ଷ ଦୁର୍ଦ୍ଧର୍ମ ଶାସକ ପ୍ରାୟ
ସୈନ୍ୟ ସେନାପତି ଯୋଦ୍ଧା ବୀର ଗଣେ ମହାବୀର ଅନୁମେୟ । ୭୬
ବୃଷ୍ଣି ବଂଶଧରେ କୃଷ୍ଣଦେବ ଭାବ କରୁଥିଲେ କୋଳାଗ୍ରତ
ମଥୁରାବାସୀଏ ସ୍ନେହ ଶ୍ରଦ୍ଧା ବନ୍ଦି ପାଦ ତଳରେ ପ୍ରଣତ । ୭୭
ଷୋଡ଼ଶ ବର୍ଷୀୟ କୃଷ୍ଣ ଭଗବାନ ନବୀନ ତରୁଣ ବେଶ
ସପ୍ତଦଶ ବର୍ଷ ଦେବ ଶଙ୍କର୍ଷଣ ନବୀନ ଯୁବ ବୟସ । ୭୮
ଗଭୀର ସ୍ନେହର ସହ ଉଗ୍ରସେନ ପିତା ବସୁଦେବ ପାଦେ
ଗୁରୁ ଗର୍ଗାଚାର୍ଯ୍ୟ ପିତୃବ୍ୟ ଅକ୍ରୂର ପାଦେ ପଡ଼ିଲେ ଆହ୍ଲାଦେ । ୭୯
ମାଳମା ପାଦରେ ପ୍ରଣିପାତ ହେଲ କନ୍ଦପୁ ମାନେ ପ୍ରଣତ
ନାରୀମାନେ ସ୍ନେହେ ପୁଷ୍ପ ବୃଷ୍ଟି କଲେ ନେତ୍ରରେ ନେତ୍ର ମିଳତ । ୮୦
ପ୍ରଭୁଙ୍କ ସହିତ ଗୁରୁ ସାନ୍ଦିପନୀ ଊର୍ଦ୍ଧ୍ୱେ ହସ୍ତ ପ୍ରସାରଣ
ସମବେତ ଜନେ କଲ୍ୟାଣ କରନ୍ତି ଆଶିର୍ବାଦ ଶ୍ଲୋକ ଗାନ । ୮୧
ଚେଦି ରାଜା ଦମଘୋଷଙ୍କୁ ସମ୍ମାନ କଲେ ପୁରବାସୀଗଣ
ଗଭୀର ସ୍ନେହରେ କୋଳାଗ୍ରତ କଲେ ବସୁଦେବ, ଉଗ୍ରସେନ । ୮୨

ରାଜକାର୍ଯ୍ୟ ଅଭିନନ୍ଦନ ଶେଷରେ ଉତ୍ସବ କଲେ ପାଳନ
ଅନ୍ନବସ୍ତ୍ର ଦାନ ଦେଲେ ବସୁଦେବ ବିପ୍ର ଗଣେ ତୋଷି ମନ ।୮୩

ଦୁଷ୍ଟ ଜରାସନ୍ଧ ପରାଭବ କଥା ଶୁଣି ମିତ୍ର ନୃପଗଣ
ଦୃଢ଼ ସ୍ଥିର ହେଲେ ରାମକୃଷ୍ଣ ମର୍ତ୍ତ୍ୟେ କରିବେ ଧର୍ମ ସ୍ଥାପନ ।୮୪

ସୋରାଷ୍ଟ୍ର, ବତ୍ସ୍ୟ, ହ୍ରମାଦ୍ରି, ହସ୍ତିନା, ଚେଦୀ, ବିଦର୍ଭ, ବିରାଟ
ପାଞ୍ଚାଳ, ଅନାର୍ତ୍ତ, କଟେଶର ପୁର ମାହିଷ୍ମତୀ, ଗୋପରାଷ୍ଟ୍ର ।୮୫

ସର୍ବତ୍ର ବିଜୟ ଉତ୍ସବ ପାଳିତ ହେଲା ମହା ଆଡ଼ମ୍ବରେ
ଭକ୍ତ ରଜାମାନେ ପ୍ରଭୁଙ୍କୁ ପାଳିଲେ ନିଜ ରାଜ୍ୟ ନିର୍ଦ୍ଦିଷ୍ଟରେ ।୮୬

ସତାଅଶୀ ପଦେ ଅଧ୍ୟାୟ ସମ୍ପୂର୍ଣ୍ଣ ସୁଜନେ କର ଶ୍ରବଣ
ଗୀତରେ ଭଣିଲ ମୂଢ଼ ବୁଲଦାସ ଶ୍ରୀଗୁରୁ ଅଙ୍କ ପ୍ରମାଣ ।୮୭

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ମଥୁରା-ଦ୍ୱାରିକା
ଲୀଳାଖଣ୍ଡେ ରୋମନ୍ତକ ଯୁଦ୍ଧ ଓ ଜରାସନ୍ଧର ପଳାୟନ ବର୍ଣ୍ଣନେ
ନାମ ନବମ ଅଧ୍ୟାୟ ସମ୍ପୂର୍ଣ୍ଣଂ ।

ଶ୍ରୀକୃଷ୍ଣାର୍ପଣମସ୍ତୁ ।

## ବୋଲି - (୨)

ବାଇମନରେ

ବାଅଙ୍କୁ ହୋଇଛି ଜ୍ୱର

ପଥି ପାଞ୍ଚଣରେ ବନ କରୁଅଛୁ ନ ରୁଚେ ଅନ୍ନ ଆହାର । ଘୋଷା
ଶୁଣିଲ ଲୋକର ହଂସା ଉଡ଼ିଯାଏ ମନେ ବିଶ୍ୱାସ ନ ଅଟେ
ଯାହାଙ୍କ ନାମରେ ରୋଗ ନାଶ ଯାଏ ତାଙ୍କୁ ପୁଣି ରୋଗ ଗ୍ରାସେ ।୧

ବାଅଙ୍କ ଅସୁସ୍ଥ ଦେହ ଦେଖିବାକୁ ଭକତେ କରନ୍ତେ ମନ
ଭକତ କଥାକୁ ଏଡ଼ାଇ ନ ପାରି ଦେଲେ ଶ୍ରୀଅଙ୍ଗ ଦର୍ଶନ ।୨

କଦାକାର ରୂପ ଦେଖି ଭକ୍ତ ବର ପୁଚ୍ଛିଲେ ଆହେ ଠାକୁର
ଏପରି ଦର୍ଶନେ ଇଚ୍ଛା ହେଉ ନାହିଁ ଦେଖା ଦିବ୍ୟ କଳେବର ।୩

# ଦଶମ ଅଧ୍ୟାୟ

## ଭୀମର ବିଷ ଲଡୁ ଭକ୍ଷଣ ଓ ପାଣ୍ଡବାସୁର ବଧ

ରାଗ - ରାମକେରୀ

ଶ୍ରୀକୃଷ୍ଣ ଚରିତ ମାନସ ଜନେ କର ଶ୍ରବଣ
ଶ୍ରୀହରି ଦୟାରୁ ଦୁରିତ ମାନ ହେବ ଖଣ୍ଡନ । ୧
କୌଶଳ କରିଣ ପାଣ୍ଡବେ କରିବାକୁ ନିଧନ
ପେଞ୍ଚ ପାଞ୍ଚ କଲା ଶକୁନି ନାନା ବୁଦ୍ଧି ଖଞ୍ଜିଣ । ୨
ଭୀମ ପ୍ରତି ଦୁର୍ଯ୍ୟୋଧନର ଥାଏ ମନରେ କ୍ରୋଧ
ମନ୍ତ୍ରଣା କରନ୍ତି ଭୀମକୁ ପ୍ରାଣେ କରିବେ ବଧ । ୩
ପୁରୋଚନ ପଣ୍ଡା ବିପ୍ରର ଘର ହସ୍ତିନାପୁର
ଛନ୍ଦ କପଟରେ ଓସ୍ତାଦ ମନ୍ଦ ବୁଦ୍ଧି ପ୍ରଖର । ୪
ତାହାଙ୍କୁ ଡକାଇ ଶକୁନି କଲା ଗୁପ୍ତ ବିଚାର
ତା ପ୍ରଖର ବୁଦ୍ଧି ଦେଖିଣ ପ୍ରୀତ ହେଲେ ନୃବର । ୫
ପୁରୋଚନ ପଣ୍ଡା ବୋଲଇ ଶୁଣ କୁରୁ ରାଜନ
ମୋ ବୁଦ୍ଧି ବଳରେ ଭୀମକୁ କରି ପାରେ ନିଧନ । ୬
ଭୋଜନେ ବହୁତ ଆନନ୍ଦ ଥାଏ ଭୀମସେନର
ଡକାଅ ଭୀମକୁ ଭୋଜନ କୁଟେ ହସ୍ତିନା ପୁର । ୭
ବିଭିନ୍ନ ମିଷ୍ଟାନ୍ନ ସହିତ ବିଷ ଲଡୁ ଖୁଆଇ
ଗୁପ୍ତେ ମରାଇବା ଭୀମକୁ କେହି ଜାଣିବେ ନାହିଁ । ୮
ପୁରୋଚନ ପଣ୍ଡା ପ୍ରସ୍ତାବ ଶୁଣି ଗାନ୍ଧାରୀ ସୁତ
ଯୋଗାଡ଼ିଲେ ବିଷ ଲଡୁକୁ ଛାଡ଼ି ଧରମ ପଥ । ୯
କୌଶଳେ ଭୀମକୁ ଡକାଇ ଆଣି ଦେଲେ ଭୋଜନ
ମିଷ୍ଟାନ୍ନ ସହିତ ବିଭିନ୍ନ ପ୍ରକାରର ବ୍ୟଞ୍ଜନ । ୧୦
ଭୋଜନେ ଅତୃପ୍ତ ସର୍ବଦା ପ୍ରଭଞ୍ଜନ ନନ୍ଦନ
ସୁମିଷ୍ଟ ପଦାର୍ଥ ପାଇଣ କଲା ପେଟେ ଭୋଜନ । ୧୧
ଭୁଞ୍ଜୁ ଭୁଞ୍ଜୁ ବିଷ ଶରୀରେ ଯାଇ କଲା ପ୍ରବେଶ
ଅଚେତ ହୋଇଣ ପଡ଼ିଲା ତେଜି ଦୀର୍ଘ ନିଶ୍ୱାସ । ୧୨

ଭୀମସେନ ମଲା ଭାବିଣ ଧୃତରାଷ୍ଟ୍ର ନନ୍ଦନ
ଯମୁନା ଜଳରେ ନେଇଣ ଫିଙ୍ଗି ଦେଲେ ବହନ । ୧୩
ସେ ଜଳେ ସୁଗମ୍ଭୀରଣ ଶୂଳକୁ କରିଥିଲେ ରୋପିତ
ଭାବିଥିଲେ ଭୀମ ମରିବ ପାଇ ସେ ଶୂଳ ଘାତ । ୧୪
ବିଷଧର ସର୍ପ ଗୋଟିଏ ତହିଁ କରଇ ବାସ
ଭାବିଥିଲେ ଶୂଳ୍ତ ତରିଲେ ସର୍ପ କରିବ ନାଶ । ୧୫
ଧର୍ମ ବଳେ ଭୀମ ବିପଦୁ ରକ୍ଷା ପାଇଣ ଗଲା
ବେଲ ବାଳୀ ନାଗ ଦୁହିତା ନେଇ ଘରେ ରଖିଲା । ୧୬
ଅମୃତ ଖୁଆଇ ଶରୀରୁ କଲା ବିଷ ହରଣ
ମରଣ ମୁଖରୁ ବଞ୍ଚିଣ ଗଲେ ବାୟୁ ନନ୍ଦନ । ୧୭
ବେଲ ବାଳୀ ସଙ୍ଗେ ସଂସାର କଲେ ବାୟୁ ନନ୍ଦନ
ପାତାଳ ପୁରରେ ରହିଣ ସୁଖେ କାଟିଲେ ଦିନ । ୧୮
ଏଥୁ ଅନ୍ତେ ଶୁଣ ସୁଜନେ ଯାହା ହେଲା ଘଟଣ
ପାଣ୍ଡୁବାସୁର ନାମେ ଦୈତ୍ୟ ହସ୍ତିନାରେ ପଶିଣ । ୧୯
ଦୁର୍ଯ୍ୟୋଧନ ସଙ୍ଗେ ଭ୍ରାତାଙ୍କୁ ବାନ୍ଧି ନେଇଣ ଗଲା
ଅନ୍ଧ ଧୃତରାଷ୍ଟ୍ର କାନ୍ଦିଲେ ମୋର ବଂଶ ବୁଡ଼ିଲା । ୨୦
ସମ୍ବାଦ ପାଇ ଯୁଧିଷ୍ଠିର ମନେ ଦୁଃଖିତ ହୋଇ
ପୁଚ୍ଛା କଲେ ସହଦେବଙ୍କୁ କହ ଉପାୟ ଭାଇ ? ୨୧
ସହଦେବ ମନ୍ତ୍ରୀ କହିଲେ ଶୁଣ ଧର୍ମ ରାଜନ
ଭୀମସେନ ହାତେ ଅସୁର ହେବ ପ୍ରାଣେ ନିଧନ । ୨୨
କାହିଁଛନ୍ତି ଭୀମସେନ ହୋ ! ମନ୍ତ୍ରୀ ଡ଼ାକ ବହନ
ଭୀମଙ୍କୁ ନ ଦେଖି ଝଙ୍କୁନ୍ତି ମୋର ହେଉଛି ମନ । ୨୩
ସହଦେବ ମନ୍ତ୍ରୀ କହିଲେ ଶୁଣ ଧର୍ମ ନୃପତି
ଭୀମ ଠାକୁରଙ୍କୁ କୌରବେ ଦେଲେ ବହୁତ ଶାସ୍ତି । ୨୪
ଆଦରେ ଡ଼ାକାଇ ନେଇଣ ଦେଲେ ଦିବ୍ୟ ଭୋଜନ
ଖାଦ୍ୟ ସଙ୍ଗେ ବିଷ ମିଶାଇ କୂଟେ ନେଇଲେ ପ୍ରାଣ । ୨୫
ଚେତାଶୂନ୍ୟ ହୋଇ ଯିବାରୁ ନେଇ ଜଳେ ଫିଙ୍ଗିଲେ
ନାଗ ଦୁହିତା ବେଲ ବାଳୀ ଭୀମ ପ୍ରାଣ ରଖିଲେ । ୨୬

ରମଣେ ଅତୃପ୍ତ ଅଟନ୍ତି ସଦା ବାୟୁ କୁମର
ଭୁଲି ଯାଇଛନ୍ତି ଆମକୁ ଆହେ ଜ୍ୟେଷ୍ଠ ସୋଦର । ୨୭
ମନ୍ତ୍ରୀ କଥାରେ ଯୁଧିଷ୍ଠିର କଲେ ଭୀମେ ସ୍ମରଣ
କୁମ୍ଭକ ସୂତ୍ରରେ ବାୟୁକୁ ହୃଦେ କରି ସ୍ଥାପନ । ୨୮
ଭୀମ ନାମ ଧରି ଡାକିଲେ ହୃଦ ମଧ୍ୟେ ନିବାର
ସେ ଧ୍ୱନି ବାଜିଲା ଯାଇଁଣ ଭୀମ ହୃଦ କନ୍ଦର । ୨୯
ଜ୍ଞାତ ହେଲେ ବାୟୁ ନନ୍ଦନ ଡାକୁଛନ୍ତି ସୋଦର
କର୍ମିଲି ଆସନ ତକ୍ଷଣେ ପୁରୁ ହେଲେ ବାହାର । ୩୦
ଜ୍ୟେଷ୍ଠ ଭ୍ରାତା ପାଦେ ପ୍ରଣାମ କଲେ ପବନ ସୁତ
ବିନୟେ ବୋଇଲେ ଯୁଧିଷ୍ଠି ହେନା କର ଆଗତ । ୩୧
ପାଣ୍ଡବାସୁରର ହାତରେ କଉରବେ ବନ୍ଧନ
ବଞ୍ଚାଅ ଭାଇଙ୍କୁ ବିପଦୁ ଆହେ ବାୟୁ ନନ୍ଦନ । ୩୨
ଧର୍ମ ବାକ୍ୟେ ଭୀମ ବୋଇଲେ କଥା ହୋଇଲା ଭଲ
ମୁଁ କଷ୍ଟା ମାରନ୍ତି ସେମାନେ ହେଲେ କାଳ କବଳ । ୩୩
ଭୀମକୁ ବୁଝାଇ କହିଲେ ଶୁଣ ବାୟୁ ନନ୍ଦନ
ଭ୍ରାତା ଠାରେ କ୍ରୋଧ କରିବା ନୁହେଁ ପୌରୁଷ ପଣ । ୩୪
ପର ଅପକାରୀ ପ୍ରାଣୀକୁ ପ୍ରଭୁ ଦିଅନ୍ତି ଦଣ୍ଡ
ଦେଖ ତୁ ପଡ଼ିଲା କୌରବେ ଆସି ଶୂନ୍ୟରୁ ଦଣ୍ଡ । ୩୫

ଦେଖ କାଳେ କାଳେ ଧର୍ମର ଯଶ ହୁଏ ବର୍ଦ୍ଧିତ
ଧର୍ମରେ ରକ୍ଷିତ ଜଗତ ସଦା ପବନ ସୁତ । ୩୬
ଧର୍ମ ଥିବା ଯୋଗୁ ଜଳରେ ପଡ଼ି ରହିଲା ପ୍ରାଣ
ଧର୍ମ ବଳେ ପ୍ରାଣୀ ହୁଅଇ ବିପଦରୁ ମୋଚନ । ୩୭
ମନେ ପ୍ରତିଶୋଧ ନ ଘେନ ଆହେ ବାୟୁ ନନ୍ଦନ
ଶତ୍ରୁ ଗଣେ କ୍ଷମା କରିବା ମାନବକ ଧରମ । ୩୮
ଅଧର୍ମୀ ଲୋକର ମଙ୍ଗଳ ଚିନ୍ତା କରୁଣ ଥିବା
ସେମାନେ ମରିବେ ସମୟେ ଆମେ ବର୍ତ୍ତି ରହିବା । ୩୯

ଉପଦେଶ ଦେଇ ଭୀମକୁ ଆଜ୍ଞା ଦେଲେ ଯୁଧିଷ୍ଠି
ପାଣ୍ଡବାସୁରକୁ ମାରିବୋ ଅବିଳମ୍ବେ ମାରୁତି । ୪୦

ଜ୍ୟେଷ୍ଠ ଭ୍ରାତା ଆଜ୍ଞା ପାଇଣ କଲେ ଦୈତ୍ୟ ନିଧନ
ମରଣ ମୁଖରୁ ବର୍ତ୍ତିଲେ ଧୃତରାଷ୍ଟ୍ର ନନ୍ଦନ । ୪୧
ମୃତ୍ୟୁର୍ଣ୍ଣି ଦେବଙ୍କ ଦୟାରୁ କଉରବେ ବଞ୍ଚିଲେ
ଜୀବନ ପାଇଣ ଦୁର୍ଜ୍ଜନେ ହସ୍ତିନାକୁ ଚଳିଲେ । ୪୨
ଭୀମଙ୍କୁ ବିଷଲଡ଼ୁ ଦେବା କଥା କୁନ୍ତୀ ଜନନୀ
ବିଦୁରଙ୍କ ଆଗେ କହିଲେ ନେତ୍ରୁ ଗଡ଼ାଇ ପାଣି । ୪୩
ବିଦୁର କହିଲେ ଏକଥା କର ନାହିଁ ପ୍ରକାଶ
ପ୍ରକାଶ ପାଇଲେ ବଢ଼ିବ ଦୁର୍ଯ୍ୟୋଧନର ରୋଷ । ୪୪
ଅତି ସନ୍ତର୍ପଣେ ରହିଣ କର କାଳ ଯାପନ
ଆପଦ ବିପଦୁ ତାରିବେ ଶ୍ରୀମନ୍ତ ନାରାୟଣ । ୪୫
ଭୀମସେନ ପ୍ରାଣେ ବଞ୍ଚିଛି ଜାଣି ମାନଗୋବିନ୍ଦ
ଅତ୍ୟନ୍ତ ଚିନ୍ତିତ ହୋଇଲେ କାଳେ ହେବ ପ୍ରମାଦ ।୪୬
କି କରିବ ମାନଗୋବିନ୍ଦ ଯାର ସହାୟ ହରି
ଜଗିଛି ବିଦୁର ପୁତ୍ରଙ୍କୁ ହିତ କାମନା କରି । ୪୭
କ୍ଷମାମୟ ଧର୍ମ ନନ୍ଦନ ପାଦେ ଶତ ଜୁହାର
ଗୀତେ ଭଣିଲା ବୃନ୍ଦାବନ ଧର୍ମ ରାଜନୈକର । ୪୮
ଶ୍ରୀକୃଷ୍ଣ ଚରିତ ମାନସ ସୁଧାରସ ସରିତ
ପାନ କର ଧୀରେ ସୁଜନେ ତୃଷା ହେବ ଦୂରିତ । ୪୯
ପତୃଣ ପଦରେ ଅଧ୍ୟାୟ ଏଠି ହେଲା ସମ୍ପୂର୍ଣ୍ଣ
ଶ୍ରୀକୃଷ୍ଣ ଚରଣେ ଶରଣ ପଶ ସୁଜ୍ଞାନୀ ଜନ । ୫୦

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ଭୀମର ବିଷ ଲଡ଼ୁ
ଭକ୍ଷଣେ ନାମ ଦଶମ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ

**ବୋଲି - (୩)** ବାଇ ମନରେ
ଦିଅଁଙ୍କୁ ହୋଇଛି ଜ୍ୱର
ଦେଉଳ ଦୁଆରେ କୋଲପ ପଡ଼ିଛି
ମନା ଯିବାକୁ ଭିତର ॥ ଘୋଷା ॥

ଜଗତ କରତା ଅଟନ୍ତି ଯେ ପ୍ରଭୁ
ସ୍ନାନ ପୂନେଇ ଦିନରେ
ସୁନା କୂଅ ଜଳେ ସ୍ନାନ କରିବାରୁ
ନିୟମ ଧରିଛି ଶିରେ । ୧

ମଣ୍ଡପରୁ ଆସି ଦେଉଳ ଭିତର ପଶି
ଅଣସର ଘରେ ବାସ
ରତ୍ନ ବେଦୀ ତଳେ ତୃଣ ଶଯ୍ୟା କରି
ଶୋଇଛନ୍ତି ଉପବାସ । ୨

ପ୍ରତି ପଦାଠାରୁ ଅମାବାସ୍ୟା ଯାଏଁ
ପନ୍ଦର ଦିନର ପକ୍ଷ
ଦେଉଳ ଦୁଆର ମନା ହୋଇଅଛି
ଦିଅଁଙ୍କ ଦେହ ଅସୁଖ । ୩

ଏ ପନ୍ଦର ଦିନ ସେଭିଙ୍କୁ ବାରଣ
କେବଳ ଦଇତା ପତି
ଅଙ୍ଗ ଦେଖି ଭକ୍ତେ ଶ୍ରୀଅଙ୍ଗ ମର୍ଦ୍ଦନ
କରନ୍ତି ଚରଣେ ଖଟି । ୪

ଦଇତାଙ୍କ ଛଡ଼ା ଅନ୍ୟ ସମସ୍ତଙ୍କୁ
ବାରଣ ଦେଉଳ ଦ୍ୱାର
ବିଶ୍ୱ କରତାଙ୍କୁ ଜ୍ୱର ହୋଇଅଛି
ବିଶ୍ରାମ ଦିନ ପନ୍ଦର । ୫

ଦେହର ତାତିରେ ଖଇ ଫୁଟିଯାଏ
ଶ୍ରୀଅଙ୍ଗେ ଘାରିଛି ଜ୍ୱର
ପଥି ପାଞ୍ଚାଣରେ କାଳ କଟୁଅଛି
ନ ରୁଚେ ଅନ୍ନ ଆହାର । ୬

ବାଇ ମନରେ
ଦିଅଁଙ୍କୁ ହୋଇଛି ଜ୍ୱର ।

—●—

# ଏକାଦଶ ଅଧ୍ୟାୟ

## ବଳରାମଙ୍କ ଗୋପପୁର ଗମନ

### ରାଗ - ଭୈରବ

ଶ୍ରୀକୃଷ୍ଣ ଚରିତ ମାନସ ସୁଜ୍ଞଜନେ ଶୁଣ
କୃଷ୍ଣରସେ ପରିପୂର୍ଣ୍ଣ ଚରିତ ଆଖ୍ୟାନ । ୧
ଜରାସନ୍ଧ ପରାଜିତ ହେବା କଥା ସର୍ବତ୍ର
ପ୍ରଚାର ହେବାରୁ ଲୋକେ ଅତ୍ୟନ୍ତ ଆନନ୍ଦିତ । ୨
ରାମକୃଷ୍ଣଙ୍କ ପ୍ରଶଂସା ଶ୍ରବଣେ ବନ୍ଧୁ ମିତ୍ର
ନନ୍ଦ ଯଶୋଦା ଗୋପବାସୀଏ ବସି ଏକତ୍ର । ୩
ବିଚାର କରି ଡ଼କାଇ ନେଇ ଦୁଇ ପୁତ୍ରେ
ସ୍ନେହ, ଶ୍ରଦ୍ଧା, ସମ୍ମାନ ସହିତେ ଦେଖିବେ ନେତ୍ରେ । ୪
ନନ୍ଦଙ୍କ କନିଷ୍ଠ ଭ୍ରାତା ଉପନନ୍ଦଙ୍କୁ ରାଇ
ତାକ ଆଣିବାକୁ ମଥୁରା ଦେଲେକ ପଠାଇ । ୫
ଭ୍ରାତାଙ୍କ ଆଦେଶ ପାଇ ଉପନନ୍ଦ ଚଳିଲେ
ଦଣ୍ଡକ ମଧ୍ୟରେ ମଥୁରା ନଗରେ ମିଳିଲେ । ୬
ପିତୃବ୍ୟଙ୍କ ଦର୍ଶନେ ରାମକୃଷ୍ଣ ମହାନନ୍ଦ
ଚରଣେ ପଡନ୍ତେ କୋଳ କରିଲେ ଉପନନ୍ଦ । ୭
ସଧୀରେ ପୁଚ୍ଛିଲେ ସର୍ବେ ଅଛନ୍ତି ତ କୁଶଳ
ଶୁଣି ଉପନନ୍ଦଙ୍କର ଅନ୍ତରାତ୍ମା ବିକଳ । ୮
ବୋଲୁଛନ୍ତି ଉପନନ୍ଦ ହେ କମଳ ପତ୍ରାକ୍ଷ
କ କହିବି ପିତାମାତା ଦୁଇ ଜଣଙ୍କ ଦୁଃଖ । ୯
ମଣିହରା ଫଣି ପ୍ରାୟ ବେନି ପ୍ରାଣୀଙ୍କ ଦୁଃଖ
ସାରସତା ନାହିଁ ମନେ ଗ୍ରାସ କରିଛି ଶୋକ । ୧୦
ଗୋପଗୋପୀ ଗୋପାଳେ ତୁମ୍ଭଙ୍କୁ ତ ଝୁରି ଝୁରି
ନ ମରି ବଞ୍ଚି ଅଛନ୍ତି ଫେରିବା ପଥ ସ୍ମରି । ୧୧
ଗୋପୀ ମାନଙ୍କ ଅବସ୍ଥା ବିଶେଷ ବିଷାଦିତ
ବୃଷଭାନୁ ଜେମା ପାଳୁ ଅଛନ୍ତି କୃଚ୍ଛ୍ର ବ୍ରତ । ୧୨

ତୁମରି ପ୍ରତିମା ପାଖରେ ବନସ୍ତ ବସି
ଭବନ୍ତି ତୁମେ ଯିବ କେବେ ଆଣିବାକୁ ବଂଶୀ ? ୧୩

ତୁମର ବିଚ୍ଛେଦେ କୁଞ୍ଜେ ବହୁନ ମରୁତ
କଦମ୍ବ ତରୁରେ ଫୁଟେନ ଫୁଲ ପୂର୍ବବତ୍ । ୧୪

ତୁମ ବିରହରେ କଳ କଲ୍ଲୋଳିତ ଯମୁନା
ଶୁଖି ଯାଇଅଛି ସେବନୁ ନାହିଁ ଜଳ କଣା । ୧୫
ଶଯ୍ୟା ବଦଳାଇ ଦୂରେ କରି ଅଛି ଗମନ
ଘୋର ଜଳ କଷ୍ଟ ଭୋଗନ୍ତି ଗୋରୁଗାଈଗଣ । ୧୬
କାଳିନ୍ଦୀ ଜଳରେ ଆଉ ନ ଉଠେ ବିଚିମାଳ
ଅବିର ହୋଇ ଯାଇଛି ସୁଶୀତଳ ସଲିଳ । ୧୭
ଆଉ କ କହିବ ସଭିଙ୍କ ମନେ ବଡ ଦୁଃଖ
ତୁମ୍ଭଙ୍କୁ ଦେଖିଲେ ଦୂରୀଭୂତ ହୋଇବ ଶୋକ । ୧୮
ତୁମ୍ଭର ପ୍ରଶଂସା ଶୁଣି ପଠାଇଛନ୍ତି ମୋତେ
ମୋ ସଙ୍ଗେ ଗୋପକୁ ଚାଲ ଦୁଇଭାଇ ତୁରିତେ । ୧୯
ସତୃଷ୍ଣେ ଅନାଇଛନ୍ତି ଗୋପୀ ଗୋପାଳ ଯେତେ
ଜୀବନ ଧରିବେ ତୁମ୍ଭଙ୍କୁ ନିରେଖିଲେ ନେତ୍ରେ । ୨୦
ପିତୃବ୍ୟଙ୍କ କଥା ଶୁଣି ନେତ୍ର ଲୋତକେ ପୂର୍ଣ୍ଣ
ଗୋପପୁର ସ୍ମୃତି ଯାଗିଲା ବିଚଳିତ ମନ । ୨୧
ପ୍ରିୟଜନଙ୍କର ଶୋକ ବିମୋଚନ ନିମିତ୍ତ
ପିତୃବ୍ୟଙ୍କ ସହିତ ପଠାଇଲେ ଜ୍ୟେଷ୍ଠ ଭ୍ରାତ । ୨୨
କୃଷ୍ଣ କଥା ଶୁଣି ବୋଲନ୍ତି ବମ ଏ ନିଷ୍ଠୁର
କଥା କିପରି କହୁଅଛ ଆହେ ବଂଶୀଧର ? । ୨୩
ତୁମକୁ ଅଧିକ ସ୍ନେହ ଯେ କରୁଥିଲେ ନିତ
ସେମାନଙ୍କୁ ଛାଡ଼ି ଅସି ନାହିଁ ମନେ ଅଶାନ୍ତ ? ୨୪
ତୁମର ମନରେ ଦୁଃଖ ହେଉ ନାହିଁ କିପରି
ଅନାୟସେ ମୋତେ କଥା ପଠାଅ ଗୋପପୁରି ? ୨୫
ଶ୍ରୀକୃଷ୍ଣ କହିଲେ ହେ ଭ୍ରାତା ! କହିଲ ଯେ କଥା
ସେମାନଙ୍କ ପାଇଁ ମୋ ହୃଦୟେ ଦାରୁଣ ବ୍ୟଥା । ୨୬

ଅନ୍ୟମାନଙ୍କ ଠାରୁ ତାଙ୍କୁ ଭଲ ପାଏ ବେଶୀ
ମୁଁ ତହିଁ ଗଲେ ଅଳ୍ପ କାଳ ପାଇଁ ହେବେ ଖୁସି । ୨୭
ଗୋପ କୃଷ୍ଣେ ଯେ ଦୃଷ୍ଟିରେ କରିଛନ୍ତି ଦର୍ଶନ
ନ ପାଇବେ ସେହି ଆନନ୍ଦ ଦେଖି ମଥୁରା କୃଷ୍ଣ । ୨୮
ଗୋବିନ୍ଦେ ନ ଦେଖି ଦେଖିବେ ଦେବକୀ ନନ୍ଦନ
କଂସ, ଜରା, ଶାଲ୍ଵ ଆଦିଙ୍କ ଗର୍ବ ଗଞ୍ଜନ । ୨୯
ତାହାଙ୍କ ମନରେ ଜାଗିବ ଭିନ୍ନ ଏକ ସ୍ମୃତି
କୃଷ୍ଣ ବାସୁଦେବ ଦର୍ଶନେ ନ ପାଇବେ ପ୍ରୀତି । ୩୦
ଗୋବିନ୍ଦ ନ ଦେଖି ଦେଖିବେ ଭିନ୍ନ ଏକ କୃଷ୍ଣ
ଭାବାନ୍ତର ହେବ ମନରେ କରିଣ ଦର୍ଶନ । ୩୧
ଯେ ଗୋପାଳ ରୂପକୁ ସ୍ନେହ ଶ୍ରଦ୍ଧାର ସହିତ
ଦେଖୁଥିଲେ ନୟନରେ ଏତ ସେହି ନୁହେଁତ । ୩୨
ଯେଉଁ ଗୋବିନ୍ଦ ପ୍ରୀତି ପାଇଁ ଗାଉଥିଲେ ଗୀତ
ଏ ରୂପ ଦର୍ଶନେ ହେବ ନାହିଁ ତୃପ୍ତ ଧ୍ଵନିତ । ୩୩
ଭକ୍ତରେ ଅଭାବ ହେଲେ ଆଉ ଥାଏ କି ଭାବ
ଅଭାବେ ସଦ୍‌ଭାବ ବିନଷ୍ଟ ହୁଏ ନାହିଁକି ଦେବ ? ୩୪
ଏଣୁ ମୁଁ ସର୍ବଦା ସେମାନଙ୍କ ହୃଦ କନ୍ଦରେ
ସ୍ନେହର ପସରା ହୋଇ ରହିଣ ଥାଏ ଦୂରେ । ୩୫
କୃଷ୍ଣ ବାସୁଦେବ ନ ହୋଇ ଗୋପାଳ ରୂପରେ
ରହିଥାଏ ଚିର ଜାଗ୍ରତ ତାଙ୍କ ଦୃଶ୍ୟ ପଟରେ । ୩୬
ଏଣୁ ମୁଁ ନ ଯାଇ ତୁମକୁ ଗୋପେ ପଠାଏ ଭାଇ
ତାହାଙ୍କ ଦୁଃଖରେ ଦୁଃଖୀ ହୁଅ ସେଠାକୁ ଯାଇ । ୩୭
ହୋଧା ଯମୁନାକୁ ଗୁଡ଼ି ଗୋପେ ଲଙ୍ଗଳ ଗାରେ
ନ ଭୋଗନ୍ତୁ ଜଳ କଷ୍ଟ ଆଉ ଗୋପର ନରେ । ୩୮
ତୁମର ଏ ଜନ ହିତକର କାର୍ଯ୍ୟକୁ ଦେଖି
ଗୋପପୁର ବାସୀ ମନରେ ହେବେ ବହୁ ସୁଖୀ । ୩୯
ତଦ୍ଵାରା ତୁମେତ ଅଧିକ ହେବ ପ୍ରଶଂସିତ
ବିଶ୍ୱାସ ରଖିବେ ସେମାନେ ଅମ୍ଭଠି ବହୁତ । ୪୦

ସାନ୍ତ୍ୱନା ଦେଇ କହିବ ତାଙ୍କୁ ଆମ୍ଭ ବୃତ୍ତାନ୍ତ
ଯାଇ ପାରୁ ନାହିଁ ଥିବାରୁ ବହୁ କାର୍ଯ୍ୟ ବ୍ୟସ୍ତ । ୪୧
ସମସ୍ତ ଦେଖି ଗୋପପୁରକୁ ଯିବଇଁ ଦିନେ
ନ ଭୁଲି ମୋତେ ଗୋପୀ ମାନେ ରଖିଥିବେ ମନେ । ୪୨
କହିବ ମୁଁ ତାଙ୍କ ହୃଦେ କରି ରହିଛି ଘର
ଯେତେ ଦୂରେ ଥିଲେ ମଧ ବୃନ୍ଦାବନ ମୋ ଘର । ୪୩
ନିତ୍ୟ କ୍ରୀଡାସ୍ଥଳ ଅଟଇ ସେ ଦିବ୍ୟ ଭୂମି
ଗୋପୀଏ ଅଟନ୍ତି ମୋର ପ୍ରାଣ ପ୍ରିୟ ସଙ୍ଗିନୀ । ୪୪
ଯହିଁ ଥିଲେ ମୁହିଁ ସେମାନଙ୍କ ସଙ୍ଗେ ରହିଛି
ଜୀବ ଥିବାଯାଏ ତାହାଙ୍କୁ ନ ପାରଇ ମୁକ୍ତି । ୪୫
ଗୋପୀନାଥ ବାର୍ତ୍ତା ଘେନଣ ଚଳିଲେ ଶଙ୍କର୍ଷଣ
ଉପନନ୍ଦ ସହିତ ମିଳିଲେ ଯାଇ ନନ୍ଦ ଭବନ । ୪୬
ନେତ୍ରେ ଦେଖି ରାମ ସର୍ବେ ହୋଇଲେ ଉଲ୍ଲସିତ
ହଜିଲା ଧନ ପାଇଲା ପରି ପ୍ରଫୁଲ୍ଲ ଚିତ୍ତ । ୪୭
ଘେରିଯାଇ ସର୍ବେ ରହିଲେ ବଳରାମ ମୁଖକୁ ଚାହିଁ
ଜନକ ଜନନୀ ପଦ୍ୟରେ ପ୍ରଣମିଲେ ଯାଇ । ୪୮
ଗୋପଗୋପୀ ଗଣେ ଆଶ୍ୱାସନା ବଚନ କହି
ଜଣଜଣ କୋଳ କରିଲେ ସ୍ନେହଭାବ ବହି । ୪୯
କୃଷ୍ଣ ଦେଇଥିବା ବାରତା ଶୁଣି ପ୍ରମୋଦିତ
ସନ୍ଦେହ ବିଷାଦ ମନୁ ହୋଇଲା ଦୂରୀଭୂତ । ୫୦
ସେମାନେ କହିଲେ ନ ଆସିଲେ ନାହିଁ ଗୋବିନ୍ଦ
କୁଶଳରେ ଅଛନ୍ତି ଶୁଣି ହୋଇଲେ ଆନନ୍ଦ । ୫୧
ବନସ୍ତରେ ହାଣ୍ଡି ଥିଲେ ଯେହ୍ନେ ଅଟେ ରାଜାର
ଯେଉଁଠାରେ ଥିଲେ ହେଁ କୃଷ୍ଣ ଅଟନ୍ତି ତାଙ୍କର । ୫୨
ସଭିଙ୍କ ମନକୁ ମୋହି ଅଛନ୍ତି ତ ଶ୍ରୀକୃଷ୍ଣ
ବିଷ୍ଣୁ ମାୟା ବୁଝିବାରେ କିଏ ହେବ ସକ୍ଷମ ? ୫୩
କିଛୁଦିନ ଗୋପେ ରହି ଫେରି ଆସିଲେ ରାମ
ଗୋପପୁର କଥା ଶୁଣି ଜାଗି ଉଠିଲା ପ୍ରେମ । ୫୪

କମଳ ନୟନୁ ଝରେ ପଡ଼େ ପ୍ରେମାଶ୍ରୁ ଧାର
ରୋମାଞ୍ଚିତ ହେଲା ବପୁ କଦମ୍ବ ପରକାର । ୫୫
ଜୟଜୟ ରାମକୃଷ୍ଣ ଯଶୋବନ୍ତୀ ନନ୍ଦନ
ଜୟଜୟ ରାମକୃଷ୍ଣ ଗୋପୀଙ୍କ ଜୀବଧନ । ୫୬
ଜୟଜୟ ରାମକୃଷ୍ଣ ଭକତ ପ୍ରାଣଧନ
ଜୟଜୟ ରାମକୃଷ୍ଣ ଜନଗଣ ମୋହନ । ୫୭
ଅଠାବନ ପଦେ ଅଧ୍ୟାୟ ଏସି ହେଲା ଶେଷ
ବୃନ୍ଦାବନ ବୋଲେ ପ୍ରଭୁ କରେ ଶୁଭାଶିଷ । ୬୦

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ବଳରାମଙ୍କ ଗୋପପୁର
ଗମନେ ନାମ ଏକାଦଶ ଅଧ୍ୟାୟ ସମ୍ପୂର୍ଣ୍ଣ ।

ଶ୍ରୀକୃଷ୍ଣାର୍ପଣମସ୍ତୁ ।

—●—

## ବୋଲି - (୪)

ବାଇମନରେ
ଦିଅଙ୍କୁ ହୋଇଛି ଜ୍ୱର
ପଥ୍ୟ ପାଞ୍ଚଣରେ କାଳ କଟୁଅଛି
ନ ରୁଚେ ଅନ୍ନ ଆହାର ॥ ୧ ॥

ଠାକୁର କହିଲେ ନେବୋଧିବ ଧନ
ଟେଡା ଘଣ୍ଟ ନାଦ ପରେ
ନବ ଯଉବନ ସ୍ୱରୂପ ଦର୍ଶନ
ହେବ ସାହାଣ ମେଳାରେ । ୧

ରଥଯାତ୍ରା ଦିନ   ପହଣ୍ଡି ବିଜୟ
ହୋଇବ ରଥ ଦାଣ୍ଡରେ
ନନ୍ଦିଘୋଷ ରଥେ   ଦର୍ଶନ କରିବୁ
ବାମନ ରୂପ ନେସରେ । ୨

ରଥ ରସି ଧରି   ଶରଧା ବାଲିରେ
ଟାଣିବୁ ଭକ୍ତ ମେଳରେ
ଜାଣିବୁ କପରି   ମଉଜ ଲାଗଇ
ରଥ ରସି ଟାଣି ବାରେ । ୩

ରଥ ଟାଣି ନେଇ   ବସିବୁ ଯାଇନ୍ତୁ
ମାଉସୀ ଘର ପିଣ୍ଡାରେ
ଆଠ ଦିନ ରହି   ଦେଖିବୁ ସେଠାରେ
ମାଉସୀ କ ସ୍ନେହ କରେ ? ୪

ରୁଚିକ ପଦାର୍ଥ   ଖୁଆଇ ମାଉସୀ
ଅରୁଚି କରାଏ ଦୂର
ମାଉସୀ ଘରୁ   ଦେଉଳେ ଫେରିଲେ
ହେବ ଅବଢ଼ା ଆହାର । ୫

—●—

# ଦ୍ୱାଦଶ ଅଧ୍ୟାୟ
## କାଳ ଯବନ ବଧ ଓ ଦ୍ୱାରକା ଗଡ ପ୍ରତିଷ୍ଠା
( ରାଗ - ଗୁଣ ସାଗରବାଣୀ )

ଶ୍ରୀକୃଷ୍ଣ ଚରିତ ମାନସ ସଙ୍ଗୀତ ଶ୍ରବଣ କର ସୁଜନ
ବାରମ୍ବାର ଯୁଦ୍ଧେ ହାରି ଜରାସନ୍ଧ ବିଚାରେ ଆପଣା ମନ । ୧

ରାମକୃଷ୍ଣ ଦୁଇ ଭାଇଙ୍କ ପାଖରୁ ବାରମ୍ବାର ପରାଜିତ
ରାଜଚକ୍ରବର୍ତ୍ତୀ ବୋଲି ଆଉ ମୋତେ ନ ମାନିବେ ନରନାଥ । ୨

ବହୁ ଯୁଦ୍ଧ କରି ଜିଣି ନ ପାରିଲି କାର୍ଯ୍ୟ ମୋ ହେଲା ବିଫଳ
ଗୋମନ୍ତକ ଯୁଦ୍ଧେ ମାରୁଥିଲେ ରାମ ରକ୍ଷା କଲେ ନନ୍ଦବାଳ । ୩
ଏତେ ଅପମାନ ସହିବା ଅପେକ୍ଷା ଜୀବନ ତେଜିବା ଭଲ
ବଞ୍ଚିରହି ଆଉ କିସ ପ୍ରୟୋଜନ ବସୁଦେବ ସୁତେ କାଳ । ୪
କପରି ଶତ୍ରୁଙ୍କୁ ନିଧନ କରିବ ଉପାୟ ଖୋଜଇ ବସି
କଳିପ୍ରିୟ ମୁନି କଳିର ସନ୍ଧାନ ପାଇ ପ୍ରବେଶିଲେ ଆସି । ୫
ଦେବକାର୍ଯ୍ୟ ସମ୍ପାଦନ କରିବାକୁ ମୁନି ବିଚାରିଲେ ମନେ
ରାମକୃଷ୍ଣ ତଥା ଯାଦବ ନିହତେ ଜନ୍ମିଛି ଦନୁଜ ଜଣେ । ୬
ଯେତେକାଳ ଯାଏଁ ବଞ୍ଚିଥିବ ଦୁଷ୍ଟ ରାମକୃଷ୍ଣେ ନାହିଁ ଭଲ
କୂଟ କରି ତାକୁ ମରାଇ ପାରିଲେ ହେବ ପ୍ରଭୁଙ୍କ କୁଶଳ । ୭
ଏହା ଚିନ୍ତା କରି ମନ ଜାଣେ ବସି ମିଳିଲେ ଜରା ନବରେ
ମାନ୍ୟ ଗଉରବ କରି ଜରାସନ୍ଧ ବସାଇଲେ ମୁନିବରେ । ୮
କୂଟ କରି କଣ୍ଡୁ କୁମର କହିଲେ କମ୍ପା ରାଜା ବିଷାଦିତ
ସମରେ ପଶିଲେ ହାରଜିତ କଥା ଦୁଇରୁ ଏକ ନିଶ୍ଚିତ । ୯
ତହିଁକି ଶୋଚନା ନ କର ରାଜନ ରହିଛି ଏକ ଉପାୟ
ଯାଦବ ନିଧନେ ଜାତ ହୋଇଅଛି କାଳ ଯବନ ଦୁର୍ଜ୍ଜୟ । ୧୦
ମହାପରାକ୍ରମଶାଳୀ ସେ ଅଟଇ ଅମର୍ତ୍ୟ ଅତୁଳ ବଳ
ତାକୁ ଯେବେ ତୁମ୍ଭ ଡାକ ଆଣି ପାରୁ ଉଦ୍ଦେଶ୍ୟ ହେବ ସଫଳ । ୧୧
ଏହା କହି ମୁନି ବିଦାୟ ଘେନିଲେ ତହେନ୍ତେ ମଗଧ ରାଜା
ରଥ ବାହି ଯାଇ ତକ୍ଷଣେ ଭେଟିଲ ପ୍ରତାପୀ କାଳ ଯବନ । ୧୨

ଜରାସନ୍ଧ ଠାରୁ ନିମନ୍ତ୍ରଣ ପାଇ ଧରି ନିଜ ଅଙ୍ଗବଳ
ମଥୁରା ଆକ୍ରମଣ କରିବା ମାନସେ ଚଳିଲ ଦୈତ୍ୟ ଭୂପାଳ । ୧୩
ଜରାସନ୍ଧ, ଶିଶୁପାଳ, କାଳଯବନ, ଶାଲ୍ୱ ଚାରି ଦୁର୍ମତି
ତିନି ଦିଗ ଘେରି ଅବରୋଧ କଲେ ମଥୁରାକୁ ଅର୍ଦ୍ଧରାତି । ୧୪
ନିସ୍ତବ୍ଧ ରଜନୀ ସର୍ବେ ଶୋଇଛନ୍ତି କେବଳ କୃଷ୍ଣ ଜାଗ୍ରତ
ଚାରି ମହାବୀର ମିଶି ଆକ୍ରମଣ ଜାଣି ସେ ହୋଇଲେ ବ୍ୟସ୍ତ । ୧୫
ବିଚାରିଲେ ମନେ ଜରାସନ୍ଧ ତାଙ୍କ ହାତେ ହେବ ନାହିଁ ହତ
ଯାଦବ କୁଳକୁ କାଳଯମ ଯେଉଁ ଯବନ ଜବର ମିଧ । ୧୬
ଜବର ମଇନ ସାଲୁ ଶିଶୁପାଳ ଏକ୍ଷଣି ମରିବେ ନାହିଁ
ଅନ୍ତର ଅବଧ ଗୁଣ୍ଡପରାକ୍ରମୀ ବାହିଛନ୍ତି ମେଣ୍ଟ ହୋଇ । ୧୭
ଆମ୍ଭେ ତାଙ୍କ ସଙ୍ଗେ ଯୁଦ୍ଧରେ ମାତିଲେ ହୋଇବ ପ୍ରଭୂତ କ୍ଷତି
ଅନାୟସେ ନଗ୍ରେ ହେବ ରକ୍ତପାତ ଲୋକେ ହେବ ଅପଖ୍ୟାତି । ୧୮
କୂଟନୀତି ବିଶାରଦ ଜରାସନ୍ଧ ଜାଣି ଅଛି ତଥ୍ୟ କରି
ଶକ୍ତି ସଂଗ୍ରହରେ ଅପମାନ ନାହିଁ ଉପଯୋଗେ ଶତ୍ରୁ ମାରି । ୧୯
ବାରମ୍ବାର ଯୁଦ୍ଧ ହାରି ପ୍ରତିଶୋଧ ନେବାକୁ ବିଚାର କରି
ଯୋଜନା କରିଣ ମଥୁରା ଘେରିଛି ବଳଶା ମାନଙ୍କୁ ଧରି । ୨୦
ଆପଣେ ପୂର୍ବରୁ, ଶାଲ୍ୱ ଦକ୍ଷିଣରୁ, ପଶ୍ଚିମୁ କାଳଯବନ
ସଣ୍ଡୁ ଆସି ଆକ୍ରମଣ କରିଛନ୍ତି ଶିଶୁପାଳ ବୁଦ୍ଧିରେଣ । ୨୧
ତିହାରା ଯାଦବେ ନଗର ତେଜିଣ ପଳାଇ ଯାଇ ନ ପାରି
ଶତ୍ରୁର ହାତରେ ନିହତ ହୋଇବେ ମଶାମାଛି ପୋକ ପରି । ୨୨
ଏ ଆର୍ଯ୍ୟାବର୍ତ୍ତର ଆର୍ଯ୍ୟ ପରମ୍ପରା ହୋଇଛି ବିପଦ ଗ୍ରସ୍ତ
ଆର୍ଯ୍ୟ ନୃପତିଙ୍କ ସଙ୍ଗେ ମେଣ୍ଟ ବାନ୍ଧି ଆସିଛି ମଗଧ ନାଥ । ୨୩
ଏହି ଭୟଙ୍କର ଯୋଜନାକୁ ଜାଣି ଶ୍ରୀକୃଷ୍ଣ ହେଲେ ଚିନ୍ତିତ
କୌଶଳେ ମଥୁରା ରକ୍ଷା ନ କରିଲେ ହେବ ବହୁ ରକ୍ତପାତ । ୨୪
ରାଜା ଉଗ୍ରସେନ ବୃଦ୍ଧ ଓ ଦୁର୍ବଳ ସ୍ୱଭାବରେ ସାଧୁପ୍ରାଣ
ଅନ୍ୟମାନେ ତାର ସୁଯୋଗ ନେଇଣ ସ୍ୱାର୍ଥ ସାଧନେ ନିମଗ୍ନ । ୨୫
ପିତା ବସୁଦେବ ଶାନ୍ତ ଚିତ୍ତ ବ୍ୟକ୍ତି କ୍ରୂରତା ଶୂନ୍ୟ ଅକ୍ରୂର
ପ୍ରବଳ ପ୍ରତାପୀ ଶତ୍ରୁ ପ୍ରତିରୋଧେ ସେମାନେ ଦୁର୍ବଳତର । ୨୬

ଅନ୍ୟ ଯେ ପ୍ରମୁଖ ଯାଦବେ ଅଛନ୍ତି ବର୍ତ୍ତମାନ ସମୟରେ
ଉପଯୁକ୍ତ ଶିକ୍ଷା ଦୀକ୍ଷାର ଅଭାବ ମଥୁରା ସମ୍ଭାଳିବାରେ । ୨୬
ସମସ୍ୟା ବହୁଳ ଶତ୍ରୁ କବଳିତ ଜନମ ଭୂମି ମୋହର
ସୁରକ୍ଷା ଦାୟିତ୍ୱ ସେମାନଙ୍କ ହାତେ ଛାଡ଼ିଲେ ବିପଦ ଘୋର । ୨୭
କେତେ ଏ ବିବାଦ ଶେଷ ଏହିଠାରେ ସହୁଥିବା ଆଉ କେତେ
ଛାଡ଼ି ପଳାଇବା ବରଂ ଭଲ ହେବ ବିଚାରିଲେ ପ୍ରଭୁ ଚିତ୍ତେ । ୨୮
ସର୍ବଦା ପ୍ରମାଦ ଉପୁଜଇ ଯହିଁ ସେ ସ୍ଥାନ ଛାଡ଼ିବା ଭଲ
ଏମନ୍ତ ବିଚାର କରି ବାସୁଦେବ ଚିନ୍ତିଲେ କିଛି କୌଶଳ । ୨୯
ଅନ୍ତର୍ଗତେ ଧ୍ୟାନ କଲେ ବରୁଣଙ୍କୁ ମିଳିଲେ ଆସି ତକ୍ଷଣ
ବରୁଣଙ୍କୁ ଦେଖି ବିନୟ ବଚନେ କଲେ କୃଷ୍ଣ ନିବେଦନ । ୩୦
" ଭୂମି ଖଣ୍ଡେ ଦିଅ ଆହେ ଜଳପତି ! କୁଟୁମ୍ବ ଘେନିଣ ତହିଁ
ନିର୍ଭୟରେ ରାଜ୍ୟ କରି ବିନାଶିବି ଦୁଷ୍ଟ ଗଣେ ଦୂରି ମହୀ । ୩୧
ମୋର ପ୍ରଭୁ ଅବତାରେ ତୁମ୍ଭେ ମୋର ହୋଇଛ ବହୁ ସହାୟ
ତୁମ୍ଭର ସାହାଯ୍ୟ ବିନା ଧର୍ମକାର୍ଯ୍ୟ କରିବାକୁ ନରୂପାୟ । ୩୨
ତ୍ରେତୟା ଯୁଗରେ ସାଗର ବନ୍ଧନେ ଭୁଲି ନାହିଁ ଉପକାର
ମୋ ଠାରେ ସଦୟ ହେତୁ ସ୍ଥିର ହେଲ ଅସ୍ଥିର ସାଗର ନୀର । ୩୩
ସାଗରରେ ଭାସମାନ ସେତୁ ବାନ୍ଧି ଲଙ୍କାରେ ପ୍ରବେଶ କରି
ପତ୍ନୀ ଚୋର ଦୁଷ୍ଟ ରାବଣକୁ ମାରି ଆଣିଲି ପତ୍ନୀ ଉଦ୍ଧାରି । ୩୪
ଏ ଦ୍ୱାପର ଯୁଗେ କୃଷ୍ଣ ଅବତାରେ ଦୁଷ୍ଟଙ୍କ ଦଳନ ପାଇଁ
ଜନନୀ ଜଠରୁ ଜନ୍ମ ହେବା ଦିନୁ ଯୁଦ୍ଧ କରୁଅଛି ମୁହିଁ । ୩୫
କଂସ, ଅଷ୍ଟମଲ୍ଲ ଆଦି ଦୁଷ୍ଟ ବଂଶ ଯଦ୍ୟପି ହେଲେଣି ହତ
ତଥାପି ବହୁତ ଦୁଷ୍ଟ ନରପତି ଦ୍ୱାରା ପୃଥ୍ୱୀ କବଳିତ । ୩୬
ସେମାନଙ୍କୁ ବଧ କରିବା ନିମନ୍ତେ ଲୋଡ଼ା ମୋର ଖଣ୍ଡେ ରାଜ୍ୟ
ଯହିଁ ରାଜପଣ କରି ନିର୍ଭୟରେ ଜିଣିବି ପୃଥ୍ୱୀରାଜ । ୩୭
ସୁବୃଢ଼େ ରାଜ୍ୟେକ ଗଠନ କରିଣ କରିବି ସମରସଜ୍ଜା
ଶାଲ୍ୱ, ଶିଶୁପାଳ, ଜରାସନ୍ଧ ସଙ୍ଗେ ଦଣ୍ଡିବି କୌରବ ରାଜା । ୩୮
ଏମାନଙ୍କ ଗର୍ବ ଦର୍ପ ଅହଙ୍କାର ପୃଥିବୀ ନ ପାରେ ସହି
ପୃଥିବୀରେ ଶାନ୍ତି ସ୍ଥାପନ ନିମନ୍ତେ ସମର ଲୋଡ଼ା ଅଛଇ । ୩୯

ସ୍ଥଳଭାଗେ ଶାନ୍ତି ସ୍ଥାପନ ନିମନ୍ତେ ଜଳ ଭାଗେ କରି ଘର
ନିତ୍ୟ ସହଯୋଗ କାମନା କରୁଛି ମହାଭାଗ ସେନାକର । ୪୦
ଏହା କହି ପ୍ରଭୁ ମୋଉନ ହେବାରୁ କରଯୋଡ଼ି ଜଳପତି
କହୁଛନ୍ତି ପ୍ରଭୁ ତୁମ୍ଭେତ କରିଛ ବିଶ୍ୱ ଚରାଚର ସୃଷ୍ଟି । ୪୧
ଆମ୍ଭେମାନେ ପ୍ରଭୁ ଆଜ୍ଞା ପାଳୁଅଛୁ ପାଳନ ଆମ୍ଭର କର୍ମ
ଆଜ୍ଞାକାରୀ ହୋଇ ଅନୁଜ୍ଞା ପ୍ରକାଶ କଲେ ହେବ ନୀତି ଭ୍ରମ । ୪୨
ଆଜ୍ଞା ହେଲେ ମୋତେ ଛାଡ଼ି ଦେବ ଖଣ୍ଡେ ମାଗିଲେ ନ ଦେବ ମୁହିଁ
ଆପଣଙ୍କୁ କାଲି ଆଉକେ ମାଗିବ ତାଙ୍କୁ ଖଣ୍ଡେ ଦେବା ପାଇଁ । ୪୩
ଏହିପରି ଖଣ୍ଡେ ଖଣ୍ଡେ ଦେଇଦେଲେ ଶେଷକୁ ରହିବ ନାହିଁ
ଜଳଶୂନ୍ୟ ପୃଥ୍ୱୀ ତିଷ୍ଠି କି ରହିବ ବିଚାରନ୍ତୁ ବିଶ୍ୱସାଇଁ ? ୪୪
ଭୌଗଳିକମତେ ଜଳ ତିନିଭାଗ ସ୍ଥଳ ଏକ ଭାଗ ହୋଇ
ଏ ଅନୁପାତରେ ସୃଷ୍ଟି ସଞ୍ଚରଣ କରିଛନ୍ତି ବେଦ ସାଇଁ । ୪୫
ଏଥିରେ ଅସମ ହୋଇଲେ ବିଷମ ହୋଇବ ତ ପରିସ୍ଥିତି
ପରିବେଶ ନଷ୍ଟ ହେଲେ ପୃଥ୍ୱୀ ନଷ୍ଟ ହୋଇବ ହରାଇ ସ୍ଥିତି । ୪୬
ଏଣୁ କେ ମାଗିଲେ ଦେଇ ନ ପାରଇ ଏହା ମୋ ନିଷ୍ଠା ବଚନ
ଦେବା ଅଧିକାର ନାହିଁତ ମୋହର ସୁରକ୍ଷା ମୋହର ଧର୍ମ । ୪୭
ଭୂମି ଖଣ୍ଡେ ମାଗି ନେଇ କେ ଯାଚକ ହୋଇ ନାହିଁ ନରପତି
ମାଗିବାଟା ହୀନ ଦେବା ଗୋଟା ପୁଣ୍ୟ ରହି ଅଛି ଲୋକ ଶ୍ରୁତି । ୪୮
ଯଦା ବୀରଭୋଗ୍ୟା ଅଟେ ବସୁନ୍ଧରା ଦୁର୍ବଳର ନାହିଁ ସ୍ଥାନ
ସେତୁବନ୍ଧ ବନ୍ଧାକାଳେ ଏହି କଥା କହିଥିଲ ପ୍ରଭୁ ଜାଣ । ୪୯
ଏଣୁ ପ୍ରଭୁ ରୂପେ ଆଦେଶ ଦିଅନ୍ତୁ ନ କରଣ ନିବେଦନ
ଆଜ୍ଞା ପରମାଣେ ଛାଡ଼ି ଦେବ ଭୂମି ରହିବ ପ୍ରଭୁଙ୍କ ମାନ । ୫୦
ବରୁଣ ରାଜାଙ୍କ ବଚନକୁ ଶୁଣି ଯଥାର୍ଥ ମଣିଲେ କୃଷ୍ଣ
ଯହୁଁ ବରୁଣକୁ ବୃହିଁ ଆଜ୍ଞା ଦେଲେ ପାଳିଲେ ଜଳ ରାଜନ । ୫୧
ପ୍ରଭୁଙ୍କ ଆଦେଶ ପାଇ ଜଳପତି ଶତ ଯୋଜନ ବିସ୍ତୃତ
ଭୂମି ଛାଡ଼ି ଦେଇ ଅପସରି ଗଲେ ଦେଖି ପ୍ରଭୁ ଆନନ୍ଦିତ । ୫୨
ବିଶ୍ୱକର୍ମା ଡ଼ାକି ଆଜ୍ଞା ଦେଲେ ପ୍ରଭୁ ଗଢି ଦିଅ ଦିବ୍ୟପୁର
ନିମିଷକ ମଧ୍ୟେ ନିର୍ମିତ ହୋଇଲା ଏହି ଦ୍ୱାରକା ନଗର । ୫୩

ନିଦେ ଶୋଇଥିବା ମଥୁରା ବାସୀଙ୍କ ନ କରି ନିଦ୍ରା ଭଗନ
ମହାବିଷ୍ଣୁ ମାୟା ବଳେ ଶଯ୍ୟା ସହ ଉଠାଇ ନେଇ ତକ୍ଷଣ । ୫୪
ଦ୍ୱାରକା ନଗରେ ଶୁଆଇଣ ଦେଲେ କେହି ନ ପାରଲେ ଜାଣି
ଜନଶୂନ୍ୟ ମଧୁପୁରରେ ରହିଲେ ଏକାକି ମୁରଲୀ ପାଣି । ୫୫
କିଛି କାଳ ପରେ ହୃଦଗ ଫାଟିଲା ଉଜ୍ଜଳ ଦିଶିଲା ନଭ
ପୁର ଦ୍ୱାର ଦେଶେ ଠିଆ ହୋଇଛନ୍ତି ଦେଖିଲେ ଦୁଷ୍ଟ ଦାନବ । ୫୬
ନିରସ୍ତ୍ର ହୋଇଣ ଠିଆ ହୋଇଛନ୍ତି ଦେଖିଲା କାଳଯବନ
ବଦନକୁ ଚାହିଁ ଚିହ୍ନିଲା ଏ କୃଷ୍ଣ ଦେବକୀ ଦେବୀ ନନ୍ଦନ । ୫୭
ବୀରରେ ସେ ଯେବେ ନିରସ୍ତ୍ର ଅଟଇ ମୁଁ କିମ୍ପା ଧରିବି ଅସ୍ତ୍ର
ଏମନ୍ତ ବିଚାରି ଧରିବାକୁ ହାତେ ଧାଇଁଲା ହୋଇ ନିରସ୍ତ୍ର । ୫୮
ଧରୁଧରୁ ହାତୁ ଖସି ସେ ପଳାନ୍ତି ଯବନ ନ ପାରେ ଧରି
ପଛରେ ଗୋଡ଼ାଇ ଥାଏ ଦୁରାଚାର ରହିରହି ପାଟି କରି । ୫୯
ଆଗେ ଆଗେ ଧାଇଁ ପଳାନ୍ତି ଶ୍ରୀକୃଷ୍ଣ ପଛେ ଗୋଡ଼ାଏ ଯବନ
ଧାଇଁ ଯାଇ ଏକ ଗୁହାର ଭିତରେ ପଶିଗଲେ ଶିରିକୃଷ୍ଣ । ୬୦
ଦେଖିଲେ ପଲଙ୍କେ ଶୋଇଛନ୍ତି ଜଣେ ଶରୀରେ ଜ୍ଞାନ ନାହିଁ
ନିକଟରେ ଏକ ଧୂନି ଜଳୁ ଅଛି ଗୁହା ଆଲୋକିତ ଥାଇ । ୬୧
ନିଜର ହୋପଡ଼ କାନ୍ଧରୁ ଉତାରି ଘୋଡ଼ାଇ ଦେଇ ତା ଦେହେ
ନିକଟରେ ଥିବା ଅନ୍ଧାର ଗୁହାରେ ଲୁଚି ଗଲେ ଦେବରାୟେ । ୬୨
ଧରିବା ନିମନ୍ତେ ଗୁହାରେ ପଶିଣ ଭାବିଲା କାଳ ଯବନ
ପଲଙ୍କ ଉପରେ ନିଦ୍ରା ଯାଇଅଛି ବୋଧେ କପଟିଆ କୃଷ୍ଣ । ୬୩
ଅଙ୍ଗବସ୍ତ୍ର ଦେଖି ଭାବିଲା ଯବନ ଏଇ ଦେବକୀ ନନ୍ଦନ
ବୋଲେ ନିଦ୍ରା ଗଲେ ମରଣର ଭୟେ ଛାଡ଼ିବକି କାଳଯମ ? ୬୪
ଏହା କହି ଦୁଷ୍ଟ ବଜ ମୁଷ୍ଟି ଏକ ମାରିଲା ତା ବକ୍ଷ ଦେଶେ
ମୁଷ୍ଟି ଘାତେ ନିଦ୍ରାଭଙ୍ଗ ହୋଇଗଲା ଅନାଇ ଦେଲେ ଆକ୍ରୋଶେ ।୬୫
ଚକ୍ଷୁର ଅନଳ ତେଜରେ ଯବନ ହୋଇଗଲା ଭସ୍ମୀଭୂତ
ଲୁଚିଥିବା ସ୍ଥାନୁ ବାହାରି ଶ୍ରୀହରି ମୁନିଙ୍କ ପାଦେ ପ୍ରଣତ । ୬୬
ଦିବ୍ୟ କମନୀୟ କଳେବର ଦେଖି ଆଚମ୍ବିତ ମୁଚୁକୁନ୍ଦ
ଚିହ୍ନିଲା, ଚିହ୍ନିଲା ପରି ମନେ ହେଲା ଦେଖି ପାଦ ଅରବିନ୍ଦ । ୬୭

ମଦ୍ୟମେ ପୁଚ୍ଛିଲେ କଣ୍ଟକ କାନନେ କମ୍ପା-ଧୂର୍ତ୍ତ-ନିରନ୍ତର
କୋମଳ ଚରଣେ କଣ୍ଟା ଗଳି ଯିବ ମନକୁ ଲାଗଇ ଡର । ୬୮

ତୋ ରୂପ ଦର୍ଶନେ ମୋ ଚିତ୍ତ ଉଚ୍ଛନ୍ନ ପାଦ ଗୃପିବାକୁ ମନ
ଯୋଗ ନିଦ୍ରାରେ ମୁଁ ଶୋଇ ରହି ଯେଉଁ ପାଦ କରୁଥିଲି ଧ୍ୟାନ । ୬୯

ସେ ପାଦ ଦର୍ଶନ ପାଇ ମୋ ନୟନ ହୋଇଗଲା ଆଜି ଧନ୍ୟ
ଯେ ପାଦେ ଆଶ୍ରୟ ଦିଅ ଦୟାମୟ ଏତିକି ମୋ ନିବେଦନ । ୭୦

ମୁଚୁକୁନ୍ଦ ମୁଖୁଁ ପ୍ରେମ ଭକ୍ତି ପୂର୍ଣ୍ଣ କଥା ଶୁଣି ନାରାୟଣ
ପୁଚ୍ଛିଲେ ଆମ୍ଭଙ୍କୁ ଚିହ୍ନି ପାରୁଛକି ନାମ-ବାସୁଦେବ କୃଷ୍ଣ । ୭୧

ବସୁଦେବ ପିତା ଦେବକୀ ମୋ ମାତା ଜନ୍ମ ଯାଦବ ବଂଶରେ
ଦୁର୍ଜ୍ଜନ ଦଳନ କରାଇବା ପାଇଁ ଉପଗତ ଏ ଗୁହାରେ । ୭୨

ଦେବହିତ କାର୍ଯ୍ୟେ ଆସିଲି ଏଠାକୁ କାର୍ଯ୍ୟ ମୋ ହୋଇଲା ସାଧ
ଆମ୍ଭର ପରମ ଶତ୍ରୁ ଏ ଯବନ ତୁମ୍ଭ ନେତ୍ରାନଳେ ଦଗ୍ଧ । ୭୩
ଈଶ୍ୱର ମଙ୍ଗଳ କାର୍ଯ୍ୟ କରି ତୁମ୍ଭ ଜୀବନ ହୋଇଲା ଧନ୍ୟ
ଏବେ ସ୍ୱଦେହରେ ବଇକୁଣ୍ଠପୁରେ ରଥରେ କର ଗମନ । ୭୪
ଏହା କହି ପ୍ରଭୁ ରଥରେ ବସାଇ ଭକ୍ତକୁ ପଠାଇ ଦେଲେ
ଗୁହାରୁ ବାହାରି ତହୁଁ ଗିରିଧାରୀ ଦ୍ୱାରକା ପୁରେ ଚଳିଲେ । ୭୫
ଉଷାକାଳେ ଲୋକେ ଶଯ୍ୟାରୁ ଉଠିଣ ଦେଖିଲେ ସୁଦିବ୍ୟପୁର
ମଥୁରାପୁରରୁ ସହସ୍ର ଗୁଣରେ ଅଟଇ ଦିବ୍ୟ ସୁନ୍ଦର । ୭୬
ଚଉଦିଗେ ଘେରି ରହିଛି ସାଗର ଗଡ଼ଖାଇ ପରାୟେକ
ଦେଖିଲା ଲୋକର ବୁଦ୍ଧି ହଜିଯାଏ ଅନେକ ହେଲେ ଅବାକ । ୬୭
ସୁବର୍ଣ୍ଣେ ନିର୍ମିତ ଲଙ୍କାପୁର କଥା ଶୁଣିଥିଲେ ଲୋକେ କର୍ଣ୍ଣେ
ମାତ୍ର ସୁବର୍ଣ୍ଣରେ ନିର୍ମିତ ଦ୍ୱାରକା ଦେଖିଲେ ଚର୍ମ ନୟନେ । ୭୮
ଦ୍ୱାରକା ଐଶ୍ୱର୍ଯ୍ୟ ସଙ୍ଗେ ଲଙ୍କାପୁର ହେବ ନାହିଁ ତୁଳନୀୟ
ଦୁର୍ଗମ ଦୁର୍ଭେଦ୍ୟ ନିରାପଦ ଭୂମି ଘେରିଛି ବାରି ବଳୟ । ୭୯
ଲଙ୍କାପୁରେ ବାସ କରୁଥିଲେ ସିନା ଦୈତ୍ୟ ପତି ଦଶାନନ
ମାତ୍ର ଦ୍ୱାରକାରେ ଦେବ ଦଇତ୍ୟାରି ଦେବକୀ ଦେବୀ ନନ୍ଦନ । ୮୦
ଯହିଁ ରଜନୀତି ଖେଳ ଭିଆଇଣ କରିବେ ଦୁଷ୍ଟ ଦଳନ
ନିର୍ବାଣ ମୁକତି ମନ୍ଦିର ସେ ପୁର ନିଷ୍କାମୀଙ୍କ ବାସସ୍ଥାନ । ୮୧

କୃଷ୍ଣ ଆଗମନେ ଋଷି ବିପ୍ରଗଣେ ବେଦ ବିଧାନରେ ଭୂମି
ପ୍ରତିଷ୍ଠା କରିଲେ ଯହିଁ ରାଜପଣ କରିବେ ଯାଦବ ସ୍ୱାମୀ । ୮୨
ରାଜା ଅଭିଷେକ ହେଲେ ଉଗ୍ରସେନ ପ୍ର ରାଜ ରାମକୃଷ୍ଣ
ଅଭିଷେକ ଦ୍ରବ୍ୟ ଯୋଗାଇଲେ ଇନ୍ଦ୍ର ଖଟିଲେ ଯାଦବଗଣ । ୮୩
ରଥ, ଗଜ, ଅଶ୍ୱ, ଧନୁ, ଅସ୍ତ୍ର, ଶସ୍ତ୍ର ସାମରିକ ଶକ୍ତି ଧରି
ନଗର ଭ୍ରମଣ କଲେ ଦୁଇଭାଇ ଯୋଦ୍ଧୃବେଶ ହୋଇକରି । ୮୪
ବନିତା ନନ୍ଦନ ଅଞ୍ଜନା ତନୟ ଦୁଇ ପାର୍ଶ୍ୱେ ଦୁଇବୀର
ନଗରପତ୍ନୀ ରକ୍ଷା କରିଣ ଚାଲିଲେ ଧନ୍ୟ ଦ୍ୱାରିକାପୁର । ୮୫
ହଳ ଓ ଲଙ୍ଗଳ କରେ ଧରି ରାମ ତାଳଧ୍ୱଜ ରଥାସୀନ
ଶଂଖ, ଚକ୍ର, ଗଦା, ଶାରଙ୍ଗ, ପାଞ୍ଚଜନ୍ୟ, ନନ୍ଦଘୋଷେ, ଶ୍ରୀକୃଷ୍ଣ । ୮୬
ଅଶ୍ୱାରୋହୀ, ଗଜାରୋହୀ, ରଥାରୋହୀ, ଶସ୍ତ୍ରଧାରୀ ପଦାତିକ
ଚତୁରଙ୍ଗ ବଳ ହେଉ ରହିଛନ୍ତି ଦେଖି ତୋଷ ରାଜ୍ୟ ଲୋକ । ୮୭
ନଗର ଭ୍ରମଣ ଶେଷେ ଦୁଇଭାଇ ବିଜେ କଲେ ସିଂହାସନ
ମନ୍ତ୍ରୀପାରିଷଦ ଖଟିଲେ ଚରଣେ ଗାନ୍ଧେ କଲେ ଜୟଗାନ । ୮୮
ଦ୍ୱାରକାଧୀପତି କୃଷ୍ଣ ଭଗବାନ ଷଡ଼ ଐଶ୍ୱର୍ଯ୍ୟବାନ
ସମୁଦ୍ର ପୋତାଇ ଗଡ ନିର୍ମାଣିଲେ ଶୁଣି ଶତ୍ରୁ ଶକ୍ତି ମ୍ଳାନ । ୮୯
ଦ୍ୱାରକାଧୀଶଙ୍କ ନାମ ଶୁଣି ଦୁଷ୍ଟେ ହୋଇଗଲେ ଭୟଭୀତ
ଭକ୍ତ ରାଜାମାନେ ଜାଣିଲେ ଏଥର ଧର୍ମ ହେବ ସଂସ୍ଥାପିତ । ୯୦
ଏଠାରୁ ମଥୁରା ଲୀଳା ଶେଷ ହୋଇ ଦ୍ୱାରିକା ଲୀଳା ଆରମ୍ଭ
ଗୋକୁଳକୁ ଦୂତ ପଠାଇ ପ୍ରଚାର କରାଇଲେ ବାସୁଦେବ । ୯୧
ବସ୍ତ୍ରାନବେ ପଦ ଗୀତରେ ଭଣିଲା ମୂଢ଼ମତି ବୃନ୍ଦାବନ
ଆଶା ବୈତରଣୀ ତୀରେ ବସାବାନ୍ଧ ଭରସା ପାଦ ସାରସ । ୯୨

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା ଲୀଳା ଖଣ୍ଡେ କାଳଯବନ ନିଧନ ଓ ଦ୍ୱାରକା ଗଡ
ନିର୍ମାଣେ ନାମ ଦ୍ୱାଦଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।

ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

ଇତି ମଥୁରାଲୀଳା ସମ୍ପୂର୍ଣ୍ଣଂ ।

**ବୋଲି - (୫)** ମନ ବାଇରେ

ମାଉସୀ ଘରେ ବିଜେ ଠାକୁର
ଅଙ୍ଗଦେଖା ଭକ୍ତ ଶ୍ରୀଅଙ୍ଗ ସେବାରେ
ଖଟିଛନ୍ତି ନିରନ୍ତର ॥ ଘୋଷା ॥
ନବଦିନ ଯାତ୍ରା ଶେଷ କରି ଆମ୍ଭେ
ଫେରିବୁ ନିଜ ମନ୍ଦିରେ
ବାହୁଡ଼ା ଯାତ୍ରାର ରଥ ରସି ଟାଣି
ମିଳିବୁ ଦେଉଳ ଦ୍ୱାରେ । ୧
ଦଶମି ସନ୍ଧ୍ୟାରେ ଦେଉଳ ଦୁଆରେ
ରହିବୁ ରଥ ଉପରେ
ରଥ ଏକାଦଶୀ ଦିନ ସୁନା ବେଶ
ଦେଖିବୁ ତିନି ରଥରେ । ୨
ଦ୍ୱାଦଶୀ ତିଥିରେ ଦେଉଳକୁ ଯାଇ
ବସିବୁ ରତ୍ନ ବେଦୀରେ
ଭ୍ରମଣ ଜନିତ ଟେକା କଟତାରେ
ପରଶ ପାଇ ଅଙ୍ଗରେ । ୩
ଦ୍ୱାଦଶୀ ତିଥିରୁ କ୍ଳାନ୍ତ ବିନୋଦନେ
ଶୋଇବୁ ଦିବସ ଦୁଇ
ସୁସ୍ଥ ଚତୁର୍ଦ୍ଦଶୀ ଅଳଷ ସମୟେ
ଦର୍ଶନ ଗରୁଡ଼ ଠାଇଁ । ୪
ଏହା କହି ଦିଅଁ ଦରଶନ ଦେଇ
ରହିଲେ ଅଣବସରେ
ଅଦେଖା ଦିଅଙ୍କୁ ଦେଖା ପାଇ ଭକ୍ତ
ନାଚେ ମନ ଆନନ୍ଦରେ । ୫
ମନ ବାଇରେ
ଦେଖ ତୁ ଗରୁଡ଼ ପଛରେ
ସୁସ୍ଥ ହୋଇ ଦିଅଁ ବିଜେ କରିଛନ୍ତି
ରତ୍ନ ସିଂହାସନ ପରେ । ୬

# ଦ୍ୱାରକାଲୀଳା ଖଣ୍ଡ

## ପ୍ରଥମ ଅଧ୍ୟାୟ

## ଦ୍ୱାରକା ରାଜ୍ୟ ପ୍ରତିଷ୍ଠା ଓ ନାରଦଙ୍କ ମନ୍ତ୍ରଣା

### ରାଗ - ଶଙ୍କରାଭରଣ

ସୁଜ୍ଞଜନେ ଶୁଣ କୃଷ୍ଣ ଚରିତ ମାନସ
ମିଳିଲେ ଦ୍ୱାରକାପୁରେ ନାରଦ ତାପସ
ଦେଖି ସର୍ବେ କଲେ ମାନ୍ୟ
ସସମ୍ମାନେ ବସାଇଲେ ରାଜା ଉଗ୍ରସେନ । ୧

ଦ୍ୱାରକାର ରାଜସଭା ସର୍ବେ ଉପସ୍ଥିତ
ବସିଛନ୍ତି ଆସ୍ଥାନରେ ଉଗ୍ରସେନ ନାଥ
ଯୁବରାଜ ରାମକୃଷ୍ଣ
ଦେବକ, ଅକ୍ରୂର, ବସୁଦେବ ଗୁରୁଜନ । ୨

ଧ୍ରୁବରଥ, ସାତ୍ୟକି, ଉଦ୍ଧବାଦି ପ୍ରିୟଜନ
ବେଢ଼ିଛନ୍ତି ପାରିଷଦ ପାତ୍ର ମନ୍ତ୍ରୀଗଣ
ମୁନି, ଋଷି, ବିପ୍ରଗଣ
ଶୋଭା ପାଉଅଛି ସୁଧର୍ମା ସଭା ସମାନ । ୩

ଉଗ୍ରସେନ ମୁଖ ଚାହିଁ ନାରଦ ତାପସ
କହନ୍ତି ସଭାରେ ରାଜନୀତି ଇତିହାସ
ଆର୍ଯ୍ୟାବର୍ତ୍ତ ଇତିବୃତ୍ତି
ଶୁଣନ୍ତି ଯାଦବ ଗଣେ ଦେଇ ଚିତ୍ତବୃତ୍ତି । ୪

ମଧ୍ୟ ଗାଙ୍ଗେୟ ଉପତ୍ୟକାରେ ଗିରିବ୍ରଜ
ମଗଧ ନାମେ ବିଖ୍ୟାତ ଜନପଦ ରାଜ୍ୟ
ପ୍ରଚଣ୍ଡ ଶକ୍ତି ତାହାର
କବଳିତ କରିଅଛି ଭାରତ ନୃପବର । ୫

ଜରାସନ୍ଧର ଜାମାତା କଂସ ମହାଷଣ୍ଢି
ଯମୁନା ଉପତ୍ୟକାରେ ଥିଲା ସେ ଦୁର୍ମତି
ତାହାକୁ ବିନାଶ କରି
କବଳିତ କଲେ ରାମକୃଷ୍ଣ ମଧୁପୁରୀ । ୬

ଯମୁନା ଉପତ୍ୟାରେ ରାମକୃଷ୍ଣୋଦୟ
ହେବା ଜାଣି ବିଚଳିତ ଜରାସନ୍ଧରାୟ
କ୍ରୋଧ କରି ମନ୍ଦମତି
ବିନ୍ୟାକଲା ରାମକୃଷ୍ଣ ଧରି ଦେବ ଶାସ୍ତି । ୭

ମନମଧ୍ୟେ ଭାବିଥିଲା ମଗଧ ନୃପତି
ପୃଥ୍ୱୀ ନୃପେ ଜିଣି ହେବ ରାଜଚକ୍ରବର୍ତ୍ତୀ
ମାତ୍ର କଂସ ମୃତ୍ୟୁ ପରେ
ଓଲଟିଗଲା ଅବସ୍ଥା ଅନ୍ୟ ପରିକାରେ । ୮

ବାରମ୍ବାର ଯୁଦ୍ଧ କରି ହୋଇ ପରାଜିତ
ବିଚାରଇ ରାମକୃଷ୍ଣେ ଦଣ୍ଡିବ କେମନ୍ତ ?
ଦିନୁଦିନ ଶକ୍ତି ବୃଦ୍ଧି
ଯାଦବେ ହୋଇଲେ ମାଗଧୀଙ୍କ ପ୍ରତିବାଦୀ । ୯

ପ୍ରତିଶୋଧ ନେବା ପାଇଁ ମଗଧ ରାଜନ
ସିନ୍ଧୁ ଉପତ୍ୟକା ନୃପତି କାଳଯବନ
ପ୍ରଚଣ୍ଡ ଶକ୍ତି ଭାବରେ
ଉଦିତ ହୋଇଥିଲେ ଭରତ ଖଣ୍ଡରେ । ୧୦

ସେହି କାଳଯବନର ଜନମ ବୃତ୍ତାନ୍ତ
ଏ ଅତି ଗୁପତ କଥା ଅନ୍ୟକୁ ଅଜ୍ଞାତ
ଉଗ୍ରସେନ ଅଭିଷେକ
କାଳର ଘଟଣା କହୁଅଛୁ କରି ଠିକ । ୧୧

ଯଦୁବଂଶ କୁଳଗୁରୁ ଗାର୍ଗ୍ୟ ତପୋଧନ
ରାମକୃଷ୍ଣ ହାତେ କଲେ ଅସାଧ୍ୟ ସାଧନ
ତାହାଙ୍କ ସହଯୋଗରେ
କଂସ ବନ୍ଦୀଶାଳୁ କୃଷ୍ଣ ଗଲେ ଗୋପପୁରେ ।୧୨

ବ୍ୟାସଦେବ ପରାମର୍ଶେ ଗାର୍ଗ୍ୟ ଓ ଅକ୍ରୂର
ଗୋପନେ ସାହାଯ୍ୟ କଲେ ବସୁଦେବ ଙ୍କର
ତନଙ୍କର ସହଯୋଗେ
ସ୍ଥାନାନ୍ତର ହେଲେ ରାମକୃଷ୍ଣ ମହାଭାଗେ । ୧୩

ଯଦୁବଂଶ ଉପକାରୀ ଗାର୍ଗ୍ୟ ମହାମୁନ୍ୟ
ରାମକୃଷ୍ଣ ହିତେ କାର୍ଯ୍ୟ କର ସେ ମହାନ୍
କୃଷ୍ଣଙ୍କ ପରମ ଭକ୍ତ
ଯଦୁବଂଶ ହିତକାରୀ ବିଦ୍ୱାନ ପଣ୍ଡିତ । ୧୪

ଉଗ୍ରସେନ ଅଭିଷେକ ଉତ୍ସବର ଦିନ
କାଳେ ଉପହାସ କଲେ ସଭାରେ ଦୁର୍ଜ୍ଜନ
କହିଲେ ଅଛା କରଣ
ଯାଁ"ଙ୍କ ପର ଗୁରୁ ଥାଉଁ ଶିଷ୍ୟର ମରଣ । ୧୫

ରାଜା ଦୋଷ ରାଜଗୁରୁ ଠାରେ ଲାଗି ଥାଏ
କଂସ କଲା ଦୋଷେ ଦୋଷୀ ଏହି ବିପ୍ର ହୁଏ
ଦୋଷୀରେ କ ପ୍ରୟୋଜନ
ବିଦାୟ ହଅନ୍ତୁ ଏବେ ଗାର୍ଗ୍ୟ ମହାମୁନ୍ୟ " ୧୬

ପ୍ରସ୍ନାଜିତ କଥା ଶୁଣି ସଭାରେ ହସିଲେ
ଅପମାନ ପାଇ ଗୁରୁ ପଳାଇଣ ଗଲେ
କେହି ଜାଣି ନ ପାରିଲେ
କୈଳାସେ ଗୋପନେ ବସି ତପ ଆଚରିଲେ । ୧୭

ତୋଷ ହୋଇ ଆଶୁତୋଷ ଯାଚ ଦେଲେ ବର
ବୋଲୁଛନ୍ତି ଗାର୍ଗ୍ୟ ବିପ୍ର ହେ ଉମା ଶଙ୍କର !
ଅପମାନ ପ୍ରତିଶୋଧ
ନେବା ପାଇଁ ଯାଦବଙ୍କୁ ଇଚ୍ଛଇ ପ୍ରମାଦ । ୧୮

ଚଉରାଶି କୋଟି ବଳ ଅଟନ୍ତି ଯାଦବେ
ମତ୍ତଗର୍ବୀ ହୋଇଛନ୍ତି ମୋହରେ ପରବେ
ନ ମାନନ୍ତି ଗୁରୁଙ୍କୁ ସ୍ତ
ବର ଦିଅ ତାହାଙ୍କୁ ମୁଁ କରିବ ବନସ୍ତ । ୧୯

ଗମ୍ଭୀରେ କହିଲେ ଶିବ ଶୁଣ ଦ୍ୱିଜବର
କେଣି ନ ପାରିବ ତୁମ୍ଭ ବଳେ ଯଦୁବୀର
ତୁମ୍ଭର ବୃଦ୍ଧ ବୟସ
ପୁତ୍ର ଉପୁଜାଇ କର ଯାଦବେ ବିନାଶ । ୨୦

ପୁତ୍ର ବର କଥା ଶୁଣି ବୋଲନ୍ତି ବ୍ରାହ୍ମଣ
ଦିଅ ତେବେ ଏହି ବର ପୁଚ୍ଛେ ତ୍ରିଲୋଚନ
ରାମକୃଷ୍ଣ ସହିତରେ
ବିନାଶ ହୋଇବେ ସର୍ବେ ମୋ ପୁତ୍ର ହାତରେ । ୨୧

ମହାବଳବାନ ହେବ ମୋହର କୁମର
ଅସ୍ତ୍ରେ ଶସ୍ତ୍ରେ ନ ଛିଡିବ ଶରୀରରୁ ଶିର
ଜଳରେ ବୁଡ଼ିବ ନାହିଁ
ଅନଳେ ନ ଉଡ଼ି, ଅନଳେ ପୋଡ଼ିବ ନାହିଁ । ୨୨

ନ ଭେଦିବ ଇନ୍ଦ୍ର ବ୍ରଜ ଶରୀରେ ତାହାର
ମାରି ନ ପାରିବେ ଦେବ-ଦୈତ୍ୟ-ନାଗ ନର
ବ୍ରହ୍ମା-ବିଷ୍ଣୁ-ଶିବ-ସମ
ଯୁଦ୍ଧେ ହାରିଯିବେ ସର୍ବେ ନ ହୋଇବେ କ୍ଷମ । ୨୩

"ତଥାସ୍ତୁ" କହଣ ଶିବ ହେଲେ ଅନ୍ତର୍ଦ୍ଧାନ
ବରପାଇ ଗାର୍ଗ୍ୟ ମୁନି ବଗୁରିଲେ ମନ
ଜାତ କରିବାକୁ ପୁତ୍ର
କାମିନୀ କାମନା କରି ହୋଇଲେ ଚନ୍ତିତ । ୨୪

ଦାସ ଯବନ ନନ୍ଦିନୀ ନାମ ଗୋପାବଳୀ
କାନନ ଭ୍ରମଣ କାଳେ ମିଳିଲା ସେ ବାଳୀ
ନବ କୁମାରୀ ବୟସ
ତାହା ତୁଲେ ରତି କ୍ରୀଡ଼ା କରିଲେ ତାପସ । ୨୫

ସଇନ୍ଦୁ ପୁତ୍ରେକ ଗର୍ଭ ହୋଇଲା ଉତ୍ପନ୍ନ
ସେ ପୁତ୍ରର ନାମ ଦେଲେକ କାଳ ଯବନ
ଶିବ ବରେ ବଳବାନ
ପୁତ୍ର ପାଇ ପିତାମାତା ଆନନ୍ଦିତ ମନ । ୨୬

ନିର୍ଧୂମ ଅନଳ ଜଣି ପ୍ରକାଶଇ ଜ୍ୟୋତି
ବଳବୀର୍ଯ୍ୟେ ପରିପୂର୍ଣ୍ଣ ଅପ୍ରମିତ ଶକ୍ତି
ପ୍ରଚଣ୍ଡ ଘୋର ବଦନ
ଯାଦବେ ଜିଣିବା ପାଇଁ ମହା ବୀର୍ଯ୍ୟବାନ । ୨୭

କୋଳରେ ଧଇଲେ ପୁତ୍ର ଦଣ୍ଡେ ବିପ୍ରବର
କହିଲେ ସାଧିବୁ ଶତ୍ରୁ ମାନ ବାକ୍ୟ ମୋର
ମୁଖରେ ଆଙ୍କି ଚୁମ୍ବନ
ଗୋପାବଳୀ କରେ ପୁତ୍ରେ କରିଲେ ପ୍ରଦାନ । ୨୮

ପୁତ୍ର ଘେନି ଗୋପାବଳୀ ରାଜ୍ୟକୁ ଫେରିଲେ
ଗୁମ୍ଫାରେ ବସିଣ ମୁନି ବ୍ରହ୍ମ ଧ୍ୟାନ କଲେ
ନୃପତି ହେଲା ନନ୍ଦନ
ପରାକ୍ରମେ କବଳିତ କଲା ତ୍ରିଭୁବନ । ୨୯

ସ୍ୱଭାବେ ଅସୁର ବଂଶ ସୁରଙ୍କ ବିବାଦୀ
ସୁରାସୁର ବେନି ପକ୍ଷ ସୃଜି ଅଛି ବିଧି
ଯାଦବ ସାଧିବା ପାଇଁ
ଜନ୍ମିଛି କାଳଯବନ ବିପ୍ର କ୍ରୋଧ ବହ୍ନି । ୩୦
ଏ ଗୁପ୍ତ ଚରିତ ଗୋଟି ନ ଜାଣନ୍ତି କେହି
ଗାର୍ଗ୍ୟମୁନି ଜାଣି ତାହା ନ କହିଲେ କାହିଁ

ଗୋପାବଳୀ ଜାଣେ ତଥ୍ୟ
ସେ କାହା କରିବ ଗୁପ୍ତ ତଥ୍ୟକୁ ବ୍ୟକତ । ୩୧
ଏ ଗୁପତ ଭେଦ ପାଇ ଜରାସନ୍ଧ ବୀର
ଯାଦବ ସାଧନ ପାଇଁ ବଳିଲା ସତ୍ୱର
ପ୍ରତିଶୋଧ ନେବାପାଇଁ
ଜରାସନ୍ଧ ନିମନ୍ତ୍ରଣେ ଆସିଲା ସେ ଧାଇଁ । ୩୨

ଯମୁନା ଉପତ୍ୟକାରେ ଯାଦବ ଉଦୟ
ଖର୍ବ କରିବାକୁ ମେଣ୍ଟ ବାନ୍ଧି ବେନି ରାୟ
କଲେ ରାଜ୍ୟ ଆକ୍ରମଣ
ସଙ୍ଗେ ଚତୁରଙ୍ଗ ବଳ କେ କରେ କଳନ ? ୩୩

ସେମାନଙ୍କ ସଙ୍ଗେ ବିଦର୍ଭ ଚେଦି ନୃପତି
ଯୋଗ ଦେଲେ ଧରି ନିଜ ସାମରିକ ଶକ୍ତି
ଜରାସନ୍ଧ ମିତ୍ର ପକ୍ଷ
ଯାଦବ ବାନ୍ଧବ ଥାଇ ଯାଦବ ବିପକ୍ଷ । ୩୪

ସେମାନଙ୍କୁ ସଙ୍ଗେ ଧରି ମଗଧ ନୃବର
କାଳ ଯବନ ସହିତ ବାହିଲା ସତ୍ୱର
ମଥୁରାକୁ ଧ୍ୱଂସ କରି
ବନ୍ଦୀ କରି ନେବ ଯିବ ହଳଧର ହରି । ୩୫

ମଧ୍ୟ ରାତ୍ରେ ମଥୁରାକୁ କଲେ ଅବରୋଧ
ଏ କଥା ଜାଣି ଶ୍ରୀକୃଷ୍ଣ ଗଣିଲେ ପ୍ରମାଦ
ବିଚାରିଲେ ହୃଦଗତେ
ବର୍ତ୍ତମାନ ନ ମରିବେ ଦୁଷ୍ଟେ ଆମ୍ଭ ହାତେ । ୩୬

ମହାପରାକ୍ରମଶାଳୀ ଅଟନ୍ତି ଏ ଅରି
ଧଇଲେ ଆମ୍ଭଙ୍କୁ ଦେବେ ନିର୍ଯ୍ୟାତନା କରି
ଦଣ୍ଡିବେ ଯାଦବଗଣ
ଆମ୍ଭ ଯୋଗୁ ରାଜ୍ୟବାସୀ ଲଭିବେ କଷଣ । ୩୭

ବିଚାରିଲେ ଯେଉଁଠାରେ ଜୀବନ ବିପନ୍ନ
ଶତ୍ରୁ ଆକ୍ରମଣେ ପ୍ରଜା ହୁଅନ୍ତି ଉଚ୍ଛନ୍ନ
ସେଠାରେ କି ପ୍ରୟୋଜନ
ନୀତି ଶାସ୍ତ୍ରମତେ ତେଜ୍ୟ ଅଟେ ସେହି ସ୍ଥାନ । ୩୮

ଏମନ୍ତ ବିଚାର କରି ଚିନ୍ତିଲେ ବରୁଣ
ତକ୍ଷଣେ ମିଳିଲେ ପାଶେ ବରୁଣ ରାଜନ
ଆଜ୍ଞାନୁମତେ ପ୍ରଦାନ
ସାଗର ବେଷ୍ଟିତ ଭୂମି ଶତେକ ଯୋଜନ । ୩୯

ବିଶ୍ୱକର୍ମା ଡାକି ଆଜ୍ଞା ଦେଲେ ନାରାୟଣ
ଏହି ଦ୍ୱାରବତୀ ପୁର କରିଲେ ନିର୍ମାଣ
ବିଷ୍ଣୁ ମାୟା ବଳେ କୃଷ୍ଣ
ରଖାଇଲେ ମଧୁପୁରବାସୀ ଏହି ସ୍ଥାନ । ୪୦

ଘଣ୍ଟକ ମଧ୍ୟରେ କାର୍ଯ୍ୟ ହେଲା ସମାପନ
ମଧୁପୁର ଗୋଷ୍ଠୀ ହୋଇଗଲା ଜନଶୂନ୍ୟ
ଏକାକୀ ରହିଲେ କୃଷ୍ଣ
ଊଷାକାଳେ ନଗର ଦ୍ୱାରେ ଦଣ୍ଡାୟମାନ । ୪୧

ପିତା ଗାର୍ଗ୍ୟ କହିଥିବା ରୂପ ଚିହ୍ନବର୍ଣ୍ଣ
ନିରେଖି ଚିହ୍ନିଲା ନେତ୍ରେ ସେ କାଳ ଯବନ
ହୃଦେ ଶ୍ରୀବତ୍ସ ଲାଞ୍ଛନ
କଉସ୍ତୁଭ ମଣିହାର ଦିଶେ ଶୋଭବନ । ୪୨

କନକ କୁଣ୍ଡଳ କର୍ଣ୍ଣେ ମକର ଆକାର
କୋଟିଏ କନ୍ଦର୍ପ କାନ୍ତି କୃଷ୍ଣ କଳେବର
ରୂପେ ନାହିଁ ପଟାନ୍ତର
କଣ୍ଠରେ କୁସୁମ ହାର ଅପୂର୍ବ ସୁନ୍ଦର । ୪୩

କଟିଦେଶେ ପୀତବାସ ଶ୍ରୀଅଙ୍ଗ ମଣ୍ଡନ
ଘନଶ୍ୟାମ କଳେବର କମଳ ଲୋଚନ
କେୟୁର କଙ୍କଣ ମାନ
ବାହୁ ବାଜୁବନ୍ଧେ ଶୋଭେ ବଳୟ ସମାନ । ୪୪

ମନୋହର ରୂପ ଶୋଭା ଦେଖିଣ ଯବନ
ଜାଣିଲା ଏ ଯଦୁପତି ଦେବକୀ ନନ୍ଦନ
ତାହାର ନିଦାନ ବେଶି
ଦୈତ୍ୟ ନିସୂଦନକାରୀ ଦେବ ଦଇତ୍ୟାରି । ୪୫

ଦେଖିମନେ ବିଚାରିଲା ସେ କାଳ ଯବନ
ଭେଟିଲି ଶତ୍ରୁକୁ ଆସି ଧନ୍ୟ ମୋ ନୟନ
ନିର୍ଭୟେ ଦଣ୍ଡାୟମାନ
ଶଙ୍ଖ, ଚକ୍ର, ଗଦା, ପଦ୍ମ, ଧନୁ, ଅସ୍ତ୍ର ଶୂନ୍ୟ । ୪୬

ଭାବେ ସେ ନିରସ୍ତ୍ର ମୁଁ କିମ୍ପା ଧରିବ ଅସ୍ତ୍ର
ନିରସ୍ତ୍ର ସହିତ ମନା ଧରିବାକୁ ଅସ୍ତ୍ର
ଏମନ୍ତ ବିଚାର କରି
ନିରସ୍ତ୍ର ହୋଇ ଧାଇଁଲା ଧରିବାକୁ ହରି । ୪୭

ଯବନର ମନୋଭାବ ବୁଝିପାରି କୃଷ୍ଣ
ଚକ୍ରକୂଟ ବୁଦ୍ଧି କରି ଧାଇଁଲେ ବହନ
ଆଗେ ଆଗେ ଗଲେ ଧାଇଁ
ଗୋଡ଼ାଏ କାଳଯବନ ଧରିବାର ପାଇଁ । ୪୮
ଧରୁ ଧରୁ ହାତୁ ଖସି ଯାଆନ୍ତି ପଳାଇ
ଛୁଇଁ ନ ଛୁଇଁଲ ପରି ନିକଟରେ ପାଇ
ଭାବେ ଧରିବ କେମନ
ଗୋଡ଼ାଇଛୁ ଅଜ୍ଞାନରେ ହରିଙ୍କି ଜ୍ଞାନ । ୪୯
ନିର୍ଜ୍ଜନ ଗୁହାରେ ଧାଇଁ ହୋଇଲେ ପ୍ରବେଶ
ମୁଚୁକୁନ୍ଦ ଯୋଗାନଳେ କରାଇଲେ ପାଂଶ
ମରିଲ କାଳଯବନ
ମୁଚୁକୁନ୍ଦ ଆଗେ ଦେଖାଦେଲେ ନାରାୟଣ । ୫୦
କହନ୍ତି ନାରଦ ମୁଚୁକୁନ୍ଦ ଉପାଖ୍ୟାନ
ପୁତ୍ର ଆଶାକରି ଯୁବନାଶ୍ୱ ନରରାଣ
ମହାଯଜ୍ଞ ଆରମ୍ଭିଲେ
ତୃଷାତୁର ହୋଇ ଯଜ୍ଞଜଳ ପାନ କଲେ । ୫୧
ତଦ୍ଵାରା ହେଲା ତାଙ୍କର ଗର୍ଭ ସଞ୍ଚାରଣ
ଜନ୍ମିଲ ମାନ୍ଧାତା ନାମେ ଗୋଟିଏ ନନ୍ଦନ
ତ୍ରିଦସ୍ୟ ନାମ ତାଙ୍କର
ଜନ୍ମିଲେ ତାଙ୍କ ଔରସୁ ତିନୋଟି କୁମର । ୫୨
ଅମ୍ବରିସ, ପୁରୁକୁତ୍ସ, ମୁଚୁକୁନ୍ଦ ନାମ
ରଖିଲେ ସେ ତିନି ପୁତ୍ର ମଧ୍ୟରେ ସୁନାମ
ଦେବତାଙ୍କ ଅନୁରୋଧେ
ମୁଚୁକୁନ୍ଦ ମାତିଗଲେ ସ୍ୱର୍ଗେ ଦୈତ୍ୟ ଯୁଦ୍ଧେ । ୫୩
ଶତବର୍ଷ ଯାଏଁ ଯୁଦ୍ଧ ଲାଗିଲା ପ୍ରଖର
କ୍ଷୁଧା ନିଦ୍ରା ଛାଡ଼ି ଯୁଦ୍ଧ କରି ଜରଜର
ନିଧନ କଲେ ଅସୁର
ତୋଷ ହେଲେ ଦେବେ ରକ୍ଷା ହେଲା ସ୍ୱର୍ଗପୁର । ୫୪

ଯୁଦ୍ଧଶେଷେ କ୍ଳାନ୍ତ ଦୂର କରିବା ନିମନ୍ତେ
ଗିରି ଗୁହାରେ ଶୟନ କଲେ ସେ ଏକାନ୍ତେ
ସୁରପତିଙ୍କ ଆଜ୍ଞାରେ
ଧୂନି ଲଗାଇଣ ଗୁହା ଜଗିଲେ କନ୍ଦରେ । ୫୫
ଇନ୍ଦ୍ର ଠାରୁ ବର ପାଇଥିଲେ ମୁଚୁକୁନ୍ଦ
ଯେ ବଳେ ଭଗ୍ନ କରିବ ତାହାଙ୍କର ନିଦ
ଚକ୍ଷୁ ଜ୍ୟୋତିରେ ଦହନ
ହୋଇଯିବ ସଙ୍ଗେ ସଙ୍ଗେ ହରାଇ ଜୀବନ । ୫୬
ଏ ଗୁପତ ଭେଦ ଜାଣିଥିଲେ ଯଦୁନାଥ
ସେ ଗୁହା ମଧ୍ୟେ ଯବନ କରାଇଲେ ହତ
ଯାଦବେ ହେଲେ ନିଶ୍ଚିନ୍ତ
ଯଦୁବଂଶ ତ୍ରାଣକର୍ତ୍ତା ବସୁଦେବ ସୁତ । ୫୭
କୌଶଳ କରି ଶ୍ରୀକୃଷ୍ଣ ତାଙ୍କୁ ମରାଇଲେ
ଆସନ୍ନ ବିପଦୁ ଯଦୁବଂଶ ରକ୍ଷା କଲେ
ସୁବିଜ୍ଞ ପୁରୁଷ ହରି
ଯାହା ପାଇଁ ଯେଉଁ ବିଧି କରନ୍ତି ବିଚାରି । ୫୮
ସିନ୍ଧି କ ମଧ୍ୟେ ଏ ପୁର ହୋଇଛି ନିର୍ମିତ
ଦୁର୍ଜ୍ଜନ ଦଳନେ କୃଷ୍ଣ କଳ୍ପନା ପ୍ରସୂତ
ଏ ପୁର ବିଭବମାନ
ତୁଳନେ ଅମରାବତୀ ନୁହଇଁ ସମାନ । ୫୯
ଲଙ୍କାପୁରୀଠାରୁ ଶ୍ରେଷ୍ଠ ଏ ଦ୍ୱାରକାପୁର
ଗଡଖାଇ ହୋଇଅଛି ସାଗର ଯାହାର
ଧନ୍ୟ ଧନ୍ୟ ଯଦୁବଂଶ
ଏ ଦିବ୍ୟ ପୁରରେ ଯାହା କରୁଅଛି ବାସ । ୬୦
ଦୁର୍ଜ୍ଜନ ଦଳନ ସଙ୍ଗେ ଧର୍ମ ସଂସ୍ଥାପନ
କରିବାକୁ ମହାବିଷ୍ଣୁ ସ୍ୱୟଂ ଅବତୀର୍ଣ୍ଣ
କର ତାଙ୍କ ପୂଜାର୍ଚ୍ଚନ
ମୋକ୍ଷଦାତା ଅଟନ୍ତି ଏ କୃଷ୍ଣ ଭଗବାନ । ୬୧

ପ୍ରକାଶ କରନ୍ତେ ତଥ୍ୟ ଶୁଣି ସଭାଜନ
ସ୍ତମ୍ଭୀଭୂତ ହୋଇଗଲେ ନ ସ୍ଫୁରେ ବଚନ
କଲେ ଜୟଜୟ ଧ୍ୱନି
ଗାଇଲେ ମଙ୍ଗଳଗୀତ ବିପ୍ର, ଭାଟ ଶ୍ରେଣୀ । ୭୨

ଦ୍ୱାରକା ରାଜ୍ୟ ପ୍ରତିଷ୍ଠା ଶୁଣି ଦୁଷ୍ଟଗଣ
ଜାଣିଲେ ଶ୍ରୀକୃଷ୍ଣ ତାଙ୍କ ମୃତ୍ୟୁର କାରଣ
ଭୟଭୀତ ହୋଇଗଲେ
ମେଣ୍ଟ ଗଠନରେ ଦୁଷ୍ଟେ ମନ ବଳାଇଲେ । ୭୩

କହନ୍ତି ନାରଦ ମୁନି ରାଜନୀତି ତତ୍ତ୍ୱ
ଶୁଣନ୍ତି ଯାଦବଗଣେ ହୋଇ ଉତ୍କଣ୍ଠିତ
ଆର୍ଯ୍ୟାବର୍ତ୍ତ ଇତି ବୃତ୍ତି
ରାଜାଙ୍କ ମଧ୍ୟେ କଳହ ଯୋଗୁ ବିଘ୍ନ ଶାନ୍ତି । ୭୪

ଭରତ ବଂଶେ ଶାନ୍ତନୁ ତନୟ ଗାଙ୍ଗେୟ
ଶକ୍ତି-ସାହାସ-ବୀରତ୍ୱ ପଣରେ ଅଜେୟ
ତାହାଙ୍କ ରାଜ୍ୟ ଶାସନ
କାଳେ ବ୍ୟାସଦେବ କଲେ ବେଦ ବିରଚନ । ୭୫

ଧର୍ମ-ସାହିତ୍ୟ ଭାବରେ ହେଲା ବିବେଚିତ
ରାଷ୍ଟ୍ର ପୃଷ୍ଠ ପୋଷକତା ଯୋଗୁ ପ୍ରସାରିତ
କୁରୁକ୍ଷେତ୍ର ଶିକ୍ଷାସ୍ଥଳୀ
ବେଦ ଶିକ୍ଷା ଦେଲେ ତହିଁ ବ୍ୟାସ ମହାବଳୀ । ୭୬

କୁଞ୍ଜୁଗୁଳ ଦେଶ ନାମେ ବିଶାଳ ସେ ରାଜ୍ୟ
ହସ୍ତିନା ତା ରାଜଧାନୀ ଭୀଷ୍ମ ମହାରାଜ
କୌରବ ପାଣ୍ଡବେ ନାତି
ପ୍ରାଥମିକ ଶିକ୍ଷାଦାତା ଭୀଷ୍ମ ମହାମତି । ୭୭

ପର୍ଶୁରାମ ବିଦ୍ୟା ସାଧି ଦ୍ରୋଣ ବିପ୍ରବର
ଗୁରୁ ହୋଇ ଶିକ୍ଷା ଦେଲେ ନୃପତି କୁମର
କ୍ଷତ୍ରିୟ ବ୍ୟତୀତ ଆନ
ବିଦ୍ୟାର୍ଜନ କରିବାକୁ ଥିଲକ ବାରଣ । ୭୮

ଶତେ ସାତ ଜଣ ଶିଷ୍ୟ ପଢୁଥିଲେ ପାଠ
ଧନୁର୍ବିଦ୍ୟା ସାଧନରେ ଧନଞ୍ଜୟ ଶ୍ରେଷ୍ଠ
ପର୍ଶୁରାମ ବିଦ୍ୟା ସାଧି
ଅରଜିଲେ ଆର୍ଯ୍ୟବର୍ତ୍ତେ ଅସୀମ ପ୍ରସିଦ୍ଧି । ୬୯

ପଞ୍ଚ କଟକେ ପାଣ୍ଡବେ ଧାର୍ମିକ ପ୍ରବର
ବୀରପଣେ ମହାବୀର ପାଣ୍ଡୁଙ୍କ କୁମର
ଭୀଷ୍ମ ଦେବଙ୍କର ପ୍ରିୟ
ଶ୍ରଦ୍ଧା କରୁଥାନ୍ତି ସଦା ସତ୍ୟବନ୍ତ ପୁଅ । ୭୦

ଗଙ୍ଗାର ଦକ୍ଷିଣ ତଟରେ ପାଞ୍ଚାଳ ବସନ୍ତ
କାମ୍ପିଲ୍ୟ ତା ରାଜଧାନୀ ଶକ୍ତିଶାଳୀ ଅତି
ମଗଧର ଜରାସନ୍ଧ
ପରାଜିତ ହୋଇଅଛି କରି ବହୁ ଯୁଦ୍ଧ । ୭୧

ପଚିଶ ବରଷ କାଳ କରିଛି ସଂଗ୍ରାମ
ପାଞ୍ଚାଳ ଜିଣିବା ପାଇଁ ନ ହୋଇଛି କ୍ଷମ
ଦ୍ରୁପଦ ନୃପ ବୀରତ୍ୱ
ଦେଖି ଶତ୍ରୁପକ୍ଷ ହୋଇଛନ୍ତି ଭୀତସନ୍ତ । ୭୨

ରାଜଗୁରୁ ସାନ୍ଦୀପନି ଠାରୁ ବିଦ୍ୟା ସାଧି
ପାଞ୍ଚାଳି କୁମାରେ ଲଭି ଅଛନ୍ତି ପ୍ରସିଦ୍ଧି
ଅସ୍ତ୍ର ଗୁରୁ ସାନ୍ଦୀପନି
ଯୁଦ୍ଧ ଶିକ୍ଷା ଦେଇଛନ୍ତି ରାଜପୁତ୍ର ବେନି । ୭୩

ଦ୍ରୁପଦ ନନ୍ଦନ ଶିଖଣ୍ଡି ଓ ଧୃଷ୍ଟଦ୍ୟୁମ୍ନ
ଧନୁ ଅସ୍ତ୍ର ଚାଳନାରେ ଅତି ପାରଙ୍ଗମ
ଉଭୟେ ବିଖ୍ୟାତ ବୀର
ତାଙ୍କୁ ଯୁଦ୍ଧେ ଜିଣିବାକୁ ନାହିଁ କେଉଁ ବୀର । ୭୪

ଭୀଷ୍ମ ଦ୍ରୋଣ ଜିଣିବାକୁ ବେନି ଭ୍ରାତା ଜନ୍ମ
ଅନ୍ୟ ବୀରମାନେ ତାଙ୍କ ପାଖରେ ନଗଣ୍ୟ
ପିତା ପାଞ୍ଚାଳ ରାଜନ
କୌରବେ ଜିଣିବା ପାଇଁ ଅଛି ପରାକ୍ରମ । ୭୫

କୃଷ୍ଣ ବଳରାମ ସେହି ଗୁରୁଙ୍କର ଶିଷ୍ୟ
ତାଙ୍କଠାରୁ ବିଦ୍ୟା ସାଧି ବିଦ୍ୱାନ ବିଶେଷ
ଦ୍ରୋଣ ସାନ୍ଦିପନୀ ଦୁଇ
ରାଜଗୁରୁ ରୂପେ ଖ୍ୟାତ ଏ ଭାରତ ଭୂଇଁ । ୭୬

ଭାରତ ବର୍ଷର ରାଜ୍ୟ, ରାଜା, ରାଜପୁତ୍ର
ବିଷୟରେ ରଖିଛନ୍ତି ସମ୍ବାଦ ସମସ୍ତ
ରାଜାଏ କରନ୍ତି ମାନ୍ୟ
ଗୁରୁରୂପେ ସେନାଙ୍କର ବହୁତ ସମ୍ମାନ । ୭୭

ମାତ୍ର ଶୂଦ୍ର ବୈଶ୍ୟ ପାଇଁ ଶିକ୍ଷାର ବ୍ୟବସ୍ଥା
ଉଭୟ ଆଶ୍ରମେ ମନା ଥିଲା ଏହି କଥା
ଶସ୍ତ୍ର ଶାସ୍ତ୍ର ଶିକ୍ଷାଦାନ
ପାଇବାରୁ ବଞ୍ଚିତ ଏ ଦୁଇ ଗୋଟି ବର୍ଣ୍ଣ । ୭୮

ଗୁରୁ ସାନ୍ଦିପନୀଙ୍କର ଚୃତ ଶିଷ୍ୟ ଶ୍ରେଷ୍ଠ
ରାମ, କୃଷ୍ଣ, ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ ଗରିଷ୍ଠ
ସକଳ ବିଦ୍ୟାରେ କୃଷ୍ଣ
କରାୟତ୍ତ କରିଛନ୍ତି କୌଶଳ ବିଭିନ୍ନ । ୭୯

ରଥାରୋହୀ ଯୋଦ୍ଧା ରୂପେ ଅତ୍ୟନ୍ତ ପ୍ରବୀଣ
ଗଜ, ଅଶ୍ୱ ଚାଳନାରେ ବିଶେଷେ ନିପୁଣ
ଧନୁର୍ବାଣ ଅମୋଘାସ୍ତ୍ର
ଅବ୍ୟର୍ଥ ଶର ସନ୍ଧାନେ ଧାନୁଷ୍କ ସାମର୍ଥ । ୮୦

ଧାବମାନ ରଥୁ ସମ୍ମୁଖସ୍ଥ ବୀର ପ୍ରତି
ଚକ୍ର ପେଶିବାରେ ଅଛି ଅସୀମ ଶକତି
ଗଦା ମଲ୍ଲ ଯୁଦ୍ଧେ ଶ୍ରେଷ୍ଠ
ସମର କ୍ଷେତ୍ରେ ଅଜେୟ ଯଦୁକୁଳ ଇଷ୍ଟ । ୮୧

ତାହାଙ୍କ ଜ୍ୟେଷ୍ଠ ସୋଦର ଦେବ ହଳଧର
ହଳମୂଷଳ ଚାଳନେ ଅଦ୍ୱିତୀୟ ବୀର
ଗଦାଚାଳନାରେ ମଧ୍ୟ
ବୀରପଣେ ଭାରତରେ ଅତ୍ୟନ୍ତ ପ୍ରସିଦ୍ଧ । ୮୨

ପାଞ୍ଚାଳ ତଥା ଯାଦବ ଉଭୟ କୁଳର
ଗୁରୁ ଥାଇ ସାନ୍ଦପନୀ ମାନ୍ୟ ସେମାନଙ୍କର
ଉଭୟ ବଂଶ ମଧ୍ୟରେ
ସଂଯୋଗ ହେତୁ ସମାନ ଉଚ୍ଚ ସ୍ତରରେ । ୮୩
ଉଭୟ ପକ୍ଷଙ୍କ ମଧ୍ୟରେ ଅନ୍ତରଙ୍ଗତା
ରକ୍ଷାକରିବାରେ କରିଥିଲେ ସେ ବ୍ୟବସ୍ଥା
ବାସୁଦେବ, ଧୃଷ୍ଟଦ୍ୟୁମ୍ନ
ଏକ ଗୁରୁ ଶିଷ୍ୟ ଭାବେ ଅଭେଦ୍ୟ ବନ୍ଧନ । ୮୪
ଜାଣିଥିଲେ ସାନ୍ଦପନୀ ଏହି ଦୁଇ ଶକ୍ତି
ଏକତ୍ର ହୋଇ ରହିଲେ ଦୃଢ଼ ହେବ ସ୍ଥିତି
ଧର୍ମ ହେବ ସୁରକ୍ଷିତ
ବଢିଯିବ ସାମରିକ ଶକ୍ତି ଅପ୍ରମିତ । ୮୫
ଗାଙ୍ଗେୟ ଉପତ୍ୟକାରେ ହସ୍ତିନା କାମ୍ପିଲ୍ୟ
ସାମରିକ ଶକ୍ତି କ୍ଷେତ୍ରେ ବେଶ ସମତୁଲ
ଏଥି ମଧ୍ୟେ କୁରୁକ୍ଷେତ୍ର
ଅନ୍ତର୍ଗତ ହେତୁ ଏହା ଧର୍ମ ଯୁଦ୍ଧ କ୍ଷେତ୍ର । ୮୬
ଏହି ଦୁଇ ରାଜ୍ୟ ପ୍ରତିଷ୍ଠିତ ଆର୍ଯ୍ୟାବର୍ତ୍ତେ
ଅପ୍ରତିଦ୍ୱନ୍ଦୀ ସାମ୍ରାଜ୍ୟ ବିଶାଳ ଭାରତେ
ହସ୍ତିନା ପାଞ୍ଚାଳ ଦୁଇ
ଆତ୍ମ ପ୍ରତିଷ୍ଠା ପାଇଁ କରୁଛନ୍ତି ଲଢ଼େଇ । ୮୭
ହସ୍ତିନାର ପ୍ରତିଦ୍ୱନ୍ଦୀ ପାଞ୍ଚାଳ ନୃପତି
ସାମରିକ ଶକ୍ତି ରୂପେ ଦୁଇ ମହାଶକ୍ତି
ତ୍ରିଶକ୍ତି ଭାବେ କଥିତ
ହସ୍ତିନା-ପାଞ୍ଚାଳ-ଦ୍ୱାରକା ଏ ତିନ ରାଷ୍ଟ୍ର । ୮୮
ଏ ତିନ ରାଷ୍ଟ୍ର ମଧ୍ୟରେ ରହିଲେ ମିତ୍ରତା
କେ ଜଣି ପାରିବ ଯୁଦ୍ଧେ ଅଛୁ ମହାରଥୀ ?
ଅପରାଜେୟ ତ୍ରିଶକ୍ତି
ପୃଥିବୀ ଜିଣିବା ପାଇଁ ରହିଛି ଶକତି । ୮୯

ବୁଝାଇ କହନ୍ତ ମୁନି ରାଜନୀତି ତତ୍ତ୍ୱ
ଯୁଧିଷ୍ଠିର ଆର୍ଯ୍ୟାବର୍ତ୍ତେ ହେଲେ ନରନାଥ
ଯୋଦ୍ଧା ହୋଇଲେ ଅର୍ଜ୍ଜୁନ
ନାଶ ଯିବେ ଦୁଷ୍ଟ ଗଣେ ଶାନ୍ତି ସଂସ୍ଥାପନ । ୯୦

ନିବାତ କବଚ, ଗୋସିଂହ, ଦୈତ୍ୟ ବାଣାସୁର
ସମ୍ବର, ନାରକା, ବଜ୍ରନାଭ, ମୁଡ଼ାସୁର
ଶାଲ୍ୱରାଜ, ଶିଶୁପାଳ
ଦନ୍ତବକ୍ର, ଜରାସନ୍ଧ, ରୁକ୍ମଣ ଭୂପାଳ । ୯୧

ଦୁର୍ଯ୍ୟୋଧନ ଶତଭ୍ରାତା ଆହ ବହୁ ଦୁଷ୍ଟ
ଧର୍ମ ବିପକ୍ଷରେ ବାନ୍ଧିଛନ୍ତି ମହାମେଣ୍ଟ
ସୈନ୍ୟ ସେନା ସହିତରେ
ନାଶଯିବେ ଦୁଷ୍ଟ ଗଣେ ଭାରତ ସମରେ । ୯୨

ଲୋକଙ୍କର ଧର୍ମ ପ୍ରତି ବଢ଼ିବ ସମ୍ମାନ
ରାଜ୍ୟରାଜ୍ୟ ମଧ୍ୟେ ଶାନ୍ତି ହୋଇବ ସ୍ଥାପନ
ଧର୍ମ ରାଜ୍ୟ ସଂଗଠନ
କରିବାକୁ ପାଣ୍ଡୁ ପୁତ୍ରେ ହୋଇଛନ୍ତି ଜନ୍ମ । ୯୩

ଯାହାଙ୍କ ଧର୍ମ ରକ୍ଷାରେ ଅଛି ପ୍ରୟୋଜନ
ସେହି ଅନୁସାରେ କାର୍ଯ୍ୟ କର ଆୟୋଜନ
ବାସବଙ୍କ ପରାମର୍ଶ
ମୁଁ ଯଜ୍ଞେ ଯାଜ୍ଞସେନୀ ପ୍ରାଧାନ୍ୟ ବିଶେଷ । ୯୪

ଭାରତର ଶ୍ରେଷ୍ଠ ବୀର ବାସବ ନନ୍ଦନ
ଯାଜ୍ଞସେନୀ ପାଇଁ ବର ହୋଇଲେ ବରଣ
ଉଦ୍ଦେଶ୍ୟ ହେବ ସାଧନ
ତଦ୍ୱାରା ହେବ ଦ୍ରୁପଦ ପ୍ରତିଜ୍ଞା ପୂରଣ । ୯୫

ପାଣ୍ଡବ ପାଞ୍ଚାଳ ମଧ୍ୟେ କରାଇଲେ ପ୍ରୀତି
ସଫଳ ହୋଇବ ପ୍ରଭୁ କୂଟ ରାଜନୀତି
ବିସ୍ତାର କହନ୍ତ ମୁନି
ଯଥାର୍ଥ ମଣିଲେ କୃଷ୍ଣ ମୁନିଙ୍କର ବାଣୀ । ୯୬

କୂଟନୀତି କଥା କହି କଣ୍ଡୁଙ୍କ କୁମର
କୃଷ୍ଣ କୃଷ୍ଣ କଣ୍ଠେ ଜପି ଚଳିଲେ ସତ୍ୱର
ଦ୍ୱାରକା ରାଜ ସଭାରେ
ଜୟ ଜୟ ଧ୍ୱନି କଲେ ସର୍ବେ ସମ ସ୍ୱରେ । ୯୭

ନାରଦଙ୍କ ଉପଦେଶ ପାଇ ଯଦୁନାଥ
ଜ୍ଞାତ ହେଲେ ଯୁଗ ଖେଳ ଆସି ଉପଗତ
ପାଣ୍ଡବେ ହେବେ ଉଦିତ
ହସ୍ତିନା ପାଞ୍ଚାଳ ମଧ୍ୟେ ସମ୍ବନ୍ଧ ସ୍ଥାପିତ । ୯୮

ବାରୁଣାବନ୍ତ ନଗରେ ପାଣ୍ଡୁଙ୍କ ନନ୍ଦନେ
ଦୁଃଖେ କାଟୁଛନ୍ତି ଦିନ ବାସ କରି ଭିନ୍ନେ
ଧୃତରାଷ୍ଟ୍ର ଜ୍ୟେଷ୍ଠ ତାତ
ପୁତୁରଙ୍କ ପ୍ରତି ହୃଦେ ଅଶ୍ରଦ୍ଧା ପୂରିତ । ୯୯

ଭ୍ରାତୃ ଦ୍ରୋହୀ ଦୁର୍ଯ୍ୟୋଧନ ଧର୍ମ ପ୍ରତିବାଦୀ
ଈର୍ଷା ପରାୟଣ ହୋଇ ସଦା ପ୍ରତିଦ୍ୱନ୍ଦୀ
ତା ମନ୍ଦ ସ୍ୱଭାବ ପାଇଁ
ବିହିତ ଦଣ୍ଡ ବିଧାନ ଅବଶ୍ୟ ଯୋଗାଇ । ୧୦୦

ଧର୍ମ ସାହାପକ୍ଷ ହେବା ଅଟେ ମୋର କାମ
ଧର୍ମ ସଂସ୍ଥାପନ ପାଇଁ ହୋଇ ଅଛି ଜନ୍ମ
ପାଣ୍ଡବେ ମୋ ସହଚର
ସେମାନଙ୍କୁ ଧରି କରିବ ଧର୍ମ ସଂସ୍କାର । ୧୦୧
ଦ୍ୱାରକା ଗଡରୁ କାର୍ଯ୍ୟ ହୋଇବ ଆରମ୍ଭ
କରାଇବି ଯୁଦ୍ଧ ଯଜ୍ଞ ମତାଇ ପାଣ୍ଡବ
ନ ଧରିବି କରେ ଅସ୍ତ୍ର
ଯୋଗମାୟା ଯାଜ୍ଞସେନୀ ହୋଇବେ ମୋ ଅସ୍ତ୍ର ।୧୦୨
ଦୃଢ଼ ସ୍ଥିର ହୋଇ କୃଷ୍ଣ କଲେ କମ୍ବୁସ୍ୱନ
ସେ ସ୍ୱନ ଶ୍ରବଣେ ଦୁଷ୍ଟ ହୃଦୟେ କମ୍ପନ
ହରିବୋଲ ହୁଳହୁଳି
ଶବଦରେ ସଭାସ୍ଥଳ ପଡ଼ିଲ ଉଛୁଳି । ୧୦୩

ବାଦ୍ୟକାରମାନେ କଲେ ଉଚ୍ଚେ ବାଦ୍ୟ ସ୍ୱନ
ଦୁନ୍ଦୁଭି ନାଦେ ଦ୍ୱାରକା ନଗ୍ର କମ୍ପମାନ
ଭାଟ ମୁଖେ ଯଶ ଗାନ
ଅନୁଧାଇ ଚଳାଇଲେ ଯଦୁବୀର ଗଣ । ୧୦୪

ଦ୍ୱାରକାଧୀଶ ଉଦିତ ଜାଣିଲେ ସକଳେ
ମଙ୍ଗଳ ଅଷ୍ଟକ ବିପ୍ରେ ଉଚ୍ଚରେ ଗାଇଲେ
ଦେବେ କଲେ ପୁଷ୍ପ ବୃଷ୍ଟି
ମୂର୍ଖଗତ ବସୁମଙ୍ଗ ଚନ୍ଦ୍ର ନବ ସୃଷ୍ଟି । ୧୦୫

ଜୟ ଜୟ ରାମକୃଷ୍ଣ ବସୁଦେବ ସୁତ
ବଳରାମ, ବାସୁଦେବ, ଅନନ୍ତ, ଅଚ୍ୟୁତ
କଂସକେଶୀ ବିମର୍ଦ୍ଦନ
କାଳଯବନ ମର୍ଦ୍ଦନକାରୀ ରାମକୃଷ୍ଣ । ୧୦୬

ଯୋଗୀଜନ ହୃତକାରୀ ଭକ୍ତଜନ ବନ୍ଧୁ
ଆର୍ତ୍ତୀ ଆର୍ତ୍ତି ତ୍ରାଣ କର୍ତ୍ତା କୃପାଜଳ ସିନ୍ଧୁ
ଜନ୍ମୁ ଶରଣ ସୋଦର
ଶରଣ ରଖ ଚରଣ ତଳେ ଦାମୋଦର । ୧୦୭

ଏକଶହ ଆଠ ପଦେ ଅଧ୍ୟାୟ ସମ୍ପୂର୍ଣ୍ଣ
ବୁଲଦାସ ପଶେ ପଦ ପଦ୍ମରେ ଶରଣ
କୃଷ୍ଣ ଚରିତ ମାନସ
ଶ୍ରବଣେ ବୃଜିନ ନାଶ କର ହେ ବିବୁଧ । ୧୦୮

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକାଲୀଳା ଖଣ୍ଡେ ନାରଦଙ୍କ ମନ୍ତ୍ରଣା
ବର୍ଣ୍ଣନେ ନାମ ପ୍ରଥମ ଅଧ୍ୟାୟ ସମ୍ପୂର୍ଣ୍ଣଂ ।

ଶ୍ରୀକୃଷ୍ଣାର୍ପଣମସ୍ତୁ ।

**ବୋଲି -**

ରାଧାଗୋବିନ୍ଦ ଶଚ୍ଚିଦାନନ୍ଦ ପଦାରବିନ୍ଦ
ଭଜରେ ମାନସ ରାତ୍ର ଦିବସ
ଭଜିଲେ ମନ ପାଇ ଦର୍ଶନ ଶ୍ରୀରାଧାକୃଷ୍ଣ
ନନ୍ଦ ନନ୍ଦନ ଗୋପିକା ଈଶ । ୧

ପଦ୍ମଚରଣ କଲେ ସ୍ମରଣ ପୂଣ୍ୟ ଅର୍ଜନ
ପରାଣ ତେଜିଲେ ବୈକୁଣ୍ଠେ ବାସ
କାକ ଭୁଷଣ୍ଡି, ବାସୁଆ ଷଣ୍ଢ, ବିନତା ସୁତ,
ବାସୁକି, ଅନନ୍ତ, ଅଞ୍ଜନା ଶିଷ୍ୟ । ୨

ଭକତି ବଳେ ଯଶ ରଖିଲେ ମହୀ ମଣ୍ଡଳେ
ଭଜୁଛନ୍ତି ସଦା ପାଦ ସାରସ
ଶିବ ବିନୋଦ ପରମାନନ୍ଦ ଦିବ୍ୟ ଆନନ୍ଦ
ମକରନ୍ଦ ପାନେ ବୁଲି ସନ୍ତୋଷ । ୩

# ଦ୍ୱିତୀୟ ଅଧ୍ୟାୟ

## ଭଗ୍ନୀ ସୁଭଦ୍ରା ଦ୍ୱାରକା ଆନୟନ ଓ ମଥୁରାରେ ସୁରଥଙ୍କ ଅଭିଷେକ

ରାଗ - ପଞ୍ଚମଞ୍ଜରୀ

**ହେ** ଯୁଗ ପୁରୁଷୋତ୍ତମ ଦେବ ଅଭିରାମ
କରୁଅଛୁ ଶ୍ରୀଚରଣେ ଭୂମିଷ୍ଠ ପ୍ରଣାମ । ୧
ଘୋର କଳିକାଳ ଅସ୍ଥ ନ ହେଉଛି ମନ
ସତ୍ୟଧର୍ମ ସଙ୍କୁଚିତ ଗ୍ରାସିଛି ଅଧର୍ମ । ୨
ଆହେ ପ୍ରିୟତମ କର ସୁଜ୍ଞାନ ପ୍ରଦାନ
ଜ୍ଞାନଦାନ କରି କର ଅଜ୍ଞାନ ହରଣ । ୩
ଚଳକାଠି ଉତ୍ତରରେ କରମଳା ଗ୍ରାମ
ଅଭିନ୍ନସୁନ୍ଦର ଜାତ ସୁବ୍ରତା ନନ୍ଦନ । ୪
ଲକ୍ଷେ ଆଠ ସପ୍ତ ଭକ୍ତ ଧରି କର ଖେଳ
ଅନନ୍ତ ଗୁମ୍ଫାରେ ବିଜେ ଅର୍ଜୁନ ଦୁଲାଳ । ୫
ଅନ୍ତରଙ୍ଗ ଭକ୍ତେ ଅନ୍ତରଙ୍ଗ ସଂକୀର୍ତ୍ତନେ
ଅହର୍ନିଶି ଅକପାରେ ଖେଳନ୍ତି ଗୋପନେ । ୬
କରମଳା ନାମ ବିଖ୍ୟାତ ହେଲା ଜଗତେ
ପଡନ୍ତି ଭକତେ ଆସି ଚରଣ ଅଗ୍ରତେ । ୭
ଲେଖିଲ ଅନେକ ଶାସ୍ତ୍ର ନିଗମ ପୁରାଣ
ପରମହଂସ ସ୍ୱରୂପ ଜ୍ଞାନୀ ଅଗ୍ରଗଣ୍ୟ । ୮
ଅନନ୍ତ ସତ୍ୟ କଳରେ ବୌଦ୍ଧରୂପେ ଜାତ
ହୋଇ ଏକାକ୍ଷର ମନ୍ତ୍ର କରିଲ ଉକତ । ୯
ବେନ୍ଦୁପଡ଼ା ଗାଢ ବ୍ରହ୍ମ ଦକ୍ଷିଣ ଦଗରେ
ଶ୍ୟାମ ଅବତାର ସରହଷ ନଦୀ ତୀରେ । ୧୦
ବ୍ରାହ୍ମଣାଦି ଚତୁର୍ବର୍ଣ୍ଣ ଭକ୍ତ ଏକତ୍ରିତ
ଅନ୍ତରଙ୍ଗ ସଂକୀର୍ତ୍ତନେ ଅନ୍ତରଙ୍ଗ ଭକ୍ତ । ୧୧

ଶ୍ୟାମ ଅବତାରେ ନାମ କୃଷ୍ଣ ଅଭିରାମ
ଅଭିନ୍ନସୁନ୍ଦର କୃଷ୍ଣ ପ୍ରେମରେ ନିମଗ୍ନ । ୧୨

ମୁଖରେ ନ ଜପି ନାମ ଧ୍ୱନିତ ନାସାରେ
ସଞ୍ଜୀବ ସମାଧି ଯୋଗେ ଥାଅ ନିରନ୍ତରେ । ୧୩

ପ୍ରଭୁର ମହିମା ଅଟେ ଅଶେଷ ଅପାର
ସର୍ବଜନାଦୃତ ପୂର୍ଣ୍ଣାନନ୍ଦ ବେଦସାର । ୧୪

ସର୍ବଜୀବ ଗଣେ ପୂଜ୍ୟ ଦୟାର ସାଗର
ସର୍ବ ଘଟେ ସମଭାବେ ଆସନ ତୁମ୍ଭର । ୧୫

ସଂପୂର୍ଣ୍ଣାନନ୍ଦ ଠାକୁର ବଜେ ସର୍ବଠାରେ
ପ୍ରାଣୀ ଏ ଦେଖନ୍ତି ଦିବ୍ୟ ରୂପ ନିରନ୍ତରେ । ୧୬

ନୀଳ ନଳୀନ ବରନ ଦିବ୍ୟ କଳେବର
ଜଳଜ ନେତ୍ର ଅଭିରାମ ଶ୍ୟାମଳ ସୁନ୍ଦର । ୧୭

କଟିଦେଶେ ପୀତବାସ ମାଳଶ୍ରୀର ହାର
ମେଦୁର ଗମ୍ଭୀର ସ୍ୱନ ଶ୍ରବଣେ ମଧୁର । ୧୮

କୋଟି ଚନ୍ଦ୍ର ଶୋଭାପାଏ ସୁନ୍ଦର ଲପନ
ସ୍ମିତହାସ୍ୟ ରେଖା ଦେଖି ବିଗଳିତ ମନ । ୧୯

ଏମନ୍ତ ଲାଳିତ୍ୟ ରୂପେ ମର୍ତ୍ତ୍ୟେ ଅବତରି
ଦର୍ଶନ, ସ୍ପର୍ଶ, ଶ୍ରବଣେ ପ୍ରାଣୀ ଯାନ୍ତି ତରି । ୨୦

କ୍ଷମାନିଧି ଅଭିରାମ ଜାତ କ୍ଷତ କୋଳେ
କ୍ଷିତି ମହାଭାର ନିବାରୁଛ କ୍ଷମା ବଳେ । ୨୧

କରମଲା ଗ୍ରାମେ ଗୃହେ ଭକତଙ୍କ ଲୀଳା
ଅହର୍ନିଶି ଗୁରୁଦେବ କର ଲୀଳା ଖେଳା । ୨୨

ସେ ଅଭିରାମ ଚରଣେ ପଡ଼େ ବୃନ୍ଦାବନ
ବାହ୍ୱ କର ଅଧମକୁ ଆହେ ଜଗଦୀଶ । ୨୩

କଣ୍ଠେ ବସି ପବମାନ ଛଅନ୍ତୁ ବଢାଇ
ଦ୍ୱାରକାଲୀଳା ବର୍ଣ୍ଣନା ମାନସେ ଇଚ୍ଛାଇ । ୨୪

ଜୟ ଜୟ ଅଭିରାମ ଶ୍ୟାମ ଅବତାର
ଜୟ ଜୟ ଅଭିରାମ ଅଭିନ୍ନ ସୁନ୍ଦର । ୨୫

ଜୟ ଭକ୍ତ ପ୍ରାଣପ୍ରିୟ ଅଖିଳ ଠାକୁର
ବୃନ୍ଦାବନ କରେ ପାଦେ ସହସ୍ର ଜୁହାର । ୨୬
ଏଥୁଅନ୍ତେ ଶୁଣ କୃଷ୍ଣ ଚରିତ ମାନସ
ପଦପଦକରେ ଝରୁଅଛି କୃଷ୍ଣ ରସ । ୨୭
ଦ୍ୱାରକା ଗଡରେ କୃଷ୍ଣ କୁଟୁମ୍ବ ଘେନଣ
ଜରାସନ୍ଧ ଭୟେ କଲେ ଯାଇ ଅବସ୍ଥାନ । ୨୮
ଧନରତ୍ନେ ପରିପୂର୍ଣ୍ଣ ଦ୍ୱାରକା ଭୁବନ
ଖଟିଛନ୍ତି ଯଦୁମାନେ ଆଜ୍ଞା ପରମାଣ । ୨୯
ସୁଖରେ କାଟନ୍ତି କାଳ ଯାଦବ ସକଳେ
ନିତି ରାମ କୃଷ୍ଣ ମୁଖ ଦେଖୁଥାନ୍ତି ଡୋଳେ । ୩୦
ମଥୁରା ତେଜି ପଳାଇ ଆସିବାର ଶୁଣି
ମନ ଦୁଃଖେ ରହିଥିବେ ଯଶୋଦା ଜନନୀ । ୩୧
ଆମ୍ଭର ଦୁଃଖରେ ଦୁଃଖୀ ହୋଇ ବଞ୍ଚିଥିବେ
ସମ୍ବାଦ ନପାଇ ମନ ଘାଣ୍ଟି ହେଉଥିବେ । ୩୨
ଗୋପପୁରକୁ ସମ୍ବାଦ ଦେବାର ନିମନ୍ତେ
ବିଚାରିଲେ ବାସୁଦେବ ଆପଣାର ଚିତ୍ତେ । ୩୩
ଗୋପପୁର କଥା ଚିନ୍ତି ମନରେ ବିଷର୍ଣ୍ଣ
ପିତା ମାତା, ଗୋପ ବୃନ୍ଦ, ସାଙ୍ଗସାଥୀଗଣ । ୩୪
ଶ୍ରୀରାଧାଙ୍କ କଥା ସ୍ମରି ଉଦ୍‌ବେଳିତ କୃଷ୍ଣ
କପରି ଅଛନ୍ତି ସବେ ଜାଣିବାକୁ ମନ । ୩୫
ସମ୍ବାଦ ଆଣିବା ପାଇଁ ସାତ୍ୟକି ସୋଦର
ପଠାଇଲେ ଗୋପପୁରେ କରି ସମାଦର । ୩୬
ଭଗ୍ନୀ ସୁଭଦ୍ରାଙ୍କୁ ଗୋପୁ ଆଣିବା ନିମନ୍ତେ
ପତ୍ରଲେଖି ପଠାଇଲେ ସାତ୍ୟକିଙ୍କ ହାତେ । ୩୭
କହିଲେ ପିତାଙ୍କୁ ଦେବ ନେଇ ଆମ୍ଭ ତତ୍ତ୍ୱ
ଜଣାଇବ କରି ଅଛୁ ଶତ ପ୍ରଣିପାତ । ୩୮
ଆମ୍ଭେ ଯେ ମଥୁରାପୁରୀ ଛାଡ଼ିଣ ଆସିଲୁ
ଜରାସନ୍ଧ ଡ଼ରେ ଦ୍ୱାରକାରେ ବାସକଲୁ । ୩୯

"ଏହି କଥା କହିବଇ ଗୋପପୁରେ ଯାଇ
କାର୍ଯ୍ୟବ୍ୟସ୍ତ ଥିବା ହେତୁ ଆସି ପାରୁ ନାହିଁ ।୪୦
ଗୋପରୁ ଆସିଲି ଦିନୁ ଅନେକ ସମସ୍ୟା
ସମାଧାନ କରିବାରେ ଭିଡ଼ିଯାଏ ହିଂସା ।୪୧
ଦିନୁ ଦିନ ଚଳିପଥେ ସମସ୍ୟା ବହୁଳ
ମାତାଙ୍କ ଦର୍ଶନେ ଯିବା ଦେଖି ବେଳକାଳ ।୪୨
କହିବ ମାତାଙ୍କୁ ମୋର ନ କରିବେ ଦୁଃଖ
ଯିବାରେ ବିଳମ୍ବ ହେତୁ କରୁଥିବେ ଶୋକ ।୪୩
ଆମ୍ଭପାଇଁ ବ୍ୟସ୍ତ ହେବେ ନାହିଁ ପିତା ମାତା
ଗୋପଗୋପୀ ଶ୍ରୀରାଧାଙ୍କୁ କହିବ ଏକଥା ।୪୪
ଭୂଲି ନାହାନ୍ତି ତାହାଙ୍କୁ ମନରୁ ଶ୍ରୀକୃଷ୍ଣ
ହୃଦ ସିଂହାସନେ ଦେଇ ଅଛନ୍ତି ଆସନ ।୪୫
ପଠାଇ ଅଛନ୍ତି ମୋତେ ଦେଇଣ ଏ ବାର୍ତ୍ତା
ଏହା କହି ଦେଲେ ଭ୍ରାତା ହାତେ ହସ୍ତଲେଖା ।" ୪୬
ପଠାଇଲେ ସାତ୍ୟକଙ୍କୁ ପତ୍ର ଦେଇ କୃଷ୍ଣ
ରଥ ଚଳାଇ ସାତ୍ୟକି କରିଲେ ଗମନ ।୪୭
ପଥ ମଧ୍ୟରେ ମଥୁରା ଠାରେ ଅଟକିଲେ
ରଥରୁ ଓହ୍ଲାଇ ଧୂଳି ମସ୍ତକେ ବୋଳିଲେ ।୪୮
ଦେଖିଲେ ମଥୁରାପୁର ଯାଇଛି ଉଜୁଡ଼ି
ଧନଦ୍ରବ୍ୟ ଆସ୍ତି ବୃତ୍ତି ଯାଇଅଛି ପୋଡ଼ି ।୪୯
ରାଜାର ଅଭାବେ ରାଜ୍ୟ ଅରକ୍ଷିତ ପରି
ହରାଇ ବସିଛି ପୂର୍ବ ଶକ୍ତି, ଶୋଭା, ଶିରୀ ।୫୦
କଂସ ମଲା ଉଗ୍ରସେନ ଗଲେ ରାଜ୍ୟଛାଡ଼ି
ମାଗଧୀଏ ଲୁଟିନେଲେ ଘରଦ୍ୱାର ପୋଡ଼ି ।୫୧
କୃଷ୍ଣଙ୍କ କର୍ତ୍ତୃକ କାଳ ଯବନ ନିହତ
ହୋଇବାରୁ ଜରାସନ୍ଧ ହୋଇ କ୍ରୋଧାନ୍ୱିତ ।୫୨
ମଥୁରା ନଗରେ ଅଗ୍ନି ସଂଯୋଗ କରିଣ
ଚାଲିଗଲା ମଗଧକୁ ଜର୍ଜରିତ ମନ ।୫୩

ଦେଖଣ ସାତ୍ୟକି ମନେ ପାଇ ବହୁ ବ୍ୟଥା
ବୋଲେ ଜଣାଇବ ଯାଇ କୃଷ୍ଣଙ୍କୁ ଏ କଥା । ୫୩
ଏ ମଥୁରା ଆମ୍ଭ ପିତୃ ପିତାମହ ପୃଥ୍ୱୀ
ରକ୍ଷ ନ ନପାରଣ ଆମ୍ଭେ ଅର୍ଜିଲୁ ଅକୀର୍ତ୍ତି । ୫୪
ମଥୁରାର ଅବକ୍ଷୟ ସ୍ୱନେତ୍ରେ ଦେଖଣ
ଲୋତକେ ଆପ୍ଲୁତ ନେତ୍ର ବିଷାଦିତ ମନ । ୫୫
ଶରାଘାତ ପଶୁପରି ଜର୍ଜରିତ ହୋଇ
ଗୋପ ଅଭିମୁଖେ ଯାତ୍ରା କଲେ ରଥ ବାହି । ୫୬
ଦେଖିଲେ ସେ ଗୋପପୁରେ ନରନାରୀ ଗଣ
ସକଳେ କୃଷ୍ଣ ପ୍ରେମରେ ସମ୍ପୂର୍ଣ୍ଣ ନିମଗ୍ନ । ୫୭
କୃଷ୍ଣମୟ ହୋଇ ଅଛି ଗୋପ ପରିବେଶ
ଗଗନ, ପବନ, ନଦୀ ଯମୁନା ବିଶେଷ । ୫୮
ବାଳବୃଦ୍ଧ ତରୁଣାଦି ଯେତେ ନରନାରୀ
କୃଷ୍ଣ ଗୁଣ ଗାଉଛନ୍ତି ଦିବସ ସର୍ବରୀ । ୫୯
ଘୋଷୁଛନ୍ତି କୃଷ୍ଣ ନାମ ମହାମନ୍ତ୍ର କରି
ପୂଜନ୍ତି କୃଷ୍ଣ ପ୍ରତିମା ଘରେ ଘରେ ନାରୀ । ୬୦
କୃଷ୍ଣ ପ୍ରିୟ ଜନ ଦେଖି ସାତ୍ୟକି ମୋହିତ
କରଯୋଡ଼ି କଲେ ତାଙ୍କୁ ଶତ ପ୍ରଣିପାତ । ୬୧
ଧୀରେ ରଥ ବାହି ନେଇ ନନ୍ଦରାଜା ଦ୍ୱାରେ
ଲଗାଇଲେ କୃଷ୍ଣ ଭ୍ରାତା ବିନମ୍ର ଭାବରେ । ୬୨
ରଥରୁ ଓହ୍ଲାଇ ନନ୍ଦ ଯଶୋଦା ଚରଣେ
ପ୍ରଣିପାତ ହୋଇ ଠିଆ ହେଲେ ସାବଧାନେ । ୬୩
ସାତ୍ୟକିଙ୍କୁ ଦେଖି ନନ୍ଦ ଆନନ୍ଦ ମନରେ
ବସାଇଲେ ଆସନରେ ଆପଣା ପାଖରେ । ୬୪
ପୁଚ୍ଛିଲେ କୁଶଳ ବାର୍ତ୍ତା ରାମକୃଷ୍ଣଙ୍କର
ଉଗ୍ରସେନ, ବସୁଦେବ, ଦେବକୀ, ଅକ୍ରୁର । ୬୫
ଜ୍ଞାତି କୁଟୁମ୍ବ ସହିତ ପର ଆପଣାର
ସଭିଙ୍କ କୁଶଳ ବାର୍ତ୍ତା ପୁଚ୍ଛିଲେ ନୃବର । ୬୬

ସାତ୍ୟକି କହିଲେ ସର୍ବେ ଅଛନ୍ତି କୁଶଳେ
ଖଟିଛନ୍ତି ରାମକୃଷ୍ଣ ଯାଦବ ସକଳେ । ୬୮

ଉଗ୍ରସେନ ସହିତରେ ବନ୍ଧୁ ପରିଜନେ
ସର୍ବେ ଅଛନ୍ତି କୁଶଳେ ଦ୍ୱାରକା ଭୁବନେ । ୬୯

ଘେନିଗଲେ ଗୋପ ଗୋପୀ ଦେଖି ରଥବର
ଚିହ୍ନିଲେ ଏ ରଥେ ଆସିଥିଲେ ତ ଅକ୍ରୂର । ୭୦

କୂଣ୍ଠ କରି ଘେନିଗଲେ ସଙ୍ଗେ ରାମକୃଷ୍ଣ
ସାତ୍ୟକି ଆସିଛୁ ଏବେ ନେବ କେଉଁ ଜନ ? ୭୧

ବାରମ୍ବାର ଗୋପବାଳୀ କଟେଇ ପୁଚ୍ଛିଲେ
କେମ୍ପା ଆସିଛ ସାତ୍ୟକି ସତ କହ ଭଲେ । ୭୨

ସାତ୍ୟକି କହିଲେ ଶୁଣ ସର୍ବ ଗୋପବାଳୀ
ପଠାଇ ଅଛନ୍ତି ମୋତେ ରାମ ବନମାଳୀ । ୭୩

କାର୍ଯ୍ୟବ୍ୟସ୍ତ ଥିବାରୁ ସେ ଆସି ନ ପାରିଲେ
ସୁବିଧା ଦେଖି ଆସିବେ କୃଷ୍ଣ ଗୋପପୁରେ । ୭୪

ଏଠାରେ ବାର ବରଷ କାଳ କଟାଇଲେ
ମଥୁରାରେ ଆଠବର୍ଷ ଯାଇଁଣ ରହିଲେ । ୭୫

ଜରାସନ୍ଧ ଭୟ ଯହୁଁ ଲାଗିଲା ସେଠାରେ
ଯାଦବେ ଘେନି ରହିଲେ ଦ୍ୱାରକା ନଗରେ । ୭୬

ସମୁଦ୍ର ପୋତାଇ ଗଡ଼ କରିଲେ ନିର୍ମାଣ
ସୁବର୍ଣ୍ଣେ ନିର୍ମିତ ପୁର ଅତି ଶୋଭାବନ । ୭୭

ସିଂହଦ୍ୱାରେ ଘୂରୁଅଛି ଚକ୍ର ସୁଦର୍ଶନ
ପଶି ନ ପାରନ୍ତି ବଳେ ଦର୍ପୀ ଦୁଷ୍ଟ ଜନ । ୭୮

ଦ୍ୱାରକାଧୀଶ ହେଲେ ହେଁ କୃଷ୍ଣ ଭଗବାନ
ଗୋପପୁର କଥା ଗୋଟି ଖୋଳୁଛନ୍ତି ମନ । ୭୯

ଆସିବେ ଆସିବେ ବୋଲି କହୁଥିଲେ କୃଷ୍ଣ
ମାତ୍ର ରାଜକାର୍ଯ୍ୟେ ବ୍ୟସ୍ତ ଯୋଗୁଁ ହେଲା ବାଧ୍ୟ । ୮୦

ପଠାଇ ଅଛନ୍ତି ମୋତେ ଦେଖି ଯିବା ପାଇଁ
କେଉଁପରି ରହିଛନ୍ତି ସଖା ଗୋପ ଭାଇ । ୮୧

ପ୍ରଭୁ ଅଙ୍କ ଶିରେ ଧରି ଆସି ଅଛୁ ମୁହିଁ
ଭଗ୍ନୀ ସୁଭଦ୍ରାଙ୍କୁ ରଥେ ଘେନି ଯିବା ପାଇଁ । ୮୨
ଭଉଣୀ ଗଲେ ଭାଇତ ଆସିବେ ନିଶ୍ଚୟ
ପଠାଇ ଅଛନ୍ତି ମୋତେ କରି ଗୋ ପ୍ରତ୍ୟୟ । ୮୩
କୃଷ୍ଣ ଆସିବାର କଥାଶୁଣି ଗୋପୀ ଗଣ
କହିଲେ ବିଶ୍ୱାସ ନ ଆସେ ଏ ବଚନ । ୮୪
ଅକ୍ରୂର ଯେ କାଳେ ରାମକୃଷ୍ଣ ଘେନି ଗଲେ
ଅଳ୍ପ ଦିନେ ଫେରିବାକୁ କହି ଯାଇଥିଲେ । ୮୫
ଗଲଣି ଆଠ ବରଷ ନାହିଁତ ଦର୍ଶନ
ଦିନ ଗଣୁ ଅଛୁ ବସି ଗଣିକା ସମାନ । ୮୬
ଦିନାନ୍ତେ ଉଦ୍ଧବ ଆସି କହି ଯାଇଥିଲେ
ଆସିବେ ବୋଲିଣ ବାଟ ଚାହିଁ ଅଛୁ ଭଲେ । ୮୭
ଚାହିଁ ଚାହିଁ ଆଖି ପାଣି ଶୁଷ୍କ ହୋଇଗଲା
ତଥାପି ତ କୃଷ୍ଣଙ୍କର ଦେଖା ନ ମିଳିଲା । ୮୮
କେତେଦିନ ପରେ ଆସିଥିଲେ ସଙ୍କର୍ଷଣ
ସିଏ ମଧ କହିଗଲେ ଆସିବେ ଶ୍ରୀକୃଷ୍ଣ । ୮୯
ଜଣ ଜଣ ଆସି କରି ଯାଉଛନ୍ତି କହି
ଭରସା ରଖିଛୁ ଆମ୍ଭେ ଆସିବାର ପାଇଁ । ୯୦
କୃଷ୍ଣ ଆଗମନ ଚିନ୍ତା ଧରିଛୁ ଜୀବନ
ଆଶା ବୈତରଣୀ ଧାର ବହେ ଅନୁକ୍ଷଣ । ୯୧
କେ ବୋଲେ ନ ଆସୁ ପଛେ ସୁଖେ ରହିଥାଉ
କୃଷ୍ଣର କୁଶଳ କଥା କର୍ଣ୍ଣେ ଶୁଣୁ ଥାଉ । ୯୨
କୃଷ୍ଣ ଭଲ ଥିଲେ ସିନା ଆମ୍ଭର କୁଶଳ
ଯେତେ ଦୂରେ ଥିଲେ ମଧ ସେ ନନ୍ଦ ଦୁଲାଳ । ୯୩
ବନସ୍ତେ ବଢିଲେ ହାତୀ ଯେସନେ ରଜାର
ଯହିଁ ତହିଁ ଥିଲେ କୃଷ୍ଣ ଯଶୋଦା କୁମର । ୯୪
କହୁକହୁ କାମିନୀଙ୍କ କଣ୍ଠ ବାଷ୍ପରୁଦ୍ଧ
ନୟନରୁ ଝରେ ଲୋତକ ମୁଖ କାନ୍ଦ କାନ୍ଦ । ୯୫

ଗୋପୀ ଭାବରେ ସାତ୍ୟକ ହୋଇଲେ ବିମୁଗ୍ଧ
ପ୍ରଣାମ କଲେ ଭକ୍ତିରେ ଛୁଇଁ ଗୋପୀ ପାଦ । ୯୬
ଶୀତଳ ଅନଳ ସ୍ପର୍ଶେ ଜଳ ଘନୀଭୂତ
ହେଲା ପରି ଗୋପୀଙ୍କର ହୃଦ ଦ୍ରବୀଭୂତ । ୯୭
କୃଷ୍ଣ ଆଗମନ ବାର୍ତ୍ତା ଶାନ୍ତ କଲା ଚିତ୍ତ
ଶୋକ ମୁକ୍ତ ହେଲେ ସେ ପ୍ରେମେ ଉଚ୍ଛ୍ୱସିତ । ୯୮
ସୁଭଦ୍ରାଙ୍କୁ ବେଶ କରି ଯତ୍ନେ ଗୋପବାଳୀ
ବସାଇଲେ ରଥବରେ କୃଷ୍ଣ କଥା ଭାଳି । ୯୯
ରଥେ ବସାଇ ଭଦ୍ରାଙ୍କୁ ଫେରିଲେ ସାତ୍ୟକ
ଭାଇ ଭଉଣୀ ମିଳନେ ସର୍ବେ ହେଲେ ସୁଖୀ । ୧୦୦
ରହିଲେ ଦ୍ୱାରକାପୁରେ ସୁଭଦ୍ରା ଭଉଣୀ
ଖଟିଲେ ପରେଶ୍ୱରଏ ପ୍ରଭୁ ଆଜ୍ଞା ମାନି । ୧୦୧
ଏଥୁ ଅନ୍ତେ ଶୁଣ କୃଷ୍ଣ ଚରିତ ମାନସ
ବସିଛନ୍ତି ସଭା କରି ଉଗ୍ରସେନ ଈଶ । ୧୦୨
ବିଜେ କରିଛନ୍ତି ସିଂହାସନେ ରାମକୃଷ୍ଣ
ସାତ୍ୟକ ମିଳନ୍ତେ ଯାଇ ପୁଚ୍ଛିଲେ ଶ୍ରୀକୃଷ୍ଣ । ୧୦୩
ହେ ସାତ୍ୟକ ଗୋପ ମାର୍ଗେ ମଥୁରା ଦର୍ଶନ
ଯଦ୍ୟପି କରିଛ କର ସେ କଥା ବର୍ଣ୍ଣନ ? ୧୦୪
ସାତ୍ୟକ କହିଲେ ପ୍ରଭୁ ଶୁଣ ସେହି କଥା
ମଥୁରାପୁର ବର୍ଣ୍ଣନେ ମନେ ହେଲା ବ୍ୟଥା । ୧୦୫
କାଳଯବନ ନହତ ସମ୍ବାଦକୁ ପାଇ
ଜରାସନ୍ଧ ପୋଡି ଦେଲା ମଧୁପୁର ଭୂଇଁ । ୧୦୬
ବିକଳାଙ୍ଗ ମଧୁପୁର ନାହିଁ ପୂର୍ବ ଶିରୀ
ଲୁଟି ନେଇଛନ୍ତି ସବୁ ଜରା ଦଣ୍ଡଧାରୀ । ୧୦୭
ଆମ୍ଭ ପିତୃ ପିତାମହ ଅର୍ଜିତ ଯେ ଭୂଇଁ
ନହତ ଅଟନ୍ତି ଆମ୍ଭେ ତାହାକୁ ହରାଇ । ୧୦୮
ରକ୍ଷିବା ମଥୁରାପୁରୀ ଆମ୍ଭର କର୍ତ୍ତବ୍ୟ
ତହିଁକି ବ୍ୟବସ୍ଥା କର ଆହେ ବାସୁଦେବ । ୧୦୯

ସାତ୍ୟକିଙ୍କ କଥା ଶୁଣି ଶ୍ରୀକୃଷ୍ଣ ଚନ୍ଦ୍ରିତ
ଉଗ୍ରସେନ ଗୃହେଁ ପୃଚ୍ଛା କଲେ ଯଦୁନାଥ । ୧୧୦
ମଥୁରା ଯିବାକୁ ଯେବେ ଅଛି ତୁମ୍ଭ ମନ
ଯାଇ ପାରନ୍ତି ସଙ୍ଗରେ କୁଟୁମ୍ବ ଘେନଣ । ୧୧୧
ଆପଣ ନୃହନ୍ତି ଜରାସନ୍ଧର ବଇରୀ
ଆଦର କରିବ ତହିଁ ଗଲେ ଦଣ୍ଡଧାରୀ । ୧୧୨
ପୂର୍ବ ଦୋଷମାନ ସବୁ କ୍ଷମା କରିଦେବ
ମୋ ବଦଳରେ ମଧୁପୁର ଯାଅ ଚିତ୍ତେ ଦେବ । ୧୧୩
କେହି ନ ଗଲେ ନଗର ଉଜୁଡ଼ଣ ଯିବ
ମାଗଧୀ ମାନଙ୍କ ଦ୍ୱାରା କବଳିତ ହେବ । ୧୧୪
ବାରମ୍ବାର ପଚାରନ୍ତି ନୃପଙ୍କୁ ଅଚ୍ୟୁତ
ମଥୁରାକୁ ଫେରିବାକୁ ନ ବଳେ କି ଚିତ୍ତ । ୧୧୫
ଜନନୀ ଜନମଭୂମି ଗଙ୍ଗା କୂଳେ ବାସ
ଅନ୍ତିମ କାଳେ ପାଆନ୍ତି ଭାଗ୍ୟବାନ୍ ପୁଂସ । ୧୧୬
ଯୁକତେ ମଥୁରା ଚିତ୍ତ ପିତାମହ ପୃଥ୍ୱୀ
ନହୁଷ ନୃପଙ୍କ କାଳୁ ଅର୍ଜିତ ସମ୍ପତ୍ତି । ୧୧୭
ଯଦୁ ଆଦି ଥିଲେ ତହିଁ ପୁଣ୍ୟବନ୍ତ ରାଜା
ଦିଗପାଳ ସମାନରେ ପାଉଥିଲେ ପୂଜା । ୧୧୮
ଜରାସନ୍ଧେ ଭସ୍ମ କରି ଗୁଡ଼ାଇଲୁ ସେ ଭୂମି
ବାସ କଲୁ ଦରି ମଧ୍ୟେ କରି କର୍ମ ଭୂମି । ୧୧୯
ସେ ଚିତ୍ତ ଭୂମିରେ ଯାର ରହିଛି ସଦିଚ୍ଛା
ଯାଇ ପାରନ୍ତି ସେମାନେ ଏହା ଆମ୍ଭ ଇଚ୍ଛା । ୧୨୦
ସେମାନେ ଯିବାର ପାଇଁ ନାହିଁତ ବାରଣ
ବରଂ ଆମ୍ଭେ ଯୋଗାଇବୁ ଲୋଡ଼ା ଯେତେ ଧନ । ୧୨୧
ରାମକୃଷ୍ଣ କଥା ଶୁଣି ସରବେ ମଉନ
କି ଦେବେ ଉତ୍ତର ଖୋଜି ନ ପାଆନ୍ତି ଜ୍ଞାନ । ୧୨୨
ବୋଲୁଛନ୍ତି ଉଗ୍ରସେନ ତୁମ୍ଭେ ତ୍ରାଣକର୍ତ୍ତା
କିମ୍ପାଇ ଅନ୍ତର କର ଆମ୍ଭଙ୍କୁ ସର୍ବଥା ! ୧୨୩

ସର୍ବ ଅନ୍ତର୍ଯ୍ୟାମୀ ତୁମ୍ଭେ ଜାଣ ସର୍ବମନ
ଆଶ୍ରିତ ଜନଙ୍କୁ କିମ୍ପା କର ଅଛ ଭିନ୍ନ ? ୧୨୪
ଏଠାରେ ମୋ ପ୍ରାଣ ପଡ଼ିଛି ତେଜ୍ୟା କରି ପାରେ
ନ ଯିବଇଁ ଛାଡ଼ି ପ୍ରଭୁ ମଥୁରା ନଗରେ । ୧୨୫
ସକଳେ କହିଲେ ଏହା ଆମ୍ଭ ମର୍ମ ବାଣୀ
ନିବେଶ ବଚନ କିମ୍ପା କହ କମ୍ବୁପାଣି । ୧୨୬
ସର୍ବଦା ଆମ୍ଭେ ତୁମ୍ଭର ଆଶ୍ରିତ ପରଜା
ମାର ଅବା ତାର ପ୍ରଭୁ ତୁମ୍ଭେ ଆମ୍ଭ ରାଜା । ୧୨୭
ରାଜାଙ୍କୁ ଛାଡ଼ି ଅନ୍ୟତ୍ର ନ ପାରିବୁ ଯାଇ
କହିଲୁ ମନର କଥା ହେନ ଭାବଗ୍ରାହୀ । ୧୨୮
ଏଥକୁ ବ୍ୟବସ୍ଥା କର ଯା ତୁମ୍ଭର ଇଚ୍ଛା
ଅନ୍ୟଥା କରିବ କିଏ ପ୍ରଭୁଙ୍କ ସଦିଚ୍ଛା । ୧୨୯
ସୁରଥଙ୍କୁ ଚାହିଁ ଆଜ୍ଞା ଦେଲେ ରାମକୃଷ୍ଣ
ମଥୁରାକୁ ଯାଇ ତୁମ୍ଭେ ହୁଅ ନରଘଣ । ୧୩୦
ସୁନାସ ନନ୍ଦନ ତୁମ୍ଭେ କଂସ ଭ୍ରାତୃ ପୁତ୍ର
ମଥୁରାର ସିଂହାସନେ ତୁମ୍ଭେ ଯୋଗ୍ୟ ପାତ୍ର । ୧୩୧
ସୁନ୍ଦର ଦିଶିବ ତୁମ୍ଭେ ହୋଇଲେ ନୃପତି
ଆଜ୍ଞା ଦେଲେ ସୁରଥଙ୍କୁ ଦ୍ୱାରକାଧିପତି । ୧୩୨
ସୈନ୍ୟ ସାମନ୍ତ ହେଜିଣ ଧାଡ଼ିକାରେ ଯାଯା
ପାଞ୍ଚଛଅ ଟେକାଇଣ ହୁଅ ତହିଁ ରାଜା । ୧୩୩
ଯଦ୍ୟପି ଶତ୍ରୁ ଆସିଣ କରିବ ଉତ୍ପାତ
ଚକ୍ର ପେଷି ସେମାନଙ୍କୁ କରିବୁ ନିପାତ । ୧୩୪
ମଧୁପୁର ଗୋଟି ଭାଇ ନ ପାରିବା ମୁକ୍ତି
ବୀରଭୋଗ୍ୟା ବସୁନ୍ଧରା ପୁରାଣ ବର୍ଣ୍ଣିଛି । ୧୩୫

ଆମ୍ଭର ପିତୃ ସମ୍ପତ୍ତି ସେ ମଥୁରା ଦେଶ
ଆମ୍ଭେ ଦେଖୁଦେଖୁ ତାହା ହୋଇବ କି ଧ୍ୱଂସ ? ୧୩୬

ସୁରଥ କହିଲେ ଦେବ ଯା ତୁମ୍ଭର ଇଚ୍ଛା
ପୂର୍ଣ୍ଣ ହେଉ ପ୍ରଭୁଙ୍କର ମହତ ସଦିଚ୍ଛା । ୧୩୭

ପ୍ରଭୁଙ୍କ ଆଜ୍ଞାକୁ କଏ ଅବା ଲଂଘିପାର
ଯହିଁକି ପେଷିବ ପ୍ରଭୁ ଯିବ ବେଗ କରି । ୧୩୮

ଏତିକି ମାତ୍ର ମାଗୁଣି ଅଛେ ଯଦୁକୁଳ
ପାଦର ପାଦୁକା ମୋତେ ଦିଅ ଜଗଦ୍ଦୀଶ । ୧୩୯

ତାକୁ ନେଇ ଦଣ୍ଡଛତ୍ର ଶିରେ ଟେକାଇବ
ସେବକ ହୋଇ ନିରତେ ସେବା ମୁଁ କରିବ । ୧୪୦

ସେ କଥା ଶୁଣି ଯାଦବେ ହୋଇଲେ ସନ୍ତୋଷ
ସୁରଥ ଶିରେ ବାନ୍ଧିଲେ ଶାଢ଼ି ପିତବାସ । ୧୪୧

ପ୍ରଭୁଙ୍କ ପାଦୁକା ଶିରେ ବହନ କରଣ
ଚଳିଗଲେ ମଧୁପୁର ସୁରଥ ବହନ । ୧୪୨

ଅନେକ ଯାଦବ ଗଲେ ସୁରଥ ସହିତ
ସଙ୍ଗତରେ ବୋଝ ନେଲେ ମନଇଚ୍ଛା ବିତ୍ତ । ୧୪୩

ବଶାଳ ଶୋଭାଯାତ୍ରାରେ ଚଳିଲେ ସୁରଥ
ଶ୍ରୀରାମ ପାଦୁକା କବା ଧେନନ୍ତି ଭରତ ? ୧୪୩

ପାଦୁକାକୁ ସିଂହାସନେ କଲେ ଅଭିଷେକ
ସୁରଥ ହୋଇ ରହିଲେ ପାଦୁକା ସେବକ । ୧୪୫

ଶ୍ରୀରାମ ପାଦୁକା ଯେସନ୍ତେ ପୂଜଣ ଭରତ
ଶ୍ରୀରାମ ସେବକ ରୂପେ ହୋଇଥିଲେ ଖ୍ୟାତ ।୧୪୬

ଭରତ ସମାନ ଭାଇ ଜଣେ ଦେଖା ନାହିଁ
ଭାଇ ପାଇଁ ଭାଇ ସୁଖ ଭୋଗ କଲ ନାହିଁ । ୧୪୭

ସେ ଆଦର୍ଶ ଅନୁସରି ଶ୍ରୀମାନ୍ ସୁରଥ
ରାମକୃଷ୍ଣ ଆଜ୍ଞା ପାଳି କୃତଜ୍ଞ, ବଶ୍ବସ୍ତ । ୧୪୮

ବନ୍ଦଇ ଶ୍ରୀ ରାମଚନ୍ଦ୍ର ରଘୁକୁଳ ନାଥ
ମର୍ଯ୍ୟାଦା ପୁରୁଷ ଅଛେ ସୁଗ୍ରୀବ ମଇତ୍ର । ୧୪୯

ନବ ଦୁର୍ବାଦଳ ଶ୍ୟାମ କମନୀୟ ବପୁ
ନମସ୍ତେ ଶ୍ରୀ ରଘୁନାଥ ଦଶାନନ ରିପୁ । ୧୫୦

ମହତ, ମର୍ଯ୍ୟାଦାଶିଳ ପ୍ରଭୁ ରଘୁମଣି
କୋମଳ, ମଧୁର, ମିଷ୍ଟ ଶ୍ରୀ ମୁଖର ବାଣୀ । ୧୫୧

ଦଶ ଅବତାରେ ସାର ରାମ ଅବତାର
ସର୍ବ ନାମ ମଧ୍ୟେ ରାମ ନାମ ଗୋଟି ସାର ।୧୫୨
ରାମ ନାମ ଜପ କରି କୈଳାସେ ଈଶ୍ୱର
ବ୍ରହ୍ମହତ୍ୟା ପାତକରୁ ହୋଇଲେ ଉଦ୍ଧାର । ୧୫୩
ରାମ ନାମ ଜପି ଉମା ଶିବଙ୍କୁ ଲଭିଲେ
ରାମ ନାମ ଜପି ବ୍ରହ୍ମା ସୃଷ୍ଟି ସରଜିଲେ । ୧୫୪
ରାମ ନାମ ଓଲଟାଇ ଜପି ରତ୍ନାକର
ଦସ୍ୟୁରୁ ହୋଇଲେ ଋଷି ବାଲ୍ମୀକି ପ୍ରବର । ୧୫୫
ରାମ ନାମ ଜପି କଲେ ରାମାୟଣ କାବ୍ୟ
ମହାକାବ୍ୟ ରାମାୟଣ ପୂର୍ଣ୍ଣ ରାମ ଭାବ ।୧୫୬
ରାମନାମ ଜପ କରି ରାଜା ଦଶରଥ
ଅନ୍ଧମୁନି ବ୍ରହ୍ମ ହତ୍ୟା ପାପୁ ହେଲେ ମୁକ୍ତ ।୧୫୭
ରାମ ନାମ ଜପି ଜାମ୍ବବାନ ମନ୍ତ୍ରୀବର
ରାମ ନାମ ଜପି ମିତ୍ର ସୁଗ୍ରୀବ ବାନର । ୧୫୮
ରାମ ନାମ ଜପି ହନୁ ଡେଇଁଲେ ସାଗର
ରାମ ନାମ ଜପି ବିଭୀଷଣ ଯେ ଅମର । ୧୫୯
ରାମ ନାମ ଜପ କରି ଗଉତମ ନାରୀ
ଶିଳା ରୂପ ଛାଡ଼ି ହେଲେ ଅନନ୍ୟ ସୁନ୍ଦରୀ । ୧୬୦
ରାମ ନାମ ଜପି ଗାନ୍ଧୀ ମାହାତ୍ମା ହୋଇଲେ
ଅହିଂସା ବ୍ରତେ ଫିରଙ୍ଗି ଦେଶରୁ ତଡ଼ିଲେ । ୧୬୧
ମୁଖେ ରାମ ନାମ ହୃଦେ କୃଷ୍ଣ ନାମ ରଟି
ଶ୍ରୀପ୍ରାଣିକ କରାଇଲେ ନାମ ଦୁଇ ଗୋଟି । ୧୬୨
ରାମ ନାମର ମହିମା ଅନନ୍ତ ଅସୀମ
ପ୍ରକାଶେ ଅନନ୍ତ ନାଗ ନୁହନ୍ତ ସକ୍ଷମ । ୧୬୩
ବାଲ୍ୟକାଳୁ ରାମ ନାମ ଜପି ବୁଲା ଦାସ
ପାନ କରେ ରାମ ରସ ରଜନୀ ଦିବସ । ୧୬୪
ରାମ ନାମ ଜପି ଅଭିରାମଙ୍କୁ ଭେଟିଲା
ଜପ ଛାଡି ଅଜପାକୁ ଗୁରୁମନ୍ତ୍ର କଲା । ୧୬୫

ଅନ୍ତପାରେ ରାମ ନାମ ହେଲା କୃଷ୍ଣ ନାମ
ହରି-ରାମ-କୃଷ୍ଣ-ଶ୍ୟାମ ସତ୍ୟ ଅଭିରାମ । ୧୬୬
ଏକାକ୍ଷର ମନ୍ତ୍ରେ ସର୍ବ ନାମ ଏକାକାର
ଏକ ବ୍ରହ୍ମ ବହୁ ନାମ ନାମ ତତ୍ତ୍ୱ ସାର । ୧୬୭
ଶତେ ଅଠଷଠି ପଦେ ଅଧ୍ୟାୟ ସମ୍ପୂର୍ଣ୍ଣ
ବୃନ୍ଦାଦାସ ବୋଲେ ନାମ ସ୍ମର ସାଧୁ ଜନ । ୧୬୮
ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକା ଲୀଳାଖଣ୍ଡେ ଭଗ୍ନୀ ସୁଭଦ୍ରାଙ୍କୁ
ଦ୍ୱାରକା ଆନୟନ ଓ ମଥୁରାରେ ସୁରଥଙ୍କ ରାଜା
ଅଭିଷେକ ବର୍ଣ୍ଣନେ ନାମ ଦ୍ୱିଶପ୍ତ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

ବୋଲି—

କୃଷ୍ଣ କପଟିଆ ହଟିଆ ନାଗର
ନଷ୍ଟ ହଷ୍ଟା କର କାହିଁକି
ହେ ମନ୍ଦର ଧର ନାଗର ସୁନ୍ଦର
ହୃଦର ଲଗାଇ ନାହିଁକି ? ଘୋଷା
କମ୍ବୁ କଣ୍ଟକରେ କଣ୍ଟମଣ୍ଟ କରି
ଛଟକେ ବସିଛ ଗୃହିଁକି
ବେଣି ବାସ ହୋଇ ବାସ ଚନ୍ଦନରେ
ସୁବାସ ଉଠଇ ମହକ । ୧
ଭରସା କରି ମୋ ବେଉସା ବୁଡ଼ିଲା
ନେକନସା କଲ କାହିଁକି
ଆଶା କରି ତୋତେ ନିରାଶ ହୋଇଲି
ଭରସା ରଖିବ ଆଉକି ? ୨
ଦାରୁଭୂତ ହୋଇ ଦେଉଳେ ବସିଛ
ନ ଶୁଭଇ ଡାକ ଶ୍ରୁତିକି
ବୋଲେ ବୃନ୍ଦାଦାସ ପାତି ଅଛୁ ଫାଶ
କାଟି ନ ପାରିବ ରସିକ । ୩

# ତୃତୀୟ ଅଧ୍ୟାୟ
## ଅକ୍ରୂରଙ୍କ ହସ୍ତିନା ଗମନ

ରାଗ - ବସନ୍ତ ଭୈରବ

ଏଥୁ ଅନ୍ତେ ଶୁଣ କୃଷ୍ଣ ଚରିତ ମାନସ
ଝରୁଛି ପୀୟୂଷ ଧାର କୃଷ୍ଣ ପ୍ରେମ ରସ
ଅକ୍ରୂରଙ୍କ ମୁଖ ଚାହିଁ କହିଲେ ଶ୍ରୀକୃଷ୍ଣ
ହେ ତାତ ! ତୁମ୍ଭେ ଆମ୍ଭର ଆତ୍ମୀୟ, ସ୍ୱଜନ
ଗୁରୁ-ମିତ୍ର-ଇଷ୍ଟ-ବନ୍ଧୁ ଗଣରେ ପୂଜିତ
ଆମ୍ଭେ ଦୁଇ ଭାଇ ଅଟୁ ତୁମ୍ଭ ପୁତ୍ରବତ୍ । ୧
ତୁମ୍ଭ ପୁତ୍ର ଦେବବାନ, ଉପଦେବ ପରି
ରହିଥିବୁ ଦୁଇ ଭାଇ ପାଦ ସେବା କରି
ହେ ତାତ ! ଅତି ବିଶ୍ୱାସୀ ଥିବାରୁ ଆମ୍ଭର
ଆମ୍ଭ ବୋଲେ ଚାଲିଯାଅ ହସ୍ତିନା ନଗର
ପିତାଙ୍କ ଭଗିନୀ ପୃଥା ପିଉଷୀ ଆମ୍ଭର
ପିଉସାଙ୍କ କାଳ ଅନ୍ତେ ପୋଷଣ କୁମର । ୨
ରହିଛନ୍ତି ଭ୍ରାତାଗଣେ ହୋଇ ଆତଙ୍କିତ
ପାଳୁଛନ୍ତି ଅନ୍ନଜଳ ଦେଇ ଜ୍ୟେଷ୍ଠ ତାତ
ଦୁଃଖେ କାଳ କାଟୁଛନ୍ତି ବାରୁଣାବତରେ
ବନ୍ଦୀ ଘରେ ବନ୍ଦୀ ଯେହ୍ନେ ରହେ ଆକଟରେ
ଧୃତରାଷ୍ଟ୍ର ନୃପତିଙ୍କ ଏକଶତ ସୁତ
ଉଗ୍ର ସ୍ୱଭାବ ସମସ୍ତେ କାର୍ଯ୍ୟେ ମହା ଦୁଷ୍ଟ । ୩
ଦେଖି ନ ପାରନ୍ତି କେବେ ପାଣ୍ଡୁ ପାଞ୍ଚପୁତ୍ର
ତାହାଙ୍କ କୁଶଳ ବୁଝି ଆସିବ ତୁରିତ
କପଟ ଅଛନ୍ତି ପୁଣି ଦେଖିଣ ଆସିବ
ପୀଉଷୀ ଠାରୁ ସକଳ ସତ୍ୟର ବୁଝିବ
ଧୃତରାଷ୍ଟ୍ର ଜ୍ୟେଷ୍ଠ ପିତା କପଟ ପାଳନ୍ତି
ଗୋପନେ ଏ କଥା ବୁଝି ଆସିବ ଝଟତି । ୪

ପ୍ରଭୁଙ୍କର ଆଜ୍ଞା ପାଇ ଚଳିଲେ ଅକ୍ରୂର
ପ୍ରବେଶ ହୋଇଲେ ଯାଇଁ ହସ୍ତିନା ନଗର
ସଭାରେ ବସି ଅଛନ୍ତି ରାଜା ଧୃତରାଷ୍ଟ୍ର
ଭୀଷ୍ମ, ଦ୍ରୋଣ, ଭୂରିଶ୍ରବା, ବିଦୁର ସହିତ
ସଞ୍ଜୟ, ରାଧେୟ, କୃପ, ରାଜା ଶତ ସୁତ
ଅଶ୍ୱତ୍ଥମା, ଦୁଃଶାସନ, ଶକୁନି, ସାମନ୍ତ । ୫

ଚିତ୍ତହରା ପାଣ୍ଡୁ ପୁତେ ବସିଛନ୍ତି ତହିଁ
ମୁଖେ ପ୍ରସନ୍ନତା ହୃଦେ ବ୍ୟଥା ଥାଏ ରହି
ଜଣ ଜଣକେ ଅକ୍ରୂର ଆଲିଙ୍ଗନ କଲେ
କୁଶଳ ବାର୍ତ୍ତା ପଚାରି ସମ୍ଭାଷଣ କଲେ
ପାଣ୍ଡବଙ୍କୁ କୋଳାଗ୍ରତ କାଳେ ହେଲେ ଜ୍ଞାତ
ପୁତୁରଙ୍କୁ ପୀଡ଼ା ଦେଉଛନ୍ତି ଜ୍ୟେଷ୍ଠ ତାତ । ୬

ଆପଣା ସ୍ୱାର୍ଥରେ ଅନ୍ଧ ହୋଇ ହତ ଜ୍ଞାନ
ପୁଅ ପୁତୁରଙ୍କ ମଧ୍ୟେ କରେ ଭିନ୍ନାଭିନ୍ନ
ପୁଣି ପ୍ରାପ୍ୟ ପୁତୁରଙ୍କୁ ନ କରଇ ସ୍ନେହ
ପୁତୁରଙ୍କ ପରାକ୍ରମ ଦେଖି କରେ ଭୟ
ଆଲିଙ୍ଗନ, ସମ୍ଭାଷଣ ଶେଷରେ ଅକ୍ରୂର
ବସିଲେ ରାଜ ସଭାରେ ପାଇଣ ଆଦର । ୭

କୁଶଳ ଜିଜ୍ଞାସା କଲେ ହସ୍ତିନା ନରେଶ
ଆଗମନ ଅଭିପ୍ରାୟ କର ହେ ପ୍ରକାଶ
ଅକ୍ରୂର କହିଲେ ଶୁଣ ହସ୍ତିନା ନୃନାଥ
ପଠାଇ ଅଛନ୍ତି ମୋତେ ଦ୍ୱାରକା ନୃନାଥ
ଦେବକୀ ନନ୍ଦନ ବସୁଦେବଙ୍କ ତନୟ
ରାମକୃଷ୍ଣ ଦୁଇଭାଇ ଦ୍ୱାରକାର ରାୟ । ୮

କଂସ ହତ ଅନ୍ତେ ଜରାସନ୍ଧ ମହାମଲ୍ଲ
ଆକ୍ରମିଲା ମଥୁରାକୁ ଧରି ଦୈତ୍ୟ ବଳ
ଅଷ୍ଟାଦଶବାର ଯୁଦ୍ଧ କରି ଜରାସନ୍ଧ
ପଳାଇଲା ପ୍ରାଣ ଭୟେ ପାଇଣ ପ୍ରମାଦ

କାଳଯବନ ନାମରେ ଯାଦବ ବଇରୀ
ବରଣ କରି ଆଣିଲା କୂଟେ ଦଣ୍ଡଧାରୀ ।୧୦

ଅର୍ଦ୍ଧରାତେ ମଥୁରାକୁ ଅବରୋଧ କଲେ
ରାମକୃଷ୍ଣ ଧରିବାକୁ ଷଡଯନ୍ତ୍ର କଲେ
ମାତ୍ର ମାୟାଧର ମାୟା କରିଲେ ରଚନ
ଆପଣେ ନିହତ ହେଲା ସେ କାଳଯବନ
ପରାଭବ ପାଇ ଜରାସନ୍ଧ ପଳାଇଲା
ରାମକୃଷ୍ଣ ଧରିବାକୁ ସକ୍ଷମ ନ ହେଲା ।୧୧

ସମୁଦ୍ର ପୋତିଣ ଗଡ କରିଲେ ନିର୍ମାଣ
ଦ୍ୱାରକା ନାମରେ ରାଜ୍ୟ ହୋଇଲା ସ୍ଥାପନ
ସେ ରାଜ୍ୟରେ ଉଗ୍ରସେନ ହୋଇଲେ ନୃପତି
ଚରଣେ ଖଟିଲେ ରାମକୃଷ୍ଣ ଦୁଇ ନାତି
ସେଠାରେ ରହିଲେ କୃଷ୍ଣ କୁଟୁମ୍ବ ଘେନିଣ
ଦ୍ୱାରକାପୁରର ଶୋଭା ଶୁଣ ନରରାଣ ।୧୨

ସାଗର ମଧ୍ୟରେ ଭୂମି ଦୀର୍ଘ ଆୟତନ
ଆଉ ଦୀର୍ଘ ପ୍ରସ୍ତରେ ତା ଶତେକ ଯୋଜନ
ତହିଁ ମଧ୍ୟେ ଭୂମି ଶତ ଯୋଜନ ବିସ୍ତାର
ନିର୍ମିତ ନବ ନଗର ନାହିଁ ପଟାନ୍ତର
ଅମୂଲ୍ୟ ସମ୍ପଦେ ଭରା ନିରାପଦ ଭୂମି
ସେ ଜଳ ଦୁର୍ଗରେ ବିଜେ ଦେବ ଅନ୍ତର୍ଯ୍ୟାମୀ ।୧୩

ମର୍ତ୍ତ୍ୟମଣ୍ଡଳ ମଧ୍ୟରେ ସେ ଅମରାବତୀ
ନିର୍ବାଣ ମୁକ୍ତ ମନ୍ଦିର ଜାଜୁଲ୍ୟ ତା ଜ୍ୟୋତି
ବର୍ଣ୍ଣନା କରନ୍ତେ ନସରେ ନଗ୍ର ମହିମା
ଅତି ଯତ୍ନେ ନିର୍ମାଣିଛି ପୁରୀ ବିଶ୍ୱକର୍ମା
ସୁବର୍ଣ୍ଣର ପାଚେରୀ ଯେ ଉଚ୍ଚ ବେନି ତାଳ
ତାକୁ ଘେରି ରହିଅଛି ସାଗର ସଲିଳ ।୧୪

ସ୍ଫଟିକ ପାହାଚରେ ପୁରୀ ଦ୍ୱାର ବିରଚନ
ଚଉ ଚଉପାଶେ ଚାର ଅଟ୍ଟାଳୀ ଶୋଭନ

ତହିଁ ସୁଦର୍ଶନ ଚକ୍ର ଘୂରଇ ପ୍ରଚଣ୍ଡ
ଆଗରେ ପଡ଼ିଲେ ମାଛି ହୁଏ ନବ ଖଣ୍ଡ
ମେରୁ, ମଣ୍ଡପ, ଅଟ୍ଟାଳୀ, ଦେଉଳ, ଜଗତି
ଛତ୍ରଶାଳ, ଗଜଶାଳ ଯତ୍ନେ ଗଢ଼ିଛନ୍ତି । ୧୫

କୂପ, ବାପି, ତଡ଼ାଗାଦି ଅଛି ଦ୍ରବ୍ୟ ଖଣି
ଅମୃତ ସୁସ୍ୱାଦୁ ଦ୍ରବ୍ୟ ଏକୁ ଏକ ଜାଣି
ପାତ୍ର, ମନ୍ତ୍ରୀ, ପୁରୋହିତ ଯେତେ ରାଜବଧି
କହନ୍ତେ ଅନ୍ତ ନାହିଁ ତା' ଅଚଳା ସମୃଦ୍ଧି
ସଂସାର ମଧ୍ୟରେ ସାର ଦ୍ୱାରକା ନଗର
ପ୍ରତିଷ୍ଠା କଲେ ସେ ନଗ୍ର ସାଧୁ ସନ୍ଥ ସୁର । ୧୬

କୁଶସ୍ଥଳୀ ଦ୍ୱାରକାକୁ ଆସିଲେ ତ୍ରିଦଶ
ଥୋକେ ଦୂର ଚାଟ୍ଛୋଟିଣ ଗଲେ ପୀତବାସ
ଦକ୍ଷିଣାବର୍ତ୍ତ ଶଙ୍ଖରେ ଗଙ୍ଗାଜଳ ଭରି
ମସ୍ତକେ ଢାଳିଲେ ସପ୍ତେ କୋଟି ତୀର୍ଥ ବାରି
ଦ୍ୱାରକା ସଭାରେ ବିଜେ ରାମକୃଷ୍ଣ ଦୁଇ
ସମ୍ବାଦ ଦେବାକୁ ମୋତେ ଅଛନ୍ତି ପଠାଇ । ୧୭

ମିତ୍ର ପକ୍ଷ ଅଟ ତୁମ୍ଭେ ବାନ୍ଧବରେ ଗଣ୍ୟ
ଶୁଣି ଧୃତରାଷ୍ଟ୍ର ରାଜା ଆନନ୍ଦିତ ମନ
ଅକ୍ରୂର କହିଲେ ଶୁଣ ହସ୍ତିନା ରାଜନ
ମଥୁରାରେ ରାଜା ହେଲେ ସୁନାସ ନନ୍ଦନ
ଗୋପ ମଥୁରା ଦ୍ୱାରକା ଏ ତିନି ରାଜ୍ୟରେ
ରଖାଇଲେ ଯଶକୀର୍ତ୍ତି ଦେବକୀ କୁମରେ । ୧୮

ଦୁଷ୍ଟ ରାଜାମାନେ ଦେଖି ହେଉଛନ୍ତି ଭୀତ
ଭକତ ରାଜାଏ ପ୍ରଭୁ ଚରଣେ ଆଶ୍ରିତ
ଯାଦବଙ୍କ ମୁକ୍ତିଦାତା ଧର୍ମର ରକ୍ଷକ
ବିଶ୍ୱ ବ୍ରହ୍ମାଣ୍ଡ ପାଳକ ଦ୍ୱାରକାଧିନାୟକ
କୌରବ-ଯାଦବ ମଧ୍ୟେ ଅଛି ମିତ୍ର ପଣ
ବସୁଦେବଙ୍କ ଭଉଣୀ କୋଇନ୍ତା ପ୍ରମାଣ । ୧୯

ପାଣ୍ଡୁଙ୍କ ନିଧନ ଅନ୍ତେ ହୋଇଛନ୍ତି ଦୁଃଖୀ
ପିଉଷୀ ଦୁଃଖରେ ରାମକୃଷ୍ଣ ମଧ୍ୟ ଦୁଃଖୀ
ପଠାଇ ଅଛନ୍ତି ମୋତେ ଯିବାକୁ ଏଥୋଳି
ଏଣୁ ହସ୍ତିନାକୁ ଆସିଅଛୁ ମହାବଳୀ
ଏହା କହିଣ ଅକ୍ରୂର ହୋଇଲେ ମଉନ
ଶୁଣି ଆନନ୍ଦିତ ହେଲେ ହସ୍ତିନା ସଜନ । ୨୦
ମାନ୍ୟ ଗଉରବ କରି ପୁରେ ରଖାଇଲେ
ଭୋଜନ ଶେଷେ ଅକ୍ରୂର ବିଦାୟ ହୋଇଲେ
ବିଦୁରଙ୍କୁ ସଙ୍ଗେ ନେଇ ବାହୁଣା ଚଳିଲେ
ପଥ ମଧ୍ୟରେ ବିଦୁର ସକଳ କହିଲେ
ହେ ଅକ୍ରୂର ! କି କହିବି ଧୃତରାଷ୍ଟ୍ର କୀର୍ତ୍ତି
ପୁତୁରଙ୍କ ସୁଖ ଶିରୀ ନ ପାରଇ ଦେଖି । ୨୧
ଭୀମ ବଳ, ପାର୍ଥ ଶୌର୍ଯ୍ୟ ସହି ନ ପାରଇ
ପୁତ୍ରଙ୍କର ଅମଙ୍ଗଳ ଚିନ୍ତା କରୁଥାଇ
ଭୀମକୁ ମାରିବା ପାଇଁ ଷଡ଼ଯନ୍ତ୍ର କଲେ
ଖାଦ୍ୟରେ ବିଷ ମିଶାଇ ଖାଇବାକୁ ଦେଲେ
ବିଷ ଲଡ଼ୁ ଖାଇ ଭୀମ ନ ହେଲା ମରଣ
ଧର୍ମ ରକ୍ଷିବାରୁ ଫେରି ପାଇଲା ଜୀବନ । ୨୨
ଝିମିଟି ଖେଳରୁ ହେଲା ବେନି ପକ୍ଷେ ଗୋଳ
ପୁତୁରାଙ୍କୁ ଚିଡ଼ି ଦେଲା ନିଜରୁ ଭୂପାଳ
ଏ ଆଦି ଯେତେକ ରାଜା ଅନ୍ୟାୟ ବେଭାର
ଏକାନ୍ତେ ଅକ୍ରୂର ପାଶେ କହିଲେ ବିଦୁର
ଶୁଣି ଅକ୍ରୂର ମନେ ହେଲେ ବିଷାଦିତ
ମିଳିଲେ ବାରୁଣାବତେ ବିଦୁର ସହିତ । ୨୩
ଅକ୍ରୂରଙ୍କୁ ଦେଖି କୁନ୍ତୀ ବହୁ ମାନ୍ୟ କଲେ
ଆଦର କରି ନେଇଣ ପୁରେ ବସାଇଲେ
ଚରଣ ଧୋଇଣ ଦେଲେ ସ୍ନେହେ ଯୁଧିଷ୍ଠିର
ଶୁକ୍ଳ ବସ୍ତ୍ରେ ଭୀମସେନ ପୋଛିଲେ ପଦୁର

କର ଧରି ବସାଇଲେ ଆସନେ ଅର୍ଜୁନ
ନକୁଳ ବସି କରିଲେ ବ୍ୟଜନ ଚାଳନ । ୨୪

ସହଦେବ ପରଶିଲେ ଅନ୍ନଜଳ ନେଇ
ଭୋଜନେ ବସିଲେ ଅକ୍ରୂର ବିଦୁର ଦୁଇ
ଭୋଜନାନ୍ତେ ଆଚମନ କରିଣ ବସିଲେ
ବିଶ୍ରାମକାଳେ କୁମରେ ପାଦ ସେବା କଲେ
ବିଶ୍ରାମ ଶେଷେ ଅକ୍ରୂର ବସନ୍ତେ ଶାନ୍ତିରେ
ଗୃହର କୁଶଳ ବାର୍ତ୍ତା କୁନ୍ତୀ ପୁଚ୍ଛା କଲେ ।୨୫

ପିତାମାତା, ଭ୍ରାତାଭଗ୍ନୀ, ଆତ୍ମୀୟ ସ୍ୱଜନ
କିପରି ଅଛନ୍ତି କହ ତୋ ବେନି ନନ୍ଦନ
ଭ୍ରାତା ବସୁଦେବ ତଥା ପୂଜ୍ୟ ଗୁରୁଜନ
ବନ୍ଧୁ ପରିବାର ସଙ୍ଗେ ପୁରନାରୀ ଗଣ
ସ୍ୱଭାବେ ମୁଁ ଅଭାଗିନୀ କର୍ମ ମୋର ବାମ
ମନେ ପକାନ୍ତି କି ମୋତେ ଆତ୍ମୀୟ ସ୍ୱଜନ ? ୨୬

ଭ୍ରାତା ବସୁଦେବ ପୁତ୍ର ରାମକୃଷ୍ଣ ଦୁଇ
କୁଶଳରେ ଅଛନ୍ତି କି କହ ହେ ଫିଟାଇ
ସର୍ବଦା ମୁଁ କୃଷ୍ଣଠାରେ ପଶିଛି ଶରଣ
ପିଉଷୀ ପୁଅ ଭାଇ କଥା ଅଛିକି ସ୍ମରଣ
ପିତୃହୀନ ପୁତ୍ରଙ୍କର କରନ୍ତି କି ଚିନ୍ତା
ଫେଡ଼ି କହ ସହୋଦର ମନୁ ଯାଉ ବ୍ୟଥା । ୨୭

କି କହିବି ଦୁଃଖ ମୋର ମୁଖେ ନାହିଁ ଭାଷା
କେବଳ ଶ୍ରୀରାମକୃଷ୍ଣ ମୋହର ଭରସା
ଶତ୍ରୁଙ୍କ ଘେର ମଧ୍ୟରେ କରୁଅଛି ବାସ
ଶାର୍ଦ୍ଦୂଳ ଘେର ମଧ୍ୟରେ ଯେହ୍ନେ ମୃଗୀ ବାସ
ପିତୃହୀନ ପୁତ୍ରେ ମାତ୍ର ଧରିଛନ୍ତି ପ୍ରାଣ
ଏଥିରୁ ବୁଝିବ ଭ୍ରାତା ଭଗ୍ନୀର କଷଣ । ୨୮

ଅର୍ଜିତ କର୍ମର ଫଳ ଭୋଗୁଅଛି ମୁହିଁ
ଦେବକୀ ପୁତ୍ର ଚରଣେ ଚିତ୍ତ ବୃତ୍ତି ଥୋଇ

ଶରଣ ରକ୍ଷଣ ବାନା ଉଡ଼ୁ ଅଛି ତାର
ପିତୃଭଗ୍ନୀ ସୁତ କଥା ନ୍ୟସ୍ତ ତା ଉପର
କହିବ କୃଷ୍ଣଙ୍କୁ ବାରେ ମୋ ଘରେ ଆସିବ
ତାହାଙ୍କୁ ଦେଖିଲେ ମୋର ସାହସ ବଢିବ । ୨୯

ମାଗୁ ନାହିଁ ଧନ ରତ୍ନ କେବଳ ଅଭୟ
ଦ୍ୱାରକାଧିପତି ଦେବେ ଚରଣେ ଆଶ୍ରୟ
କୋମଳ ବଚନ କହି ଦେବେ ଆଶ୍ୱାସନା
କୃଷ୍ଣର ଦର୍ଶନେ ଦୁଃଖ ହୋଇଯିବ ଊଣା
କୃଷ୍ଣଠାରେ ଚିତ୍ତ ମୋର ସଦା ରହିଥାଇ
ଦେଖିଲେ ମୋ ଦୁଃଖ ଯିବ ନିମିଷେ ମିଳାଇ । ୩୦

ଆପଣାର ଦୁଃଖ ସ୍ମରି କରିଲେ କ୍ରନ୍ଦନ
ସାନ୍ତ୍ୱନା ଦେଇ କହିଲେ ଅକ୍ରୂର ବଚନ
ବିଦୁରଙ୍କୁ ସାକ୍ଷୀ କରି ବୋଲନ୍ତି ଅକ୍ରୂର
ହେ ଭଉଣୀ ଧୀର ଚିତ୍ତେ ଶୁଣ ମୋର ଗିର
ତୋହର ପଞ୍ଚ କୁମର ପଞ୍ଚ ଦେବ ଅଂଶେ
ଜାତ ହୋଇଛନ୍ତି ବିଶ୍ୱ କଲ୍ୟାଣ ସକାଶେ । ୩୧

ପୃଥ୍ୱୀ ଭାର ନିବାରଣେ ହୋଇଛନ୍ତି ଜାତ
ଦ୍ୱାରକାଧିପତି ଯାର ସଖା, ମିତ୍ର, ଭ୍ରାତ
ଏ କଥା ଜାଣି ତୁ ଭଗ୍ନୀ ନ କର କ୍ରନ୍ଦନ
ସମ୍ବାଦ ନେବା ନିମନ୍ତେ ପେଷିଛନ୍ତି କୃଷ୍ଣ
ତୁମ୍ଭ ପ୍ରତି ତାଙ୍କ ମନେ କରୁଣା ଅଶେଷ
ମଙ୍ଗଳମୟ ପ୍ରଭୁ ସେ ଦିଅନ୍ତି ଆଶିଷ । ୩୨

ପ୍ରବୋଧ ବାକ୍ୟ କହିଣ କୁନ୍ତୀ କଲେ ଶାନ୍ତ
ଶୁଣି କୃଷ୍ଣ ପାଦେ ଚିତ୍ତ ହେଲା ଦ୍ରବୀଭୂତ
ଅକ୍ରୂର ରହିଲେ ତହିଁ ଆଠଦଶ ଦିନ
ବିଦାୟ ନେଇ ଭେଟିଲେ ହସ୍ତିନା ରାଜନ
ବୁଝାଇ କହିଲେ ତାଙ୍କୁ ବିଦ୍ୱାନ ଅକ୍ରୂର
ସାବଧାନେ ଶୁଣା କର ହସ୍ତିନା ନୃବର । ୩୩

ଶତଗୋଟି ପୁତ୍ର କୋଳେ ପାଇଛ ରାଜନ
ପାଣ୍ଡୁ ପାଞ୍ଚ ପୁତ୍ରେ ମଧ୍ୟ ତୁମ୍ଭର ନନ୍ଦନ
ପୁତ୍ର ପର ପୁତ୍ରଙ୍କୁ ଦେଖ ଦଣ୍ଡଧାରୀ
ଏହା ନ କଲେ ଅଧର୍ମ ହୋଇବ ତୁମ୍ଭର
ଅନ୍ୟାୟ କଲେ ରାଜନ ଏ ଇହଲୋକରେ
ଅନ୍ତେ ପଡ଼ିବ ଯାଇଁଣ ନରକ କୁଣ୍ଡରେ । ୩୪

ଏ ସଂସାରେ ରହିଛନ୍ତି ଯେତେ ନୃପ ଗଣ
ସର୍ବଦା ନ ଥାନ୍ତି ସେହିମାନେ ଏକ ସ୍ଥାନ
ତୁମ୍ଭେତ ଜାତ ହୋଇଛ ବ୍ୟାସଦେବ ଅଂଶେ
ରାଜ୍ୟ ସମ୍ପଦେ କାମନା କମ୍ପାଇ ମାନସେ ?
ସମଦୃଷ୍ଟି କରି ପୁଅ ପୁତୁରଙ୍କୁ ଭଜ
କୁରୁକୁଳ ଶିରୋମଣି ପାଣ୍ଡୁଙ୍କ ଅଗ୍ରଜ । ୩୫

ତୁମ୍ଭେ ଯେଉଁ ମାର୍ଗଟି କରିବ ପ୍ରଦର୍ଶନ
ଇତର ଜନେ କରିବେ ତାହା ଅନ୍ୱେଷଣ
ଅକ୍ରୂରଙ୍କ କଥା ଶୁଣି କହିଲେ ନୃମଣି
ଅକ୍ରୂର ଯାହା କହିଲ ସୁଧାଛଣା ବାଣୀ
ମାତ୍ର ତୁମ୍ଭ-ଉପଦେଶ ନ ରହେ ମୋ ମନେ
ମେଘରେ ବିଦ୍ୟୁତପ୍ରଭା ନ ରହେ ଯେସନେ । ୩୬

ପୁତ୍ର ସରାଗେ ମୋ ଚିତ୍ତ ମାୟାରେ ମୋହିତ
ଏ ଅଟେ କୃଷ୍ଣର ମାୟା କେ କରିବ ଅନ୍ତ ?
ଅବନୀ ଭାର ଉଶ୍ୱାସ ପାଇଁ ନାରାୟଣ
ଦେବକୀ ଉଦରେ ଆସି ହୋଇଛନ୍ତି ଜନ୍ମ
ଦୁଷ୍ଟଙ୍କୁ ନବାରି ସନ୍ଥ କରିବେ ପାଳନ
ଏସବୁ ଯେତେ ଘଟଣ ନସ୍ୱତ ଭିଆଣ । ୩୭

ହେ ଅକ୍ରୂର ! ସ୍ଥିର ଚିତ୍ତେ ଘେନ ମୋ ବଚନ
କୃଷ୍ଣଙ୍କୁ ମୋ ମନ କଥା କହ ଯା ବହନ
ଧୃତରାଷ୍ଟ୍ର କଥା ଶୁଣି ଚଳିଲେ ଅକ୍ରୂର
ମିଳିଲେ ଦ୍ୱାରକା ପୁରେ ସ୍ୱାମୀ ଚକ୍ରଧର

ଦେଖି ପ୍ରଣମିଲେ ପାଦେ ରାମକୃଷ୍ଣ ଭ୍ରାତ
କହିଲେ ହସ୍ତିନାପୁର ସମ୍ବାଦ ସମସ୍ତ । ୩୮
ଶୁଣି ହସିଲେ ଉଚ୍ଚରେ ଦେବକୀ ନନ୍ଦନ
କହିଲେ କପୁତ ଗତି କେ କରିବ ଆନ
ଜୟ ଜୟ ଯଦୁନାଥ ଯାମଳା ଭଞ୍ଜନ
ଜଗତଜନ ଜୀବନ ଯଶୋଦା ନନ୍ଦନ
ବ୍ରଜଦାସ ପଶିଅଛି ପୟରେ ଶରଣ
ଅଣଚାଳିଶ ପଦେରେ ଅଧ୍ୟାୟ ସମ୍ପୂର୍ଣ୍ଣ । ୩୯

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକାଲୀଳା ଖଣ୍ଡେ ଅକ୍ରୂରଙ୍କ ହସ୍ତିନା
ଗମନ ବୃତ୍ତାନ୍ତେ ନାମ ତ୍ରୁଷ୍ଟୟ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

**ବୋଲି —**

ପ୍ରଭୁ ଜାଣିଛି ମୁଁ ତୁମ ଫିକର !
ଏକ ଦେହା ତୁମ    ନିତି ଦିନ କାମ
ଏକଙ୍କ ମଧ୍ୟରେ ଏକ ପ୍ରବର ॥ ଘୋଷା ॥
ଏକ ଦେଇ ଅଛ    ଯଶୋଦା ଜନନୀ
କଣ୍ଠରେ ଦେଖାଇ ବିଶ୍ୱ ସଂସାର
ଏକେଇ ଦେଇଛ    ଗୋପ ଗୁଆଳଙ୍କୁ
ଏକାଇଛ ରାଧା ପ୍ରେମିକା ବର । ୧
ତୁମ୍ଭ ପରି ଏକ    ଦେଖି ନାହିଁ ଜଣେ
ଏକବାରେ ଗୁରୁ ଏକ ସୁନ୍ଦର
ଏକ ଦେଇ ଅଛ    ଗୋପାଳ ବାଳକେ
ଗୋଧନ ଚରାଇ କାନନ ଘୋର । ୨
ପିତା ବସୁଦେବ    ଜନନୀ ଦେବକୀ
ଏକ ଦେଇଅଛ ହୋଇ କୁମର
ଏକ ପଣ କରି    ଏକାଛ କଂସକୁ
କାରାଗାରେ କରି କେତେ ଦୁନ୍ଦର । ୩

ଗୋବର୍ଦ୍ଧନ ଗିରି ଛଳେ ପୂଜା କରି
ଠକ ଦେଲ ଇନ୍ଦ୍ର ଧରି ମନ୍ଦର
ସାତ ଦିନ ବୃଷ୍ଟି କରି ବଜ୍ର ମୁଷ୍ଟି
ଶରଣ ପଶିଲ୍ ଚରଣେ ତୋର । ୪

(ପ୍ରଭୁ) ଠକ ଦେଇ ପାର ଏ ବିଶ୍ୱ ସସାର
ଠକ ନ ପାରିବୁ ଭକ୍ତକୁ ତୋର
ବୃନ୍ଦାଦାସ ବୋଲେ ଠକାମି କରିଲେ
ଠକ ଯିବ ଠିକେ ଠଣ ସୁନ୍ଦର । ୫

—●—

# ଚତୁର୍ଥ ଅଧ୍ୟାୟ

## ପାଣ୍ଡବମାନଙ୍କର ଜତୁଗୃହରେ ବାସ

### ରାଗ - ବଙ୍ଗଳାଶ୍ରୀ

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ କରନ୍ତୁ ସୁବିଜ୍ଞ ଜନ
ପାଣ୍ଡବ ନିଧନେ ଏକାନ୍ତେ ମନ୍ତ୍ରଣା କଲେ ବସି ଦୁଷ୍ଟ ଗଣ । ୧
ଭୀମ ବାହୁବଳ ପାର୍ଥ ଧନୁବଳ ଯୁଧିଷ୍ଠିର ଧର୍ମବଳ
ନକୁଳ କୁମାର ଦୃଢ଼ ମନୋବଳ ସହଦେବ ବୁଦ୍ଧିବଳ । ୨
ଏହି ପାଞ୍ଚବଳ ସଙ୍ଗେ ପ୍ରଜାବଳ ହୋଇବାରୁ ଏକ ମେଳ
ରାଜ୍ୟ ହରାଇବା ନିଶ୍ଚିତ ଜାଣିଣ ଉପୁଜିତ କୁରୁ କୁଳ । ୩
ମାନୀ ଦୁର୍ଯ୍ୟୋଧନ ଅଭିମାନୀ କର୍ଣ୍ଣ କପଟୀ ଗାନ୍ଧାର ବାଳ
ଶତେକ ସୋଦର ସକଳେ ଦୁର୍ଜ୍ଜନ ଗଢ଼ିଛନ୍ତି ଗୁଣ୍ଡାଦଳ । ୪
ଲମ୍ପଟୀ ବ୍ରାହ୍ମଣ ପୁରୋଚନ ପଣ୍ଡା କୁଟିଳ ସ୍ୱଭାବେ ପୂର୍ଣ୍ଣ
ଏକସରେ ମେଣ୍ଟ ବାନ୍ଧଣ ସେମାନେ ଅନ୍ୟାୟ କାର୍ଯ୍ୟରେ ମନ । ୫
ଧୃତରାଷ୍ଟ୍ର ଅନ୍ଧ ପ୍ରକୃତ ତା ମନ୍ଦ ପୁତ୍ର ସ୍ନେହେ ହୋଇ ଅନ୍ଧ
ଅଧର୍ମ କାର୍ଯ୍ୟକୁ ସମର୍ଥନ କରେ ନ କରଣ ପ୍ରତିବାଦ । ୬
ଏହାର ସୁଯୋଗ ନେଇ ଦୁର୍ଯ୍ୟୋଧନ ଷଡଯନ୍ତ୍ରେ ଥାଏ ଲିପ୍ତ
ମଇତ, ମାତୁଳ ମନ୍ତ୍ରଣା ଦାୟକ ନ ଦେଖନ୍ତି ଧର୍ମପଥ । ୭
ପଞ୍ଚ କଣ୍ଟକର ପ୍ରଜାଙ୍କ ମନରେ ପାଣ୍ଡୁ ପୁତ୍ର ପ୍ରତି ପ୍ରୀତି
ସେମାନଙ୍କ ମତେ ଧର୍ମ ଯୁଧିଷ୍ଠିର ରାଜ୍ୟ ପାଇଁ ଯୋଗ୍ୟ ବ୍ୟକ୍ତି । ୮
ଲୋକଙ୍କର ମତ ଜାଣି ଦୁର୍ଯ୍ୟୋଧନ ହୋଇ ଅତି କୋପାନ୍ୱିତ
ଅସହ୍ୟ ଯନ୍ତ୍ରଣା ଅନୁଭବ କରେ ଗାତ୍ର ଦାହ ଅବିରତ । ୯
ଶକୁନି କହିଲା କମ୍ପା ବ୍ୟସ୍ତ ହେଉ ଉପାୟ କରିଛି ମୁହିଁ
କୌଶଳେ ପୁତ୍ରଙ୍କୁ ପୋଡ଼ି ମାରି ଦେବା ଶିବପୁରକୁ ପଠାଇ । ୧୦
କୂଟେ ଆୟୋଜନ କରାଇଛି ତହିଁ ସାଂସ୍କୃତିକ କାର୍ଯ୍ୟକ୍ରମ
ଉଦ୍‌ଘାଟନ ପାଇଁ ପାଣ୍ଡବେ ପଠାଇ କରିବା ତହିଁ ନିଧନ । ୧୧
ସେଠାରେ ସେମାନେ ରହିବା ନିମନ୍ତେ ନୂତନ ଗୃହ ନିର୍ମାଣ
ଦାହ୍ୟ ପଦାର୍ଥରେ ପ୍ରସ୍ତୁତ କରିଛି ପୁରୋଚନ ବିପ୍ରବର । ୧୨

ଛଣରେ ଛାଉଣି ହୋଇଅଛି ଗୂଳ କାଠରେ ନିର୍ମିତ କାନ୍ଥ
ଦୁଇ କାନ୍ଥ ସନ୍ଧି ମଧ୍ୟେ ଖୋଟ ଟେଞ୍ଚା ହୋଇ ଗବ୍ୟ ଘୃତେ ସିକ୍ତ ।୧୩
ସେ କାଠ କାନ୍ଥରେ ବହଳ ଭାବରେ ବୋଳା ଜଉ ଶାଳରସ
ସେ ଦୁଇ ପଦାର୍ଥ ଘୃତରେ ମର୍ଦ୍ଦିତ ହୋଇଅଛି କର୍ଦ୍ଦମାକ୍ତ । ୧୪
ଦାହ୍ୟ ବସ୍ତୁ ଆବରଣର ଉପରେ ଶୁକ୍ଳ ବସ୍ତ୍ର ଆସ୍ତରଣ
ବସ୍ତ୍ର ଆସ୍ତରଣ ଉପରେ ଅଙ୍କିତ ବହୁବିଧ ଚିତ୍ରମାନ । ୧୫
ସୂକ୍ଷ୍ମ ପଟ୍ଟବସ୍ତ୍ର ଗୁଡ଼ୁଆ ହୋଇଛି ଚନ୍ଦ୍ରାତପ ଶୋଭା ଧରେ
ନାନା କଳାକୃତି ଝୁଲୁଛି ତହିଁରେ ପ୍ରସ୍ତୁତ ଦାହ୍ୟ ଦ୍ରବ୍ୟରେ । ୧୬
ସେ ଗୃହର ଶୋଭା ବର୍ଦ୍ଧନ କରୁଛି ବିଭିନ୍ନ ବର୍ଣ୍ଣର ଚିତ୍ର
କଳାତ୍ମକ ଗୁଣ ଚିତ୍ର ହରିନିଏ ପଲକେ ଦର୍ଶକ ନେତ୍ର । ୧୭
ପ୍ରଥମ ଶ୍ରେଣୀର ଅତିଥି ଭବନ ବିଭିନ୍ନ ସୁବିଧା ଅଛି
ସ୍ନାନ ଶୌଚାଳୟ ରନ୍ଧନ, ଭୋଜନ ପ୍ରକୋଷ୍ଠମାନ ରହିଛି । ୧୮
ପୁରୋଚନ ପଣ୍ଡା ପାଚକ ପଣରେ ପାଇଛି ନିଯୁକ୍ତି ପୁଣି
ରନ୍ଧଣାରେ ବିଷ ମିଶାଇ ଖୁଆଇ ବିନାଶିବ ଷଡ଼ ପ୍ରାଣୀ । ୧୯
ନୋହିଲେ ରାତିରେ ଶୋଇଥିବା ବେଳେ ଗୃହରେ ଅଗ୍ନି ଲଗାଇ
ଗୃହଦାହ କରି ପୋଡି ମାରି ଦେବ ଜାଣି ନ ପାରିବେ କେହି । ୨୦
ଯଦି ପୁରୋଚନ ଏ କାର୍ଯ୍ୟେ ସଫଳ ହୋଇବ ଲାଭ ଆମ୍ଭର
ଅସଫଳ ହେଲେ ଲୋକଙ୍କ ମୁଖରେ ଅପଯଶ ହେବ ତାର ।୨୧
ପ୍ରଚ୍ଛର ହୋଇବ ଏହି ଷଡ଼ଯନ୍ତ୍ର ପୁରୋଚନର ବ୍ୟାପାର
ତହିଁରେ କୌରବେ ସଂପୃକ୍ତ ନୁହନ୍ତି ଭାଗ୍ୟ ଦୋଷ ପୁତ୍ରଙ୍କର । ୨୨
ମନ୍ତ୍ରୀର ମୁଖରୁ ଷଡ଼ଯନ୍ତ୍ର କଥା ଶୁଣି ପ୍ରୀତ ଦୁର୍ଯ୍ୟୋଧନ
କହିଲ ମାତୁଳ ତୋହର ବୁଦ୍ଧିକି କରେ ଶତବାର ଧନ୍ୟ । ୨୩
ମାତ୍ର ଷଡ଼ଯନ୍ତ୍ର କଥାଶୁଣି କର୍ଣ୍ଣ କହିଲେ ଏ ହୀନକାର୍ଯ୍ୟ
ଗୃହଦାହ, ଖାଦ୍ୟ ସଙ୍ଗେ ବିଷ ଦେଇ ବଧିଲେ ଦୋଷ ନିର୍ଧାର୍ଯ୍ୟ । ୨୪
ଷଡ଼ଯନ୍ତ୍ରେ ମୁହିଁ ବିଶ୍ୱାସ କରେନା ବଳହିଁ ପୁରୁଷାକାର
ସମ୍ମୁଖ ସମରେ ଧନୁ ଅସ୍ତ୍ର ଶସ୍ତ୍ରେ ରହିଛି ବିଶ୍ୱାସ ମୋର । ୨୫
ଶକୁନି କହିଲ ରାଜନୀତି ଖେଳେ ଧର୍ମର ଚିନ୍ତା କରିବା
ଅର୍ଥ ଅଗ୍ନି କୁଣ୍ଡେ ତୁଷାର ମଞ୍ଜୁଷା ଥୋଇ ଅଗ୍ନି ଲଗାଇବା । ୨୬

ମନ୍ତ୍ରୀ କଥା ଶୁଣି ବୁଝିଗଲେ କର୍ଣ୍ଣ ଶକୁନ କହିବା ଅର୍ଥ
ତୁଷାର ମଞ୍ଜୁଷା ଅଗ୍ନିରେ ଥୋଇଲେ ବାଷ୍ପେ ହେବ ପରିଣତ । ୨୭
ବାଷ୍ପାକାର ହୋଇ ବାଟକୁ ନ ପାଇ ମଞ୍ଜୁଷାକୁ ଭାଙ୍ଗି ଦେଇ
ଅଗ୍ନି ନିର୍ବାପିତ କରି ନ ପାରିଣ ଶୂନ୍ୟକୁ ଯିବ ପଳାଇ । ୨୮
କିନ୍ତୁ ରାଜନୀତି ଧର୍ମରୁ ଅଲଗା ହେବାମାନେ ଠିକଠିକ
ହୋଇ ବଢ଼ନ୍ତି ଛିନ୍ନଭିନ୍ନ ହେବ କେହି ନ ପାରିବେ ରଖି । ୨୯
ଧର୍ମ ଏକମାତ୍ର ଶକତି ଅଟଇ ଦେଶ ରଖିବାକୁ ଏକ
ଧର୍ମ ଅବତାରି ବୋଲନ୍ତି ରାଜାଙ୍କୁ ରଖନ୍ତି ଧର୍ମର ଟେକ । ୩୦
ଧର୍ମଛଡ଼ା ରାଜନୀତିରେ ବିଶ୍ୱାସ ରଖି ନ ପାରନ୍ତି ଲୋକ
"ଧର୍ମ ଯିବା ଅଟେ ମହତ ପଣିଆ ଧରମ ପାଳେ ଧାର୍ମିକ । ୩୧
ଧର୍ମ ଛାଡ଼ି ରାଜନୀତିର କଳ୍ପନା କରିବାଟା ଅବିବେକ
ରାଜାର ସ୍ୱଧର୍ମ ଧର୍ମର ସୁରକ୍ଷା ସହିତ ପାଳିବା ଲୋକ । ୩୨
ମନ୍ତ୍ରୀ କଥା ଶୁଣି କର୍ଣ୍ଣ ମହାରଥୀ ବସିଲେ ଗମ୍ଭୀର ହୋଇ
କାରଣ ମୁଖରେ ଦୁର୍ଯ୍ୟୋଧନ ହିତ ପଡ଼ିଥିଲା ବନ୍ଧା ହୋଇ । ୩୩
ଦୁର୍ଯ୍ୟୋଧନ ପୁଚ୍ଛେ ହେ ମିତ୍ର କମ୍ପାଇଁ ଗମ୍ଭୀର ଦିଶେ ବଦନ ?
କର୍ଣ୍ଣ କହୁଛନ୍ତି କିଶୁରେ କପଟ କାର୍ଯ୍ୟ ହୋଇବ ସାଧନ । ୩୪
ଶକୁନି କହିଲା ସବୁ ହୋଇଯିବ କେବଳ ତୁମେ ମିତ୍ରତା
ରକ୍ଷା କରିବାକୁ ହାତ ବଢ଼ାଇଲେ ସରଳ ହୋଇବ ପନ୍ଥା । ୩୫
ଶକୁନି କଥାରେ ମିଳିଗଲେ ଆସି ଦୁର୍ଯ୍ୟୋଧନ, ଦ୍ରୋଣ ଦୁଇ
ଏ ଦୁଇ ମିଳନେ ନିବିଡ଼ ମିତ୍ରତା ପୁନଶ୍ଚ ଉଠିଲା ଚେଇଁ । ୩୬
ଆପଣା ମନରେ ବିଚାରିଲେ କର୍ଣ୍ଣ ବିଚିତ୍ର ସଂସାର ଗତି
ଉଚ୍ଚାକାଂକ୍ଷା ସଦା ନୈତିକ ବଳକୁ ଠିକଠିକ ଦିଏ କାଟି । ୩୭
କ୍ଷମତା ଲାଳସା ମାନବିକତାକୁ ନଷ୍ଟଭ୍ରଷ୍ଟ କରିଦିଏ
ଅଧିକାର, ଅହଙ୍କାର କୋଳରେ କି ସୁଚିନ୍ତା ଆଶ୍ରୟ ନିଏ ? ୩୮
ଶକୁନିର ଏହି ଘୃଣ୍ୟ କାର୍ଯ୍ୟ ପ୍ରତି କେଣେ ନ କଲେ ବାରଣ
କାରଣ ସେମାନେ ଜାଣିଥିଲେ ରାଜା ହୋଇଲେ ଧର୍ମ ନନ୍ଦନ । ୩୯
ସେମାନେ କୌଣସି ରୂପେ ବର୍ତ୍ତିଯିବେ ମାତ୍ର ସେମାନଙ୍କ ପିଲା
ଭିକ୍ଷାପାତ୍ର ଧରି ବୁଲିବେ ରାଜ୍ୟରେ ନ ମିଳିବ ଅନ୍ନ ଟୋକା । ୪୦

ପୁତ୍ର ନାତିଙ୍କର ଭବିଷ୍ୟତ ଚିନ୍ତା କରି ଦୁଃଶା, ଦୁର୍ଯ୍ୟୋଧନ
ଶକୁନି କଥାରେ ସମ୍ମତ ହୋଇଲେ ହେଲେ ହେଁ କାର୍ଯ୍ୟ ଜଘନ୍ୟ ।୪୧

ଆପଣା ମଧ୍ୟରେ ବିଚାର ବିମର୍ଷ କରି କଉରବ ଗଣ
ପିତା ଧୃତରାଷ୍ଟ୍ର ଠାରୁ ଅନୁମତି ପାଇଁ ଚଳିଲେ ବହନ । ୪୨

ପିତାଙ୍କ ପାଖକୁ ଯାଇ ପ୍ରବର୍ତ୍ତାଇ କହିଲେ ଜନକ ଶୁଣ
ଯୁଧିଷ୍ଠିରେ ରାଜା କରିବାକୁ ପ୍ରଜା ଗଣଙ୍କର ଅଛି ମନ । ୪୩

ସେମାନେ କହନ୍ତି ତୁମ୍ଭେ ଅନ୍ଧ ହେତୁ ରାଜ୍ୟ ନାହିଁ ଅଧିକାର
ପାଣ୍ଡୁର ଏ ରାଜ୍ୟ ତାଙ୍କ ପୁତ୍ରେ ପ୍ରାପ୍ୟ ଯୁଧିଷ୍ଠି ଯୋଗ୍ୟ କୁମର । ୪୪
କୁରୁକୁଳ ଜ୍ୟେଷ୍ଠ ତନୟର ସୁତ ହୋଇ ରାଜ୍ୟରୁ ବଞ୍ଚିତ
ଅନୁଜ ତନୁଜ ରାଜ୍ୟେ ରାଜା ହେବେ ଆମ୍ଭେ ହୋଇବୁ ଅନାଥ । ୪୫
ଯୁଧିଷ୍ଠିର ପରେ ତାଙ୍କ ପୁତ୍ର ନାତି କ୍ରମେ ହେବେ ନରପତି
ଚିରକାଳ ଆମ୍ଭେ ଅଧୀନସ୍ଥ ହୋଇ କରିବୁ ସେବକ ବୃତ୍ତି । ୪୬
ଉଦରାନ୍ନ ପାଇଁ ପର ମୁଖା ପେକ୍ଷି ହୋଇ ରହିବାକୁ ହେବ
ଏହାଠାରୁ ଭଲ ନରକରେ ବାସ କେଉଁ ରହି ଲାଭ କିସ ? ୪୭
ସ୍ୱର୍ଗର କୀଟାଣୁ ହେବା ଠାରୁ ବରଂ ନର୍କର ନୃପତି ଭଲ
ଏଣୁ କଳେ ବଳେ ପାଣ୍ଡବେ ହଟାଇ ରାଜ୍ୟ କରିବା କବଳ । ୪୮
ପୁତ୍ର କଥା ଶୁଣି ପିତା ଧୃତରାଷ୍ଟ୍ର କହିଲେ ତୋ କଥା ସତ୍ୟ
ଯୁଧିଷ୍ଠିର ପ୍ରତି ସଭିଙ୍କ ମନରେ ସ୍ନେହ ମମତା ଅଛିଟି । ୪୯
ଧାର୍ମିକ, ବିବେକୀ, ତ୍ୟାଗୀ, ସତ୍ୟସନ୍ଧ, ଅକୋପୀ, ଅଜାତ ଶତ୍ରୁ
ପିତା ପରି ପୁତ୍ରେ ପରାକ୍ରମଶାଳୀ ଦେଖି ଭୟ କରେ ଶତ୍ରୁ । ୫୦
ଯୁଧିଷ୍ଠିରଙ୍କର ଆଚାର ବେଭାରେ ସର୍ବେ ତାଙ୍କ ପ୍ରଶଂସକ
ମନ୍ତ୍ରୀ, ସେନାପତି, ସୈନ୍ୟ, ସାମନ୍ତାଦି ସତ୍ୟଧର୍ମର ସେବକ । ୫୧
ଆତ୍ମୀୟ, ସ୍ୱଜନ ଅନୁରକ୍ତ ପ୍ରଜା କରନ୍ତି ସ୍ନେହ ସମ୍ମାନ
ରାଜ୍ୟର ବିଶିଷ୍ଟ ଗୁଣୀ, ମାନ୍ୟ, ଗୁରୁ ଇଷ୍ଟ, ଋଷି, ବିପ୍ରଗଣ । ୫୨
ଗାଙ୍ଗେୟ, ସଞ୍ଜୟ, ଦ୍ରୋଣ, ଭୂରିଶ୍ରବା ବିଦୁରାଦି ସମର୍ଥକ
ତେଣୁ ପାଣ୍ଡବଙ୍କ ବିରୁଦ୍ଧାଚରଣ କଲେ କ୍ରୋଧ ହେବେ ଲୋକ ।୫୩
ବିନାଦୋଷେ ପାଣ୍ଡବଙ୍କୁ ଦଣ୍ଡ ଦେଲେ ଲୋକେ ଦେବେ ଆମ୍ଭ ଦୋଷ
ଆମ୍ଭ ବିପକ୍ଷରେ ପ୍ରଜାମେଳ ହୋଇ ହେବ ଆମ୍ଭ ସର୍ବନାଶ । ୫୪

ଅନ୍ୟାୟ ମାର୍ଗକୁ କଲେ ଅନ୍ବେଷଣ କ୍ରୋଧ ହେବେ ପ୍ରଜାଗଣ
ରାଜ୍ୟ ବହିଃଷ୍କୃତ କି ଅବା ନିଧନ କରିବେ ଗାଇ ଦୁର୍ଗୁଣ । ୫୫
ପ୍ରଜାଙ୍କ ଶକତି ଠାରେ ରାଜଶକ୍ତି ସାମାନ୍ୟ, କଣ୍ଠିତ ମାତ୍ର
ପ୍ରଜା ଦ୍ରୋହୀ ହୋଇ ନୃପତି ହୋଇବା ସମ୍ଭବ ନୁହଇ ପୁତ୍ର । ୫୬
ପିତାଙ୍କ କଥାରେ ପ୍ରତିବାଦ କରି କହୁଛନ୍ତି ଦୁର୍ଯ୍ୟୋଧନ
ଆପଣଙ୍କ ଯୁକ୍ତି ବଳିଷ୍ଠ ନୁହଇ ମନେ ହୁଏ ଭ୍ରମପୂର୍ଣ୍ଣ । ୫୭
ମୋ ବଶ୍ୟରେ ଭୀଷ୍ମ, ଦ୍ରୋଣ, ଅଶ୍ବତ୍ଥାମା, ଭୂରିଶ୍ରବା, କୃପାଚାର୍ଯ୍ୟ
କେହି ଆମ ପକ୍ଷ ତେଜି ତାଙ୍କ ପକ୍ଷେ ରହି ନ କରିବେ କାର୍ଯ୍ୟ । ୫୮
କେବଳ ବିଦୁର ଆମ୍ଭ ବିପକ୍ଷରେ ଥାଇ କି କରିବେ ସେହି
ପାତ୍ର, ଅମାତ୍ୟଙ୍କୁ ଧନରତ୍ନ ଦେଇ ବଶୀଭୂତ କରିଛଇଁ । ୫୯
ପ୍ରଜାଙ୍କ କଥାରେ କିସ ଯାଏ ଆସେ ତାଙ୍କୁ କଲେ ଭୟଭୀତ
ଦେଖି ଶୁଣି ସବୁ ନୀରବ ରହିବେ ପ୍ରକାଶିବା ଅସାମର୍ଥ୍ୟ । ୬୦
କଠିନ ଦଣ୍ଡର ବ୍ୟବସ୍ଥା କରିଲେ ପ୍ରଜାଏ ହେବେ ଉଚ୍ଛିନ୍ନ
ପାଣ୍ଡବ ସପକ୍ଷେ ଥିବା ଜନମତ ମଉଳି ଯିବ ରାଜନ । ୬୧
ଦୁର୍ଯ୍ୟୋଧାନ ମତ ପ୍ରତି ସମର୍ଥନ କଣାଇଲେ ମନ୍ତ୍ରୀ, ମିତ୍ର
ରାଜାଙ୍କୁ କହିଲେ ଏ ଉଚିତ ମାର୍ଗ କାର୍ଯ୍ୟେ ହେଉ ପରିଣତ । ୬୨
ଶକୁନି କହିଲେ ପାଣ୍ଡୁ ପୁତ୍ର ମାନେ ହେଲେ ହେଁ ଭାଇର ପୁତ୍ର
ଦିନୁଦିନ ତାଙ୍କ ଶକ୍ତି ବୃଦ୍ଧି ପାଏ ଭବିଷ୍ୟେ ହେବ ଅନର୍ଥ । ୬୩
ଅଧିକ କ୍ଷମତା ବଢିବା ଆଗରୁ ରହିବା ହୋଇ ସତର୍କ
ଶତ୍ରୁ ଶକ୍ତି ଖର୍ବ ରାଜଧର୍ମ ଅଟେ ତହିଁରେ ନାହିଁ ବିତର୍କ । ୬୪
ରାଜକାର୍ଯ୍ୟ ସଦା ଗୋପନୀୟ ଅଟେ ଶତ୍ରୁ ଜାଣି ପାରେ ନାହିଁ
କଉଣସି କାର୍ଯ୍ୟ ଆରମ୍ଭ କରିଲେ ସଫଳତା ଲୋଡ଼ା ତହିଁ । ୬୫
ପାଦରେ କଣ୍ଟକ ବିଦ୍ଧ ହୋଇଗଲେ ଲୋଡ଼ା ତାର ବହିର୍ଗମ
ନ ହେଲେ କ୍ଲେଶର କାରଣ ହୁଅଇ ପ୍ରତିକାର ପ୍ରୟୋଜନ । ୬୬
ଶତ୍ରୁ ଶକ୍ତି ନ୍ୟୂନ ହେଲେ ହେଁ ରାଜନ ଉପେକ୍ଷାର ବସ୍ତୁ ନୁହେଁ
ଅତି କ୍ଷୁଦ୍ର ହେଲେ ମଧ୍ୟ ଅଗ୍ନି କଣା କାଳେ କାନନକୁ ଦହେ । ୬୭
ନାନାବିଧ ଉପାୟ ଅବଲମ୍ବନରେ ଶତ୍ରୁ କରାଯାଏ କ୍ଷୟ
ଶତ୍ରୁ ଶକ୍ତି ବୃଦ୍ଧି ପାଇଲେ ବିଶ୍ବରେ ହୋଇଥାଏ ଅପଚୟ । ୬୮

ଅତି ବଳବାନ ପାଣ୍ଡୁଙ୍କ ନନ୍ଦନ ତାଙ୍କ ହାତୁ ରକ୍ଷା ପାଇଁ
କଲେ କଉଶଳେ ତାହାଙ୍କ ନିଧନ ଯୋଗାଏ ହେ ନରସାଇଁ । ୬୯

ଅନ୍ଧ ନୃପତିଙ୍କୁ ମନ୍ଦ ଉପଦେଶ ଦେଇ ବୋଲେ ମନ୍ତ୍ରୀବର
ବେଳ ଥାଉଁ ବନ୍ଧ ବାନ୍ଧ ନୃପବର କରିଣ ବିଚାର କର । ୭୦
ପୁତ୍ର ସ୍ନେହେ ଅନ୍ଧ ପିତା ଧୃତରାଷ୍ଟ୍ର ବସିଲେ ହୋଇ ମଉନ
ପିତାଙ୍କ ଦୁର୍ବଳ ମନର ସୁଯୋଗ ନେଇ ବୋଲେ ଦୁର୍ଯ୍ୟୋଧନ । ୭୧
ମନ୍ତ୍ରୀ ପରାମର୍ଶେ ପୁରୋଚନ ପଣ୍ଡା ନିର୍ମାଣ କରିଛି ଗୃହ
ଛଣ, ଝୋଟ, ଘୃତ, ଜୋଉ, ଶାଳରସ ଦାହ୍ୟ ଦ୍ରବ୍ୟରେ ନିର୍ବାହ ।୭୨
ଅଗ୍ନି ସଂଯୋଗରେ ଅକ୍ଳେଶରେ ଗୃହ ହୋଇଯିବ ଦଗ୍ଧିଭୂତ
ସେ ଉପାୟେ ପଣ୍ଡା ନିର୍ମାଣିଛି ପୁର ଚକ୍ର ପାଣ୍ଡବ ଅହିତ । ୭୩
ସେ ପୁରରେ ମଧ୍ୟ ପୁରୋଚନ ପଣ୍ଡା ରହିଛି ହୋଇ ପୂଜାରି
ରନ୍ଧନ ପଦାର୍ଥେ ବିଷ ମିଶାଇଣ କୂଟେ ନେବ ପ୍ରାଣ ହରି । ୭୪
ଅଥବା ରାତ୍ରରେ ଶୟନ ସମୟେ ଗୃହରେ ବହ୍ନି ଲଗାଇ
ମାତା ପୁତ୍ରେ ପୋଡି ମାରି ପକାଇଣ ଖସି ପଳାଇବ ସେହି । ୭୫
କୂଟେ ଷଡ଼ଯନ୍ତ୍ର କରିଅଛି ମାମୁଁ ଘଟଣା ନ ଯିବ ଜଣା
ପାଣ୍ଡବେ ମରିବେ ଲୋକେ ନ ଜାଣିବେ ଗୁପ୍ତ ରହିବ ଘଟଣା । ୭୬
ମନ୍ତ୍ରୀର ବୁଦ୍ଧିକୁ ପ୍ରଶଂସା କରିଲେ ଦୁଃଶା, କର୍ଣ୍ଣ ଆଦି ଦୁଷ୍ଟ
ଶୁଣି ଅନ୍ଧ ବୋଲେ ଗୁପ୍ତ ରଖ କଥା ଯେପରି ନ ହେବ ରାଷ୍ଟ୍ର । ୭୭
ପୁତୁରଙ୍କୁ ଡାକି ପିତା ଧୃତରାଷ୍ଟ୍ର କହିଲେ ଶିବପୁରରେ
ଉତ୍ସବ ହେଉଛି ଦେଖି ଆସ ଯାଇ ମାତାଭ୍ରାତା ସହିତରେ । ୭୮
ମହାସମାରୋହେ ଶିବ ପୂଜୋତ୍ସବ ପାଳୁଛନ୍ତି ପ୍ରଜାଗଣ
ନବଦିନ ଯାଏ ଚାଲିବ ଉତ୍ସବ ସମାଗମ ହେବେ ଜନ । ୭୯
ତୁମ୍ଭର ସ୍ୱାଗତ ଅଭ୍ୟର୍ଥନା ପାଇଁ ହୋଇଅଛି ଆୟୋଜନ
ସେଠାରେ ପ୍ରଜାଙ୍କୁ ସମ୍ଭାଷଣ କରି ଆନନ୍ଦେ କଟାଅ ଦିନ । ୮୦
କିଛିଦିନ ତହିଁ ଅବସ୍ଥାନ କରି ହସ୍ତିନାକୁ ଫେରିଆସ
ଏହା କହି ପିତା ଶିବପୁରେ ପୁତ୍ରେ ଯିବାକୁ ଦେଲେ ଆଦେଶ । ୮୧
ଜ୍ୟେଷ୍ଠ ପିତା ଆଜ୍ଞା ପାଇ ଚାଲିଗଲେ ମାତାଙ୍କୁ ସଙ୍ଗରେ ଧରି
କାନନ ମଧ୍ୟରେ ନବପୁର ଦେଖି ପୁତ୍ରେ ଖୁସି ହେଲେ ଭାରି । ୮୨

ନବ ନିର୍ମିତ ସେ ଶିବ ଭବନରେ ଶୁଭ ଭାବ ବାସ କଲେ
ଆଖପାଖ ଲୋକେ ଦଳଦଳ ଆସି ସମ୍ବର୍ଦ୍ଧନା ଜଣାଇଲେ । ୮୩
ଦିବ୍ୟପୁର ଦେଖି ଧର୍ମ ଯୁଧିଷ୍ଠିର ଭାଇଙ୍କି କହିଲେ ଗିର
ଦେଖ ବୈରଭାବ ଭୂଲି ଦୁର୍ଯ୍ୟୋଧନ ନିର୍ମାଣିଛି ନବପୁର । ୮୪
ସକୂଟେ ସେ ଗୃହେ ବାସ କଲେ ଧର୍ମ ମାତାଭ୍ରାତାଙ୍କ ସହିତ
ରାତ୍ରରେ ବିଦୁର ସେଠାରେ ପହଞ୍ଚି ପ୍ରକାଶିଲେ ଗୁପ୍ତ ତଥ୍ୟ । ୮୫
ଇଙ୍ଗିତ ଦେଇଣ ବୁଝାଇ ଦେଲେ ସେ ସତର୍କ ରହିବା ପାଇଁ
ରାଜନୀତି ବିଶାରଦ ବ୍ୟକ୍ତି ପକ୍ଷେ ସେ ନୀତି ସଦା ଯୋଗାଇ । ୮୬
ଶତ୍ରୁ ଅଭିସନ୍ଧି ଉପଲବ୍ଧି କରି ବିପଦୁ ରକ୍ଷା ନିମନ୍ତେ
ସର୍ବଦା ଉପାୟ କରଇ କ୍ଷତ୍ରୀୟ କୂଟନୀତି ଶାସ୍ତ୍ରମତେ । ୮୭
ଶତ୍ରୁ ହାତେ ଥିବା ତୀକ୍ଷ୍ଣ ଅସ୍ତ୍ରଶସ୍ତ୍ରେ କଲେହେଁ ଆଘାତପ୍ରାପ୍ତ
ତହିଁରୁ ଉଦ୍ଧାର ପାଇବା ଉପାୟ ଯାହାକୁ ହୋଇଛି ଜ୍ଞାତ । ୮୮
କେତେବେଳେ ସିଏ ଶତ୍ରୁର ହସ୍ତରେ ନିହତ ହୁଅଇ ନାହିଁ
ଗୃହ ଦହନରେ ମୂଷିକକୁ ଯେହ୍ନେ ଅଗ୍ନି ଧାପ ନ ଲାଗଇ । ୮୯
ଗାତର ଭିତରେ ପଶି ରହି ମୂଷା କରଥାଏ ଆତ୍ମରକ୍ଷା
ସେପରି ବିବେକୀ ବିପଦ ସମୟେ ଗ୍ରହଣ କରେ ସେ ଦୀକ୍ଷା । ୯୦
ବରାହ ଯେପରି ଭୂମିକୁ ବିଦାରି ଦାବାନଳୁ ରକ୍ଷାପାଏ
ଗହନ କାନନେ ନକ୍ଷତ୍ରକୁ ଦେଖି ଯେସନେ ଦିଗ ନିର୍ଣ୍ଣୟେ । ୯୧
ଅନ୍ୟମାନେ ବୁଝି ନ ପାରିବା ପରି ଇଙ୍ଗିତ ଦେଲେ ବିଦୁର
ରାଜନୀତି ଷଡଯନ୍ତ୍ରୁ ରକ୍ଷା ପାଇଁ ଲୋଡ଼ା ଯେ ମାର୍ଗ ସତ୍ୱର । ୯୨
ଯୁଧିଷ୍ଠିର ତାହା ବୁଝିଛନ୍ତି ବୋଲି ଜଣାଇଲେ ଇଙ୍ଗିତରେ
ସତର୍କ ହୋଇଣ ଧର୍ମ ଯୁଧିଷ୍ଠିର ରହିଲେ ଜତୁ ଗୃହରେ । ୯୩
ପିତୃବ୍ୟ ବିଦୁର ଉପଦେଶ ମାନି ସତର୍କେ ଧର୍ମ ନନ୍ଦନ
ତନ୍ନତନ୍ନ କରି ଗୃହର ପ୍ରତ୍ୟେକ ସ୍ଥାନ କଲେ ନିରୀକ୍ଷଣ । ୯୪
ଦାହ୍ୟ ପଦାର୍ଥରେ ନିର୍ମିତ ସେ ପୁର ଜାଣିଲେ ଦେଖି ଲକ୍ଷଣ
ଅଗ୍ନି ସଂଯୋଗରେ ନିମିଷକ ମାତ୍ରେ ହୋଇଯିବ ତା ଦହନ । ୯୫
ଦୁର୍ଯ୍ୟୋଧନଙ୍କର ମନ୍ଦ ଅଭିପ୍ରାୟ ବୁଝିଗଲେ ତତ୍‌କ୍ଷଣ
ଏକଥା କାହାକୁ ପ୍ରକାଶ ନ କରି ରଖିଲେ ହୃଦେ ଗୋପନ । ୯୬

ବିଦୁରଙ୍କେ ଏହି ବିପଦ ସଙ୍କୁଳ ଗୃହେ ବାସ କରିଥିବା
ସୁବିଧା ସୁଯୋଗ ଦେଖି ଆମ୍ଭେ ଏଥୁ ନିଷ୍କ୍ରାନ୍ତ ହୋଇଣ ଯିବା ।୯୭
ଏ କଥା ଯେପରି କୌଣସି ପ୍ରକାରେ ନ ଜାଣିବ ପୁରୋଚନ
ମାତା ଭ୍ରାତାଗଣେ ବୁଝାଇ ଦେଇଣ କରାଇଲେ ସାବଧାନ । ୯୮
ପଣ୍ଡାଙ୍କୁ ଡକାଇ କହିଲେ ଯୁଧିଷ୍ଠି ଶୁଣ ଆହେ। ବିପ୍ରବର
ବାଳକ କାଳରୁ ବନବାସୀ ଆମ୍ଭେ ନ ଭୁଞ୍ଜୁ ପାକ ଆହାର । ୯୯
ଅନାୟସେ ଅଗ୍ନି ଜାଳିବ କମ୍ପାଇଁ ଧୂଆଁ କଳା ହେବ ଘର
ପାକ ଭୋଜନରେ ଆଗ୍ରହ ନ ଥାଇ କେବଳ ଫଳ ଆହାର । ୧୦୦
ପୁତ୍ରଙ୍କ ଭୋଜନ ଦାୟିତ୍ୱ ମାତାର ଯୋଗାଡ଼ କରିବେ ସହି
ଆମ୍ଭପାଇଁ ତୁମ୍ଭେ ଶୋଚନା ନ କର ଆରାମ କର ଶୋଯେଇଁ । ୧୦୧
ବସିରହି ତୁମେ ବେତନ ପାଇବ ନିଯୁକ୍ତ ଦେଇଛି ନୃପ
ଭାଗ୍ୟେ ଥିଲେ ଏହି ଚାକିରି ମିଳଇ ପୂର୍ବର ଅର୍ଜିଲି ତପ । ୧୦୨
କେତେଜଣଙ୍କର ଭାଗ୍ୟେ ଏ ସୁଯୋଗ ଯୁଟଇ ହୋ ପଣ୍ଡାପୁଅ
ଜାଣିଲ ନୃପତି ତୁମ୍ଭ କାର୍ଯ୍ୟ ପ୍ରତି ଅତିଶୟ ସହୃଦୟ । ୧୦୩
ରହିଲେ ପଣ୍ଡାଏ ପାଣ୍ଡବଙ୍କ କତି ମନ ମଧ୍ୟେ ପାପ ଚକ୍ର
କପଟ ପାଣ୍ଡବେ ନିଧନ କରିଣ ଲଭିବ ରାଜ ପ୍ରଶଂସି । ୧୦୪
ପାଣ୍ଡୁ ପାଞ୍ଚ ପୁତ୍ରେ ଏ ଦୁରଭିସନ୍ଧି ଯେମନ୍ତେ ନ ପାରିବେ ବୁଝି
ପାଣ୍ଡବଙ୍କ ଆଜ୍ଞା ପାଳନେ ପାଣ୍ଡାଏ ରହିଲେ ଉପାୟ ଖୋଜି । ୧୦୫
ରାତିରେ ପୁରୋଚନ ପଣ୍ଡା ଦ୍ୱାର ଦେଶେ କଲେ ଦ୍ୱାରପାଳ କାର୍ଯ୍ୟ
ଶୋଇବା ସମୟେ ଅଗ୍ନି ଜାଳି ପୁରେ କରିବ ଆପଣା କାର୍ଯ୍ୟ । ୧୦୬
ମାତ୍ର ରାତ୍ରେ ପାର୍ଥ ଜାଗ୍ରତ ରହିଣ ସଳଖାନ୍ତି ଧନୁଶର
ଏଣୁ ପୁରୋଚନ କାର୍ଯ୍ୟରେ ସଫଳ ନ ହେଲା ସମ୍ଭବପର । ୧୦୭
ପରସ୍ପର ଭାବ ଗୋପନ ରଖିଣ ପରସ୍ପରେ କୂଟେ ଲିପ୍ତ
ପରସ୍ପର ଛିଦ୍ର ଖୋଜିବାରେ ବ୍ୟସ୍ତ ଅନିଦ୍ରା ରହିଣ ରାତ୍ର । ୧୦୮
ସୁଯୋଗ ଉଣ୍ଡିଣ ରହିଲେ ପଣ୍ଡାଏ ଏକ ବର୍ଷ ହେଲା ଗତ
ଛିଦ୍ର ନ ପାଇଣ ମନ୍ତ୍ରୀଙ୍କ ପାଖରେ ଜଣାଇଲା ଯାଇ ତଥ୍ୟ । ୧୦୯
ଶକୁନି କହିଲା ଆହେ ପୁରୋଚନ ଅନ୍ୟ ବୁଦ୍ଧି ଏବେ କର
ବିମସ୍ଥାନ ମାନ ସ୍ଥାନେ ସ୍ଥାନେ ସ୍ଥାପି ଅଗ୍ନିକୁ ଜାଗ୍ରତ କର । ୧୧୦

ଦିନରାତ୍ରି ଅଗ୍ନି ଜଳୁଥିବ ଶାଳେ ଶତ ସହସ୍ର ସଂଖ୍ୟାରେ
ସୁଯୋଗ ଦେଖିଣ ଅଗ୍ନି ନେଇ ତହିଁ ଲଗାଇବ ଜତୁ ଘରେ ।୧୧୧
ମନ୍ତ୍ରୀ ପରାମର୍ଶ ପାଇ ଦୁର୍ଯ୍ୟୋଧନ ବିନ୍ଧାଣି ଗଣେ ଡ଼କାଇ
ଆଜ୍ଞାଦେଲେ ତାଙ୍କୁ ଶିବପୁରେ ଯାଇ ଶାଳ କରିବାର ପାଇଁ ।୧୧୨
ଲୁହା ପଥରକୁ ତରଳାଇ ତହିଁ ତିଆରିବ ଲୌହପିଣ୍ଡ
ସେ ଲୌହ ପିଣ୍ଡରେ ନିର୍ମିତ ହୋଇବ ସେନାଛାଉଣି ପ୍ରକାଣ୍ଡ ।୧୧୩
କାନନରେ ଯେଣୁ ରହୁଛନ୍ତି ପୁତ୍ରେ ତାଙ୍କ ନିରାପତ୍ତି ପାଇଁ
ଆଜ୍ଞା ଦେଇଛନ୍ତି ହସ୍ତିନାଧିପତି ଛାଉଣି ନିର୍ମାଣ ତହିଁ ।୧୧୪
ଏକଥା ବୁଝାଇ କମାର ମାନଙ୍କୁ ଘେନି ମନ୍ତ୍ରୀ ଚଳି ଯାଇ
କେଉଁ ସ୍ଥାନେ ଶାଳ ସ୍ଥାପନ କରିବେ ପ୍ରତ୍ୟକ୍ଷେ ଦେଲେ ଦେଖାଇ ।୧୧୫
ସହସ୍ରେ ବିନ୍ଧାଣି ଦିନରାତ୍ରି ତହିଁ ରହିଲେ ଶାଳ ଲଗାଇ
ଲୁହା ତରଳାଇ ପିଣ୍ଡ ପ୍ରହାରିଲେ ଅନୁବର୍ତ୍ତେ ବସି ରହି ।୧୧୬
ଭଣଜାଙ୍କୁ ଭେଟ କରିବା ନିମନ୍ତେ ମାତୁଳ କଲେ ଗମନ
ମାମୁଁଙ୍କୁ ଦେଖିଣ ପାଞ୍ଚ ଭଣଜାଏ ଚରଣ କଲେ ପୂଜନ ।୧୧୭
ଆଦର ପାଇଣ ମାତୁଳ ଶକୁନି କହିଲେ କୂଟ କରିଣ
ଏ ଘୋର କାନନେ ଏକା ରହୁଥିଲ ଭୟ ଥିଲ ତୁମ୍ଭ ମନ ।୧୧୮
ସହସ୍ର ସଂଖ୍ୟାରେ କମାର ଏଠାରେ ଦିନରାତ୍ରି କର୍ମରତ
ରାତ୍ରିରେ ଦିହୁଡ଼ି ସମାନ ଜଳିବ ହୋଇ ଅଗ୍ନି ପ୍ରଜ୍ୱଳିତ ।୧୧୯
ଏ ବନ ପ୍ରଦେଶ ଆଲୋକିତ ହେବ ନାଶ ଯିବ ଅନ୍ଧକାର
ବିପଦ ଆପଦ ଦୂର ହୋଇଗଲା ନିର୍ଭୟେ ଶୟନ କର ।୧୨୦
ପିତା ଧୃତରାଷ୍ଟ୍ର ତୁମ୍ଭ ସୁଖ ପାଇଁ ନିର୍ମାଣ କଲେ ଏ ପୁର
ଖଞ୍ଜି ଦେଇଛନ୍ତି ରାଜଭୋଗସଙ୍ଗେ ପୁରୋଚନ ସୂପକାର ।୧୨୧
ଦିନାକେତେ ଏଥେ ଅବସ୍ଥାନ କରି ଖାଇପିଇ ମସ୍ତ ହୋଇ
ସମ୍ପୂର୍ଣ୍ଣ ବିଶ୍ରାମ କରି ସୁସ୍ଥ ହୋଇ ଭଜୁଥାଅ ନରସାଇଁ ।୧୨୨
ମାମୁଁ କଥା ଶୁଣି ଭଣଜା ସକଳେ କୃତଜ୍ଞତା ବ୍ୟକ୍ତ କଲେ
ଭଣଜା ସଂଖୋଳି ମାତୁଳ ଶକୁନି ହସ୍ତିନାକୁ ବାହୁଡ଼ିଲେ ।୧୨୩
ରାତ୍ରିରେ ବିଦୁର ସେଠାରେ ପହଞ୍ଚି କହିଲେ ମିଳାଇ ତଥ୍ୟ
ଏ କମାର ଗଣେ ବିଶ୍ୱାସ ନ ଯିବ ଦୁର୍ଯ୍ୟୋଧନର ଏ କୂଟ ।୧୨୪

ଘର ପୋଡ଼ିବାକୁ ସୁବେଚନ ପଣ୍ଡା ନ ପାଇଲା ଯହୁଁ ଅଗ୍ନି
କପଟ କରିଣ ଏକମାତ୍ର ଶାନ୍ତ ବସାଇଛନ୍ତି ମନ୍ତ୍ରୀମଣି । ୧୨୫
ସାବଧାନ ହୋଇ ପୁରେ ବାସ କର ଶତ୍ରୁ ରହୁଛନ୍ତି ଘେରି
ପରାମର୍ଶ ଦେଇ ଚଳିଲେ ବିଦୁର ଧର୍ମାଧର୍ମ ମୁଖେ ସ୍ମରି । ୧୨୬
ବିଦୁରଙ୍କଠାରୁ ପରାମର୍ଶ ପାଇ ପାଣ୍ଡବେ ସତର୍କ ହେଲେ
ରାତ୍ରି ପାଳି କ୍ରମେ ପବନ ନନ୍ଦନ ସତର୍କେ ଜଗି ରହିଲେ । ୧୨୭
ଦୁର୍ଯ୍ୟୋଧନ କୂଟ କପଟକୁ ଜାଣି ଧର୍ମରାଜ ଯୁଧିଷ୍ଠିର
ଅନ୍ତର ମଧ୍ୟରେ ଅନ୍ତର୍ଯ୍ୟାମୀ ଧ୍ୟାନ କରନ୍ତେ ମିଳିଲେ ପୁର । ୧୨୮
ଧର୍ମଙ୍କ ମୁଖରୁ ସବୁ କଥା ଶୁଣି କହିଲେ ନୁହଁ ଅଧୀର
ପରମନ୍ଦ ଚିନ୍ତା କରି କୁରୁପତି ଆପଣେ ହେବ ସଂହାର । ୧୨୯
ସାବଧାନ ହୋଇ ଗୃହେ ବାସ କର କହୁଛନ୍ତି ଧର୍ମରାଜ
ହେଳ କାଳ ଉଣ୍ଡି ଉପାୟ କରିବା ସଫଳ ହୋଇବ କାର୍ଯ୍ୟ । ୧୩୦
ଆଶ୍ୱାସନା ଦେଇ ଦେବକୀ ନନ୍ଦନ ସେଠାରୁ ବିଦାୟ ନେଇ
ବିଦୁରଙ୍କୁ ଭେଟି ଉଦ୍ଧାର ଉପାୟ ଗୋପନେ ଦେଲେ ବୁଝାଇ । ୧୩୧
ଖଳିକାର ଡାକି ଆଜ୍ଞାଦେଲେ ପ୍ରଭୁ ପ୍ରକଟ ନ କରି ତଥ୍ୟ
ସୁରଗଙ୍ଗା ଘାଟୁ ଜତୁଗୃହ ଯାଏ ଖୋଳି ହୋ ସୁଡ଼ଙ୍ଗ ପଥ । ୧୩୨
ଏହା କହି କୃଷ୍ଣ ଆପଣା ବାହୁରୁ ଜାତ କରି ଦୁଇ ମୂଂସ
କହିଲେ ସୁଡଙ୍ଗ ଖନନ ମୃତ୍ତିକା ଖାଇ କରି ହୋ ନିଃଶେଷ । ୧୩୩
ଆଁ ଆଁ କରି ଭୂମି ଖନନ ମୃତ୍ତିକା ସମ୍ଭୂକେ କଲେ ଭକ୍ଷଣ
ଭୂମିପୁତ୍ର ନାମେ ପରିଚିତ ହେଲେ ଭୂଷୁଁ ଜାତିର ପ୍ରମାଣ । ୧୩୪
ବାହାରକୁ ବୁନ୍ଦେ ମାଟି ନ ଆସିଲା ଘଟଣା ନ ଗଲା ଜଣା
ଖଳି ତାତ ଖଳିକାରଙ୍କୁ ଧରିଣ କାର୍ଯ୍ୟ କଲେ ସମ୍ପାଦନା । ୧୩୫
ନାବିକକୁ ଡାକି କହିଲେ ବିଦୁର ବର୍ଷକ ପାଇଁ ନିଯୁକ୍ତ
ଦିବସ ରଜନୀ ଜଗି ବସିଥିବୁ ନାବ ରଖି ନଦୀ ତଟ । ୧୩୬
ଦିବସ ସମୟେ ଏ ଘାଟରେ ନାବ ଜଳରେ ବୁଡ଼ାଇ ଦେବୁ
ରାତ୍ରି କାଳେ ନାବ ଜଳରୁ ଉଠାଇ ସଜ କରି ରଖିଥିବୁ । ୧୩୭
ଏ ବିବର ପଥ ଦେଇ ଯେ ଆସିବ କରି ଦେବୁ ନଦୀ ପାର
ଆମ୍ଭର ଆଜ୍ଞାକୁ ଅବଜ୍ଞା କରିଲେ ବିନାଶିବ ବଂଶ ତୋର । ୧୩୮

ଆଜ୍ଞା ପାଇ ସେହୁ ବିନ୍ଦୁ କର୍ଣ୍ଣଧାର ଦିବସେ ନାବ ବୁଡ଼ାଇ
ନଦୀର କୂଳରେ ବସି ରହୁଥାଏ ବନ୍ଧରେ ନାବେ ବସାଇ । ୧୩୯
ଏକ ବର୍ଷ କାଳ ସମୟ ଲଗିଲା ଗୁପ୍ତ ବିବର ଖନନ
ଦିବସ ରଜନୀ ଜଗି ବସିଥାଏ ନାବିକ ନିଦ୍ରା ତେଜଣ । ୧୪୦

ବିବର ଖନନ କାର୍ଯ୍ୟ ଶେଷ ହେବା ସମ୍ବାଦ ପାଇ ବିଦୁର
ଖନୀକାରେ ତୋଷ କଲେ ଖନୀ ତାତ ଦେଇ ଧନ ଉପହାର । ୧୪୧
ଭୂମି ପୁତ୍ରଗଣେ ରଖାଇଲେ ନେଇ ଖଞ୍ଜିଦେଲେ ଭୂମି ବୃତ୍ତି
ଭୂଇଁଆ ପରଜା ନାମରେ ସେମାନେ ଭାରତେ ଲଭିଲେ ଖ୍ୟାତି । ୧୪୨
ଭକ୍ତ ଭଗବାନ ମିଳିତ ଉଦ୍ୟମେ ସୁଡ଼ଙ୍ଗ ଖନନ ଶେଷ
ଏକଶତ ଚୌଚାଳିଶ ପଦେ ଅଧ୍ୟା ଶେଷ କଲା ବୃନ୍ଦାବନ । ୧୪୩
ଗୁରୁ ଅଭିରାମ କୃପା ହୋଇବାରୁ ହେଲା ଏ କାବ୍ୟ ସ୍ଫୁରଣ
ପଦପଦକରେ ରସ ଝରୁଅଛି ରସିକେ କର ହୋ ପାନ । ୧୪୪

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ମଥୁରା-ଦ୍ୱାରକା
ଲୀଳାଖଣ୍ଡେ ପାଣ୍ଡବମାନଙ୍କର ଜତୁ ଗୃହେ ବାସ
ନାମ ଚତୁର୍ଥ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

—●—

**ବୋଲି —**

ଜୟ ଜଗନ୍ନାଥ ଜଗତର ତାତ ନୀଳାଚଳ ନାଥ ଶରଣ
ଦୁଃଖୀ ଦୁଃଖ ଦେଖି ବୁଜିଲକି ଆଖି ଘରି ହୋଇଲା କି କଷଣ ?
ପ୍ରଭୁ ହେ ! ଏହୁ କି ତୁମ୍ଭର ବିଚାର
ଡାକି ଡାକି କଣ୍ଠ ଶୁଖି ଯାଉଅଛି ହେଲେ କି ହୋଇଲ ବଧିର ? ୧
ଶୁଣିଛୁ ଆଗରୁ କେତେ ବିପଦରୁ ଉଦ୍ଧାରିଛ କେତେ ଆର୍ତ୍ତିଙ୍କି
ଦେଖି ଆମ୍ଭ ଦୁଃଖ ହୋଇଲକି ମୂକ ନ ଦେଖୁଛ ଏବେ ଅନାକି
ପ୍ରଭୁ ହେ ! ବୋଲଅ ବିପଦ କାଣ୍ଡାରୀ
ବିପଦ ସାଗରେ ଭସାଇ ଦେଉଛ କାପାଶେ କରିବୁ ଗୁହାରି ? ୨

ଆହା କହିବାକୁ ସାହା କେହି ନାହିଁ କାହା ଆଶ୍ରା କରି ବଞ୍ଚିବୁ
ଭାଗ୍ୟକୁ ଆଦରି ଦୁଃଖ ସହୁ ଅଛୁ ଆଉ କେତେ କଷ୍ଟ ଭୋଗିବୁ

ପ୍ରଭୁ ହେ ! ଦୁର୍ଯ୍ୟୋଧନ ବଡ ନିଷ୍ଠୁର

ଭାଇ ହୋଇ ଏଡ଼େ ପାଷାଣ ହୃଦୟୁ ପାଖରୁ କରିଲା ଅନ୍ତର । ୩

ନାଶି ବହୁ ଦୁଃଖ ହେଲ କି ବିମୁଖ ଦୁଃଖବନ୍ଧୁ ନାମକୁ ନିନ୍ଦି
ନାସା, ନେତ୍ର, କର୍ଣ୍ଣ, ପାଦ, ପାଣି କଟୁ ତେଣୁ କରି ରଖିଲ ନାହିଁ ?

ପ୍ରଭୁ ହେ ! ଜଗନ୍ନାଥ ନାମ ତୁମ୍ଭର

ଜଗତର ହିତେ ନୀଳାଚଳେ ବିଜେ ଦାରୁବ୍ରହ୍ମ ତୋ କଳେବର । ୪

ଆହେ ଲକ୍ଷ୍ମୀ ସାଇଁ ଯୋଡ଼ି କର ଦୁଇ ବୃନ୍ଦାବାସ କରଇ ସ୍ତୁତି
ଆର୍ତ୍ତିର ଆରତ ହେନ ଜଗନ୍ନାଥ ରଖ ହେ ଜଗତ ଆରତି

ପ୍ରଭୁ ହେ ! ଶରଣଦ ନାମ ତୋହର

ଶରଣ ପଶିଲ ସରଜ ଚରଣେ ଶରଣ ରଖ ଶ୍ରୀପ୍ରଭୁ ବର । ୫

# ପଞ୍ଚମ ଅଧ୍ୟାୟ

## ଜତୁଗୃହ ଦହନ ଓ ବନ ଗମନ

ରାଗ - ଚୋଖି

କୃଷ୍ଣ ଚରିତ ମାନସ    ଶ୍ରବଣ କର ବିଦୂଷ
ଦୁରିତ ମାନ ବନ୍ଧନ ହେବ ଖଣ୍ଡନ
ଗୁପ୍ତ ବିବର ଖନନ    କାର୍ଯ୍ୟ କରି ସମାପନ
ଜତୁ ଗୃହରେ ମିଳିଲେ ବ୍ୟାସ ନନ୍ଦନ
ବିଶ୍ୱାସେ ବୋଇଲେ ବିଦୁର
ବିଧିର ନିର୍ଦ୍ଦେଶ ଯେନ କୁନ୍ତୀ କୁମର ।୧

ତୁମ୍ଭ ପାଇଁ ଗୁପ୍ତ ପଥ    ଖୋଳି କରିଛି ପ୍ରସ୍ତୁତ
ଆଜ୍ଞା ଦେଇଛନ୍ତି ମୋତେ ନନ୍ଦ ନନ୍ଦନ
ଜତୁ ଘରୁ ଗଙ୍ଗାତଟରେ    ବିସ୍ତୃତ ସୁଡ଼ଙ୍ଗ ଦ୍ୱାରେ
ନାବ ଧରି ଜଗି ଅଛି ନାବିକ ଜନ
ଏକ ବର୍ଷ ଧରି ଅନିଦ୍ର
ଧର୍ମକାର୍ଯ୍ୟ କରିବାକୁ ଜାଗିଛି ଭଦ୍ର ।୨

ଆଜ ସନ୍ଧେ ଜତୁଗୃହ    ଭୀମ ହାତେ କରି ଦାହ
ଗଙ୍ଗା ପାରି ହୋଇ ଯାଅ ବନେ ପଳାଇ
ଗୃହ ଦାହେ ହେଲ ହତ    ପ୍ରଘଟ ହେବ ଏ ତଥ୍ୟ
କୌରବେ କାନ୍ଦିବେ କୂଟେ ଏ ବାର୍ତ୍ତା ପାଇ
ପ୍ରଜାଏ ଜାଣିବେ ସେ କଥା
କପଟରେ ତୁମ୍ଭ ପାଇଁ ତା ହୃଦେ ବ୍ୟଥା ।୩

ନିଷ୍କଣ୍ଟକେ ଦୁର୍ଯ୍ୟୋଧନ    ରାଜ୍ୟ ହେବ ନରରାଣ
ଶାସନ ନାମେ କରିବେ ଅନ୍ୟାୟ ଘୋର
ଦୁର୍ଜ୍ଜନେ ହୋଇଣ ମେଳ    ଗ୍ରାସିବେ ମହୀମଣ୍ଡଳ
ନ ରହିବ ଧର୍ମକର୍ମ ନ୍ୟାୟ ବିଚାର
ପ୍ରଜାଙ୍କୁ ପଡ଼ିବ ଦୁର୍ଗତି
ଚୋର ଖଣ୍ଟି ହରି ନେବେ ଧନ ସମ୍ପତ୍ତି ।୪

ଦେଶ ଶାସନେ ଦୁର୍ଗତି  ଚାଲିବ ଗୁଣ୍ଡା ରାଜୁତି
ଆଭ୍ୟନ୍ତରିଣ ଶୃଙ୍ଖଳା ହେବ ବିନଷ୍ଟ
ଦୁଃଖେ ପଡ଼ି ପ୍ରଜାଗଣ  ଲୋଡ଼ିବେ ଧର୍ମ ଶାସନ
ଦୁର୍ଯ୍ୟୋଧନ ସପକ୍ଷରେ ହୋଇଣ ରୁଷ୍ଟ
ସେହିବେଳେ ତୁମ୍ଭ ପ୍ରକାଶ
ହୋଇବ ପାଞ୍ଚାଳ ରାଜ୍ୟ ହେ କୁନ୍ତୀ ଶିଷ୍ୟ । ୫
ଭେଦ ବତାଇ ବିଦୁର  ସେଠାରୁ ହୋଇଲେ ଦୂର
ଉପାୟ ଚିନ୍ତା କରିଲେ ଧର୍ମ ରାଜନ
ମନ୍ତ୍ରୀ ସଙ୍ଗେ ପରାମର୍ଶ ବସି କଲେ ଧର୍ମ ଈଶ
ମାତାଙ୍କୁ କହିଲେ ପାକ କର ରନ୍ଧନ
କ୍ଷୁଧା ଲାଗୁଅଛି ଜନନୀ
ଅନ୍ନ ଭୋଜନରେ ତୃପ୍ତ ହୋଇବୁ ପୁଣି । ୬
ନନ୍ଦନ ବଚନ ଶୁଣି ଗୃହରେ ଲଗାଇ ଅଗ୍ନି
ସୁପକ୍ୱ ଖାଦ୍ୟ ପଦାର୍ଥ କଲେ ରନ୍ଧନ
ନାନା ପ୍ରକାର ବ୍ୟଞ୍ଜନ, ପାୟସ, ସାକର, ଅଣ
ବେସର, ରାଇତା, ସିଜା, ପିଠା, ମିଷ୍ଟାନ୍ନ
ଆଗେ ଦେଲେ ବିପ୍ରେ ଭୋଜନ
ତୃପ୍ତି ଗ୍ରାସ କରି ପଣ୍ଡା କଲେ ଶୟନ । ୭
ରାତ୍ରି ପ୍ରଥମ ପ୍ରହର  ବହିଲା ବାତ୍ୟା ପ୍ରଖର
ବାତ୍ୟାଘାତେ ପ୍ରକମ୍ପିତ ବାରୁଣାପୁର
କଂସ ବନ୍ଦୀ ଘରୁ କୃଷ୍ଣ  ଗୋପନେ ଗୋପେ ଗମନ
ସମୟେ ଯେସନେ ବାୟୁ ଥିଲା ପ୍ରଖର
ତେସନେ ବର୍ଷିଲା ବାରିଦ
ବାୟୁ - ବାରି - ବିଜୁଳି କି ଚମକପ୍ରଦ ? ୮
ଜଇନ୍ତା ନାମେ ଶବରୀ  ପାଞ୍ଚ ପୁତ୍ର ସଙ୍ଗେ ଧରି
ମିଳିଲା ଜତୁ ଗୃହରେ · ଲୋଡ଼ି ଆଶ୍ରୟ
କହିଲା କ୍ରନ୍ଦନ କରି  କଷଣ ମୋ ଅଟେ ଭାରି
ବଜ୍ରାଘାତେ ସ୍ୱାମୀ ମଲେ ଗୃହ ବିଳୟ

ସଙ୍ଗେ ମୋର ପାଞ୍ଚ ତନୟ
ଆଶ୍ରୟ ଦିଅ ଗୋ ମାତ ମୁଁ ନିରୁପାୟ । ୯

ସମନାମ, ସମସୁତ   ଗୃହଶୂନ୍ୟ, ସ୍ୱାମୀହତ
ସମଦୁଃଖୀ ମଣି କୁନ୍ତୀ ତପିଲେ ମିତ
ଅଭୟ ଆଶ୍ରୟ ଦେଇ   ପୁରେ ରଖାଇଲେ ନେଇ
ଅତିଥି ସତ୍କାର କଲେ ପାଣ୍ଡବ ମାତ
ନିର୍ଭୟେ ଶୋଇଲ ଶବରୀ
ବରଷା ମୁଖର ନିଶି କି ଭୟଙ୍କରୀ ! ୧୦

ଦେଖି ଏ ବିଚିତ୍ର ଦୃଶ୍ୟ   ପୃଚ୍ଛା କଲେ ଧର୍ମ ଶିଷ୍ୟ
କହକହ ସହଦେବ ଏ କେଉଁ ତଥ୍ୟ
ସହଦେବ ବୋଲେ ଭ୍ରାତ   ଶୁଭ ସମୟ ଆଗତ
ଅନାହୁତ ଭାବେ ଆସି ପୁରେ ନିଦ୍ରିତ
ବିଳମ୍ବ ନ କର ନୃନାଥ
ଜତୁଗୃହ ଦହି ବନେ ଚଳ ତ୍ୱରିତ । ୧୧

ଦ୍ୱିତୀୟ ପାଣ୍ଡବ ଭୀମ   କରନ୍ତୁ ଏ ଗୃହ ଭସ୍ମ
ମରନ୍ତୁ ଶବରୀ ସାଥେ ପାଞ୍ଚ କୁମର
ତାଙ୍କ ସଙ୍ଗେ ପୁରୋଚନ   ଅଗ୍ନିରେ ହେବେ ଦହନ
ନ ଜାଣିବେ ଜଣେ କେହି ଏହି ଖବର
ପ୍ରଭାତ ହେଲେ ଦୁର୍ଯ୍ୟୋଧନ
ଜାଣିବ ଦହନ ହେଲେ କୁନ୍ତୀ, ନନ୍ଦନ । ୧୨

କପଟେ କରି କ୍ରନ୍ଦନ   ଡ଼କାଇ ବନ୍ଧୁ ସ୍ୱଜନ
ଚିହ୍ନଟ କରିବ ଶବ ଗଣତି କରି
ମାତା ସଙ୍ଗେ ପାଞ୍ଚ ପୁତ୍ର   ଷଡ଼ ପ୍ରାଣୀ ହେଲେ ହତ
ପୁରୋଚନ ପଣ୍ଡା ମଲା ସଙ୍ଗେ ତାଙ୍କରି
ସାତଗୋଟି ଶବ ଦେଖିଣ
ଶତ୍ରୁନାଶ ଗଲା ବୋଲି ଶାନ୍ତିବ ମନ । ୧୩

ଶୁଣି ମନ୍ତ୍ରୀଙ୍କ ବଚନ   କହିଲେ ଧର୍ମ ନନ୍ଦନ
ତୁମ୍ଭର ଏ ପରାମର୍ଶ ନୁହେଁ ଗ୍ରହଣ

ଶବରୀ ଅନାଥା ନାରୀ    ପୁଣି ଆଶ୍ରିତ ଆମ୍ଭର
ନିଦ୍ରା ଯାଇଛନ୍ତି ମାତା ପୁତ୍ର ଏ ସ୍ଥାନ
କୋଇନ୍ଦ୍ରା, କଇନ୍ଦ୍ରା ମଇଷ
ଷଡୁରେ ତା ପାଞ୍ଚ ପୁତ୍ର ଚରମ ଭ୍ରାନ୍ତ ।୧୪
ମିତ୍ର, ଆଶ୍ରିତ, ନିଦ୍ରିତ    ସ୍ୱାମୀ ଦୁଃଖେ ଜର୍ଜରିତ
ଅଗ୍ନିରେ ପୋଡ଼ି ମାରିବା ନୁହେଁ ଉଚିତ
ଏପରି ଅଧର୍ମ କର୍ମ    କରିବାକୁ ନୁହେଁ କ୍ଷମ
ସମାଜରେ ଆମ୍ଭେମାନେ ହେବା ନିନ୍ଦିତ
ଆଶ୍ରିତ ସର୍ବଦା ଅବଧ୍ୟ
ବିଶ୍ୱାସରେ ବିଷ ଦେଲେ ପାପ ପ୍ରମାଦ ।୧୫

ସହଦେବ ବୋଲେ ଭ୍ରାତ    ଶୁଣ ଏହାଙ୍କ ଚରିତ
ପୂର୍ବାର୍ଜିତ କର୍ମଫଳ ଦୋଷୁ ନିହତ
ଶବରୀର ପାଞ୍ଚ ପୁତ୍ର    ଏ ପୁରୋଚନ ସହିତ
ସାତ ଜଣ ଗୃହ ଦାହେ ହୋଇବେ ହତ
ପୂର୍ବରୁ ରହିଛି ପ୍ରମାଣ
ଧର୍ମ ହିତେ କାର୍ଯ୍ୟ କରି ହେବେ କାରଣ ।୧୬

କର୍ମଫଳ ଦୋଷେ ହତ    ହୋଇବାକୁ ଉପଗତ
ନିଦ୍ଧନ୍ତ ନିଷ୍କୃତି କିଏ କରିବ ଆନ
ନିମିତ୍ତ ହୋଇ ଆପଣ    କର କାର୍ଯ୍ୟ ସମ୍ପାଦନ
ବିଶ୍ୱ ପିତାଙ୍କର ଇଚ୍ଛା ହେଉ ପୂରଣ
ନିଶ୍ଚିନ୍ତ ହେଲେ ଧର୍ମସୁତ
ଅଳଂ ଧର୍ମ୍ମସୁ ଅଟଇ ନିଯୁକ୍ତ କୃତ୍ୟ ।୧୭
ସହଦେବ କଥା ମାନି    ଯୁଧିଷ୍ଠିର ଡାକି ପାବନି
ଆଜ୍ଞାଦେଲେ ଜତୁ ଗୃହ କର ଦହନ
ବେଗେ ମାତା ଭ୍ରାତା ଧରି    ଗୃହରୁ ଗଲେ ବାହାରି
ଅଗ୍ନି ଲଗାଇଲେ ଗୃହେ ବାୟୁ ନନ୍ଦନ
ମାତା ଭ୍ରାତା ସଙ୍ଗେ ଚାଲିଲେ
ବିବର ଦ୍ୱାରେ ନାବ ନାବିକ ଦେଖିଲେ ।୧୮

ବିଦୁରଦେଶେ କେଉଟ ନଉକା କରି ପଇଠ
ବିନୟେ ବୋଇଲା ନାବେ କର ବିଜୟ
ମାତା ପୁତ୍ର ଷଡ଼ ଜଣ ନାବିକ କରି ଦର୍ଶନ
ବିଷ୍ମୟରେ କଳୁଷ ମୋର ହୋଇଲା କ୍ଷୟ
ପ୍ରେମ ଭକ୍ତି ହୃଦେ ଜାଗ୍ରତ
ନମସ୍କରିଲ ବୋଲି ଚରେ୍ଣ ଚରେ୍ଣ କୈବର୍ତ୍ତ । ୧୯

ନାବିକର ଭକ୍ତିଭାବ ଦେଖି ଯୁଧିଷ୍ଠିର ଦେବ
ବୋଇଲେ କୈବର୍ତ୍ତ ତୁମ୍ଭେ ବଡ଼ ଚତୁର
ବେଗେ କର ନଦୀ ପାର ଯିବୁ ଆମ୍ଭେ ବହୁଦୂର
ବିଭିବଣି ଥାଉଁ ହେବ ବନ ବିହାର
ବିଦୁର ଦେବଙ୍କ ଆଦେଶ
ବିଳମ୍ବ ହୋଇଲେ କାର୍ଯ୍ୟ ହେବ ବିନାଶ । ୨୦

ବିସ୍ତୃତ ଜାହ୍ନବୀ ଜଳ ନ ଦିଶଇ ସ୍ଥଳକୂଳ
ପ୍ରଖର ସ୍ରୋତେ ଉଠୁଁଣି କାଟେ ପ୍ରବଳ
ଉତ୍ତାଳ ତରଙ୍ଗ ମାଳ ଅଶାନ୍ତ ଜାହ୍ନବୀ ଜଳ
ନ ମିଳଇ ଥଳକୂଳ ବରଷା କାଳ
ପୂଣ୍ୟତୋୟା ତୀର୍ଥ ସଲ୍ଲିଳ
ଦେଖି ନମସ୍କାର କଲେ କୁନ୍ତୀ ଦୁଲାଳ । ୨୧

ସଧୀରେ ଧର୍ମ ନନ୍ଦନ କଲେ ନାବ ଆରୋହଣ
ମାତା ଭ୍ରାତାଙ୍କ ସହିତ ପଞ୍ଚ ସଙ୍ଗରେ
ଆଗ ସଙ୍ଗେ ଭୀମସେନ ଏକା କଲେ ଆରୋହଣ
ଭାର ନ ସହି ନାବ ବୁଡ଼ିଲା ଜଳରେ
ଦେଖି କର୍ଣ୍ଣଧାର ବିସ୍ମିତ
ବୋଲେ ଭାର ସହିବାକୁ ନୁହେଁ ସାମର୍ଥ । ୨୨

ବିଶେଷେ ବରଷା ଋତୁ ଭୀମ ଭୟଙ୍କର ମୂର୍ତ୍ତି
ଉତ୍ତାଳ ତରଙ୍ଗେ ତରୀ ବକ୍ଷ କମ୍ପିତ
ଆଗସଙ୍ଗ ହେଲେ ଭାର କଲେ ନ ଭାସିବ ତରୀ
ବିଶାଳ କାୟ ଶରୀରେ ଗଦା ଶୋଭିତ

ମହାଭାରର ନ ପାରେ ସହି
ଏଥିକୁ ବରୁର କର ଷଡ ଗୋସେଇଁ । ୨୩
ନାବକର କଥା ଶୁଣି କହିଲେ ଧର୍ମ ନୃମଣି
ଗଙ୍ଗା ଗର୍ଭେ ଗଦା ଫିଙ୍ଗ ପବନ ସୁତ
ବାଉନ ଭର ଓଜନ ବହିବାକୁ ନୁହେଁ କ୍ଷମ
ସାମାନ୍ୟ ମାକ୍ଷକ ତଣ୍ଟ ଧର୍ମେ ଶୃଙ୍ଖଳିତ
ଜ୍ୟେଷ୍ଠ ଭ୍ରାତା ଆଜ୍ଞା ପାଇଣ
ଜଳରେ ଫିଙ୍ଗିଲେ ଗଦା ବାୟୁ ନନ୍ଦନ । ୨୪
ଭାର ହେବାରୁ ନଉନ ସଧୀରେ କଣ ଗମନ
ନଦୀ ଗର୍ଭେ ତଣ୍ଟ ଯାଇଁ କଲା ପ୍ରବେଶ
ଏକାଳେ କୁମ୍ଭୀର ଦୈତ୍ୟ ନାବେ ନର ଦେଖି ତୁଷ୍ଟ
ମୁଖ ଖୋଲି ଧାଇଁଲା ସେ କରିବାକୁ ଗ୍ରାସ
ଆନ୍ଦୋଳିତ କଲା ସଲିଳ
ଉତ୍ତାଳ ତରଙ୍ଗେ ତରଣୀ ଟଳମଳ । ୨୫
ପୁଚ୍ଛାକଲେ ଧର୍ମ ସୁତ କେବଣ ଅଟେ ବୃତ୍ତାନ୍ତ
ଅକସ୍ମାତ୍ ତଣ୍ଟ କମ୍ପା କମ୍ପେ ପ୍ରଖର ?
ଧୀରେ ବୋଲେ କର୍ଣ୍ଣଧାର ଶ୍ରବଣ କର ଖବର
କୁମ୍ଭୀର ନାମେ ଅସୁର ଏଠାରେ ଘର
ହରିହର ହାତେ ଅବଧ୍ୟ
ନଦୀ ପଥେ ଗଲା ଲୋକେ ପଡ଼େ ପ୍ରମାଦ । ୨୬
ହେଲେ ହେଁ ଜଳ ପାବନ ନ କରନ୍ତି ସ୍ନାନପାନ
ଅଗମ୍ୟ ହୋଇ ରହିଛି ଏ ନଦୀ ପଥ
ନ ଦେଲେ ଦୈତ୍ୟେ ଆହାର ବୁଡ଼ାଇବ ନାବ ଖର
ସବେ ଜଳେ ନାଶ ଯିବା କଥା ନିଶ୍ଚିତ
ଏଥିକୁ କରନ୍ତୁ ବରୁର
ଜଣକୁ ଦେଇ ଜୀବନ ରଖ ସଭିର । ୨୭
ଶୁଣି ନାବିକ ବଚନ ପୁଚ୍ଛିଲେ ଧର୍ମ ନନ୍ଦନ
କହଭାଇ ଭୀମସେନ ଉପାୟ କସ

ସର୍ବେ ମୋର ପ୍ରାଣ ସମ ' ତେଜିବାକୁ ନୁହେଁ କ୍ଷମ
ମରିବାକୁ କାହାର ବା ବଳେ ମାନସ
ଭାବ କହ ବାୟୁ କୁମର
କାହାକୁ ଦେଇଣ ନଷ୍ଟ ହୋଇବା ପାତ ? ୨୮

ଜ୍ୟେଷ୍ଠ ଭ୍ରାତା କଥା ଶୁଣି ବିସ୍ମିତ କହେ ପାବନି
ତୁମ୍ଭେ ଯିବା ପାଇଁ ମୁହିଁ ନ ପାରେ କହି
ଜ୍ୟେଷ୍ଠକୁ ବନସ୍ଥାଦେଶ କାରଣ ଅଛି ବିଶେଷ
ଦୈତ୍ୟର ଆହାର ତୁମ୍ଭେ ନ ହେବ ଭାଇ
କୁରୁକୁଳେ ଜ୍ୟେଷ୍ଠ ନନ୍ଦନ
ଏ ପଞ୍ଚ କଟକେ ପୁଣି ନୃପତି ଗଣ । ୨୯

ଶୁଣନ୍ତୁ ଜ୍ୟେଷ୍ଠ ସୋଦର କହୁଅଛି ନିଷ୍ଠାଗିର
ରାଜା ଆଜ୍ଞା ମାନିବାକୁ ମୁଁ ଅସମର୍ଥ
ମରିବାକୁ କେବେ କେହି ଭଲରେ କି ରାଜି ହୋଇ
ଶାସ୍ତ୍ରେ ଆତ୍ମହତ୍ୟା ମହାପାପ କଥିତ
ତୁମ୍ଭ ବୋଲେ ନ ଯିବି ମୁହିଁ
ତୁମ୍ଭଙ୍କୁ ମୁଁ ଯିବା ପାଇଁ ନ ପାରେ କହି । ୩୦

ମୋ ବଦଳରେ ସହଦେବ ଦେବା ଉଚିତ ହୋଇବ
ଜାଣିଶୁଣି କଥା ଯେଣୁ କରେ ଗୁପତ
ତ୍ରିକାଳଜ୍ଞ ମନ୍ତ୍ରୀବର ଜାଣଇ ସବୁ ଖବର
ନ କହିଲ ଆଗୁଁ କିମ୍ପା ଦୈତ୍ୟ ବୃତ୍ତାନ୍ତ
ଭାଇଙ୍କ ସଙ୍ଗତେ କପଟ
ମୋ ବଦଳରେ କପଟୀକୁ ଖାଉ ଦଇତ୍ୟ । ୩୧

ଭୀମସେନ କଥା ଶୁଣି କହିଲେ ଧର୍ମ ନୃମଣି
ସବୁବେଳେ ଭୀମ ତୋର ଭ୍ରମ ବିଚାର
ସହଦେବ ମନ୍ତ୍ରୀ ଶ୍ରେଷ୍ଠ ସର୍ବ ବିଦ୍ୟାରେ ଗରିଷ୍ଠ
ମନ୍ତ୍ରୀ ବିନା ନୃପତି ଦିଶେକି ସୁନ୍ଦର
ତେଜି ନ ପାରେ ମନ୍ତ୍ରୀ ମୋର
ସବତନ୍ତ୍ର କହ ଭାଇ ତୋହର ବିଚାର । ୩୨

ଶୁଣି ବୋଲେ ଭୀମସେନ  ନକୁଳେ କର ପ୍ରଦାନ
କାନନେ କଣ୍ଟକ ହେବ ସୁଗନ୍ଧ ପାଇଁ
ସୁଗନ୍ଧ ପଦାର୍ଥମାନ  ନ କଲେ ଅଙ୍ଗେ ଲେପନ
କୋମଳ ଶଯ୍ୟା ନ ହେଲେ ଶୋଇବ ନାହିଁ
ବନେ କି ମିଳିବ ଏ ଦ୍ରବ୍ୟ
ଅତି ସୁକୁମାର ପଣେ ପ୍ରମାଦ ଦେବ । ୩୩

ପବନ ସୁତ ବଚନ  ଶୁଣି ଧର୍ମଙ୍କ ନନ୍ଦନ
କହିଲେ ପାବନ ତୋର ପ୍ରକୃତି ମନ୍ଦ
ସାବତ ମାତାର ସୁତ  ତେଣୁ ଚିନ୍ତୁଛୁ ଅହିତ
ଭାଇଭାଇଙ୍କ ମଧ୍ୟେ ଭାଇ ନ କର ଦ୍ୱନ୍ଦ
ନ ତେଜିବ ମାଦ୍ରୀ କୁମର
ନକୁଳେ ତେଜିଲେ କୁଳେ ଅକୀର୍ତ୍ତି ମୋର । ୩୪

ତହୁଁ ବୋଲେ ଭୀମସେନ  କୁନ୍ତୀ କୁମର ଅର୍ଜୁନ
କୁନ୍ତୀର ଭୋଜନ ପାଇଁ ପେଶ ବହନ
ହୋଇ ମହା ଧନୁର୍ଦ୍ଧର  ମନେ ଗର୍ବ ଅହଂକାର
ଶରଣ ବତ୍ସଳ ନାମ କରେ ଧାରଣ
ଶତ୍ରୁକୁ ଦିଅଇ ଶରଣ
କୁଳର କଣ୍ଟକ ତାକୁ କର ପ୍ରଦାନ । ୩୫

ଶୁଣ ଭ୍ରାତା ସତ୍ୟ ଭାଷ୍ୟ  ବନବାସ କରି ଶେଷ
ରାଜ୍ୟକୁ ଫେରି କୌରବେ କରିବ ନାଶ
ସେ ସମୟେ ଦୁର୍ଯ୍ୟୋଧନ  ପାଦେ ପଶିଲେ ଶରଣ
ରଖିବେ ଶରଣ ତାକୁ ବାସବ ଶିଷ୍ୟ
ଏକଥା ଘଟିବ ନିଶ୍ଚିତ
ଆଗହୁଁ ମରିଲେ ପାର୍ଥ ଆମ୍ଭର ହିତ । ୩୬

କହିଲେ ଧର୍ମ ନନ୍ଦନ  ଅଜ୍ଞାନୀ ତୁ ଭୀମସେନ
ପର ଦୋଷଗୁଣ ସଦା କରୁ ବିଚାର
ଅର୍ଜୁନ ମୋ ପ୍ରାଣ ସମ  ତେଜିବାକୁ ନୁହେଁ କ୍ଷମ
ଦିଶିକୃଷ୍ଣନାମ ବହେ ଇନ୍ଦ୍ର କୁମର

ତାହାଙ୍କୁ କରିଲେ ପ୍ରଦାନ
ବାସୁଦେବ, ବାସବରେ ବୈରିତା ଜାଣ । ୩୭

କହିଛନ୍ତି ଗୁରୁ ଦ୍ରୋଣ ନ ତେଜିବାକୁ ଅର୍ଜୁନ
କରାଇବ ମୋତେ ସେହି ରାଜ୍ୟେ ନୃପତି
ଗୁରୁ ବଚନ ଅମାନ୍ୟ କଲେ ହେବ ଅସମ୍ମାନ
ତେଣୁ ତେଜି ନ ପାରିବ ପାଣ୍ଡୁ ଅର୍ଜୁନ
ବିଗୃହ୍ଣ କହି ମାରୁତି
ବଳମ୍ବ ହେଲେ ପଣ୍ଡବ ଘୋର ବିପତ୍ତି । ୩୮

ଭୀମସେନ ବୋଲେ ଭାଇ ତୁମ୍ଭ ବୋଲେ ଯିବ ନାହିଁ
ତୁମ୍ଭଙ୍କୁ ମୁଁ ଯିବାପାଇଁ ନ ପାରେ କହି
ମୋ ବିଚାରେ ବୃଦ୍ଧାମାତ ବନେ ବୁଲିବା ଅସକ୍ତ
ଭୋଗିଲିଣି ଦୁଃଖ ସୁଖ ଜଗତେ ସେହି
ମରଣ କାଳ ଉପଗତ
ମାତାକୁ କୁନ୍ତୀରେ ଦେଇ ହୋଇବା ମୁକ୍ତ । ୩୯

ଭୀମସେନ କଥା ଶୁଣି କହି ନୃପ ଧର୍ମ ମଣି
କହିଲେ ଅମୃତ କଥା କହୁ ପାବନ
ପୁତ୍ରର ଜନନୀ ଇଷ୍ଟ ସହି ଅଛି ଗର୍ଭ କଷ୍ଟ
ମାଆ ପର ହିତାକାଂକ୍ଷୀ ଅଛି କେ ପୁଣି ?
ଜନନୀ ଜନ୍ମଭୂମି ସମ
ଜୀବ ଥାଉଁ ତେଜି ପାରେ କେଉଁ ନନ୍ଦନ ? ୪୦

ଭୀମ ବୋଲେ ଶୁଣ ଭ୍ରାତା କହୁ ଅଛି ଶେଷ କଥା
ସ୍ୱଜନେ ତେଜିବା ନୁହେଁ ତୁମ୍ଭ ବିଚାର
ଏ ନାବିକ ପରିଜନ ତାହାଙ୍କୁ କର ପ୍ରଦାନ
ନାବ ବାହି କରି ଦେବ ମୁଁ ନଦୀ ପାର
ପଣ୍ଡିତ ଜନଙ୍କ ବିଚାର
ବୁଦ୍ଧିବଳେ ବିପଦରୁ ହୁଅନ୍ତି ପାର । ୪୧

ବିପ୍ଳବେ କହିଲେ ଧର୍ମ କୃତଘ୍ନ ଅଟ ତୁ ଭୀମ
ଚିନ୍ତା କରୁ ଉପକାରୀ ପ୍ରାଣ ନିଧନ

ଏକ ବର୍ଷ ଯାଏଁ ଏଥି ରହେ ନିଦ୍ରା ଯାଇ ନାହିଁ
ଜଗିଅଛୁ ଗର୍ଭ ଦ୍ୱାର ବିଶ୍ୱସ୍ତ ଜନ
ପାଳ ଅଛୁ ବିଦୁର ବାକ୍ୟ
ବିଶ୍ୱସ୍ତକୁ ଦଣ୍ଡଦେବା କି ଅବିବେକ ? ୪୨

ତହିଁ ବୋଲେ ବୃକୋଦର ଶୁଣ ମୋର ନିସ୍ତାଗିର
ତୁମ୍ଭ ବୋଲେ ମୃତ୍ୟୁ ମୁଖେ ନ ଯିବି ମୁହିଁ
ତୁମ୍ଭେ ଅବା ଯିବା ପାଇଁ ନ ପାରେ ଆଦେଶ ଦେଇ
ସୋମ ବଂଶ ଜ୍ୟେଷ୍ଠ ସୁତ ହସ୍ତିନା ସାଇଁ
ଏଥିକୁ କରନ୍ତୁ ବିଚାର
କି ଉପାୟେ କୁମ୍ଭୀରଠୁଁ ହୋଇବା ପାର ? ୪୩

ଶୁଣି ବୃକୋଦର ଗିର ପଚାରିଲେ ଯୁଧିଷ୍ଠିର
କହ ମା ଏଥିକୁ ଅଛୁ ଉପାୟ କିସ ?
ବିରକ୍ତ ହୋଇ ଜନନୀ କହିଲେ ପେଟୁ ପାବନୀ
ଷାଠିଏ ପଡ଼ନ୍ତି ଅନ୍ନ ବେଳକେ ଗ୍ରାସ
ନ ମିଳିବ ବନେ ଏତେକ
ଖାଇବାକୁ ନ ପାଇଣ ହେବ କଣ୍ଟକ । ୪୪

ଶୁଣ ପୁତ୍ର ଯୁଧିଷ୍ଠିର କହୁଅଛୁ ନିଷ୍ଠାଗିର
ଭୀମକୁ ଡେଇଣ ନଦୀ ହୋଇଯା ପାର
ଦୁଷ୍ଟକୁ କରି ବିନାଶ ରଖ ପୁତ୍ର କୁଳ ଯଶ
କୁମ୍ଭୀର ମାରୁ ବା ମରୁ ବାୟୁ କୁମର
ଏହାହିଁ ମୋର ବିଚାର
ମାତା କଥା ଶୁଣି ଜଳେ ଡେଇଁଲ ବୀର । ୪୫

ଜଳେ ଡେଇଁ ଭୀମସେନ ଭାସିଲ ସୋଲ ସମାନ
ଆହାର ଭାବି କୁମ୍ଭୀର କଲିଲ ଗ୍ରାସ
ପୂର୍ଣ୍ଣ ହେବାରୁ ଉଦର ଶାନ୍ତ ହୋଇଲ କୁମ୍ଭୀର
ସ୍ଥିର ହେଲ ନଦୀ ଜଳ ନାବ ଉଛ୍ୱାସ
ରକ୍ଷା ପାଇଲେ ଅନ୍ୟମାନେ
ନାବିକ ବାହିଲ ନାବ ଆଶ୍ୱସ୍ତ ମନେ । ୪୬

ଶାନ୍ତ ହୋଇବାରୁ ଜଳ ଜଳଚରେ ଚଳଚଳ
ମଥା ଟେକି କଲେ ଧର୍ମ ପାଦେ ପ୍ରଣତି
ଭେଳା ଭେଳା ମୀନଗଣ ନାବକୁ ଘେରି ଯାଇଁଣ
ହଲନ୍ତେ ଲାଞ୍ଜକୁ ଜଳେ ଆହ୍ଲାଦ ପ୍ରକୃତି
ଅନୁକୂଳେ ଚଳିଲା ନାବ
ବାହୁରେ କୈବର୍ତ୍ତି ଏହା ବଡ ଦୁର୍ଲ୍ଲଭ । ୪୭

ଧର୍ମ ନନ୍ଦନଙ୍କୁ ଚାହିଁ କର୍ଣ୍ଣଧାର ବାହୁରଇ
ଦେଖିନି ଏମନ୍ତ କାନ୍ତି ନର ଶରୀର
ପବିତ୍ର ହେଲା ନୟନ ଅଲଭ୍ୟ କଲି ଦର୍ଶନ
ଶୁକ୍ଳାମ୍ବର ବସ୍ତ୍ରେ ଏତ ଧର୍ମ ଠାକୁର
ଧରିଛନ୍ତି ଦିବ୍ୟ ମୂରତି
ମଙ୍ଗତରେ ଆଦିମାତା ରହି ଅଛନ୍ତି । ୪୮

ପୁଚ୍ଛିଲେ କୁନ୍ତୀ କୁମର ଚିହ୍ନିଛକି କର୍ଣ୍ଣଧାର
ଚିହ୍ନା ଲୋକ ପରି ତୁମ୍ଭ ଶ୍ରଦ୍ଧା ବେଭାର
କହୁଉତରେ କର୍ଣ୍ଣଧାର ଦିଅ ପ୍ରୀତି ଉପହାର
ବଂଶଜର ହୃଦ ଗିର ଅବଶ୍ୟ ତୋର
ସୁହୃଦ ପ୍ରାପ୍ୟେକ ପ୍ରକୃତି
ତୁମ୍ଭ ଭକ୍ତି ଘଟବ ବଚଳିତ ମୋ ମତି । ୪୯

ମୁଖରେ ନ ବୋଲି ଗିର ଅନ୍ତରେ ଦେଲା ଉତ୍ତର
ତୁମ୍ଭେ ପ୍ରଭୁ ଅନ୍ତର୍ଯ୍ୟାମୀ ବୁଝ ଅନ୍ତର
ନେତ୍ର କରି ଅବନତ ପଦ୍ମପାଦେ ଦୃଷ୍ଟିପାତ
ବୃଷ୍ଟି କଲା ଅଶ୍ରୁପାତ ସେ ନିରନ୍ତର
ଗଙ୍ଗାରୁ ପବିତ୍ର ସେ ନୀର
ଧୋଇ ଦେଲା ମନ ସୁଖେ ପ୍ରଭୁ ପୟର । ୫୦

ଧୀରେ ଭସି ଯାଇ ନାବ କଲା ଆର ଘାଟରେ ଠାବ
ନାବରୁ ଓହ୍ଲାଇ ଗଲେ ପାଞ୍ଚ ମୂରତି
କୋଳ କରି କର୍ଣ୍ଣଧାର କହିଲେ କୁନ୍ତୀ କୁମର
ଦୁଃଖ ନଦୀ ପାର କରି ରଖିଲ ଖିତି

ତୁମ୍ଭର ଏହି ଉପକାର
ସୁଝି ନ ପାରିବୁ ଆମ୍ଭେ ଏ ମର୍ତ୍ତ୍ୟପୁର । ୫୧

ତୁମ୍ଭ ଅଙ୍ଗ ସଙ୍ଗ ପାଇ ଧନ୍ୟ ହୋଇଗଲା ଘର
ଭାତୃହରା ଦୁଃଖ ମୋର ହୋଇଲା ଦୂର
ହୋଇଲ ଧର୍ମ ସୋଦର ଆଜଠାରୁ କର୍ଣ୍ଣଧାର
ପରପାରେ କରିବୁ ପ୍ରତି ଉପକାର
ତୁମ୍ଭର ଏ ସ୍ମୃତି ଗ୍ରହଣ
କରୁଥିବୁ ନିରବଧି ଥାଉ ପ୍ରାଣ । ୫୨

ବିଦାୟ ନେଉଛୁ ଭ୍ରାତ ସେ ପୁରେ ହେବ ସାକ୍ଷାତ
ପାର କରି ଦେବୁ ଆମ୍ଭେ ଘାଟ ନିଶ୍ଚୟ
କରି ପ୍ରତି ଉପକାର ସୁଝି ଦେବୁ ଋଣଭାର
ଅଭୟ ପୟରରେ ନିର୍ଭୟ ଆଶ୍ରୟ
କହୁଅଛୁ ସତ୍ୟ ବଚନ
ମୋ ହୃଦ ପଦ୍ମରେ ଭାଇ ତୁମ୍ଭର ସ୍ଥାନ । ୫୩

ନାରୀକେ ବିଦାୟ ଦେଇ ରହିଲେ ନାରୀକୁ ଚାହିଁ
ବନ୍ଧୁ ବନ୍ଧୁ ଝରି ପଡ଼େ ବିଷାଦ ନୀର
ଭୀମଙ୍କୁ ହରାଇ ଧର୍ମ କରନ୍ତେ ଅଶ୍ରୁ ବର୍ଷଣ
ଜନନୀ କହିଲେ ପୁତ୍ର ହୁଏ ଉଚ୍ଛୁର
ଉଷା ସମୟ ସମାଗତ
ବିଳମ୍ବ ନ କରି ବନେ ଚାଲ ତ୍ୱରିତ । ୫୪

ଶୁଣି ଜନନୀଙ୍କ ଗିର ବିଚାରିଲେ ଯୁଧିଷ୍ଠିର
କଠିନ ପ୍ରକୃତି ସ୍ୱାର ନିର୍ଦ୍ଦୟ ହୃଦ
ନିଜ ସୁତେ କରି ନାଶ ମନେ ନାହିଁ ଅଭିଶୋଷ
ସାଥିରେ ଥିଲେ ନିଶ୍ଚେ ଦେବ ପ୍ରମାଦ"
ଚିନ୍ତି ପୁତ୍ର କଥା ଜନନୀ
"କହିଲେ ଭୀମର ବଳ କୋଇନ୍ତା ଜାଣି ।" ୫୫

ଦୈତ୍ୟ ଗର୍ଭେ ଥାଇ ଭୀମ ଶୁଣି ପ୍ରଶଂସା ବଚନ
ମୁଷ୍ଟି ପ୍ରହାର ଦୈତ୍ୟ କରି ବିନାଶ

ଗର୍ଭରୁ ବାହାର ହୋଇ     ଗଙ୍ଗାନଦୀ ପାର ହୋଇ
ପ୍ରଣମିଲା ମାତା ପାଦେ ପବନ ଶିଷ୍ୟ
· ମରିଲା କୁମ୍ଭୀର ଅସୁର
ପୁଷ୍ପ ବୃଷ୍ଟି କଲେ ଦେବେ ପୁତ୍ରଙ୍କ ଶିର । ୫୬

କାଳନ୍ଦୀ ହ୍ରଦେ ଶ୍ରୀହରି     କାଳୀୟ ଦଳନ କରି
ସର୍ପବାସ ତୀର୍ଥ କଲେ ଯେସନେ ମୁକ୍ତ
ତେସନେ ପାଣ୍ଡୁ ନନ୍ଦନ     କୁମ୍ଭୀର ଜଳ ନିଧନ
ମୁକ୍ତ କଲେ ଦୈତ୍ୟ ବାସ ଜାହ୍ନବୀ ତୀର୍ଥ
ଶ୍ରୀକୃଷ୍ଣ - ପାଣ୍ଡବ ମହାନ୍
ପରସ୍ପରେ କରୁଛନ୍ତି ପ୍ରାଣ ବିପନ୍ନ । ୫୭

ଏ କାଳେ ଉଦେ ତପନ     ବିତରି ସ୍ୱର୍ଣ୍ଣ କିରଣ
ଆଲୋକିତ ବନ ଦେଶ ଶୋଭା ବଢ଼ିଲା
ନବ ପଲ୍ଲବେ ନିହାର     ମୁକ୍ତାହାର ଉପହାର
ନବ ଦୂର୍ବାଦଳ ଦେଇ ପାଦ ବନ୍ଦିଲା
କାନନ କୋଳ କୁସୁମିତ
କାକଳି କୂଜନେ ବିପିନ ମୁଖରିତ । ୫୮

ଅବଗାହି ତୀର୍ଥ ଜଳେ     ସୂର୍ଯ୍ୟେ ଅର୍ଘ୍ୟ ଦେଲେ ବାଳେ
ଶୂନ୍ୟରୁ ଶୁଭିଲା ଶବ୍ଦ ଧନ୍ୟ କୁମର
ଉଦନ୍ତ ତପନେ ବନ୍ଦିଁ     ପ୍ରଣମିଲେ ପାଞ୍ଚ ଭାଇ
ସୂର୍ଯ୍ୟ ସ୍ତୁତି ଗାନ କଲେ ଯୋଡ଼ିଣ କର
ପିତୃ ପୁରୁଷଙ୍କୁ ତୋଷିଲେ
ପେଟ ପୂରି ପାଣି ପିଇ ବନେ ପଶିଲେ । ୫୯

ବନସାରି ସ୍ଥଳପଥ     ମାତା ପୁତ୍ରେ ହୋଇ କ୍ଳାନ୍ତ
ତୃଣ ଶଯ୍ୟା କରି ସୁଖେ ପଡ଼ିଲେ ଶୋଇ
ଏକାକି ଭୀମ ଜାଗ୍ରତ     ରହି ବସୁରନ୍ତ ଚିତ୍ତ
ବନ ଦେଶେ ବୃକ୍ଷ ଗଣେ ଏକଠେ ରହି
ପରସ୍ପରକୁ ଆଶ୍ରା କରି
ବର୍ଦ୍ଧିତ ହୋଇ ଅଛନ୍ତି ଶାଖା ବିସ୍ତାରି । ୬୦

ସଜ୍ଜନଶୀଳ ସ୍ୱଭାବ ସହଯୋଗୀ ମନୋଭାବ
ହୋଇଥା'ନ୍ତି ଦେଖି ଯେଉଁ ବିଟପି ଲତା
ନାହିଁ ଭେଦା ଭେଦ ଜ୍ଞାନ ପ୍ରିୟ ଭାବରେ ବନ୍ଧନ
କଣ୍ଟାବୃକ୍ଷେ ମାଡ଼ି ଅଛି କୋମଳ ଲତା
ବିଚିତ୍ର ପ୍ରକୃତି ଚରିତ
ମନୁଷ୍ୟ ସମାଜେ କିନ୍ତୁ ଏ ବିପରୀତ । ୬୧

ମନୁଷ୍ୟର ସହଜାତ ଚରିତ୍ର ଅଟେ ସ୍ୱତନ୍ତ୍ର
ଆପଣା ସ୍ୱାର୍ଥ ସାଧନେ ସର୍ବଦା ବ୍ୟସ୍ତ
କରେ ସଦା ଦୁଷ୍ଟପଣ ଅନ୍ୟରେ ହିଂସାଚରଣ
ବଞ୍ଚିବାର ଅଧିକାରୁ କରେ ବଞ୍ଚିତ
ଉର୍ଦ୍ଧ୍ୱକୁ ଉଠିବା ନିମନ୍ତେ
ପ୍ରଶ୍ରୟ ନ ଦିଏ ଆନେ ସେ କଦାଚିତ୍ତେ । ୬୨

ଦୁଷ୍ଟାନ୍ତ କୌରବଗଣ ଆମ୍ଭଙ୍କୁ ଶତ୍ରୁ ଚିନ୍ତଣ
ଜୀବନେ ମାରିବା ପାଇଁ କଲେ କପଟ
ଆମ୍ଭେ ତାହାଙ୍କ କୁଶଳ କାର୍ଯ୍ୟ କରୁ ସଦାକାଳ
ମାତ୍ର ସେମାନେ ଆମ୍ଭଙ୍କୁ ଦିଅନ୍ତି କଷ୍ଟ
ଏହା ଚିନ୍ତି ବାୟୁ ନନ୍ଦନ
ମନସ୍ତାପେ ବସିଗଲେ ହୋଇ ମଉନ । ୬୩

ଶୂନ୍ୟରୁ ଶୁଭିଲା ଶବ୍ଦ ନ ହୁଅ ମନେ ବିଷାଦ
ସବୁ ମନୁଷ୍ୟ ସ୍ୱଭାବ ନୁହେଁ ସମାନ
ସର୍ବଦା ପୁଣ୍ୟାତ୍ମା ଜନ ପୁଣ୍ୟ କର୍ମେ ନୁହେଁ କ୍ଷମ
ଅନିଚ୍ଛା ସତ୍ତ୍ୱେ କରନ୍ତି କର୍ମ ବୃଜିନ
ଅନୁରୂପେ ପାତକୀ ଜନ
ସବୁବେଳେ ପାପ କର୍ମେ ନ ଦିଏ ମନ । ୬୪

ଘଟଣା ଚକ୍ରରେ ଥାଇ ପାପ ପୁଣ୍ୟ କରି ଥାଇ
ମନୁଷ୍ୟର ସହଜାତ ଅଟେ ଏ ଗୁଣ
ଏ ଜଗତେ ଏହି ପରି ପାପ ପୁଣ୍ୟ କର୍ମ କରି
କୃତ କର୍ମ ଫଳ ଭୋଗ କରନ୍ତି ଜନ

ବଚିତ୍ର ମାନବ ଚରିତ
ନଶ୍ଚିତ କର ଏ କଥା ପବନ ସୁତ । ୭୫

ପାଇ ଦିବ୍ୟ ଉପଦେଶ ଶାନ୍ତ ହେଲେ ବାୟୁ ଶିଷ୍ୟ
ମାନସିକ କ୍ଲାନ୍ତ ମନୁ ହୋଇଲା ଦୂର
ଜାଗି ବସିଲେ ମାରୁତ ଶୂନରୁ ଶୁଭେ ଭାରତି
" ବନବାସେ କଷ୍ଟ ସହ୍ଯ ବିଶ୍ୱ ଉଦ୍ଧାର "
ଏ କାଳେ ରଡ଼ଲା କୁକୁଟ
"ଉଠଉଠ କୁନ୍ତୀ ପୁଷେ ନ କର ମଠ" । ୭୬

ନଧନ ହେଲା କୁମ୍ଭୀର ଅଛନ୍ତି ବକ କନ୍ଦର
ହଡମ୍ବକ ତନ ଦୈତ୍ୟ କର ବିନାଶ
ଏମାନେ ଅତ୍ୟନ୍ତ ଦୁଷ୍ଟ ଦଅନ୍ତି ପ୍ରାଣୀଙ୍କୁ କଷ୍ଟ
ଏହାଙ୍କ ନଧନେ ହେବ ମହୀ ଉଶ୍ୱାସ "
ଗୀତେ ଭଣିଲା ବୁଲାଦାସ
ସତଷଠି ପଦେ ଅଧ୍ୟାୟ ହେଲା ଶେଷ । ୭୭

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହା କାବ୍ୟ କଥନେ
ଦ୍ୱାରକାଲୀଳା ଖଣ୍ଡେ ପାଣ୍ଡବମାନଙ୍କର ଗୁପ୍ତ ବନବାସ
ଆଖ୍ୟାନେ ନାମ ପଞ୍ଚମ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

**ବୋଲ —**

ପ୍ରଭୁ ତୁମ୍ଭଙ୍କୁ କ କଥା ଅଜଣା
ଜାଣୁ ଜାଣୁ ଯେବେ ଅଜଣା ହୋଇବ
ସାର ହେବସିନା ଦୁଃଖ ଗଞ୍ଜଣା ॥ ଘୋଷା ॥

ଅନ୍ତର୍ଯ୍ୟାମୀ ହୋଇ ଅନ୍ତର ବେଦନା
ନ ବୁଝିବ ଯେବେ ହେ ନନ୍ଦ କାହ୍ନା !
କଏ ବା କାହିଁକ ତୁମ୍ଭଙ୍କୁ ଡାକବ
ଅକାରଣେ ହୋଇ ଅନ୍ଧାର କଣା । ୧

ଡାକ ଡ଼ାକ ଚର୍ଣ୍ଣି ଶୁଖି ଯାଉଅଛୁ
ଆଶା କରିଥିଲି ଅଧର ପଣା
ତୃଷାତୁର ହୋଇ ଆତୁରେ ଗୃହିଁଛୁ
ମନା ହେଲା ଘୁର ଲବଣ ପଣା । ୨

ବଡ଼ ଦେଉଳରେ ବସିଛ ଗୋସାଇଁ
ଜଡ଼ାଇ ପଡ଼ିତ ପାବନ ବାନା
ମୋ ପରି ପତିତ ଜଣେ ଦେଖା ନାହିଁ
କାରଣ କରହେ କାଳିଆ ସୁନା । ୩

ବୋଲେ ବୁଲା ଦାସ ଆହେ ଚକାଡୋଳା
ସଦୟ ଦୃଷ୍ଟିରେ ବାରେକ ଅନା
ଏ ମାୟା ଫସାରେ ରହି ଝରନ୍ତରେ
ପଥହୁଡ଼ ପ୍ରଭୁ ହେଉଛୁ ବଣା । ୪

# ଷଷ୍ଠ ଅଧ୍ୟାୟ

## ହସ୍ତିନାରେ କୋଳାହଳ

### ରାଗ — କେଦାର

ଏଥୁ ଅନ୍ତେ ଶୁଣ ଆହେ ସୁଜ୍ଞ ଜନେ କୃଷ୍ଣ ଚରିତ ମାନସ
ଆସ୍ଥାନରେ ବସେ ରାଜା ଧୃତରାଷ୍ଟ୍ର ଦୁର୍ଯ୍ୟୋଧନ ଶତ ଶିଷ୍ୟ
ମନ୍ତ୍ରୀ ମଇବ, ଗୁରୁ ଇଷ୍ଟ ସହ ସୈନ୍ୟ ସାମନ୍ତ । ୧

କର ପଦ ଯୋଡ଼ ଦୂତ ଜଣାଇଲେ ଶୁଣ ଆହେ କୁରୁପତି
ଗତ ରାତେ ଶିବପୁରେ ଅଗ୍ନି ଲାଗି ପୋଡ଼ ମଲେ ସାତ ମୂର୍ତ୍ତି
ବସ୍ତ୍ର ସହିତ, କୁନ୍ତୀ ମାତା ପୁଣି ତା ପାଞ୍ଚ ସୁତ । ୨

ଶୁଣି ଧୃତରାଷ୍ଟ୍ର ହେଲେ ବିଷାଦିତ ଡକାରି ଧର୍ମ ଦେବତା
କାନ୍ଦିଲେ ଗାନ୍ଧାରୀ ପୁତ୍ର ଗୁଣ ସ୍ମରି କାନ୍ଦିଲେ ଶତେକ ଭ୍ରାତା
ହସ୍ତିନା ପୁରୀ, ବିଷାଦ ସାଗରେ ଖେଳେ ଲହରୀ । ୩

ଶୋକ ସାଗରେ ନିମଜ୍ଜି ବିଦୁର କଲନା କଲେ ହୃଦୟ
ଜାଣିଲେ କପଟେ କ୍ରନ୍ଦନ କରନ୍ତି କୁରୁକୁଳ ନରଦୟ
ମାତ୍ର ଅନ୍ତରେ, ଆନନ୍ଦର ଢେଉ ଖେଳେ ସଧୀରେ । ୪

ପ୍ରଖର ଗ୍ରୀଷ୍ମରେ ସର ନିମ୍ନଦେଶେ ସଲିଳ ଥାଏ ଶୀତଳ
ମାତ୍ର ସେ ସରର ଉପରି ଭାଗରେ ରହିଥାଏ ଉଷ୍ମଜଳ
ସେହି ପରାୟେ, ଅନ୍ଧ ଅବିପୁତ୍ର ହୃଦ ପ୍ରତ୍ୟୟେ । ୫

ଭୀଷ୍ମ, ଭୂରିଶ୍ରବା, ସଞ୍ଜୟ, ଯୁଧେୟ ଦ୍ରୋଣ କୃପ, ବିଷାଦିତ
କେବଳ ବିଦୁର ବଦନ ଗମ୍ଭୀର ଭେଦ କରିବାକୁ ତଥ୍ୟ
ମାନ ଗୋବିନ୍ଦ, ଭିତରେ ବାହାରେ ସମ ଆନନ୍ଦ । ୬

ତଥ୍ୟ ଜାଣିବାକୁ ତକ୍ଷଣେ ବିଦୁର ପୁଚ୍ଛିଲେ ନାବିକେ ଧାଇ
ନାବିକ କହିଲା ଗତ ମଧ୍ୟରାତ୍ରେ ବିବରୁ ବାହାର ହୋଇ
ନାବରେ ବସି, ଷଡ଼ ଜଣ ଗଲେ ଗୋପନେ ଖସି । ୭

ପାଞ୍ଚଟି ଯୁବକ ଏକ ବୃଦ୍ଧାନାରୀ ଦିବ୍ୟ ସୁନ୍ଦର ଶରୀର
ମାତା ପୁତ୍ର ପ୍ରାୟ ପ୍ରତେ ହେଉଥିଲେ ଶାନ୍ତ ଭଦ୍ର ବ୍ୟବହାର
ବସିଲେ ତରୀ, ଧୀରେ ବାହି ନେଲି ଆହୁଲା ମାରି । ୮

ନଦୀ ମଧ୍ୟ ଭାଗେ ପ୍ରବେଶିଲା ନାବ ମିଳିଲା ଦୈତ୍ୟ କୁମ୍ଭୀର
ବୃଦ୍ଧାଙ୍କ ଆଦେଶେ ଜଳେ ଡେଇଁ ଜଣେ କୁମ୍ଭୀର କଲେ ସଂହାର
ଖଣ୍ଡ ପାହାନ୍ତ, ପଶିଲେ କାନନେ ଷଣ୍ଡ ମୂରତି । ୯

ନାବିକ ମୁଖରୁ ନଦ୍ୟା କଥା ଶୁଣି ଆଶ୍ଚର୍ଯ୍ୟ ହେଲେ ବିଦୁର
କହିଲେ ଏକଥା ପ୍ରକାଶ ନ କରି ଗୁପ୍ତ ରଖ କର୍ଣ୍ଣଧାର
ଧନ ରତନ, ଉପହାର ଦେଇ ତୋଷିଲେ ମନ । ୧୦

ସେଠାରୁ ବିଦୁର ଜତୁ ଗୃହେ ଯାଇ ଶବ କରିଲେ ଚିହ୍ନଟ
ଚିହ୍ନିଲେ ଏମାନେ କୌନ୍ତେୟ ନୁହଁନ୍ତି ପୁରୋଚନ ମୃତ୍ୟୁ ସତ୍ୟ
କଥା ଗୋପନ, ରଖି ନଗରେ ଚଳିଲେ ବଦନ । ୧୧

ଗୃହ ଦାହେ ରାଣୀ କୁନ୍ତୀ ପୁତ୍ର ସଙ୍ଗେ ପୋଡି ମରିଥିବା କଥା
ରାଜ ବିଧାନରେ ଆଦ୍ୟେ ତାଙ୍କ ଭ୍ରାତା ପାଖକୁ ପେଡିଲେ ବାର୍ତ୍ତା
ପାଇ ସମ୍ବାଦ, ଭ୍ରାତା ବସୁଦେବ ମନେ ବିଷାଦ । ୧୨

ରାଜଧର୍ମ ପରଂପର ଅନୁଯାୟୀ ରାଣୀଙ୍କ ଦେହାନ୍ତ ପରେ
ତାଙ୍କ ପିତୃ ପରିବାରଠାରୁ ଶୋକ ବାର୍ତ୍ତା ଆସିଥାଏ ଘରେ
ତଦନୁଯାୟୀ, ଭ୍ରାତା ବସୁଦେବ ଦୁଃଖିତ ହୋଇ । ୧୩

ପୁଅ ରାମକୃଷ୍ଣ ହାତେ ଶୋକ ବାର୍ତ୍ତା ପଠାଇଲେ ବସୁଦେବ
ସଙ୍ଗେ ଏକଶତ କୁଟୁମ୍ବ ଚଳିଲେ ଯେନ ଅକ୍ରୂର ଉଦ୍ଧବ
ଶୁକ୍ଳ ବସନ, କରିଛନ୍ତି ସର୍ବେ ଅଙ୍ଗେ ମଣ୍ଡନ । ୧୪

ହସ୍ତିନା ନଗର ଦ୍ୱାର ଦେଶେ ରହି କୌରବେ ସ୍ୱାଗତ କଲେ
ଦୁର୍ଯ୍ୟୋଧନ, ଦୁଃଶା, ରାଧେୟ, ଶକୁନି, ଅନ୍ଧ, ଭୀଷ୍ମ, ଦ୍ରୋଣ ତୁଲେ
ଶତ କୁମର, ପାତ୍ର, ଅମାତ୍ୟ, ସଞ୍ଜୟ, ବିଦୁର । ୧୫

ସର୍ବେ ଶୁକ୍ଳ ବସ୍ତ୍ର ପରିଧାନ କରି ଠିଆ ହୋଇ ରହିଥିଲେ
ଯାଦବଙ୍କୁ ଦେଖି ଛଳ ଛଳ ନେତ୍ରୁ ଲୋତକ ବର୍ଷଣ କଲେ
ଆଳାପ କାଳେ, ଛଳନାରେ ଶୋକ ପ୍ରକାଶ କଲେ । ୧୬

କଥୋପ କଥନ କାଳେ ବସୁଦେବ ସମବେଦନା ଛଳରେ
କପଟାଶ୍ରୁସିକ୍ତ କୌରବମାନଙ୍କୁ ଗୃହିଁ ରହିଲେ ଚତୁରେ
ମୁଖ ମଣ୍ଡଳ, କିବା ରାହୁଗ୍ରସ୍ତ ଚନ୍ଦ୍ର ମଣ୍ଡଳ । ୧୭

ତଦ୍ୱାରା କୃଷ୍ଣଙ୍କ ନିଜସ୍ୱ ସ୍ୱଭାବ ପରିସ୍ଫୁଟ ହେଉଥିଲା
କୁହୁକ ପରିତା କୌରବଙ୍କ ମନେ ପ୍ରଭାବ ବିସ୍ତାର କଲା
ସେ ଅନ୍ତର୍ଯ୍ୟାମୀ, ସଭିଙ୍କ ହୃଦୟ ପାରନ୍ତି ଗମି । ୧୮

ଜାଣିଲେ ଶ୍ରୀକୃଷ୍ଣ ପାଣ୍ଡୁ ପୁତ୍ରେ ଯେବେ ତ୍ୟାଗ କରି ରାଜପଦ
ହସ୍ତିନା ପୁରରୁ ପଳାଇ ନ ଥାନ୍ତେ ନିଶ୍ଚେ ହୋଇଥାନ୍ତା ଯୁଦ୍ଧ
କୌରବ ହାତେ, ବଧ ହୋଇଥାନ୍ତେ ପିଉସୀ ପୁତ୍ରେ । ୧୯

ଦୁର୍ଯ୍ୟୋଧନ, କର୍ଣ୍ଣ, ଦ୍ରୋଣୀ, ଦୁଃଶାସନ ଗାନ୍ଧାରୀ ଶତ କୁମର
ସହିତ ସମ୍ମୁଖ ସମରେ ପାଣ୍ଡବେ ଜିଣିବା କଠିନତର
ରାଜ୍ୟ ଅନ୍ତର, ହେବା ହାରି ହେଲା ଲାଭ ତାଙ୍କର । ୨୦

ସାତଗୋଟି ମୃତ ପିଣ୍ଡକୁ ଦେଖିଣ କୂଟିଲେ କୃଷ୍ଣ ବିଷର୍ଣ୍ଣ
ମନ ମଧ୍ୟେ ଖୁସି ହେଲେ ଶଙ୍କର୍ଷଣ ଦୁର୍ଯ୍ୟୋଧନ ଶିରୁ ଶୂନ୍ୟ
ଦେଖିଲେ ଅନ୍ଧ, କାନ୍ଦକାନ୍ଦ ମୁଖ ନ ସ୍ଫୁରେ ଶବ୍ଦ । ୨୧

ଧୃତରାଷ୍ଟ୍ର ଅତି ବିଷର୍ଣ୍ଣ ମାନସେ କହିଲେ ହେ ଯଦୁନାଥ
ପାଣ୍ଡବ କୌରବ ନାମେ ଦୁଇଭାଇ ହୋଇଥିଲୁ ପରିଜ୍ଞାତ
ଏବେ କେବଳ, "କୌରବେ" ବୋଲନ୍ତି ପରଜା କୁଳ । ୨୨

ଆମ୍ଭମାନଙ୍କର ଦକ୍ଷିଣ ବାହୁଟି ହୋଇଗଲା ଭସ୍ମୀଭୂତ
ଏହା କହି କୃଟେ ଛନ୍ଦନ କରିଲେ ଦୁର୍ଯ୍ୟୋଧନ ଶତ ଭ୍ରାତ
ମନ୍ତ୍ରୀ ଶକୁନି, କପଟେ ଝରାଏ ନେତ୍ରରୁ ପାଣି । ୨୩

ଗମ୍ଭୀର ବଦନେ ବସିଥାନ୍ତି କର୍ଣ୍ଣ ବାଷ୍ପରୁଦ୍ଧ କଣ୍ଠସ୍ୱର
ନାଟକ ନାୟକ ଅନ୍ଧ ଧୃତରାଷ୍ଟ୍ର ନମ୍ରମୁଖୀ, ନିରୁତ୍ତର
କୌତୁକ କୃଷ୍ଣ, ଦେଖୁଥାନ୍ତି ବସିରହି ମଉନ । ୨୪

ଏ କୃତ୍ରିମ ଶୋକ ଲହରୀ ପରଶ କଲା ନାହିଁ ବାସୁଦେବ
କୌରବେ ମୁଖକୁ ଚାହିଁ ରହିଥାନ୍ତି ବୁଝିବାକୁ ମନଭାବ
କୃଷ୍ଣ ନୀରବ, ହୋଇ ଦେଖୁଥାନ୍ତି ତାଙ୍କ ହାବଭାବ । ୨୫

ଶ୍ରୀକୃଷ୍ଣ କହିଲେ ଦୁଃଖୀ ଅବା ସୁଖୀ ହୁଅନ୍ତୁ କୌରବ ପାଇଁ
ସେ ସବୁ ତୁମ୍ଭର ଏକାନ୍ତ ନିଜସ୍ୱ ନିଜ ସ୍ୱାର୍ଥ ସିଦ୍ଧି ପାଇଁ
ଲାଭ ବା କ୍ଷତି, ଉଭୟ ତୁମ୍ଭର ଏହା କୁରୁପତି । ୨୬

ସେ ପାଇଁ ନଯୁକ୍ତ ମୁହେଁ ବ୍ୟସ୍ତବ୍ୟସ୍ତ ଯାହା କରେ ଭଲ ପାଇଁ
ନଯୁକ୍ତର ଗୂଢ଼ ତତ୍ତ୍ୱ କେ ବୁଝିବ ସ୍ୱାର୍ଥରେ ଆବଦ୍ଧ ରହି
ହେ ଦୁର୍ଯ୍ୟୋଧନ ! ସବୁ ମଙ୍ଗଳ ନଯୁକ୍ତ ବିଧାନ । ୨୭

କୃଷ୍ଣ କଥା ଶୁଣି ପୁଛେ ଦୁର୍ଯ୍ୟୋଧନ ତେବେ ପାଣ୍ଡବ ନିଧନେ
ନଯୁକ୍ତ ମଙ୍ଗଳ କାର୍ଯ୍ୟ କରିଅଛୁ ବୋଲି ବିଚାର କି ମନେ ?
ଶୁଣି ବଚନ, ଗମ୍ଭୀର ହୋଇଲେ ନନ୍ଦ ନନ୍ଦନ । ୨୮

ଦୁର୍ଯ୍ୟୋଧନେ ଚାହିଁ କହିଲେ ଶ୍ରୀକୃଷ୍ଣ ଧୀର ଗମ୍ଭୀର ସ୍ୱରରେ
"ଏହାର ପଛରେ କିଛି ଭଲ କଥା ଥାଇ ପାରେ ମୋ ବିଚାରେ"
ବୋଲେ ରାଜନ, ଭଲ ଥିବା କଥା ନ ଦେଖେ ନୟନ । ୨୯

ଶ୍ରୀକୃଷ୍ଣ କହିଲେ ବହୁ କଥା ନେତ୍ର ପଥେ ଦେଖା ଯାଏ ନାହିଁ
ଅନୁଭବନୀୟ ଅଟେ ସେହି କଥା ଅନ୍ତର ଆତ୍ମା ଜାଣଇ
ଏହା କହିଣ, କରି ଦେଲେ ତାଙ୍କ ହୃଦୟ ଛିନ୍ନ । ୩୦

ଛଳୋକ୍ତି ପ୍ରକାଶି କହିଲେ ଶ୍ରୀକୃଷ୍ଣ ଆତ୍ମାର ତ ମୃତ୍ୟୁ ନାହିଁ
କେବଳ ଶରୀର ନଷ୍ଟ ହୋଇଯାଏ ମୃତ୍ୟୁର ଧରମ ଏହି
ଶାସ୍ତ୍ରୀୟ ମତ, ଏ କଥା ଅବଶ୍ୟ ତୁମ୍ଭଙ୍କୁ ଜ୍ଞାତ । ୩୧

ଯଦି ତୁମେ ଭାବ ମୃତ ପାଣ୍ଡୁ ପୁତ୍ରେ ଏହାତ ତୁମ୍ଭର ଭ୍ରମ
ମୁଁ ଭାବେ ନଯୁକ୍ତ ବିଚାର ତୁମଠୁ ଅଟଇ ସମ୍ପୂର୍ଣ୍ଣ ଭିନ୍ନ
ଏ ତତ୍ତ୍ୱପୂର୍ଣ୍ଣ, କଥା ଭେଦିବାକୁ ତୁମ୍ଭେ କ କ୍ଷମ ? ୩୨

ଉଚ୍ଚାକାଂକ୍ଷା ପ୍ରାଣ ବରଂ ନୈତିକତା ଗ୍ରାସ କରି ଦେଇ ପାରେ
କ୍ଷମତା ମୋହରେ ମାନବୀୟ ଗୁଣ ନଷ୍ଟଭ୍ରଷ୍ଟ ହୋଇପାରେ
କ୍ଷମତାବାନ, କରିପାରେ ନିର୍ଦ୍ଦୋଷକୁ ନିଧନ" । ୩୩

ଏହା କହି କୃଷ୍ଣ ସ୍ମିତ ହାସ୍ୟ କରି ଚଳିଲେ ଦ୍ୱାରକା ପୁରୀ
କୃଷ୍ଣ କଥା ଶୁଣି କୁରୁପତି ମନ ଗଲା ଆଶଙ୍କାରେ ଭରି
ମଦିରାପାନେ, ବୁଡ଼ିଣ ରହିଲେ ଦୁର୍ଜ୍ଜନ ଗଣେ । ୩୪

ମଦିର ନିଶାରେ ବୁଡ଼ି ରହି ମଧ୍ୟ ଆନନ୍ଦ ପାଇଲେ ନାହିଁ
ମଦିର ନିଶାକୁ ଆଶଙ୍କାର ନିଶା ଦେଲାତ ପାଣି ଫିଟାଇ
ପ୍ରେତ କରମ, ଗଙ୍ଗାକୂଳେ କଲେ ଯଥା ବିଧାନ । ୩୫

ଖଣ୍ଡିତ ମସ୍ତକ ହୋଇ ଶତ ଭ୍ରାତ କଲେ ଜଳ ତରପଣ
ରାଜ୍ୟେ ଶୋକ ବାର୍ତ୍ତା ପ୍ରସୃରିତ ହେଲା ଶୋକାକୁଳ ପ୍ରଜାଗଣ
ତୁଣ୍ଡ ବାଇଦ, ଶୁଭେ କୌରବ ନାମେ ଅପବାଦ । ୩୬

ଲୋକେ କହୁଥାନ୍ତି ଦାହ୍ୟ ପଦାର୍ଥରେ ଗୃହ ଥିବାରୁ ନିର୍ମିତ
ଅଗ୍ନି ସଂଯୋଗରେ ନିମିଷେକ ମଧ୍ୟେ ହୋଇଗଲା ଭସ୍ମୀଭୂତ
ନ ଜାଣେ କେହି, ପ୍ରମାଣ ଦେବାକୁ କଣେକେ ନାହିଁ । ୩୭

ଜ୍ୟେଷ୍ଠ ତାତ ନିନ୍ଦା ସବଂଶ ଶୁଭଇ ଶୁଣିଲେ ଲୋକ ଦୁଃଖୀତ
ପରମାର୍ଥ କହି ମାହାତ୍ମ୍ୟ ବିଦୁର ଲୋକେ କରାଇଲେ ଶାନ୍ତ
ଅଗ୍ନିକାଣ୍ଡର, ଭୟଙ୍କର ବାର୍ତ୍ତା ହେଲା ପ୍ରସୃର । ୩୮

ସାରା ଆର୍ଯ୍ୟାବର୍ତ୍ତ ସ୍ତବ୍ଧ ହୋଇଗଲା ଶୁଣି ଏ ହତ୍ୟା ଖବର
ଆପଣାର ସ୍ୱାର୍ଥ ସାଧନ ନିମନ୍ତେ ପଶୁ ପାଲଟଇ ନର
ଶୁଣି ବର୍ଣ୍ଣିତ, ଘୃଣାଭାବ ହେଲା ମନେ ଜାଗ୍ରତ । ୩୯

ଶୋକ ପ୍ରଦର୍ଶନେ ଧୃତରାଷ୍ଟ୍ର ସୁତେ ଅବହେଳା କଲେ ନାହିଁ
ପ୍ରସନ୍ନତା ମୁଖେ ପଟି ବାନ୍ଧି ଦେଲେ ବିଷର୍ଣ୍ଣତା ପୃଷ୍ଠ ଦେଇ
ତେର ଦିବସ, ଶୋକ ପାଳିବାକୁ ଦେଲେ ଆଦେଶ । ୪୦

ରାଜାଙ୍କ ଆଜ୍ଞାରେ ରାଜ ପ୍ରାସାଦରେ ବାର ଦିନ ବାରଜଣ
ଭଡ଼ାଟିଆ ଶୋକାକୁଳା ନାରୀ ବସି କଲେ କରୁଣ କ୍ରନ୍ଦନ
ଲୋକେ ଜାଣିବେ, ଶୋକାକୁଳ ହୋଇଛନ୍ତି କୌରବେ । ୪୧

ତ୍ରୟୋଦଶ ଦିନ ମର୍ଯ୍ୟାଦା ସହିତ ପାଣ୍ଡବଙ୍କ ଚିତାଭସ୍ମ
ମଶାଣି ଭୂଇଁରୁ ସମ୍ମାନେ ଅଣାଇ କରାଇଲେ ବିସର୍ଜନ
ଶୋଭାଯାତ୍ରାରେ, ଯୋଗ ଦେଲେ ଲୋକେ ବହୁ ସଂଖ୍ୟାରେ । ୪୨

କାର୍ଗିଲ ଯୁଦ୍ଧରେ ସୀମା ସୁରକ୍ଷାରେ ନିହତ ସୈନିକ ଶବ
ଶୋଭାଯାତ୍ରା କାଳେ ଯେଉଁପରି ଲୋକେ ପ୍ରକାଶି ଜାତୀୟ ଭାବ
ବହୁ ସଂଖ୍ୟାରେ, ଯୋଗ ଦେଉଥିଲେ ଶୋକସଭାରେ । ୪୩

ଯେଉଁ ପଥ ଦେଇ ଯାଉଥିଲା ଶବ ହେଉଥିଲା ପୁଷ୍ପ ବୃଷ୍ଟି
ଗାଉଥିଲେ ଲୋକେ ଜୟଜୟ ଗାନ ଉଚ୍ଚରେ କମ୍ପାଇ ପାଟି
"ମରି ଅମର", ପ୍ରଣତି ଘେନହେ ଜାତୀୟ ବୀର । " ୪୪

ପ୍ରାଣବଳି ଦେଇ ଦେଶ ମାତୃକାର ରକ୍ଷିଛ ସମ୍ମାନ ହେଇ
ତୁମ୍ଭର ବୀରତ୍ୱେ ଗର୍ବିତ ଏ ଜାତି ଗର୍ବିତ ଭାରତ ଭୂଇଁ
ତୁମ୍ଭ ଆଦର୍ଶ, ଭୁଲି ନ ପାରିବ ଦେଶ ଓ।ଦଶ । ୪୫

ଲୋକେ କହୁଥିଲେ ସତ୍ୟକୁ କାଳିତ କରି ନ ପାରେ ଦହନ
ଅବଶ୍ୟ ଦିନେ ତା ପ୍ରକାଶ ପାଇବ ଭସ୍ମରୁ ଅଙ୍କୁରୋଦ୍‌ଗମ
ସେ ଚିତାଭସ୍ମ, ଜଳିବେ ନ ଥାଏ ପ୍ରଜାଙ୍କ ମନ । ୪୬

ସୁବର୍ଣ୍ଣ କଳସେ ସଞ୍ଚିତ ଭସ୍ମକୁ ନେଇ ପିତାମହ ଭୀଷ୍ମ
ଭାଗିରଥି ଗର୍ଭେ ବିସର୍ଜନ କଲେ ତିଳାଞ୍ଜଳି କରି ଦାନ
ଶୋକାର୍ତ୍ତଜନ, ନୀରବେ କରିଲେ ଅଶ୍ରୁ ବର୍ଷଣ । ୪୭

ଶୋକ ସମାବେଶେ ବିଦୁରେ ନ ଦେଖି ଶକୁନି ମନ ଉଚ୍ଛନ୍ନ
ଦୁର୍ଯ୍ୟୋଧନେ ବୁଝି ଜିଜ୍ଞାସା କରିଲେ ବିଦୁର କି ଆଗମନ ?
ମନ୍ତ୍ରୀ ବଚନ, ଶ୍ରବଣେ ଗମ୍ଭୀର କ୍ରୁଦ୍ଧ ରାଜନ । ୪୮

ଦୁଃଶାସନ ବୋଲେ ଦାସୀ ପୁତ୍ର ହୋଇ ଥିବାରୁ ଆସି ନାହାଁନ୍ତି
ଆପଣା ମହତ ରକ୍ଷିବା ମାନସେ ଦୂରେଇ ରହି ଅଛନ୍ତି
ଶକୁନି ମନ୍ତ୍ରୀ, ମୁଣ୍ଡ ଟୁଙ୍ଗାରିଲା ରହସ୍ୟ ଚିନ୍ତି । ୪୯

ପାଣ୍ଡବ ନିଧନେ ବିଦୁର ନିଷ୍ଟପୂ ଦେଇଥାନ୍ତେ ତିଳଦାନ
ପୁତ୍ର ପରି ତାଙ୍କୁ ସ୍ନେହ କରୁଥାନ୍ତି ଖଲିଚାତ ଅନୁକ୍ଷଣ
ତିଳ ତର୍ପଣେ, ଯୋଗ ଦେଲେ ନାହିଁ କେଉଁ କାରଣେ ? ୫୦

କର୍ଣ୍ଣ ଭାବୁଥିଲେ ହତ୍ୟାକାଣ୍ଡ ଠାରୁ ବଞ୍ଚାଇବା ଲୋକ ବଡ଼
ପାଣ୍ଡବେ ମରିବା ବିଶ୍ୱାସ ହୁଏନା ନିରର୍ଥକ ଦେବା ପିଣ୍ଡ
ମାନ ଗୋବିନ୍ଦ, ମନରେ ଜାଗଇ ବିଭିନ୍ନ ଦ୍ୱନ୍ଦ । ୫୧

ବୋଲେ ଦୁର୍ଯ୍ୟୋଧନ ଜ୍ୟୋତିଷ ଆଚାର୍ଯ୍ୟ କହୁଥିଲେ କୋଷ୍ଠି ଗଣି
ପୋଡ଼ି ମରିଛନ୍ତି ବୋଲି ପାଣ୍ଡୁ ପୁତ୍ରେ ଗଣନାରୁ ନୁହେଁ ଜାଣି
ମନେ ସନ୍ଦେହ, ପ୍ରକାଶ କରିଲେ ଗଣକ ବ୍ରହ୍ମ । ୫୨

କାରଣ ସ୍ୱରୂପ କହୁଥିଲେ ଗୁରୁ ଜଉ ଘରେ ଗ୍ରହବାସ
ସେମାନଙ୍କୁ ଦଗ୍‌ଧ କରିବା ଆଗରୁ ହତ୍ୟାକାଣ୍ଡ ଯିବ ନାଶ
ସତ୍ୟ ପ୍ରକାଶ, ପାଇଲେ ହେବ ଆମ୍ଭ ସର୍ବନାଶ । ୫୩

ଏଥୁ ଜଣାଯାଏ ଷଡ଼ଯନ୍ତ୍ର କଥା ଗଣନାରେ ତାଙ୍କୁ ଜ୍ଞାତ
ଏକଥା ପ୍ରଚୁର ହୋଇଲେ ରାଜ୍ୟରେ ଦୋଷୀ ହୋଇବା ସାବ୍ୟସ୍ତ
ପ୍ରାଣ ବିପନ୍ନ, ଆଶଙ୍କା ପ୍ରକାଶ କଲେ ରାଜନ । ୫୪

ଅଟ୍ଟହାସ୍ୟ କରି କହିଲା ଶକୁନି ଏ ଅଟେ ଉଦ୍ଭଟ ଚିନ୍ତା
ଜନମ, ମରଣ ବରଷା ଆଗମ ଗଣନା କରିବା ବୃଥା
ବିପ୍ର ନାହକ, ସତମିଛ କହି ମାଗନ୍ତି ଭିକ । ୫୫

କୂଟ କରି କହେ ଗ୍ରହ ଗଣନାରେ ଯାଏ ଆସେ ନାହିଁ କିଛୁ
ବୁଦ୍ଧି ଥିଲା ପିଲା ଖେଳରେ ହାରେନା କରିପାରେ ସବୁ କିଛୁ
ଉପାୟ କରି, ଲୋକମତକୁ ଦେବା ପଣ୍ଡ କରି । ୫୬

ଆମ୍ଭେ କୂଟ ମନ୍ତ୍ର ପନ୍ଥା ଅନୁସରି ପଠାଇବା ଗୁପ୍ତଚର
ପରରାଷ୍ଟ୍ରେ ଯାଇଁ ପ୍ରଚୁର କରିବେ ପୋଡ଼ି ମରିଲେ କୁମର
ଆମ୍ଭର ଦୋଷ, କେଉଁଠି ରହିଲା କର ପ୍ରକାଶ ? ୫୭

ଏଥିରେ ଆମ୍ଭର ଷଡ଼ଯନ୍ତ୍ର କଥା କପରି ହୋଇଲା କହ
ଯଦି ବା ସନ୍ଦେହ ଥାଏ କାହା ମନେ ପଚାରି ବୁଝ ଗାଙ୍ଗେୟ
ପୁଅଙ୍କୁ ସେହି, ବାରୁଣାବନ୍ତକୁ ଥିଲେ ପଠାଇ । ୫୮

କୌରବେ ଯିବାକୁ ଇଚ୍ଛା କରିଥିଲେ ପାଣ୍ଡବେ କଲେ ବାରଣ
ଭୀଷ୍ମ ପରାମର୍ଶ ପାଇଣ ସେମାନେ ସେଠାକୁ କଲେ ଗମନ
ଶୟନ କାଳେ, ଅଗ୍ନି ଲାଗିବାରୁ ପୋଡ଼ିଣ ମଲେ । ୫୯

ଯଦି ଗୃହେ କିଏ ଲଗାଇଲା ଅଗ୍ନି ସେ କଥା ଜାଣନ୍ତି ଭୀଷ୍ମ
ଧୃତରାଷ୍ଟ୍ର ସୁତେ ଦୋଷ ଲଦି ଦେବା ହୋଇବ ଅନ୍ୟାୟ କର୍ମ
ନିର୍ଦ୍ଦୋଷ ସେହି, ତାଙ୍କୁ ଦୋଷ ଦେବା ଯୋଗାଏ ନାହିଁ । ୬୦

ଏପରି ଜଘନ୍ୟ ପ୍ରଚୁର ବିପକ୍ଷେ ପ୍ରତିବାଦ କଲେ କର୍ଣ୍ଣ
କାରଣ ଏ କଥା ଭୀଷ୍ମେ ଅଗୋଚର ସେ ସମ୍ପୂର୍ଣ୍ଣ ଦୋଷ ଶୂନ୍ୟ
ତାହାଙ୍କୁ ଦୋଷ, ଦେଲେ ଅପବାଦ ହେବ ବିଶେଷ । ୬୧

ଶକୁନି କହିଲା, ନ୍ୟାୟ ନୀତିଠାରୁ ଭିନ୍ନ ଅଟେ ରାଜନୀତି
ନ୍ୟାୟ ବା ଅନ୍ୟାୟ ବିଚାର ନ ଥାଏ କେବଳ ସ୍ୱାର୍ଥ ତା ଭିତ୍ତି
ଲକ୍ଷ ସାଧନ, ରାଜନୀ[illegible]ର କର୍ମ ପ୍ରଧାନ । ୬୨

ରାଜାର ହୃଦୟ କଠିନ ନ ହେଲେ ଦେଇକ ପାରିବ ଦଣ୍ଡ
ଦଣ୍ଡ ଦେବା ଶକ୍ତି ନ ଥିଲେ ରାଜାର ଶାସନ ହୋଇବ ପଣ୍ଡ
ଦଣ୍ଡ ଧାରଣ, କରିବାରୁ ଦଣ୍ଡଧାରୀ ରାଜନ । ୬୩
ମନ୍ତ୍ରୀ କଥା ଶୁଣି ମଉନ ହୋଇଲେ କର୍ଣ୍ଣ-ଦୁଶା-ଦୁର୍ଯ୍ୟୋଧନ
କପଟିଆ ମନ୍ତ୍ରୀ କୂଟ କଥା କହି କଲା ଭ୍ରାନ୍ତି ନିବାରଣ
ତା ବୁଦ୍ଧି ବଳେ, ବଶୀଭୂତ ହେଲେ ଦୁଷ୍ଟ ସକଳେ । ୬୪
ପରହିତ କାର୍ଯ୍ୟ ପାଇଁ ପାଣ୍ଡୁ ପୁତ୍ରେ ଜୀବନ୍ତେ ପାଇଲେ ପିଣ୍ଡ
ବିଦୁର, ଶ୍ରୀକୃଷ୍ଣ ସହାୟ ଥିବାରୁ ଷଡଯନ୍ତ୍ର ହେଲା ପଣ୍ଡ
ଗୁପ୍ତ ଖବର, ଭୀଷ୍ମଙ୍କୁ ଜଣାଇ ଦେଲେ ବିଦୁର । ୬୫
ଶୁଣି ଆନନ୍ଦିତ ହେଲେ ଗଙ୍ଗାସୁତ କଲେ ଭକ୍ତେ କୋଳଗତ
ଭକ୍ତ ଭଗବାନ ସହାୟ ଯାହାଙ୍କୁ କ କରି ପାରିବ ଖଣ୍ଡିଆ ଭୂତ
ଅଧ୍ୟାୟ ଶେଷ, ଛଅଷଠି ପଦେ ଭଣେ ବୃନ୍ଦା ଦାସ । ୬୬

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ମଥୁରାଦ୍ୱାରକା ଲୀଳା
ଖଣ୍ଡେ ଜତୁଗୃହ ଦହନ ଓ ହସ୍ତିନାରେ କୋଳାହଳ ବର୍ଣ୍ଣନେ
ନାମ ଷଷ୍ଠ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

**ବୋଲି –**

ଭଜମନ ବ୍ରଜ ବନ ଦ୍ୱିଜ ରାଜଙ୍କୁ
ଭଜିଲେ ଦର୍ଶନ ପାଇ ରସ ରାଜଙ୍କୁ । ଘୋଷା
ନେହେ ରଞ୍ଜି ବିଦ୍ୟାଞ୍ଜନ ପ୍ରେମରେ କରି ଲୋକନ
ଧ୍ୟାନ କର ପ୍ରେମାନନ୍ଦ ପାଦ କଞ୍ଜକୁ । ୧
ଝରୁ ଅଛି ଝରି ଝରି ପ୍ରଭୁ କୃପା ପ୍ରେମଧାର
ପାନ କରି ତୋଷ ମନ ମତ୍ତ ଗଜକୁ । ୨
ହରେ-ରାମ-କୃଷ୍ଣ-ଶ୍ୟାମ-ସତ୍ୟ-ଶିବ-ଅଭିରାମ
ଅଭିନ୍ନ ସୁନ୍ଦର କରମଳା ରାଜାଙ୍କୁ । ୩
ସରସ୍ୱତୀ ତୀରେ ବାସ କରନ୍ତି ଗୁଲ୍ମରେ ରାସ
ରଚେ ବୃନ୍ଦାଦାସ ପାଦ ଅବ୍ଜକୁ । ୪

# ସପ୍ତମ ଅଧ୍ୟାୟ

## ବଳରାମ ବିବାହ

### ରାଗ - କୁମ୍ଭ କାମୋଦୀ

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ କର ସୁଜ୍ଞଜନ
ଶ୍ରବଣେ ଦୁରିତ ଖଣ୍ଡନେ ପ୍ରାପତ ହେବ ଧର୍ମ ଧନ । ୧
ଗୋକର୍ଣ୍ଣ ଋଷିପୁତ୍ର ବିଦେହ ତାଙ୍କ ତନୟ ମୈଥିଳ
ବ୍ରହ୍ମବିଦ୍ୟା ସାଧନ କରିଣ ଶ୍ରୀହରି ପ୍ରେମେ ପାଗଳ । ୨
ସୂର୍ଯ୍ୟବଂଶୀ ରାଜା ସୋମଚନ୍ଦ୍ର ରାଜ୍ୟ କରିଦେଲେ ଦାନ
ବେଦମନ୍ତ୍ର ଘୋଷି ମୈଥିଳ କଲେ ସେ ଦାନ ଗ୍ରହଣ । ୩
ମିଥିଳା ନାମେ ନଗ୍ର ବସାଇ ହେଲେ ତହିଁ ଅଧିପତି
ଆଙ୍ଗୁଳି ନାମେ ତାଙ୍କ ଭାରିଯା ସତୀସାଧ୍ୱୀ ଗୁଣବତୀ । ୪
ଜନକ, ରୈବତ ନାମେ ଦୁଇ ସୁତ ଜାତ ତାଙ୍କ କୋଳେ
ଜଗତେ ବିଖ୍ୟାତ ହେଲେ ବେନି ସୁତ ପୂଣ୍ୟ କର୍ମ ଫଳେ । ୫
ମିଥିଳାରେ ରାଜା ଜନକ, ମେରୁର ପଶ୍ଚିମେ ରୈବତ
ରାଜା ହୋଇ ପ୍ରଜା ପାଳିଲେ ନ୍ୟାୟ ଧର୍ମରେ ବେନି ଭ୍ରାତ । ୬
ଜନକ ଜେମା ଜାନକୀ ବିଭା ହେଲେ ରଘୁପତି ରାମ
ବନବାସ କରି ନାଶ କଲେ ରାବଣ ଲଙ୍କା ରାଜନ । ୭
ରଇବତ ଗଙ୍ଗା ନଦୀ ତୀରେ ଯଜ୍ଞ କରି କନ୍ୟା ରତ୍ନ
ଲଭି କରି ସ୍ନେହ ଭରେ କରିଲେ ସେ କନ୍ୟାକୁ ପାଳନ । ୮
ରୈବତ ନରପତି ପାଳନ୍ତେ ନାମ ହୋଇଲା ରେବତୀ
ଅଷ୍ଟାଦଶ ମନୁ ଯୋଗରେ ବସିଲେ ଯୋଗେଶ୍ୱରେ ପ୍ରୀତି । ୯
ଦ୍ୱାପର ଯୁଗେ ରେବତୀ ପାଇଁ ବଳରାମ ହେଲେ ବର
ବେଦ ବିଧାନେ ରୈବତ ଭୂପ କନ୍ୟା ଦେଲେ ରାମକର । ୧୦
ମୋହନ ଗିରି ପାଦ ଦେଶେ ବହିଯାଏ ଗୋମତି ନଦୀ
ବିଶ୍ୱଶମ୍ଭୁ ଲିଙ୍ଗ ବିରାଜନ୍ତି ତହିଁ କଲେ ବିଭା ବେଦୀ । ୧୧

ଅଷ୍ଟପୁ ତୃତୀୟା ରୋହିଣୀ ନକ୍ଷତ୍ରେ କଲେ କନ୍ୟା ଦାନ
ଶୁଭଲଗ୍ନେ ହସ୍ତ ଗ୍ରନ୍ଥି ଦେଇ ମଙ୍ଗଳ କାର୍ଯ୍ୟ ସମ୍ପନ୍ନ । ୧୨

ପୁତ୍ର, ବଧୂ ନେଇ ବସୁଦେବ ଫେରିଆସିଲେ ଦ୍ୱାରବତୀ
ରେବତୀ ସଙ୍ଗେ ସଂସାର କଲେ ସୁଖେ ହଳଧର ପତି ୧୩ ।

ଆନନ୍ଦ ସାନନ୍ଦ ଦୁଇପୁତ୍ର ଶଶିକଳା କନ୍ୟା ରତ୍ନ
ପାଳିଲେ ରେବତୀ ପତି ରାମ ସଙ୍ଗ ଗୁଣେ ପରିପୂର୍ଣ୍ଣ । ୧୪

କୁଟୁମ୍ବ ସେନ ଶଙ୍କର୍ଷଣ ଦ୍ୱାରକା ପୁରେ କଲେ ବାସ
ଦ୍ୱାପରେ ଦୁର୍ଜନ ଦଳନେ ଜାତ ଯୋଗେଶ୍ୱର ମହେଶ । ୧୫

କାଦମ୍ବରୀ ପାନେ ମତ୍ତଭୋଳ ହେବନ୍ତ ଦ୍ୱାରକା ବାସୀ
ନବାଳମ୍ବ ପୁରୁଷ ପ୍ରବର ସୁଖେ ଦୁଃଖେ ସଦା ଖୁସି । ୧୬

ଆନନ୍ଦାନନ୍ଦ ବରୁଣ କନ୍ୟା କଳେନ୍ଦୀକୁ ବିଭା କଲେ
କୁରୁପତି ରାମ ପୁତ୍ରେ ଆପଣାର କନ୍ୟା ସମର୍ପିଲେ । ୧୭

ଜୟ ଜୟ କୃଷ୍ଣ ଅଗ୍ରଜ ଜୟ ହେ ଦେବକୀ ନନ୍ଦନ
ବୃନ୍ଦାବାସ ଗାଦ ପଦ୍ମେ କରଇ ଭକ୍ତିଭରେ ବନ୍ଦନ । ୧୮

ଉନବଂଶ ପଦେ ଅଧ୍ୟାୟ ହେଲା ଏହିଠାରେ ସମ୍ପୂର୍ଣ୍ଣ
ବୋଲେ ବୃନ୍ଦାବାସ ସୁଜ୍ଞଜନେ କର କୃଷ୍ଣରସ ପାନ । ୧୯

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକା ଲୀଳାଖଣ୍ଡେ ବଳରାମ ବିବାହ ଓ ବଂଶାବଳୀ
କଥନେ ନାମ ସପ୍ତମ ଅଧ୍ୟାୟଂ ସମ୍ପୂର୍ଣ୍ଣଂ ।

ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

**ବୋଲି :—**

କୃପା କେବେ ଅନା  ମୋତେ କାଳିଆ ସୁନା
ତୁମ୍ଭେ ନିତ୍ୟ ନିରଞ୍ଜନ  ଅଦ୍ୱିତୀୟ ପରଂବ୍ରହ୍ମ
ଅବ୍ୟକ୍ତେ ବ୍ୟକ୍ତେ ଜଗତେ ଉଡ଼ୁଛି ବାନା । ୧
ରୂପରେଖ ନାହିଁ ଯାର  ରୂପେ ନାହିଁ ପଟାନ୍ତର
ଭକ୍ତ ହିତେ ଅବତାର  କଞ୍ଜ ନୟନା ।
କାଳିଆ ସୁନା ମୋ ସତ୍ୟ  ଆଉ ସକଳ ଅସତ୍ୟ
କରି ରଖିଛି ତାହାକୁ କଣ୍ଠେ ଗହଣା ।
ସ୍ୱର ରୂପ ସ୍ୱର ବର୍ଣ୍ଣ  ସ୍ୱରଯୁଗେ ବିଦ୍ୟମାନ
ଚତୁର୍ଦ୍ଧା ମୂର୍ତ୍ତି ଦେଖି କେ ନୋହିବ ବଣା ?
ଦେଖି ତାର ସ୍ମିତ ହାସ୍ୟ  ପାଗଳ ଏ ବୁଲ୍ଲି ଦାସ
ନାଚଇ ଦାଣ୍ଡରେ ପିଇ ଅଧର ପଣା ।'

# ଅଷ୍ଟମ ଅଧ୍ୟାୟ

## ଦୁର୍ଯ୍ୟୋଧନଙ୍କ ରାଜ୍ୟାଭିଷେକ

### ରାଗ—ଗୌରୀ

କୃଷ୍ଣ ଚରିତ ମାନସ ପାନ କର ସୁଧା ରସ
ବିଚାରନ୍ତ ଧୃତରାଷ୍ଟ୍ର ସଭାରେ ବସି
ଭୀଷ୍ମ, ଭୂରିଶ୍ରବା, ଦ୍ରୋଣ କୃପାଚାର୍ଯ୍ୟ, ଶଲ୍ୟ, କର୍ଣ୍ଣ
ସଞ୍ଜୟ, ବିଦୁର, ଦୁଃଶା, ଗାନ୍ଧାରବସି
ପାଣ୍ଡବେ ହେଲେ ବହିର୍ଭୂତ
ରାଜକାର୍ଯ୍ୟ ବୁଝିବାକୁ ମୁଁ ଅସମର୍ଥ । ୧

ମୋ ବିଚାରେ ଦୁର୍ଯ୍ୟୋଧନ ରାଜ୍ୟେ ହେଉ ନରରାଣ
ଆପଣ ମାନଙ୍କ ମତ କର ପ୍ରଦାନ
ଶୁଣି ପିତାମହ ଭୀଷ୍ମ କହିଲେ ହେବ ଉତ୍ତମ
ରୂପବନ୍ତ, ଗୁଣବନ୍ତ, ତୁମ୍ଭ ନନ୍ଦନ
ଜନ୍ମେ ବିରାଜିତ କମଳା
ନୃପତି ହେବାକୁ ଯୋଗ୍ୟ ଗାନ୍ଧାରୀ ବାଳା । ୨

ଶୁଣି ଭୀଷ୍ମଙ୍କ ବଚନ ସର୍ବେ କଲେ ସମର୍ଥନ
ଦୁର୍ଯ୍ୟୋଧନ ରାଜା ହେବା ହେଲା ନିଶ୍ଚିତ
ଧନୁ ମାସ ଶେଷ ଦିନ ପୂର୍ଣ୍ଣିମା ତିଥି ସେଦିନ
ବୃହସ୍ପତି ବାର ପୁଣି ପୁଷ୍ୟା ନକ୍ଷତ୍ର
ତଳ ନାମରେ କରଣ
ରାମାଭିଷେକ ଦିବସ ଶାସ୍ତ୍ର ପ୍ରମାଣ । ୩

ଯୋଗାଡ଼ ସକଳ ଦ୍ରବ୍ୟ ରାଜ୍ୟରେ କଲେ ଉତ୍ସବ
ଶ୍ୱେତ ହସ୍ତି ସଜାଇଲେ ଶ୍ୱେତ ବସନେ
ଋଷି ବିପ୍ରଙ୍କୁ ବରଣ କଲେ ମଙ୍ଗଳାଚରଣ
ଚରଣେ ଲୋଟିଲେ ସୈନ୍ୟ ସାମନ୍ତ ଗଣେ
ଘେନି କୋଟିଏ ତୀର୍ଥନୀର
ଅଭିଷେକ କରାଇଲେ ରାଜାଙ୍କ ଶିର । ୪

ସିଂହାସନେ କୁରୁପତି ବସିଲେ ହୋଇ ନୃପତି
ଦକ୍ଷିଣ ପାର୍ଶ୍ୱେ ରାଧେୟ ଦଣ୍ଡ ଟେକିଲେ
ବାମ ପାର୍ଶ୍ୱେ ଶତ ଭ୍ରାତ ଟେକିଲେ କନକ ଛତ୍ର
ଭୀଷ୍ମ, ଭୂରି ଦ୍ରୋଣ, ଶଲ୍ୟ ପୃଷ୍ଠେ ରହିଲେ
ଚତୁପାଶେ ସୈନ୍ୟ ସାମନ୍ତ
ମଙ୍ଗଳ ସ୍ୱୀକାର କଲେ ମନ୍ତ୍ରୀ ସହିତ । ୫

ଆଲମ୍ବ ଲକ୍ଷେ ଉଦଣ୍ଡ ସଜାଇଲେ ପାରିଦଣ୍ଡ
ବାଦ୍ୟନାଦେ ପ୍ରକମ୍ପିତ ହସ୍ତିଦନ୍ତା ଦାଣ୍ଡ
ସହସ୍ରେ ଶଂଖ ସ୍ଫୁରଇ ମାଙ୍ଗଳିକ ଗୀତ ଗାଇ
କମ୍ପାଇଲେ ସଞ୍ଚସ୍ଥଳ ସହସ୍ରେ ଚଣ୍ଡ
ଅଭିଷେକ କାର୍ଯ୍ୟ ସମ୍ପନ୍ନ
ନଗର ଭ୍ରମଣ କଲେ ଦଣ୍ଡ ଘେନିଣ । ୬

ପରିକ୍ରମା ଶେଷ କରି ସିଂହାସନେ ବିଜେ କରି
କର୍ଣ୍ଣ ଶିରେ ପାଟ ଶାଢ଼ି ବାନ୍ଧିଲେ ରାଧେୟ
ପ୍ରକାଶିଲେ କୁରୁପତି ଥାଟେ ହେଲେ ସେନାପତି
ଅଗ୍ରତ ଦମନେ କର ଦିଗ୍‌ବିଜୟ
ଦର୍ପେ ଚଳିଲେ କର୍ଣ୍ଣବୀର
ପାଦ ଭର ପାଇ ପୃଥ୍ୱୀ ଉପୁଣେ ଅଧୀର । ୭

ବିନୟେ ବଚନେ ସ୍ତୁତି କଲେ ଦେବୀ ବସୁମତୀ
କହିଲେ ତୋ ପାଦ ଭର ନ ପାରେ ସହି
ସଧୀରେ ପାଦ ଚାଳନ କଲେ ହୋ ଅଙ୍ଗ ରାଜନ
ଶତଭାର ସ୍ୱର୍ଣ୍ଣ ନିତି ଭେଟି ଦେବଇଁ
ଶୁଣି ବସୁମତୀ ବଚନ
ଉଶ୍ୱାସେ ପାଦ ଚାଳନ କରିଲେ କର୍ଣ୍ଣ । ୮

ନିତି ଶତଭାର ସ୍ୱର୍ଣ୍ଣ ପୃଥ୍ୱୀ ଠାରୁ ପାଇ କର୍ଣ୍ଣ
ରାଜା-ପ୍ରଜା-ବିପ୍ର-ସିଦ୍ଧେ କରନ୍ତି ଦାନ
ଜଳେ ସ୍ୱର୍ଣ୍ଣାଞ୍ଜଳି ଦେଇ ପୂଜନ୍ତି ଦିବସ ସାଇଁ
ଦାନବୀର କର୍ଣ୍ଣ ବୋଲି ଶୁଭିଲା ସ୍ୱନ

ଧନୁର୍ଦ୍ଧରୁ ଖ୍ୟାତ ବର୍ଦ୍ଧନ
କର୍ଣ୍ଣଙ୍କର ସାରଥ୍ୟ ଦେଖି ସାରେ ଉଚ୍ଛନ୍ନ । ୯

ଦୁର୍ଯ୍ୟୋଧନ ଆଟେ କର୍ଣ୍ଣ    ହେବାରୁ ମୁଖ୍ୟ ବରଣ
ବଢିଗଲା କୁରୁପତି ଶକ୍ତି ଅସୀମ
ମନ ମଧ୍ୟେ ପାଇ ଧୀତି    ଖଟିଲେ ଲକ୍ଷେ ନୃପତି
କବା କହିବା ଶତଭ୍ରାତା ପରାକ୍ରମ
କପଟୀ ଶକୁନି ସହିତ
ଦୁଃଶାସନ ଯୁବରାଜ ଦୁଷ୍ଟ ସ୍ୱଭାବ । ୧୦

ଦୁର୍ଜ୍ଜନେ ହୋଇଲେ ମେଳ    ଲଗିବ ଘୋର କନ୍ଦଳ
ବଗଥଣ୍ଡ ବୃଦ୍ଧି ହେଲେ ଯେସନେ ମୀନ
ସେହି ମତ ପ୍ରଜାଗଣ    ଭୟେ କଟାଇଲେ ଦିନ
ବିପନ୍ନ ହୋଇଲା ଧନ ଜନ ଜୀବନ
ଚାଲିଲା ଅନ୍ୟାୟ ଶାସନ
ମନ୍ତ୍ରଣା ଦାୟକ ମନ୍ତ୍ରୀ ମଇଷ କର୍ଣ୍ଣ । ୧୧

ଧର୍ମ ହେଲେ ବନବାସୀ    ଅଧର୍ମୀ କବଳେ କୁର୍ସି
ଦିନୁଦିନ ସତ୍ୟ - ଶାନ୍ତି - ନ୍ୟାୟ ବିପନ୍ନ
ଧର୍ମ ଆଚରିଲା ଜନ    ଭୟେ ହୋଇଗଲେ କ୍ଷୀଣ
ଗୁରୁ ଇଷ୍ଟ ଜନେ ଦୁଷ୍ଟେ ନ କଲେ ମାନ୍ୟ
ବଢିଗଲା ଗୁଣ୍ଡା ଶାସନ
ସାହି ସାହି ଡାକ ଦେଲେ ପରଜାଗଣ । ୧୨

ବଢ଼ିଲା ନାରୀ ଧର୍ଷଣ    ଚୋରି ଖଣ୍ଡି ହତ୍ୟା ମାନ
ଆଭ୍ୟନ୍ତରିଣ ଶାନ୍ତି ଶୃଙ୍ଖଳା ବିପନ୍ନ
ସୁଜନେ ହେଲେ ମଉନ    ଦୁର୍ଜ୍ଜନ ଶକ୍ତି ବର୍ଦ୍ଧନ
ଭୟରେ ପ୍ରଜାଏ କଲେ ଧର୍ମ ସ୍ମରଣ
ତେର ପଦେ ଅଧ୍ୟାୟ ଶେଷ
ବୃନ୍ଦଦାସ ବୋଲେ ପ୍ରଭୁ ଉଦ୍ଧାର ବିଶ୍ୱ । ୧୩

ଇତି ଶ୍ରୀକୃଷ୍ଣ ଚରିତ୍ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକାଲୀଳା ଖଣ୍ଡେ ଦୁର୍ଯ୍ୟୋଧନ ରାଜ୍ୟାଭିଷେକ
ବର୍ଣ୍ଣନେ ନାମ ଅଷ୍ଟମ ଅଧ୍ୟାୟ ସମାପ୍ତଂ
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

-●-

**ବୋଲି —**

ଅନା ଅନାରେ ସୁମନା ଅନା ଅନା ।
ପତିତ ପାବନ ନାମେ ଉଡ଼ୁଛି ବାନା ।
ବାନା ଉଡ଼ୁଅଛି ଅନା
ବାନା ଉପରେ ଅବନା
ବନାଇ ପାରିଲେ ନେଷେ ଦେଖିବୁ ସିନା ।୧

ହାତ ଠାରି ଡାକେ ନେତ ଆସ ପତିତ ଆରତ
ଦାରୁ ଦେହେ ଦେଖ ବଅଁ କାଳିଆ ସୁନା
କୋଟି ଇନ୍ଦୁ ଜିଣି ମୁଖ ଦର୍ଶନେ ହରଇ ଦୁଃଖ
ପ୍ରସନ୍ନ କରାଅ ଭାବ କରି ସୁମନା ।୨

ଭାବବା ଲୋକକୁ ଦୃଶ୍ୟ ଅଭାବୀ ଲୋକେ ଅଦୃଶ୍ୟ
ସିଂହାସନେ ବସିଛନ୍ତି ନୃପତି ଅନା
ବଳଭଦ୍ର ଭଦ୍ରା ଚକ୍ର ଜଗନ୍ନାଥ ସୁଦର୍ଶନ
ବସିଛନ୍ତି ଚାରି ମୂର୍ତ୍ତି ଏକା ଆସନା ।୩

ଉର୍ମି, ଧର୍ମି, ଜ୍ୟୋତି, ଜ୍ୱାଳା ଉଦିତ ଶୂନ୍ୟେ ଚପଳା
ନେତ୍ରକୁ ସ୍ଥିର କରିଲେ ଦେଖିବୁ ସିନା
ସେ ରୂପ କରି ଦର୍ଶନ ପ୍ରଣମେ ଦାସ କପିଳ
ଜୟଜୟ ଜଗନ୍ନାଥ ଜଗତ ଜଣା ।୪

# ନବମ ଅଧ୍ୟାୟ

## ରୁକ୍ମିଣୀ ବିବାହ

ରାଗ - ବଙ୍ଗଳାଶ୍ରୀ

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ କର ଆହେ ସୁଜ୍ଞଜନ
ପଦପଦକରେ ରସ ଝରୁଅଛି ରସ ସରିତ ସମାନ । ୧
କୁଣ୍ଡି କଟକର ନୃପତି ଭୀଷ୍ମକ ଅଙ୍ଗବଳ ଅପ୍ରମିତ
ରୁକ୍ମି, ରୁକ୍ମରଥ, ରୁକ୍ମମାଳୀ, ରୁକ୍ମକେଶ, ରୁକ୍ମ ବାହୁସୁତ । ୨
ଦୁର୍ବାର ଯୋଦ୍ଧା ସେ କ୍ଷତ୍ରି ଶିରୋମଣି ଜଣେଜଣେ ବଳବନ୍ତ
ରୁକ୍ମିଣୀ ନାମରେ ଜାତ ଏକ କନ୍ୟା ସାକ୍ଷାତରେ ଲୋକମାତା । ୩
ବିବାହ ବୟସ ହେବାରୁ କନ୍ୟାର କରାଇଲେ ସ୍ୱୟଂମ୍ବର
ବରଣ ହୋଇଣ କୁଣ୍ଡି ନଗ୍ରେ ବିଜେ କଲେ ଲକ୍ଷେ ନୃପବର । ୪
ସୁବର୍ଣ୍ଣ ପାତ୍ରରେ ନୃପଙ୍କ ମନୋହର ଯୋଗାଡ଼ିଲେ ଶାଳିଅନ୍ନ
ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ପଦାର୍ଥାଦି ଭୁଞ୍ଜାଇଲେ ନରବଣ । ୫
ଭୋଜନ ଶେଷରେ ନଅବ କାତିରେ ଖଞ୍ଜି ଦେଲେ ବାସଗୁଆ
ଅଖଣ୍ଡିତ ପାନ ପଟେ ଖିଲିପାନ କର୍ପୂର ଗୁଣ୍ଡି ଦଡ଼ିଆ । ୬
ବଡ଼ ଅସମ୍ଭବ କର୍ଣ୍ଣେ ଅଗୋଚର ଭୀଷ୍ମ ଜେମା ସ୍ୱୟମ୍ବର
ବିବାହ ଉତ୍ସବ ଲାଗିଛି ନଗରେ ବସିଛି ହାଟ ବଜାର । ୭
ମର୍ଦ୍ଦଳ, କାହାଳି, ଢସା, ବଜ ଘୋଷ ବାଜଇ ଯୋଡ଼ି ନାଗରା
ଆତସ ବାଜିରେ ନଗ୍ର ପ୍ରକମ୍ପିତ ହୁଇ, କୁମ୍ଭି, ଫୁଲଝରି । ୮
ସଭା ମଣ୍ଡପରେ ଜଳେ ଘୃତ ଦୀପ ପରିବେଶ ସୁଗନ୍ଧିତ
ଲକ୍ଷେ ଗଜ ହୁଳା ଜଳଇ ଚୌଦିଗେ ଆଲୋକମାଳା ସଜ୍ଜିତ । ୯
ସାରା କୁଣ୍ଡି ନଗ୍ର ସଜ୍ଜିତ ହୋଇଛି ତୋରଣ ଶ୍ରେଣୀରେ ପୂର୍ଣ୍ଣ
ଗୃହ ଦ୍ୱାରଦେଶେ ପୂର୍ଣ୍ଣ ଜଳ କୁମ୍ଭ ଶ୍ରୀଫଳ, ଗୁଆ, ମଣ୍ଡନ । ୧୦
ପ୍ରାସାଦ ଶୀର୍ଷରେ ମାଳମାଳ ନେତ ସୁଚିନ ଧବଳ ପାଟ
ଚନ୍ଦ୍ରାତପ କାହିଁ ଟଙ୍ଗା ହୋଇଅଛି ଝୁଲେ ଗୋଟି ପୁଅ ନାଟ । ୧୧

ଛାୟା ମଣ୍ଡପରେ ନୃପଙ୍କ ଆସନ ପଡ଼ି ଅଛି ଧାଡ଼ି ଧାଡ଼ି
ପାଦତଳେ ବସ୍ତ୍ର କାଶ୍ମିର ଗାଲିଚ୍ଚ ପଡ଼ିଛି କର୍ପୂର ଗୁଣ୍ଡି । ୧୨
ମୟୂର ପୁଚ୍ଛର ଲକ୍ଷେକ ବିଞ୍ଚଣା ଲକ୍ଷେ ସୁବର୍ଣ୍ଣ ଚାମର
ହଂସତୁଳୀର ତୂଳି କାର୍ପାସ ମୁଚୁଳା ଲକ୍ଷେ ଶୁକ୍ଳ ଅପସର । ୧୩
ଚନ୍ଦନର ଛେରା ପଡ଼ିଛି ଚୌଦିଗେ ଜଳୁଅଛି ଧୂପ ବତି
ସୁଗନ୍ଧ କୁସୁମ ଏକଲକ୍ଷ ଗୁଚ୍ଛ ଦିଆ ଯାଇଅଛି ଭେଟି । ୧୪
ସଭାରେ ନୃପଙ୍କୁ ମାନ୍ୟ କରି ରତ୍ନ ଦେଇ ଗନ୍ଧପୁଷ୍ପ ମାନ
ସମାଦର କରି ବସାଉ ଅଛନ୍ତି କରି ପ୍ରୀତି ସମ୍ଭାଷଣ । ୧୫
ଆସ୍ଥାନରେ ବିଜେ ଲକ୍ଷେ ନରପତି ମିଳିଲେ ଭୀଷ୍ମ ନୃପତି
ପାତ୍ର ମନ୍ତ୍ରୀ ବେଢ଼ି ଛନ୍ତି ଚାରି ଦିଗେ ପାଞ୍ଚ ପୁତ୍ରେ ରହିଛନ୍ତି । ୧୬
ବ୍ୟକ୍ତ କଲେ ନୃପ ସଭାର ନିୟମ ଶୁଣ ସର୍ବ ନୃପଗଣ
ଇଚ୍ଛାବର ଯାକୁ ବରିବ ମୋ କନ୍ୟା କରିବି ତାଙ୍କୁ ଅର୍ପଣ । ୧୭
ସଭା ମଧ୍ୟେ ବସି ଅଛି ଲକ୍ଷେ ନୃପ ନକରିବ କଳି ଗୋଳ
ଭୀଷ୍ମଙ୍କ କଥାରେ ସତ୍ୟ କଲେ ନୃପେ କରେ ଧରି ଗଙ୍ଗାଜଳ । ୧୮
ଆସ୍ଥାନରେ ବସି ଦେଖିଲେ ରାଜନ୍ୟେ ଭୀଷ୍ମକ ଜେମା ରୁକ୍ମିଣୀ
ଦିବ୍ୟ ବେଶ ହୋଇ ମେଢ଼ର ଭିତରେ ବସିଛନ୍ତି ଠାକୁରାଣୀ । ୧୯
ସର୍ବାଙ୍ଗ ସୁନ୍ଦର ଅନୁପ ମେୟୁ ସେ ରମଣୀ ଗଣେ ଗରିଷ୍ଠା
ପ୍ରତେ ହୁଏ ମନେ କିବା ପଦ୍ମ ବନୁ ପଦ୍ମାଳୟା ଆବିର୍ଭୂତା । ୨୦
ଲକ୍ଷେ ନରପତି ବଦନ ନିରେଖି ରହିଁଲେ ରାଜ ଦୁହିତା
ମନଲାଖି ବର ନୟନେ ନ ଦେଖି ଧଇଲେ ମଉନ ମୂର୍ତ୍ତି । ୨୧
ସୁମେଧା ପୁଚ୍ଛିଲେ କହ ସଙ୍ଗାତୁଣୀ ଅଛି କିବା ଏଥେ ବର ?
ରୁକ୍ମିଣୀ କହିଲେ ଏ ସଭାରେ ଜଣେ ମନକୁ ନ ଗଢ଼େ ମୋର । ୨୨
ସ୍ୱୟମ୍ବର ସଭା ମଧ୍ୟରୁ କାହାକୁ ନ କରିବାରୁ ବରଣ
ଜରାସନ୍ଧ ବୋଲେ ସ୍ୱୟମ୍ବର ସଭା ହୋଇଗଲା ଅକାରଣ । ୨୩
ଲକ୍ଷେ ନୃପତିଙ୍କୁ ଘୋର ଅପମାନ ଦିଅନ୍ତେ ରାଜ ତନୟା
ବଳାତ୍କାରେ କନ୍ୟା ବିବାହ କରିଲେ ଅନ୍ୟାୟ ହୋଇବ ନାହିଁ ।୨୪
ଏହା ଚିନ୍ତା କରି ରାଜ ଚକ୍ରବର୍ତ୍ତୀ ବୋଲୁଛନ୍ତି ସଭାସ୍ଥଳେ
ହେ ରୁକ୍ମ ! ଆମର ବାକ୍ୟେ କନ୍ୟା ବିଭା ଦିଅ ରାଜା ଶିଶୁପାଳେ ।୨୫

ରୁକ୍ମିଙ୍କ ଯୋଗ୍ୟ ବର ସେ ଅଟନ୍ତି କର ବିଭା ଆୟୋଜନ
ଜରାସନ୍ଧ କଥା ଶୁଣିକରି ରୁକ୍ମ ସମ୍ମତି କଲେ ପ୍ରଦାନ । ୨୬
ମାତ୍ର ପ୍ରତିବାଦ କରି ସେ ସଭାରେ କହିଲେ ରାଜ ଦୁହିତା
ମୋହ ଯୋଗ୍ୟ ବର ଦେବକୀ କୁମର ଦ୍ୱାରକାଧୀଶ ଶ୍ରୀପତି । ୨୭
ସ୍ୱୟମ୍ବର ସଭା ନିୟମାନୁଯାୟୀ ବରିଅଛି ଛୋବର
ମୋ ଇଚ୍ଛା ବିରୋଧି କାର୍ଯ୍ୟ କରିବାକୁ ଶକତି ଅଛି କାହାର ? ୨୮
ମୋହ ପ୍ରାଣପତି ଜଗତର ପତି ଅଟନ୍ତି ପୁରୁଷୋତ୍ତମ
ତାଙ୍କ ବିନା ଆନ ପୁରୁଷ ବରଣ କରିବାକୁ ନାହିଁ ମନ । ୨୯
କଂସର ଦୌରାତ୍ମ୍ୟ ବିନାଶ କରିଣ ତାରିଲେ ଯାଦବଗଣ
ଗୋମନ୍ତକ ଯୁଦ୍ଧ ତାଙ୍କଠୁ ହାରିଲେ ମଗଧର ନରବଣ । ୩୦
ଗାଲ ମାଧବଙ୍କୁ ନିହତ କରିଲେ ପୁଣ୍ଡ୍ରିକ କଲେ ହତ
କାଳ ଯବନର ଜୀବନ ହରିଲେ ସଙ୍କଟେ ଦେବକୀ ସୁତ । ୩୧
ସାଗର ପୋତିଣ ଗଡ଼ ନିର୍ମାଣିଲେ ଶୁଣା ନ ଥିଲା ଯା କର୍ଣ୍ଣ
ଶଙ୍ଖଚକ୍ରଧାରୀ ଦ୍ୱାରକାଧିପତି ଜାତ ନର ନାରାୟଣ । ୩୨
ମୁହିଁ ତାଙ୍କ ପତ୍ନୀ ସେ ମୋହର ପତି ଏହା ବିଧିର ବିଧାନ
ତାଙ୍କ ସମ୍ମୁଖରେ ଲକ୍ଷେ ମହୀପତି ଯେସନେ ଜ୍ୟୋତିଙ୍ଗଣ । ୩୩
ସିଂହୀ ସିନା ସିଂହ ବରଣ କରଇ ଶୃଗାଳରେ କିସ କାର୍ଯ୍ୟ
ଶ୍ରୀକୃଷ୍ଣଙ୍କୁ ଇଚ୍ଛା ବର କରି ଅଛି ଅନ୍ୟଠାରେ ନାହିଁ କାର୍ଯ୍ୟ । ୩୪
ରାଜ କନ୍ୟା ମୁଖୁ କୃଷ୍ଣର ପ୍ରଶଂସା ଶୁଣି ଜରା କ୍ରୋଧାନ୍ୱିତ
କହିଲା ଦେଖିବି କିପରି ବିବାହ କରିବ ଦେବକୀ ସୁତ ? ୩୫

ଜରାର କଥାକୁ ସମର୍ଥନ କଲେ ଭୀଷ୍ମକ ଜ୍ୟେଷ୍ଠ ନନ୍ଦନ
ମାତ୍ର ପିତାମାତା ପ୍ରତିବାଦ କଲେ ଶୁଣି ରୁକ୍ମି କମ୍ପମାନ । ୩୬

ବନ୍ଧୁ କଂସାସୁର ହତ୍ୟାକାରୀ ପ୍ରତି ଆଗୁଥିଲେ କ୍ରୋଧାନ୍ୱିତ
ଭଗ୍ନୀର ମୁଖରୁ ଶତ୍ରୁର ପ୍ରଶଂସା ଶୁଣି ରାଗେ ପ୍ରଜ୍ୱଳିତ । ୩୭
ଜରା ଭାବିଥିଲା ଶିଶୁପାଳ ସଙ୍ଗେ ରୁକ୍ମିଣୀଙ୍କୁ ବାହା ଦେଇ
ରୁକ୍ମିର ସହିତ ତା ନାତୁଣୀ ବିଭା ନିବାହ କରିବା ପାଇଁ । ୩୮
ତଦ୍ୱାରା ମଗଧ, ବିଦର୍ଭ ଓ ଚେଦି ମଧ୍ୟେ ବିବାହ ସମ୍ବନ୍ଧ
ସ୍ଥାପନ ହୋଇଲେ ସାମରିକ ଦୃଷ୍ଟି କୋଣୁ ହେବ ଲାଭପ୍ରଦ । ୩୯

ଏହି ତିନି ରାଷ୍ଟ୍ର ମିତ୍ର ରାଷ୍ଟ୍ରରୂପେ ହୋଇଗଲେ ଏକତ୍ରିତ
ଯାଦବଙ୍କୁ ଯୁଦ୍ଧେ ଜୟ କରିବାକୁ ପଥ ହୋଇବ ଉନ୍ମୁକ୍ତ । ୪୦
ଚେଦି ଓ ବିଦର୍ଭ ସହିତ ଯାଦବ ମାନଙ୍କ ବନ୍ଧୁତ୍ୱ ଅଛି
ସେହି ବନ୍ଧୁତାରେ ଭଙ୍ଗା ପଡିଗଲେ ଲାଭ ହୋଇପାରେ କିଛି । ୪୧
ଏମନ୍ତ ଚିନ୍ତାନ୍ତ କରି ଜରାସନ୍ଧ ଚେଦି ବିଦର୍ଭ ସହିତ
ବିବାହ ପ୍ରସ୍ତାବେ ରାଜି ହୋଇଗଲେ ତିନିରାଷ୍ଟ୍ର ନରନାଥ । ୪୨
ମାତ୍ର ଦମଘୋଷ ରାଣୀ ଶ୍ରୁତଶ୍ରବା ହେଲେ ନାହିଁ ଏକମତ
ବସୁଦେବଙ୍କର ସେ ଭଗ୍ନୀ ଥିବାରୁ ନ ଇଚ୍ଛନ୍ତି କୃଷ୍ଣାହିତ । ୪୩
ଶିଶୁପାଳ ମାତା ବିଚାର କଲେ କନ୍ୟା ଇଚ୍ଛା ବିରୁଦ୍ଧରେ
ବାଧ୍ୟ ବାଧକରେ ବଧୂ କରିନେଲେ ଶାନ୍ତି ବିଘ୍ନ ହୋଇପାରେ । ୪୪
ବିଶେଷତଃ ଜରାସନ୍ଧ ହିତ ପାଇଁ ତାଙ୍କର ପ୍ରିୟନନ୍ଦନ
କୃଷ୍ଣର ବିପକ୍ଷ ହୋଇ ରହିଥାଉ ନ ଯୋଗାଏ କଥା ମନ । ୪୫
ପତ୍ନୀଙ୍କ କଥାରେ ଏକମତ ଥିଲେ ମଧ୍ୟ ରାଜା ଦମଘୋଷ
ଜରାର ସମ୍ମୁଖେ ପ୍ରତିବାଦ ପାଇଁ ନ ଥିଲା ମନେ ସାହାସ । ୪୬
ପରନ୍ତୁ ମଗଧ ସମ୍ରାଟ କଥାରେ ତାଙ୍କ ପୁତ୍ର ସହମତ
ତେଣୁ ଭୟ କରି ପିତା ଦମଘୋଷ କୂଟେ ମିଳାଇଲେ ହାତ । ୪୭
ଜରା ଭାବି ଅଛି ଶିଶୁପାଳ ସଙ୍ଗେ ରୁକ୍ମିଣୀ ବିବାହ ସମ୍ପନ୍ନ
କରାଇ ପାରିଲେ ଶ୍ରୀକୃଷ୍ଣଙ୍କୁ ହେବ ବାରନ୍ତରେ ଅପମାନ । ୪୮
ମାତ୍ର ରାଜଜେମା ଶିଶୁପାଳେ ବିଭା କରିବାକୁ ମନା କଲେ
ଭାଇ ଭଗ୍ନୀ ମଧ୍ୟେ ଝଗଡା ଲାଗିଲା ପ୍ରଜାଏ କଥା ଜାଣିଲେ । ୪୯
ରାଜ୍ୟରେ ପ୍ରଚାର ହୋଇଲା ଗୁଜବ ସମ୍ରାଟ ନାତୁଣୀ ବିଭା
କରିବାକୁ ରୁକ୍ମି ଆପଣା ଭଗ୍ନୀକୁ ଶିଶୁପାଳେ ଦିଏ ବିଭା । ୫୦
ଜରାସନ୍ଧ ପ୍ରତି ଲୋକଙ୍କ ମନରେ ରହିଥିଲା ଆଗୁ ଘୃଣା
ଏହି କଥା ଶୁଣି ଲୋକ ମୁଖେ ନିନ୍ଦା ଅଧିକନ୍ତୁ ହେଲା ଶୁଣା । ୫୧
ସପକ୍ଷ ବିପକ୍ଷ ଦୁଇପକ୍ଷ ମଧ୍ୟେ ବଢ଼ିଲା ବିରୋଧାଭାସ
ଶିଶୁପାଳ ବର ବରଣ ହୋଇଲେ ବରଯାତ୍ରୀ ମଗଧେଶ । ୫୨
ଭଗ୍ନୀ ଇଚ୍ଛାବିରୁଦ୍ଧରେ ବରପାତ୍ର ଯୋଗାଡ କରନ୍ତେ ଭାଇ
ନିଜ ଇଚ୍ଛାବର ପାଇବା ନିମନ୍ତେ ଚିନ୍ତିତ ରାଜ ତନୟୀ । ୫୩

ସଙ୍ଗାତ ସୁମେଧା ସହିତ ଗୋପନେ ପରାମର୍ଶ କରି ଦୁଇ
ଅଶୀତି ବର୍ଷର ବିପ୍ର ବିଦ୍ୟାଧର ନିଭୃତେ ଡ଼କାଇ ନେଇ । ୫୪
ମନକଥା ତାଙ୍କ ପାଖେ ବ୍ୟକ୍ତ କରି ଶ୍ରୀଫଳ ସହିତ ପତ୍ର
ଲେଖି ପଠାଇଲେ ଦ୍ୱାରକା ନଗରେ ବିପ୍ରଙ୍କୁ କରିଣ ଦୂତ । ୫୫
ରୁକ୍ମିଣୀଙ୍କ ଦୂତ ହୋଇ ବିପ୍ରବର ମନରେ କଲେ ବିଚାର
ଜନମ ମୋହର ସଫଳ ହୋଇଲା ଧନ୍ୟ ମୋର ତାତମାତ । ୫୬
ଭୀଷ୍ମ ରାଜଜେମା ଜଗତ ଜନନୀ ଶ୍ରୀକୃଷ୍ଣ ଜଗତ ତାତ
ତାତମାତଙ୍କର ମିଳନ କରାଇ ହୋଇଯିବି ଶାପମୁକ୍ତ । ୫୭
ମନେ ପଡ଼ିଗଲା ଗୋମାତାଙ୍କ କଥା ଯହିଁ ପାଇଁ ତାଙ୍କ ଜନ୍ମ
ନିର୍ଭୟ ବଚନ ଦେଇ ରୁକ୍ମିଣୀଙ୍କୁ ଚାଲିଗଲେ ମହାତ୍ମନ । ୫୮
ପାଦୁକା ମନ୍ତ୍ରକୁ ସ୍ମରି ହୃଦୟରେ ଦଣ୍ଡିକ ମଧ୍ୟରେ ଯାଇ
ଦ୍ୱାରକା ନଗରେ ପ୍ରବେଶ ହୋଇଲେ ମୁଖେ କୃଷ୍ଣ ନାମ ଗାଇ । ୫୯
ସୁବର୍ଣ୍ଣେ ନିର୍ମିତ ଦିବ୍ୟପୁର ଦେଖି ବହୁତ ପ୍ରଶଂସା କଲେ
କୃଷ୍ଣ ନାମ ଜପି ଚାଲିଯାନ୍ତେ ବିପ୍ର ଦ୍ୱାରପାଳେ ଛାଡ଼ି ଦେଲେ । ୬୦
ଦେଖିଲେ ଏକାନ୍ତ ନଗରେ ବିଜୟ କରିଛନ୍ତି ଯଦୁନାଥ
ରୂପରୁ ଜାଣିଲେ ବାସୁଦେବ କୃଷ୍ଣ ବିଦର୍ଭ କୁମାରୀ ଦୂତ । ୬୧
ବ୍ରାହ୍ମଣେ ଆସନ୍ତେ ଦୂରୁ ଦେଖି ପ୍ରଭୁ ହେଲେ ଅତି ଆନନ୍ଦିତ
ନିକଟେ ମିଳନ୍ତେ ସିଂହାସନ ଛାଡ଼ି ଠିଆ ହେଲେ ଜଗନ୍ନାଥ । ୬୨
ବ୍ରାହ୍ମଣ ଚରଣେ ନମସ୍କାର କରି ବେନି ପାଦ ପଖାଳିଲେ
ଶୁଷ୍କ ବସନରେ ପାଦ ପୋଛି ଦେଇ ରତ୍ନ ଖଟେ ବସାଇଲେ । ୬୩
ଶ୍ରୀକରେ ଆଲଟ ଧରିଣ ବିଞ୍ଚିଲେ ଆଶ୍ୱସ୍ତ ହେଲେ ବ୍ରାହ୍ମଣ
ସମାଦର କରି ଭୁଞ୍ଜାଇଲେ ବିପ୍ରେ ସୁବର୍ଣ୍ଣ ଥାଳିରେ ଅନ୍ନ । ୬୪
ଆକଣ୍ଠ ଭୋଜନ ଶେଷରେ ବ୍ରାହ୍ମଣ ସୁବାସ ତାମ୍ବୁଳ ଖାଇ
ରତ୍ନ ଖଟେ ଦଣ୍ଡେ ବିଶ୍ରାମ କରିଲେ କ୍ଲାନ୍ତି ବିନୋଦନ ପାଇଁ । ୬୫
ଆଶ୍ୱସ୍ତ ହୋଇଣ ବସନ୍ତେ ବ୍ରାହ୍ମଣ ପୁଚ୍ଛା କଲେ ନାରାୟଣ
କିମ୍ପା ଆଗମନ କଲ ବିପ୍ରବର ପ୍ରକାଶ କର କାରଣ ? ୬୬
ବ୍ରାହ୍ମଣ ବୋଇଲେ ସର୍ବ ଅନ୍ତର୍ଯ୍ୟାମୀ ଅନ୍ତର କଥାକୁ ଜାଣି
ଯଦି ପଚାରିଲ ଖୋଲି କହୁଅଛି ଶୁଣ ଆହେ ପଦ୍ମପାଣି । ୬୭

କୁଣ୍ଡୀନଗ୍ର ନୃପ ଭୀଷ୍ମକ ରାଜନ ସାମବେଦୀ ବିପ୍ରବଂଶ
ଜାତିରେ ବ୍ରାହ୍ମଣ ବୃତ୍ତିରେ କ୍ଷତ୍ରିୟ କ୍ଷତ୍ରିଗଣେ ଅଗ୍ରଗଣ୍ୟ । ୬୮
ପାଞ୍ଚ ପୁତ୍ର ଏକ କନ୍ୟା ତାହାଙ୍କର ଅଲଅଲ ରାଜଜେମା
ସର୍ବ ସୁଲକ୍ଷଣୀ ଭୀଷ୍ମକ ଦୁଲଣୀ ରୂପେ ଗୁଣେ ଅନୁପମା । ୬୯
ପଦ୍ମିନୀ ନାୟିକା ସେ ନବ ବାଳିକା ହାତେ ପଦ୍ମ, ପାଦେ ପଦ୍ମ
ପ୍ରତ୍ୟକ୍ଷରେ ପଦ୍ମା ଜାତ ହୋଇଛନ୍ତି ପଦ୍ମ ସମ ନେତ୍ର ଯୁଗ୍ମ । ୭୦
କନ୍ୟା ପାଇଁ ସ୍ୱୟମ୍ବର କଲେ ପିତା ଆସିଲେ ଲକ୍ଷେ ରାଜନ
ମାତ୍ର କାହାପ୍ରତି ନ ବଳିଲା ମନ ନ କଲେ କାରେ ବରଣ । ୭୧
ସେଠି ସ୍ୱୟମ୍ବର ସଭାର ନିୟମ ଥିଲାକ "ଇଚ୍ଛା ବରଣ"
ଆପଣଙ୍କୁ ବର ବରି ରମାବର ନ କଲା ଆନେ ବରଣ । ୭୨
ଏ କଥା ସଭାରେ ପ୍ରକାଶ କରନ୍ତେ କ୍ରୋଧ କରି ଦୁଷ୍ଟ ନୃପେ
ନିଷ୍ପତ୍ତି କରିଲେ ବିଭା କରାଇବେ ବଳେ ଶିଶୁପାଳ ଭୂପେ । ୭୩
ଜର ଭାବ ଅଛୁ ଶିଶୁପାଳ କରେ ରୁକ୍ମିଣୀ କରି ଅର୍ପଣ
ପ୍ରଭୁ ପ୍ରିୟା ଆନେ ପ୍ରଦାନ କରିଣ ଦେବ ଘୋର ଅପମାନ । ୭୪
ଜେମାଙ୍କର ଜ୍ୟେଷ୍ଠ ସୋଦର ରୁକ୍ମଣ ବଳିଛନ୍ତି ଶିଶୁପାଳ
ମାତ୍ର ପିତାମାତା କନ୍ୟା ପରିବାର ବିରୋଧି ପ୍ରଜା ସକଳ । ୭୫
କନ୍ୟା ଇଚ୍ଛା ବିରୁଦ୍ଧରେ ବିଭାଘର କରିବାରୁ ଆୟୋଜନ
ଭାଇ ଭଉଣୀଙ୍କ ମଧ୍ୟରେ କଳହ ଲାଗିଅଛି ଅନୁକ୍ଷଣ । ୭୬

ତୁମ୍ଭଠାରେ ଆତ୍ମା ସମର୍ପି ରୁକ୍ମିଣୀ ପଠାଇ ଅଛନ୍ତି ମୋତେ
ତୁମ୍ଭ ଅନୁରୂପ କନ୍ୟା ସେ ଅଟନ୍ତି ହେନା କର ଯଦୁନାଥେ । ୭୭
ଏଥିପାଇଁ ଦୂତ କରି ପେଷିଛନ୍ତି ଶ୍ରୀଫଳ ସହିତ ପତ୍ର
ଦେଇ ରାଜଜେମା ପଠାଇ ଅଛନ୍ତି ହେନା କର ଜଗନ୍ନାଥ । ୭୮
ଏହା କହି ଗଣ୍ଠି ଫେଡି ବିପ୍ରବର ଶ୍ରୀ କରେ କଲେ ପ୍ରଦାନ
ଆନନ୍ଦରେ ପତ୍ର ନେଇ ମୁଦ ଭାଙ୍ଗି ସହାସ୍ୟେ କଲେ ପଠନ । ୭୯
"ପ୍ରଥମେ ପୟରେ ଭୂମିଷ୍ଠ ପ୍ରଣାମ କରୁଅଛି ଶତବାର
ପ୍ରଭୁ ଆଜ୍ଞା କରି ପତ୍ର ଲେଖୁ ଅଛି ହେନାକର ଏ ଦାସୀର । ୮୦
ଅଚିନ୍ତ୍ୟ ମହିମା ଅଟେ ପ୍ରଭୁଙ୍କର ଶରଣ ପଞ୍ଜର ଜାଣି
ଏ ଅଭାଗିନୀକୁ ଚରଣେ ଆଶ୍ରୟ ଦିଅନ୍ତୁ ହେ ପଦ୍ମପାଣି । ୮୧

ବିଷମ ସଙ୍କଟ ପଡ଼ିଅଛି ମୋତେ ଏଥିରୁ ଉଦ୍ଧାର କର
ଚରଣ ତଳରେ ଦାସୀ କରି ରଖ ନ କରି ପ୍ରିୟାଙ୍କୁ ପର । ୮୨
ଦୁରାତ୍ମା ପାପିଷ୍ଠ ମୋ ଭାଇ ରୁକ୍ମଣ ଶିଶୁପାଳକୁ ବରିଣ
ମୋ ଇଚ୍ଛା ବିରୁଦ୍ଧେ ବର ବରି ଆଣି କରୁଛି ବଳେ ପ୍ରଦାନ । ୮୩
ବିଭା ଆୟୋଜନ ସର୍ବ ସମାପନ ଏ ବେଳେ ଉଦ୍ଧାର କର
ନୋହିଲେ ଜୀବନ ହାରିବି ହେ ପ୍ରଭୁ ଦୋଷ ହୋଇବ ତୁମ୍ଭର । ୮୪
ପ୍ରିୟବଞ୍ଚି ଭାର୍ଯ୍ୟା ପତି ଅଭିଳାଷୀ ରକ୍ଷା କରେ ପତି ଆସି
ସିଂହ ଘରଣୀକି ଶୃଗାଳ ଛୁଇଁଲେ ଲଜ୍ଜା ନ ହେବ କହସି ? ୮୫
ନ ଆସି ଯଦ୍ୟପି କରିବ ନିରାଶ ନେବ ପତ୍ନୀ ହତ୍ୟା ଦୋଷ
ଏହା ମୋର ଶେଷ କଥା ଜଣାଇ ମୁଁ ପତ୍ର ଲେଖା କଲି ଶେଷ " ୮୬
ଅତ୍ୟନ୍ତ ବିନମ୍ର ଭାଷାରେ ଲିଖିତ ପତ୍ର କରିଣ ପଠନ
ଯତନେ ପତ୍ରକୁ ସାଇତି ରଖିଣ କହିଲେ ବ୍ରାହ୍ମଣ ଶୁଣ । ୮୭
ଭୀଷ୍ମ ରାଜଜେମା ଆମ୍ଭ ପାଟ ରାଣୀ ଆଣିବି ତାହାକୁ ହରି
ପତ୍ର ଲେଖି ଯେଣୁ ଡ଼କାଇଛି ବାମା ଅନ୍ୟଥା ନ ପାରେ କରି । ୮୮
ସର୍ବେ ଦେଖୁଥିବେ ସଭାର ମଧ୍ୟରୁ ଆଣିବି ମୁଁ ବଳେ ଧରି
କାଳେ କାଳେ ଏହି କଥା ରହିଥିବ ଘୋଷୁଥିବେ ନରନାରୀ । ୮୯
ଏହା କହି ଆଜ୍ଞା ଦେଲେ ଯଦୁନାଥ ଦାରୁକ ଆଣିଲେ ରଥ
ବିପ୍ରସଙ୍ଗେ ନନ୍ଦଘୋଷ ରଥେ ବସି ଯାତ୍ରା କଲେ ଯଦୁନାଥ । ୯୦
ପୂର୍ବ ଦିଗେ ରଥ ଗତି କରି ଗଲା ବିପ୍ର ବିଚାରନ୍ତି ମୁହିଁ
ଗୋମାତା ଶାପରୁ ମୁକ୍ତ ହୋଇଗଲା ଆଜି ମୋ ଜନମ ନାହିଁ । ୯୧
କୁଣ୍ଡଳୀ ପର୍ବତ ତଳେ କୃଷ୍ଣବେଣୀ ନଦୀ ତଟରେ ରହୁବର
ରଖାଇ ବିପ୍ରକୁ ବିନୟେ ବୋଇଲେ ଚଳିଯାଅ ବିପ୍ରବର । ୯୨
ରୁକ୍ମିଣୀଙ୍କୁ କହ ଆସିଲେ ଶ୍ରୀକୃଷ୍ଣ ତୁମ୍ଭଙ୍କୁ ଲେଉଡ଼ିବା ପାଇଁ
ଏ ଜୟ ମଙ୍ଗଳ ମାଳା ନେଇ ଦେବ ଜେମାଙ୍କ ବିଶ୍ୱାସ ପାଇଁ । ୯୩
ଆମ୍ଭ ଦତ୍ତ ବୋଲି କହିବ ତାହାଙ୍କୁ ବେଳ ସାତ ଘଡ଼ି ଠାରେ
କାମାକ୍ଷୀ ମନ୍ଦିରେ ସାକ୍ଷାତ ହୋଇବ ମିଳିବେ ଜେମା ସେଠାରେ । ୯୪
ଏହା କହି ପ୍ରଭୁ ବିପ୍ରେ କୋଳାଗତ କଲେ ଅତି ସ୍ନେହଭରେ
ପ୍ରଭୁ ଅଙ୍ଗ ସ୍ପର୍ଶ ପାଇ ବିପ୍ରବର ଚଳିଲେ ଜେମା ନଗରେ । ୯୫

ବ୍ରାହ୍ମଣଙ୍କଠାରୁ ସମ୍ବାଦ ସଙ୍କେତ ପାଇ ଜେମା ଆନନ୍ଦିତ
ବିପ୍ରଙ୍କ ଚରଣେ ପଡ଼ି ସେ କହିଲେ ହେଲ ଆମ୍ଭ ଧର୍ମ ତାତ ।୯୬
ଧର୍ମ ତାତ ତଥା ଗୁରୁ ହେଲ ମୋର ସୁଝି ନ ପାରିବି ଋଣ
କଲ୍ୟାଣ କରଣ କହିଲେ ବ୍ରାହ୍ମଣ ମନୋବାଞ୍ଛା ହେଉ ପୂର୍ଣ୍ଣ ।୯୭
କାର୍ଯ୍ୟସିଦ୍ଧି ଅନ୍ତେ ଦେବ ମୋ ଦକ୍ଷିଣା ଧନେ ନାହିଁ ପ୍ରୟୋଜନ
ଲୋକ ତାତମାତ ମିଳନ ଆନନ୍ଦ ତାହାହିଁ ମୋ ପାରିଶ୍ରମ ।୯୮
ଯେଉଁ ପରି ସ୍ନେହ ଶ୍ରଦ୍ଧା କଲେ ପ୍ରଭୁ ତାହା ଭୁଲି ନ ପାରଇ
ତାହାଠାରୁ ବେଶୀ ତୁମ୍ଭ ଶ୍ରଦ୍ଧା ଭକ୍ତି ଅମୂଲ୍ୟ ଧନ ଅଟଇ ।୯୯
ଏହା କହି ବିପ୍ର ବିଦାୟ ହେଲେ କୃଷ୍ଣ ନାମ ଜପ କରି
ଦେବୀ ପୂଜିବାକୁ ଯିବାକୁ ପ୍ରସ୍ତୁତ ହୋଇଲେ ରାଜ କୁମାରୀ ।୧୦୦
ଏମନ୍ତ ସମୟେ ବିବାହ ମଣ୍ଡପ ପାଶେ ମିଳିଲେ ଶ୍ରୀକୃଷ୍ଣ
କୃଷ୍ଣ ଆଗମନ ଦେଖି ଜରାସନ୍ଧ ରୁକ୍ମଣେ ପୁଚ୍ଛିଲେ ପ୍ରଶ୍ନ ।୧୦୧
ଭଗ୍ନୀର ନିମନ୍ତେ ବଳିଛକ କୃଷ୍ଣ ସତ୍ୟ କହ ଏ ସମ୍ବାରେ
ରୁକ୍ମଣ କହିଲେ ବରଣ କରିବ ଆସିଛି ନିଜ ଇଚ୍ଛାରେ ।୧୦୨
ବୋଲେ ଦୁଷ୍ଟ ଶାଲ୍ୱ ଏହା ଆଗମନେ ସନ୍ଧି ହେଲା ଅପବଷ
ଶିଶୁପାଳ ବୋଲେ ଧିକ୍ ଯା ଜୀବନ ଅବଚଣେ ବରପାଷ ।୧୦୩
ଆଉ ଯେତେ ସବୁ ଦୁଷ୍ଟ ରାଜା ଥିଲେ ଉଚ୍ଚେ କଲେ ଉପହାସ
ରଥର ଉପରେ ବିଜେ ବାସୁଦେବ ମୁଖ ହସେ ହସହସ ।୧୦୪
କୌଶିକ କହିଲେ ଅଜ୍ଞାନ ପାମର ପ୍ରକୃତି ତୁମର ମନ୍ଦ
ଅନ୍ୟମିତ୍ରେ ବିଷ୍ଣୁ ନିନ୍ଦା କରୁଅଛ ଭିଆଇ ଦେବାକୁ ଦ୍ୱନ୍ଦ ।୧୦୫
ଶ୍ରୀକୃଷ୍ଣଙ୍କୁ ଦେଖି ଭକ୍ତ ନୃପେ ଠିଆ ହେଲେ ଶିରେ ଦେଇ କର
ଠାକୁର ରାଜାଙ୍କ ସମ୍ମୁଖେ ଯେପରି ଠିଆ ସାମନ୍ତ ନୃବର ।୧୦୬
ଶ୍ରୀମୁଖକୁ ଚାହିଁ ସ୍ତୁତି ବାକ୍ୟ ଗାଇ ବୋଲୁଥାନ୍ତି ତ୍ରାହିତ୍ରାହି
ଆଶ୍ରିତ ନୃପଙ୍କୁ ଅଭୟ ପ୍ରଦାନ କରିଲେ ଦ୍ୱାରକା ସାଇଁ ।୧୦୭
କ୍ରମେ ସାତ ଘଡ଼ି ଆସି ହେଲା ବେଳ ଶ୍ରୀଅଙ୍ଗୁ ଝରଇ ଝାଳ
ଦୁଷ୍ଟ ରାଜାଙ୍କର ଟିଟ୍କାର ବଚନ ଶୁଣି ପ୍ରଭୁ କୋପାନଳ ।୧୦୮
ବିଚାରିଲେ ମନେ ବଳେ ହରି ନେବା କ୍ଷତ୍ରିୟର ପଉରୁଷ
ସ୍ୱୟମ୍ବର କନ୍ୟା ହରଣ କରିଲେ ତାହାଙ୍କ ନ ଲାଗେ ଦୋଷ ।୧୦୯

ସଭା ମଧ୍ୟେ ରୁକ୍ମି ବୋଇଲେ ଶ୍ରୀକୃଷ୍ଣ ମୂର୍ଖ । ଅଭିଷେକ ଶୁଣ
ଅକାରଣେ ବରଯାତ୍ରୀ ହୋଇଅଛ କନ୍ୟାର ନ ଥାଏ ମନ । ୧୧୦
କନ୍ୟା ଇଚ୍ଛା ବିରୁଦ୍ଧରେ ବିଭାଘର ନୁହଇ କ୍ଷତ୍ରିୟ ଧର୍ମ
ନାରୀର ସମ୍ମାନ ସ୍ୱାଧୀନତା ରକ୍ଷା କରିବା କ୍ଷତ୍ରିୟ କର୍ମ । ୧୧୧
ସ୍ୱୟମ୍ବର ସଭା ମଧ୍ୟେ ସ୍ୱୟମ୍ବରା ତୁମ୍ଭଙ୍କୁ ଉପେକ୍ଷା କଲେ
ନିର୍ଲଜ୍ଜ ସମାନ ବର, ବରଯାତ୍ରୀ ହୋଇଛ କାହାର ବୋଲେ ?୧୧୨
କନ୍ୟା ମୋତେ ବର ବରଣ କରିଛି ତେଣୁ ଆସି ଅଛି ମୂର୍ଖ
ମୋ ବରିତ କନ୍ୟା ବଳେ ହରି ନେବି ରାଜଧର୍ମ ଅନୁଯାୟୀ । ୧୧୩
ଯଦ୍ୟପି କାହାର ଦେହେ ବଳ ଅଛି ପ୍ରତିରୋଧ କରୁ ସେହି
ପ୍ରତିଶୋଧ ପରିପୂର୍ଣ ପ୍ରତି ଦଣ୍ଡ ଦେବା ମାର୍ଗ ଜାଣିଛଇ । ୧୧୪
ଏହା କହି କୃଷ୍ଣ ଦର୍ପେ ରଥ ବାହି ମିଳିଲେ ଦେବୀ ମନ୍ଦିରେ
ବଳାତ୍କାରେ କନ୍ୟା ରଥରେ ବସାଇ ଚଳିଲେ ଶୂନ୍ୟ ମାର୍ଗରେ । ୧୧୫
ନେଲା ନେଲା ବୋଲି ହୁରି ପଡ଼ିଗଲା ନାରୀଏ କରିଲେ ପାଟି
ଚଟକା ହୋଇଣ ରୁକ୍ମି ରହିଛନ୍ତି ରଥ ଗଲା ଶୂନ୍ୟେ ଉଠି । ୧୧୬
କ୍ରୋଧରେ ରୁକ୍ମିଣ ଧନୁଶର ଧରି ନନ୍ଦଘୋଷ ଆରୋହିଲେ
କୃଷ୍ଣ ସଙ୍ଗେ ଯୁଦ୍ଧ କରି ହାରିଯାଇ ରଥ ଖମ୍ବେ ବନ୍ଧା ହେଲେ ।୧୧୭
ଶାଳକକୁ ରଥେ ବାନ୍ଧି ଭଗ୍ନୀପତି ଚଳିଲେ ଦ୍ୱାରକାପୁର
ଭ୍ରାତା ବଳରାମ ଫେଡ଼ିଲେ ବନ୍ଧନ ପଳାଇଲା ଦୁରାଚାର । ୧୧୮
ଦ୍ୱାରକାଧିପତି କୃଷ୍ଣ ଭଗବାନ ବିଦର୍ଭ ରାଜ ନନ୍ଦିନୀ
ରୁକ୍ମିଣୀଙ୍କୁ ବଳେ ହରଣ କରିଣ ନଅଲେ ଶାରଙ୍ଗପାଣି । ୧୧୯
ଶିଶୁପାଳ ଗର୍ବ ଖର୍ବ ହୋଇଗଲା ଜରାସନ୍ଧ ପରାହତ
ତାହାର ପ୍ରଭାବ ହ୍ରାସ ହୋଇଗଲା ନ ମାନିଲେ ପୂର୍ବବତ୍ । ୧୨୦
ତା ସାମ୍ରାଜ୍ୟବାଦୀ ନୀତିର ଉପରେ କଠିନ କୁଠାରାଘାତ
କରି ରାମକୃଷ୍ଣ ଭାରତେ ପ୍ରତିଷ୍ଠା କଲେ ଧର୍ମ ରାଜତନ୍ତ୍ର । ୧୨୧
ହସ୍ତିନାକୁ କେନ୍ଦ୍ର କରି ଘୂରୁଅଛି ଭାରତର ରାଜନୀତି
ଭାରତ ସମ୍ରାଟ ସ୍ୱପ୍ନ ଦେଖୁଛନ୍ତି ଜରାସନ୍ଧ, କୁରୁପତି । ୧୨୨
ଏ ଦୁଷ୍ଟ ଶକ୍ତିଙ୍କ ବିରୋଧ କରନ୍ତି ଦ୍ୱାରକାଧିପତି କୃଷ୍ଣ
ସ୍ୱୟମ୍ବରସ୍ଥଳୁ ରୁକ୍ମିଣୀ ହରଣ କରି କଲେ ଦର୍ପଚୂର୍ଣ୍ଣ । ୧୨୩

ପହଣ୍ଡି ମାଣାଇଁ ସହିତ ଅକ୍ରୂର ଯେନ ଗଲେ ଅନ୍ତପୁରେ
ପିତା, ମାତା, ଭ୍ରାତା, ଅଜା, ଆଈ ପାଦେ ପ୍ରଣମିଲେ ଭକ୍ତିଭରେ ୧୨୪

ଦ୍ୱାରକା ନଗରେ ବିବାହ ଉତ୍ସବ କରାଇଲେ ଉଗ୍ରସେନ
ବିଧି ବିଧାନରେ ଭୀଷ୍ମକ ରାଜନ କଲେ ରତ୍ନ କନ୍ୟାଦାନ । ୧୨୫

ଦ୍ୱାରାବତୀପୁର ସୁନ୍ଦର ଦିଶିଲା ହାତକୁ ହେଲେ ଦିହାତ
ଲକ୍ଷ୍ମୀ ନାରାୟଣ ମଧୁର ମିଳନ ବୃନ୍ଦାଦାସ ଗାଏ ଗୀତ । ୧୨୬

ଶତେ ସପ୍ତ ବିଂଶ ପଦେ ଅଧ୍ୟା ଶେଷ ସୁଜନେ କର ଶ୍ରବଣ
କୃଷ୍ଣାମାତାକାନ୍ତ କୃପା କରିବାରୁ ଏ ମହାକାବ୍ୟ ସୃଜନ । ୧୨୭

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ରୁକ୍ମିଣୀ ବିବାହ ବର୍ଣ୍ଣନେ
ନାମ ନବମ ଅଧ୍ୟାୟ ସମ୍ପୂର୍ଣ୍ଣ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

**ବୋଲି —**

ଜୟ ଜୟ ଜଗନ୍ନାଥ ଜଗତ କାରଣ
ଜୟ ଜୟ ଜଗନ୍ନାଥ ଜ୍ୟୋତି ନିରଞ୍ଜନ ।

ଜୟ ଜୟ ଜଗନ୍ନାଥ ଜଗତ ଜୀବନ
ଜୟ ଜୟ ଜଗନ୍ନାଥ ଜାମଲା ଭଞ୍ଜନ ।

ଜୟ ଜୟ ଜଗନ୍ନାଥ ଜଳଜାବିଳାସ
ଜୟ ଜୟ ଜଗନ୍ନାଥ ଯୋଗୀ ଜନଋଣ ।
ଜୟ ଜୟ ଜଗନ୍ନାଥ ନୀଳଗିରି ବାସୀ
ଜୟ ଜୟ ଜଗନ୍ନାଥ ଜ୍ୟୋତି ବ୍ରହ୍ମରାଶି ।
ଜୟ ଜୟ ଜଗନ୍ନାଥ ଚତୁର୍ଦ୍ଧା ମୂରତି
ବୃନ୍ଦାଦାସ ଭଜୁଅଛି ବସି ଦିନରାତି ।

# ଦଶମ ଅଧ୍ୟାୟ

## ପାଣ୍ଡବ ମାନଙ୍କ ବନ ଭ୍ରମଣ, ପୁତ୍ରଦାନ ଓ ବକାସୁରବଧ

ରାଗ — ଦକ୍ଷିଣ କାମୋଦୀ

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ । କର ସୁଜ୍ଞଜନେ ଦେଇ ମନପ୍ରାଣ
ଗହନ କାନନେ ପାଣ୍ଡବେ ଭ୍ରମନ୍ତି । ଦେବଙ୍କର ହିତେ ଦୁଃଖ ସହୁଛନ୍ତି ।୧
ବୁଲୁ ବୁଲୁ ପ୍ରବେଶିଲେ ମଧୁବନ । ମଧୁର ଫଳ ଭୋଜନେ ଆନନ୍ଦିତ ମନ
ସେ ବନ ରାଜନ କନ୍ଧର ଅସୁର । ଭେଟ ପାଇଗଲେ ପବନ କୁମର ।୨
ଭୀମ ସଙ୍ଗେ ହେଲା ଭୀଷଣ ସମର । ମାଇଲେ କନ୍ଧର କୋଇନ୍ତା କୁମର
ପଞ୍ଚଦଶ ଦିନ ସେ ବନେ ରହି । ଚଳିଗଲେ ଅନ୍ୟ ବନେ ପାଞ୍ଚ ଭାଇ ।୩
ପାରଣ କେଶରୀ ନଦୀ ତୀର ଦେଶେ । ହିଡମ୍ବକ ନାମେ ବନ ତହିଁ ବସେ
ସେ ବନ ଈଶ୍ୱର ହିଡ଼ମ୍ବ ଅସୁର । ମଲା ଭୀମ ସଙ୍ଗେ କରଣ ସମର ।୪
ହିଡ଼ମ୍ବକ ଭଗ୍ନୀ ହିଡ଼ମ୍ବା ଅସୁରୀ । ହିଡ଼ମ୍ବକ ବନେ ହେଲା ଅଧିଶ୍ୱରୀ
ବିଭାକଲେ ତାକୁ ପବନ ନନ୍ଦନ । ଘଟୋତ୍କଚ ନାମେ ଜନ୍ମିଲା ନନ୍ଦନ ।୫
ମାତା ଭ୍ରାତା ସଙ୍ଗେ ଧର୍ମଙ୍କ ନନ୍ଦନ । ବାସ କଲେ ସେହି ବନେ କଛୁଦିନ
ସେ ବନେ ପୁତ୍ରକୁ ନୃପତି କରାଇ । ଚଳିଗଲେ ଅନ୍ୟ ବନେ ପାଞ୍ଚଭାଇ ।୬
ଗୁପ୍ତ ବନବାସ କରୁଛନ୍ତି ସୁତେ । ରହିଛନ୍ତି ମାତା ପୁତ୍ରଙ୍କ ସଙ୍ଗତେ
କାନନରେ ଭ୍ରମି କଉଣପ ମାରି । ଶାନ୍ତ କଲେ ପୃଥ୍ୱୀ ବହୁ କ୍ଳେଶ କରି ।୭
ବନ ପଥ ତେଜି ଜନ ପଦେ ଗଲେ । ବିପ୍ର ବେଶେ ବୁଲି ଭିକ୍ଷା ବୃତ୍ତି କଲେ
ଶିବପୁର ବାସୀ ବିପ୍ର ବିଷ୍ଣୁ କର । ତା ଦ୍ୱାରେ ମିଳିଲେ ଯାଇଣ ସତ୍ୱର ।୮
ଭିକ୍ଷାଂ ଦେହି ଡ଼ାକ ଶ୍ରବଣେ ବ୍ରାହ୍ମଣୀ । ଭିକ୍ଷା ଧରି ପାଶେ ମିଳିଲେ ତକ୍ଷଣି
ଦେବ ଦେବୀ ପ୍ରାୟ ଦେଖି ଷଡ଼ ମୂର୍ତ୍ତି । ପତିପତ୍ନୀ କଲେ ଭକ୍ତିରେ ପ୍ରଣତି ।୯
କହିଲେ କୋଇନ୍ତା କଲ୍ୟାଣ କରିଣ । ମୋ ପୁତ୍ର ପ୍ରାୟ ଲଭ ପାଞ୍ଚ ନନ୍ଦନ
ଦେବୀ ଆଶିର୍ବାଦ ବାକ୍ୟ ଶୁଣି କରି । କହିଲେ ସୁଭାଗ୍ୟ ଉଦିତ ଆମ୍ଭରି ।୧୦
ଆମ୍ଭ ଦୁଃଖ ଦେଖି ବିଜେ କଲ ମାତ । ପବିତ୍ର ହୋଇଲା ଆମ୍ଭର ଏ ନେତ୍ର
ଅପୁତ୍ରିକ ଆମ୍ଭେ ନାହିଁତ ନନ୍ଦନ । ନ କରନ୍ତି ଲୋକେ ବଦନ ଦର୍ଶନ ।୧୧

ପତିତ ହୋଇ ମୁଁ ପାଖକେ ପଡ଼ିଛି । କୃଷ୍ଣ ନାମ ଗୋଟି ମୁଖେ ଘୋଷୁଅଛି
ଅପୂର୍ବିଙ୍କେ ପୂର୍ବ ଯାତ ଦେଲ ମାତ । ବଢ଼ିଲ ଧର୍ମର ସୁଖ୍ୟାତି ଜଗତ ।୧୨
ପୂର୍ବଯାତ ଯାଏଁ ରହିବ ଗୃହରେ । ବିନୟେ ନିବେଦନ କରେ ପଦୁରେ
କହିଲେ ରହିବ ତୁମ୍ଭର ଗୃହରେ । ମାତ୍ର ଭିକ୍ଷା ମାଗି ବଞ୍ଚିବେ କୁମରେ ।୧୩
ଆମ୍ଭେ ଥିବା କଥା ନ କର ପ୍ରକଟ । ରଖିବ ସର୍ବଦା ଅନ୍ତରେ ଗୁପତ
ବ୍ରାହ୍ମଣଙ୍କୁ ସତ୍ୟ କରାଇ ଜନନୀ । ରହିଲେ ବ୍ରାହ୍ମଣ ଘରେ ପୂର୍ବ ଘେନି ।୧୪
ଦିବସ ସମୟେ ଗହନ କାନନେ । ରହନ୍ତି ଗୋପନେ ଝରଜଳ ପାନେ
ଭିକ୍ଷା ମାଗନ୍ତି ନଗ୍ରେ ସଞ୍ଜ ତ୍ରିହରେ । ପାଞ୍ଚ ଜଣ ବୁଲି ପାଞ୍ଚ ପାଞ୍ଚ ଘରେ ।୧୫
ସଭିଙ୍କ ତଣ୍ଡୁଳ ମିଶାଇ ଦେଇଣ । ଜନନୀ କରନ୍ତି ଶ୍ରଦ୍ଧାରେ ରନ୍ଧନ
ପାଞ୍ଚ ଜଣ ଅଧା କରନ୍ତି ଭୋଜନ । ଅର୍ଦ୍ଧେକ ଭୋଜନ କରେ ଭୀମସେନ ।୧୬
ଅଧା ପେଟେ ଖାଇ ନ ମାଡଇ ନିଦ । ଛଟପଟ ହୁଏ ମନରେ ବିଷାଦ
ବିଚ୍ଛୁରଇ ବସି ପବନ ନନ୍ଦନ । କ୍ଷତ୍ରିୟ ପକ୍ଷରେ ଭିକ୍ଷା ଅପମାନ ।୧୭
ବିଚ୍ଛୁରେ ସେ ଭିକ୍ଷା ମାଗିବତ ନାହିଁ । ନ ଗଲ ସେ ଦିନୁ ଆଉ ଭିକ୍ଷା ପାଇଁ
ଦିବସ ରଜନୀ ରହିଲ ସେ ଶୋଇ । ବିଦ୍ରୋହୀ ମନ ତାର ଶାନ୍ତ ନୁହଇ ।୧୮
ଶୁଣିଲ ସେ ନଗ୍ରେ ଚଣ୍ଡାଳ ନୃପତି । ଶାସନ ନାମରେ କରଇ ଅନୀତି
ରାତ୍ରି କାଳେ ତାକୁ ନିଧନ କରିଣ । ରହିଲ ନଗ୍ରରେ ନୃପତି ହୋଇଣ ।୧୯
ରାଜଭୋଗ ପାଇ ସୁଖରେ ରହିଲ । ପ୍ରାସାଦ ଭିତରୁ ବାହାର ନ ହେଲ
ମାତ୍ର ଚିହ୍ନା ପଡ଼ିଯିବା ଆଶଙ୍କାରେ । ରାଜ୍ୟଭାର ଦେଇ ବିଷ୍ଣୁ ବିପ୍ରକରେ ।୨୦
ଚଳିଗଲେ ପୁଣି ରଜନୀ ଅର୍ଦ୍ଧରେ । ନ ପାଇଲେ ଭେଦ କେହି ସେ ନଗ୍ରରେ
ପାଣ୍ଡବ କୃପାରେ ବିଷ୍ଣୁ କର ବିପ୍ର । ଶିବପୁର ନଗ୍ରେ ବୋଲାଇଲେ ଭୂପ ।୨୧
କାଳେ ପାଞ୍ଚ ପୁତ୍ର ଜନମ ହୋଇଲେ । ଅପୁତ୍ରିକ ଦୋଷୁ ଉଦ୍ଧାର ପାଇଲେ
ମହତ ଦର୍ଶନେ ଦୁରିତ ଖଣ୍ଡନ । ପୁତ୍ର ପ୍ରାପ୍ତି ସଙ୍ଗେ ପ୍ରାପ୍ତି ଧନମାନ୍ୟ ।୨୨
ମହତ ଆଶ୍ରୟେ ଦୁର୍ଗତି ବିନାଶ । ହୁଏ ବୋଲି ହେଲ ମନରେ ବିଶ୍ୱାସ
ବହୁଜନପଦ ଅତିକ୍ରମ କଲେ । ଏକ ଚକ୍ରା ନଗ୍ରେ ଯାଇଁଣ ମିଳିଲେ ।୨୩
ମିଳିଲେ ବିସରେ ଦେବ ଶର୍ମା ଘରେ । ଗୋପନେ ଆଶ୍ରୟ ନେଲେ ସେହିଠାର
ପୂର୍ବ ଭଳି ଭିକ୍ଷା ମାଗିବାକୁ ଯାନ୍ତି । ନ ଯାଇଣ ଗୃହେ ରହଇ ମାରୁତି ।୨୪
କିଛି ଦିନ ଅନ୍ତେ ଅସୁରର ପାଳି । ପଡନ୍ତେ ବ୍ରାହ୍ମଣୀ ଗ୍ରୁଡ଼ିଲ ବୋବାଳି
ପଚାରିଲେ ମାତା କେବଣ କାରଣ । ରୋଦନ କରୁଛ ବିକଳ ମିଶିଣ ।୨୫

ବ୍ରାହ୍ମଣ କହିଲେ ଦୁଃସହ ବିପତ୍ତି । ବକାସୁର ଆମ ନଗର ନୃପତି
ଦୁର୍ଦ୍ଦାନ୍ତ ଅସୁରକୁ ଭୟ କରିଣ । ପାଳି କରି ଲୋକେ ଦିଅନ୍ତି ଭୋଜନ ।୨୬
ତେତିଶ ବରଷ ଦୁଇମାସ ବିଂଶ । ଦିବସେ ପଡ଼ଇ ପାଳିଏ ଅବଶ୍ୟ
ଦୁଇଗାଡ଼ି ଖାଦ୍ୟ ଦିହଳ ବଳଦ । ନରବଳି ଏକ ଅସୁରର ଖାଦ୍ୟ ।୨୭
ଏତକ ଯୋଗାଡ଼ ଅସୁର ଆହାର । କାଲି ମୋହର ପାଳି ପଡ଼ିବ ସତ୍ୱର
ସକଳ ପଦାର୍ଥ ଯୋଗାଡ଼ କରିଛୁ । ନରବଳି ପାଇଁ କ୍ରନ୍ଦନ କରୁଛୁ ।୨୮
ପୁଅ ମୋ ଗୋଟିଏ ଝିଅ ତ ଗୋଟିଏ । ଜନ୍ମ ନିୟନ୍ତ୍ରଣ କରିଅଛୁ ମାୟେ
ଆମ୍ଭେ ଦୁଇ ପ୍ରାଣୀ ଆମ୍ଭର ତ ଦୁଇ । କାହାକୁ ଅସୁରେ ଦେଇ ନ ପାରଇ ।୨୯
ଏହା କହି ବ୍ରାହ୍ମଣୀ କଲେ ରୋଦନ । ବୋଲୁଛନ୍ତି ମାତା ନ କର କ୍ରନ୍ଦନ
ମୋ ପୁତ୍ରରୁ ଗୋଟେ ଅସୁରକୁ ଦେଇ । ବିପଦୁ ଉଦ୍ଧାର କରିବି ଯେ ମୁହିଁ ।୩୦
ବହୁ ଉପକାର କରିଛ ମୋହର । ପ୍ରତି ଉପକାର କରିବି ତୁମ୍ଭର
ଯେଣୁ ଅଳସୁଆ ପୁତ୍ରେକ ଅଛଇ । କାମଦାମ କିଛି ସେ କରୁ ନାହିଁ ।୩୧
ଉବ୍ରଇ ଥଗଇ ଅଧେ ସେ ଭୁଞ୍ଜଇ । ନ ଦେଲେ କାଣ୍ଡି କୁଣ୍ଡି ପିଟି ଦିଅଇ
ସେ ପୁତ୍ର ମରିବା ଅଟଇ ଉଚିତ । ସେ ମଲେ ମୋ ଘର ହୋଇବତ ଶାନ୍ତ ।୩୨
ମାରୁ ବା ଅସୁର ମରୁ ବା କୁମର । ଏ ଦୁଇ କାର୍ଯ୍ୟରେ ଲଭତ ଆମ୍ଭର
କୁନ୍ତୀ କଥା ଶୁଣି ବ୍ରାହ୍ମଣ ବ୍ରାହ୍ମଣୀ । କହିଲେ କି କଥା କହୁଛ ଜନନୀ ।୩୩
ଦେବୀ କି ମାନବୀ ଚିହ୍ନି ନ ପାରଇ । ପର ପାଇଁ ପୁତ୍ର ତେଜ ଅଛୁ ତୁହି ?
କୃତଜ୍ଞତା ପ୍ରକାଶିଲେ ପତିପତ୍ନୀ । ସଧୀରେ କହିଲେ ପାଣ୍ଡବ ଜନନୀ ।୩୪
ଉପକାର କରି ଅଛନ୍ତି ବହୁତ । ପ୍ରତି ଉପକାରେ କରି ହେବି ଋଣମୁକ୍ତ
ବିପ୍ରଙ୍କୁ ମନାଇ ମାତା ଚଳି ଯାଇ । ପୁତ୍ରକୁ କହିଲେ ଦୁଃଖ କରୁ ନାହିଁ ।୩୫
ପେଟ ପୂରି ଖାଦ୍ୟ ମିଳିବାର ପାଇଁ । ଯୋଗାଡ଼ କରିଛି କୌଶଳରେ ମୁହିଁ
ଶୁଣି ଭୀମସେନ ହେଲେ ଉଲ୍ଲସିତ । କପରି ପାହିବ ରାତ୍ରି ଭାବେ ଚିତ୍ତ ।୩୬

ପର ଦିନ ଭୀମ ଖାଦ୍ୟ ଦ୍ରବ୍ୟ ଧରି । ଚଳିଗଲ ବନେ ଉଗଉଗ କରି
ପାହାଡ଼ ଝରଣା ଘଟରେ ଥୁଇ ତଳେ । ଭୋଜନ କରିଲ ବସିଣ ନିଷ୍ଠଳେ ।୩୭
ଭୋଜନ ଶେଷରେ ଜଳପାନ କରି । ଶୋଇ ଗଲ ତରୁ ତଳେ କୃଷ୍ଣ ସ୍ମରି
ଭୋଜନ ସମୟ ଉପଗତ ଜାଣି । ବକାସୁର ତହିଁ ମିଳିଲ ତକ୍ଷଣି ।୩୮
ଖାଦ୍ୟଦ୍ରବ୍ୟ କିଛି ନ ଦେଖି ଅସୁର । ଗୋଡ଼ାଇଲ ଭୀମେ କରିବ ଆହାର
ଦୁହିଙ୍କ ମଧ୍ୟରେ ହୋଇଲ ସମର । ଭୀମ ମୁଷ୍ଟି ଘାତେ ମରିଲ ଅସୁର ।୩୯

ମଲ୍ଲ ବେଳେ କଲ ଭୟଙ୍କର ରଡ଼ି । ଭୟେ ନଗ୍ର ଲୋକେ ପଡ଼ିଲେ ପଡ଼ୁ ଅସୁରକୁ ମାରି ଗ୍ରାମ ପୂର୍ବ ଦିଗେ । ବସାଏ ଶୂଳୀରେ ଭୀମ ନେଇ ବେଗେ ୪୦
ଚନ୍ଦ୍ର ପଡ଼ିବା ଉପରେ ପାଣ୍ଡୁ ସୁତେ । ନଗ୍ର ଗୁଡ଼ ପଳାଇଲେ ଅର୍ଦ୍ଧ ରାତେ
ସକାଳେ ଦେଖିଲେ ଲୋକେ ଏହି ଦୃଶ୍ୟ । ଚହ୍ନିଲେ ବକାସୁର ଦୁଷ୍ଟ ରାକ୍ଷସ ।୪୧
ଦେବଶର୍ମା ବିପ୍ରକୁ ଡକାଇ ନେଇ । ଏକଚକ୍ରା ନଗ୍ରେ କଲେ ନରପାଇଁ
ସଜ୍ଜନ ଆଶ୍ରୟେ ଭିକ୍ଷୁକ ବ୍ରାହ୍ମଣ । ଏକଚକ୍ରା ନଗ୍ରେ ହେଲେ ନରରାଣ । ୪୨
କୁମ୍ଭୀର, କନ୍ଦର, ବକ, ହିଡ଼ିମ୍ବକ । ପୃଥିବୀକୁ ଶଲ ଥିଲେ ଗୃରି ପାକ
ସେମାନଙ୍କୁ ବଧ କଲେ ଭୀମସେନ । ଉଶ୍ୱାସ ହୋଇଲ ମହୀ ଧନ୍ୟଧନ୍ୟ ।୪୩
ଚଉରାଳିଶ ପଦେ ଅଧ୍ୟାୟ ସମ୍ପୂର୍ଣ୍ଣ । ବୃନ୍ଦାଦାସ କଲ ସଙ୍ଗୀତ ରଚନ
ଆପେ ଦୁଃଖ ସହି ବିଶ୍ୱର କଲ୍ୟାଣ । କରନ୍ତି ପାଣ୍ଡବେ ଘୂରିଣ କାନନ । ୪୪

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ମଥୁରା - ଦ୍ୱାରକା ଲୀଳା ଖଣ୍ଡେ ପାଣ୍ଡବ ମାନଙ୍କ ବନ ଭ୍ରମଣ ଓ ଦୈତ୍ୟ ଦଳନେ ନାମ ଦଶମ ଅଧ୍ୟାୟ ସମ୍ପୂର୍ଣ୍ଣଂ । ଶ୍ରୀକୃଷ୍ଣାର୍ପଣମସ୍ତୁ ।

ବୋଲ — ବାଇ ଧନରେ ! ବାଇ ହାଣ୍ଡିରେ ମନ

ବାଇ ହାଣ୍ଡି ଖାଇ ବାଇ ହେଲ ମୁହିଁ
ବାଇଆ କରିଲ କଳା ବଦନ ॥ ଘୋଷା ॥
ଭକ୍ତ କର୍ମାବାଇ ହାତ ରନ୍ଧା ଖାଇ
କାଳିଆ ବଳିଆ ଗ୍ରବେ ବନ୍ଧନ
ପଣ୍ଡା ପଡିହାରି ଗ୍ରବେ ଗଲେ ହାରି
ନୋହିଲ ମନ୍ଦରେ ଦାଅଁ ଭୋଜନ । ୧
ଗଜପତି ରାଜା ଅଧିଆ ପଡ଼ିଲେ
ଠାକୁର କହିଲେ ଶୁଣ ରାଜନ
ବାଇ ହାଣ୍ଡି ଖଞ୍ଜା ହୋଇଲେ ମନ୍ଦରେ
ହୋଇବ ଆମ୍ଭର ଭୂରି ଭୋଜନ । ୨
ସେ ଦିନୁ ମନ୍ଦରେ ବାଇହାଣ୍ଡି ଖଞ୍ଜା
କରମା ବାଇର ହସ୍ତ ରନ୍ଧନ
କବଳୀ କଣିକା ପାଇ ବୃନ୍ଦାଦାସ
ଗାଇବୁଲେ କରି ନାମ କୀର୍ତ୍ତନ । ୩

# ଏକାଦଶ ଅଧ୍ୟାୟ

## ପ୍ରଦ୍ୟୁମ୍ନ ଜନ୍ମ

### ରାଗ — କେଦାର

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ କର ଆହେ ସୁଜ୍ଞଜନ
ରୁକ୍ମିଣୀ ଦେବୀଙ୍କ ଉଦରୁ ସମ୍ଭୂତ ହୋଇଲେ ଏକ ନନ୍ଦନ
ସମ୍ବରାସୁର, ବଧ କରିବାକୁ ଜନ୍ମିଲେ ମାର । ୧

ଏହାର ଆଗରୁ କଂସାସୁର ନାମେ ଜନ୍ମ ହୋଇଥିଲେ ମଦନ
କୃଷ୍ଣ ହାତେ ମରି କୃଷ୍ଣ ପୁତ୍ର ରୂପେ ରୁକ୍ମିଣୀ ଗର୍ଭେ ଉତ୍ପନ୍ନ
ପାଇ ଖବର, ହରିନେଲା ଗୁପ୍ତେ ସମ୍ବରାସୁର । ୨

ଯେଉଁ ଦ୍ୱାରକାରେ ସୁଦର୍ଶନ ଚକ୍ର ଘୂରୁଅଛି ନିରନ୍ତର
ସମ୍ମୁଖରେ ମାଛି ପଡ଼ି ନବଖଣ୍ଡ ହେଉଥାଏ ବରାବର
ତହୁଁ କପଟ, ନ ମରି ଦୈତ୍ୟ ନେଲା ପୁତ୍ରକୁ ହରି ? ୩

ସୂତିକା ଗୃହରୁ ହରି ନେଇ ପୁତ୍ର ଫିଙ୍ଗିଲା ସାଗର ଜଳେ
ସେ ଶିଶୁ କୁମର ପାଇ ଶିଶୁମାର ଗିଳିଲା ପେଟ ବକଳେ
ଧରି ଧୀବର, ମୀନ ଭେଟି ଦେଲା ସମ୍ବରାସୁର । ୪

ସମ୍ବରାସୁରର ମାୟାବତୀ ନାମେ ଅନ୍ତପୁରେ ଏକ ରାଣୀ
ତାଙ୍କ ହସ୍ତେ ମୀନ ରନ୍ଧନ ନିମନ୍ତେ ପ୍ରଦାନ କଲେ ନୃମଣି
କାଟନ୍ତେ ମୀନ, ମୀନ ଗର୍ଭେ ନର ଶିଶୁ ଉତ୍ପନ୍ନ । ୫

ଏ ବିଚିତ୍ର ଦୃଶ୍ୟ, ଦେଖି ପୁରବାସୀ କୁହାକୁହି ପରସ୍ପର
ମୀନର ଗର୍ଭରୁ ମାନବ ଜନମ ବଡ ବିଚିତ୍ର ବ୍ୟାପାର
ଦିବ୍ୟ ସୁନ୍ଦର, ପୁତ୍ର ଦେଖି ସର୍ବେ କଲେ ବିଚାର । ୬

କେ ବୋଲେ ମୃଗୁଣୀ ଗର୍ଭୁ ଋଷ୍ୟଶୃଙ୍ଗ ଋଷି ହୋଇଥିଲେ ଜାତ
ଅଶ୍ୱର ଗର୍ଭରୁ ଅଶ୍ୱିନୀ କୁମାର ହୋଇ ଅଛନ୍ତି ସମ୍ଭୂତ
ବହୁ ଦୃଷ୍ଟାନ୍ତ, ଶାସ୍ତ୍ର ପୁରାଣରେ ଅଛି କଥିତ । ୭

ମୀନର ଗର୍ଭରୁ ମନୁଷ୍ୟ ସମ୍ଭୂତ ଏକଥା ନୁହେଁ ବିଚିତ୍ର
କିଏ କହେ ଜଳେ ଭାସୁଥିବା ଶିଶୁ କରିବା ଥିଲା ଗର୍ଭସ୍ଥ
ନାନା ତର୍କଣା, କରି ପୁରବାସୀ ହୋଇଲେ ବଣା । ୮

ଜାଣି ନ ପାରିଲେ ସମ୍ବର ନିଧନେ ସମନ ପୁରେ ଆଗତ
ଯାହାଙ୍କୁ ମାରିବା ପାଇଁ ଚିନ୍ତା କରି ଜଳେ ଫିଙ୍ଗିଥିଲା ଦୁଷ୍ଟ
ଯେବେ ଜୀବନ, ଘାତକ ରୂପରେ ତା ଆଗମନ ।୯

ଦିବ୍ୟ କମନୀୟ, ଶିଶୁପୁତ୍ର ଦେଖି ସମ୍ବର ଅସୁର ପ୍ରୀତ
ପୋଷ୍ୟପୁତ୍ର କରି ପାଳନ କରିଲା ଆପଣା ନଗରେ ଦୈତ୍ୟ
ବିଧି ବିଧାନ, ଶକତି କାହାର କରିବ ବିଘ୍ନ । ୧୦

ମୀନ ଗର୍ଭୁ ଜାତ ହୋଇଣ ଥିବାରୁ ନାମ ତା ମୀନକେତନ
ରାଣୀ ମାୟାବତୀ ପାଳିଲେ ଶିଶୁକୁ ଆପଣା ପତି ଚିହ୍ନିଣ
ଜାତ କନ୍ଦର୍ପ, ବ୍ରହ୍ମାଙ୍କ ଠାରୁ ପାଇ ବ୍ରହ୍ମ ଶାପ୍ୟ । ୧୧

ଦିବସେ ବାଳକ ରୂପକୁ ଧରଇ ରାତ୍ରରେ ଯୁବ ବୟସ
ମାୟାବତୀ ସଙ୍ଗେ ରାତ୍ରି କଟି ଯାଏ ପତିପତ୍ନୀ ରଙ୍ଗରସ
ଗୁପ୍ତ ରହସ୍ୟ, କ୍ରମେ ମାୟାବତୀ କଲେ ପ୍ରକାଶ । ୧୨

ବୋଲୁଛନ୍ତି ଦେବୀ ତୁମ୍ଭେ ମୋ ବଲ୍ଲଭ ଚିହ୍ନି ପାରୁ ନାହିଁ ମୋତେ
ଜନ୍ମାନ୍ତର ଜ୍ଞାନ ହରାଇ ବସିଛ ବାରମ୍ବାର ଜନ୍ମି ମର୍ତ୍ତ୍ୟେ
ମୁହିଁ ଅମର, ଜାତିସ୍ମର ହେତୁ ସ୍ମରଣ ମୋର । ୧୩

ଗୋଟି ଗୋଟି କରି କହୁଅଛି ଶୁଣ ତୁମ୍ଭର ଜନ୍ମ ବୃତ୍ତାନ୍ତ
ଶାନ୍ତ ନାମ ସତ୍ୟ ଯୁଗେ ଜାତ ହେଲ ଶିବଶିବା ତାତମାତ
ଅମସୁ ଦୈତ୍ୟ, ବଧ କରିବାକୁ ନେଲ ଦାୟିତ୍ୱ । ୧୪

ବିଷ୍ଣୁଙ୍କର ଯୋଗ ନିଦ୍ରା ଭାଙ୍ଗିବାରୁ ପଡ଼ି ତାଙ୍କ କୋପ ନେତ୍ରେ
ତୁମ୍ଭ ଦିବ୍ୟ ତନୁ ଭସ୍ମ ହୋଇଗଲା ଜଗତ ଜନଙ୍କ ହିତେ
ତୁମ୍ଭ ବିଚ୍ଛେଦେ, କଟାଇଲି କାଳ ଘୋର ବିଷାଦେ ।୧୫

ତୁମ୍ଭଙ୍କୁ ପାଇବି ବୋଲି ତପ କଲି ବିତିଗଲା ବହୁ ବର୍ଷ
ତୋଷ ହୋଇ ଶିବ ବର ଯାଚି ଦେଲେ ପାଇଲି ତୁମ୍ଭର ସ୍ପର୍ଶ
ଭାଗ୍ୟ ଉଦିତ, ଜାତ ହେଲ ତୁମ୍ଭେ ବାସବ ସୁତ ।୧୬

କିଛି ଦିନ ଘର ସଂସାର କରିଲେ ଦେବଙ୍କୁ ପଡିଲା ଦୁଃଖ
ତାରକା ଅସୁର ବିନାଶ ନିମନ୍ତେ ଦେବତା ଡାକିଲେ ରଖ
ଦେବାର୍ତ୍ତି ଶୁଣି, ବରଣ କରିଲ ବିପଦ ପୁଣି । ୧୭

ତାରକା ଅସୁର ନିଧନ ନିମନ୍ତେ ଶିବ ତପ କଲ ଭଗ୍ନ
ହର କୋପାନଳେ ପଡ଼ିଣ ସେବେଳେ ସ୍ୱଦେହେ ହେଲ ଦହନ
ଶିବ ପାର୍ବତୀ, ଏକତ୍ର ହେବାରୁ ପୁତ୍ର ଉତ୍ପତ୍ତି । ୧୮

ଶଙ୍କର ତନୟ ଜନ୍ମି କାର୍ତ୍ତିକେୟ ମାରିଲେ ତାରକାସୁର
ଦେବଙ୍କ କଷଣ ଲାଘବ ହୋଇଲା ମାତ୍ର ମୋ କଷଣ ଘୋର
ତୁମ୍ଭ ବିଚ୍ଛେଦେ, ତପରେ ବସିଲ ମନ ବିଷାଦେ । ୧୯

ଦ୍ୱିଜ ମନୁ ଅନ୍ତେ ତୁମ୍ଭେ ଜାତ ହେଲ ହୋଇଣ ବସୁଙ୍କ ସୁତ
ତୁମ୍ଭ ସଙ୍ଗେ ପୁଣି ସଂସାର କରିଲି କଷ୍ଟ ଦିନ ହେଲା ଗତ
ପୁଣି ବିପତ୍ତି, ଦେବବର ଠାରୁ ପାଇଲ ଶାସ୍ତି । ୨୦

ଏକଦା ସୁଧର୍ମା ସଭାରେ ମଘବା ଯୋଗାଡ଼ିଲେ ନୃତ୍ୟ ଗୀତ
ସ୍ୱର୍ଗ ଅପ୍‌ସରା ଉର୍ବଶୀଙ୍କ ନୃତ୍ୟ ଦେଖି ସର୍ବେ ବିମୋହିତ
ହରାଇ ଜ୍ଞାନ, ସଭାରେ ନ କଲେ ତୁମ୍ଭଙ୍କୁ ମାନ୍ୟ । ୨୧

କ୍ରୋଧ ହୋଇ ତୁମ୍ଭେ ମୋ ପିତା ବ୍ରହ୍ମାଙ୍କୁ ପେଷି ଦେଲ ପଞ୍ଚଶର
ବୃଦ୍ଧ କାଳେ ବ୍ରହ୍ମା ଉର୍ବଶୀ ରମିଲେ ହୋଇ ଅତି କାମାତୁର
ଦେଖି ଶଙ୍କର, କହିଲେ ନିର୍ଲଜ ହେ ଦେବବର । ୨୨

ଦେବଗଣେ ସହୁଁ ଉପହାସ କଲେ କ୍ରୋଧ ଚଢ଼ି ଦେବବର
ଅଭିଶାପ ଦେଲେ ଅସୁର ଶରୀରେ ଜାତ ହୁଅ ମର୍ତ୍ତ୍ୟପୁର
ପିତ୍ର ବଚନେ, କାଳନେମି ନାମେ ହେଲ ଉତ୍ପନ୍ନ । ୨୩

ଦୋଷ କ୍ଷମା ପାଇଁ ପିତାଙ୍କ ପଦ୍ମରେ କରିବାରୁ ନିବେଦନ
କ୍ରୋଧ ଶାନ୍ତ କରି ପିତା କୁଶଧାରୀ ଅଭୟ କଲେ ପ୍ରଦାନ
ଚିରି ଶରୀର, ଦୁଇଫାଳ କଲେ ଆପଣା କର । ୨୪

ଫାଳେ ହେଲ ମାର ଆରେକ ଅସୁର ବହିଲ ଅନଙ୍ଗ ନାମ
ତୁମ୍ଭେ ପୁଣି କାମ ରୂପ ପାଇବାକୁ ବସି କଲ ଯୋଗଧ୍ୟାନ
ବହୁ ବତ୍ସର, ଗତ ହୋଇଗଲା ତପେ ମୋହର । ୨୫

ଇତ୍ୟବସରରେ କାଳନେମି କଂସ ନାମେ ହେଲ ଅବତାର
କୃଷ୍ଣ ହାତେ ମରି ଏବେ ଜନ୍ମି ଅଛ ବାସୁଦେବଙ୍କ କୁମର
ରୁକ୍ମିଣୀ ମାତ, ତାହାଙ୍କ ଉଦରୁ ତୁମ୍ଭେ ସମ୍ଭୂତ । ୨୬

ସମ୍ବରାସୁରକୁ ବଧ କରିବାକୁ ହୋଇଛ କୃଷ୍ଣ କୁମର
ନାରଦଙ୍କ ଠାରୁ ଏ ସମ୍ବାଦ ପାଇ ଶୈରାଇ ଆଣି ଅସୁର
ସାଗର ଜଳେ, ଫିଙ୍ଗିବାରୁ ମୀନ ଗିଳିଲା ହେଳେ । ୨୭

ସେ ମୀନକୁ ଜାଲେ ଧରି ଶ କେଉଟ ·ଅସୁରକୁ ଦେଲା ଭେଟି
ଆହାର ନିମନ୍ତେ କାଟନ୍ତେ ମୀନକୁ ହୋଇଲ ତୁମ୍ଭ ଉତ୍ପତ୍ତି
ପାଇ ସାକ୍ଷାତ, ଧନ୍ୟ ହେଲା ମୋର ନୟନ ପଥ । ୨୮

ତୁମ୍ଭ ବିଚ୍ଛେଦରେ କାନନରେ ବସି ତପ କରୁଥିବା କାଳେ
ଏ ସମ୍ବରାସୁର ରଖିଛି ପ୍ରାସାଦେ ଧରି ଆଣି ମୋତେ ବଳେ
ମାୟା ରୂପରେ, ବାସ କରୁଅଛି ଏ ମାୟା ପୁରେ । ୨୯

ନାରଦ ବଚନେ ଭେଟ ପାଇବାକୁ କରିଛି ଆମ୍ଭ ଗୋପନ
ଏତେ ଦିନେ ତୁମ୍ଭ ଦର୍ଶନ ପାଇଲି ତପ ମୋ ହୋଇଲା ପୂର୍ଣ୍ଣ
ମୀନକେତନ, ଶୁଣି ପ୍ରସବିଲ ପୂରବ ଜ୍ଞାନ । ୩୦

ରତି, ରତିପତି ମିଳନ ହୋଇଲେ ଦେବଗଣ ହର୍ଷମନ
କନ୍ଦର୍ପ କହିଲେ ଆଗୋ ପ୍ରିୟତମା ତୁମ୍ଭଙ୍କୁ ପାଇ ମୁଁ ଧନ୍ୟ
ତୁମ୍ଭ ଶକ୍ତିରେ, ମରି ବଞ୍ଚୁଅଛି ମୁଁ ବାରମ୍ବାରେ । ୩୧

ନାରୀଶକ୍ତି ବିନା ପୁରୁଷର ଶକ୍ତି ହୁଅଇ ନାହିଁ ବିକାଶ
ଏକଥା ପ୍ରତ୍ୟକ୍ଷେ ପ୍ରମାଣ ହୋଇଲା ଅଧିକ କହିବି କିସ
ଶକ୍ତି ଦାୟିନୀ, ଯୁଗେଯୁଗେ ନାରୀ ପୂଜ୍ୟା ଅବନୀ । ୩୨

ଦେଖ ହେ ସୁଜନେ ସଂସାରର ଖଳ ଯେ କରନ୍ତି ଲୋକ ହିତ
ଆପଣା ଜୀବନ ବିପନ୍ନ ହୁଅଇ କୁଟୁମ୍ବେ ନ ମିଳେ ଗତି
ଯେଭେ ବିରାଟ, ହୋଇଥିଲେ ମଧ୍ୟ ଭୋଗନ୍ତି କଷ୍ଟ । ୩୩

ଶ୍ୱଶୁର ଯାହାର ସ୍ୱୟଂ ବେଦବର ଜନକ ଦ୍ୱାରକାଧୀଶ
ଦେବତାଙ୍କ ଦୁଃଖ ଦୂର କରିବାକୁ ସେ ପୁଣି ଭୋଗିଲେ କ୍ଳେଶ
ପିତା ଯେସନ, ପୁତ୍ରଙ୍କର ଭାଗ୍ୟ ମଧ୍ୟ ତେସନ । ୩୪

ଜ୍ୟେଷ୍ଠ ତାତ, ତାତ ପରି ବାଳ ସୁତ ବାଲ୍ୟକାଳୁଁ ବୃହାନ୍ତର
ଜଗତର ହିତ ସାଧନେ ସଂପୃକ୍ତ ରାମକୃଷ୍ଣ ପରିବାର
ଉଦ୍ବେଗ କାହିଁ, ପଣକୁ ପୃଥ୍ୱୀରେ କେ ନୁହେଁ ସରି । ୩୫

ପରୋପକାରୀର ଜୀବନ ବିପନ୍ନ ସତ୍ୟ ହେଲେ ହେଁ ବଚନ
ମାତ୍ର ପୁଣ୍ୟ ଫଳେ ସଙ୍କଟ ସାଗରୁ ତରି ଲଭନ୍ତି ସମ୍ମାନ
ଏହା ନିଶ୍ଚିତ, ଯଦୁବଂଶ ଇତିହାସ ଦୃଷ୍ଟାନ୍ତ । ୩୬

ସାରିବତୀ ପୁରେ ରହିଲେ କୁମାର ଧରି ବାଳକ ଶରୀର
ରାଜି ହେଲେ କାମ ରୂପକୁ ଧରଣ କରନ୍ତି ରତି ଶୃଙ୍ଗାର
କଥା ପ୍ରଘଟ, ହେବାରୁ ସମ୍ବରାସୁର ଉଚ୍ଛାଟ । ୩୭
ମୀନକେତନଙ୍କ ସଙ୍ଗେ ଯୁଦ୍ଧ କରି ସଂଘର୍ଷେ ହେଲେ ନିପାତ
ସାରିବତୀପୁର ଭସ୍ମିଭୂତ କରି ଦ୍ୱାରକା ବାହୁଲେ ରଥ
ଯାଇ କୁମର, ଉତ୍ସବ କରିଲେ ଦ୍ୱାରକାପୁର । ୩୮

ପୁତ୍ର, ପୁତ୍ରବଧୂ କୋଳେ ଧରି ମାତା ଭୁଞ୍ଜାଇଲେ କ୍ଷୀର, ସର
ମନଇଚ୍ଛା ଧନ ବିତରଣ କଲେ ଉଗ୍ରସେନ ନୃପବର
ଅଣଚୂଳଶ, ପଦେ ଗୀତ ଭଣିଲ ବୃନ୍ଦଦାସ । ୩୯

ଇତି ଶ୍ରୀକୃଷ୍ଣଚରିତ ମାନସ ମହାକାବ୍ୟ କଥନେ ମଥୁରା-ଦ୍ୱାରକା ଲୀଳାଖଣ୍ଡେ ପ୍ରଦ୍ୟୁମ୍ନ ଜନ୍ମ ଓ ସମ୍ବରାସୁର ବଧ ଉପାଖ୍ୟାନେ ନାମ ଏକାଦଶ ଅଧ୍ୟାୟ ସମ୍ପୂର୍ଣ୍ଣଂ । ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

**ବୋଲି —** ହେ କଞ୍ଜ ନୟନ ଶ୍ୟାମ ମାନ ବିଭଞ୍ଜନ
ପାପତାପ ତ୍ରାଣକର୍ତ୍ତା ଗରବ ଗଞ୍ଜନ । ୧
ଅର୍ଜୁନ କୁମର ଆହେ ସୁଭଦ୍ରା ନନ୍ଦନ
କରମଳା କଳାଦର କୃଷ୍ଣା କଣ୍ଠି ଧନ । ୨
ସତ୍ୟ-ତ୍ରେୟା-ଦ୍ୱାପର-କଳି ଚାରି ଯୁଗ
ହରେ-ରାମ-କୃଷ୍ଣ-ଶ୍ୟାମ ନାମ ମହାଭାଗ । ୩
ଶ୍ୟାମ ଅବତାରେ ଶାନ୍ତ ଆନନ୍ଦ ଆଶ୍ରମେ
ସତ୍ୟନାରାୟଣ ସ୍ୱାମୀ ଖେଳୁଛ ସମ୍ଭ୍ରମେ । ୪
ଅନନ୍ତ ଗୁମ୍ଫାରେ ବସି କରୁଅଛ ଲୀଳା
ଶିରିଣିଖିଆ ଠାକୁର ଭକ୍ତଙ୍କ ଭେଳା । ୫
ବୃନ୍ଦଦାସ ପଶି ଅଛି ପୟରେ ଶରଣ
ଶରଣ ରକ୍ଷଣ ସ୍ୱାମୀ କର ପରିତ୍ରାଣ । ୬

# ଦ୍ୱାଦଶ ଅଧ୍ୟାୟ
## ଦୁର୍ଯ୍ୟୋଧନ ବିବାହ
### ରାଗ — ଚକ୍ରକେଳି

କୃଷ୍ଣ ଚରିତ ମାନସ ସରିତ
ପାନ କର ଚିତ୍ତ ହୋଇବ ଶାନ୍ତ । ୧

କୋଶଳ ରାଜ୍ୟେ ଭୂମଣ୍ଡଳ୍ୟ ନୃପତି
ଭାନୁମନ୍ତ ନାମେ ରାଜ ଦୁହିତା । ୨

ଜାତ ସ୍ମର ହୋଇ କନ୍ୟା ଜନମ
ଦୁଗ୍ଧ ପାନ କରି ଧରିଛି ପ୍ରାଣ । ୩

ବିବାହ ବୟସ ଆସି ପ୍ରବେଶ
ଚିନ୍ତାଗ୍ରସ୍ତ ହେଲେ କୋଶଳ ଈଶ । ୪

ପିତାଙ୍କ ଦୁଶ୍ଚିନ୍ତା ଜାଣି ନନ୍ଦନୀ
ସାନ୍ତ୍ୱନା ଦେଇଣ କହିଲେ ବାଣୀ । ୫

" ଆମ୍ଭେ ରୁଦ୍ର କନ୍ୟା " ସ୍ୱର୍ଗ ସୁନ୍ଦରୀ
ସତ୍ୟ ଯୁଗେ ଆମ୍ଭ ରହିଛି ଖ୍ୟାତି । ୬

ଅହଲ୍ୟା, ଅରୁନ୍ଧତୀ, ଦମୟନ୍ତୀ
ରତିଙ୍କୁ ମିଶାଇ ରୁଦ୍ର ଯୁବତୀ । ୭

ତ୍ରେତା ଯୁଗେ ସୀତା, ତାରା, ସାବିତ୍ରୀ,
ଇନ୍ଦୁମତୀ ମିଶି ରୁଦ୍ର ଗଣତି । ୮

ଦ୍ୱାପରେ ରୁକ୍ମିଣୀ, କୃଷ୍ଣା, ରେବତୀ
ଭାନୁମତୀ ନାମେ ହେଲୁ ଉତ୍ପତ୍ତି । ୯

ପ୍ରତି ଯୁଗେ ଆମ୍ଭେ ରୁଦ୍ର ଜନମ
ପାପ ନାଶି ଧର୍ମ କରୁ ସ୍ଥାପନ । ୧୦

ମୋହ ବର ପାଇଁ ତୁହି ବରତ
ସ୍ୱୟମ୍ବର କର ବରି ନୃନାଥ । ୧୧

ଜନକ ପୃଚ୍ଛିଲେ ନୁହେଁ ସମ୍ଭବ
ପୃଥ୍ୱୀରେ ବସନ୍ତି ଲକ୍ଷେ ଭୂଦେବ ।୧୨
ସ୍ୱୟମ୍ବର କଲେ ବରିବ ସର୍ବେ
ଅବରଣ ଯଦ୍ଧ ଜଣେ ରହିବେ ।୧୩
ଧର୍ମ ନାଶ ଯିବ ନ ହେବ କାର୍ଯ୍ୟ
ଧନହୀନ ମୁହିଁ ନାହିଁ ଐଶ୍ୱର୍ଯ୍ୟ ।୧୪
ସ୍ୱୟମ୍ବର ପାଇଁ ଲୋଡ଼ା ତ ଧନ
ସ୍ୱଭାବେ ଅଟଇ ମୁହିଁ ନିର୍ଦ୍ଧନ ।୧୫
ହନୁମନ୍ତ ବୋଲେ ନ କର ଚିନ୍ତା
ଯୋଗାଇବ ଧନ ଅଛି କ୍ଷମତା ।୧୬
ଯେତେ ଲୋଡ଼ା ଧନ ଦେବ ଯୋଗାଇ
ସ୍ୱୟମ୍ବର କର ନୃପେ ଡ଼କାଇ ।୧୭
ଶଙ୍ଖନିଧି ପଦ୍ମନିଧି ବହିଇ
ପଥର ଛୁଇଁଲେ ରତ୍ନ ହୁଅଇ ।୧୮
ପର୍ବତ ସମାନ ଦେବ ମୁଁ ରତ୍ନ
ଧନ ପାଇଁ ଦୁଃଖ ନ କର ମନ ।୧୯
ଲକ୍ଷେକ ରାଜାଙ୍କୁ ଦିଅ ଭୋଜନ
ଅନ୍ନ ଦାନେ ହେବ ଖ୍ୟାତି ଅର୍ଜନ ।୨୦
ଦିବ୍ୟ ପାକ ଭୁଞ୍ଜି ନୃପତି ଗଣ
କରିବେ ତୁମ୍ଭର ଯଶକୀର୍ତ୍ତନ ।୨୧
ପାକ ପ୍ରସ୍ତୁତରେ ମୁଁ ସିଦ୍ଧ ହସ୍ତ
ଆମ୍ଭେ ସାତ ନାରୀ ବିଶ୍ୱେ ବିଖ୍ୟାତ ।୨୨
ଅହଲ୍ୟା, ଅଞ୍ଜନା ଯେ ଅରୁନ୍ଧତୀ
ବରୁଣ ଜେମା, ରୁକ୍ମିଣୀ, ରେବତୀ ।୨୩
ମୋତେ ମିଶାଇ ଏହି ସାତ ନାରୀ
ସାବିତ୍ରୀ ଦେବୀଙ୍କର ପରିଚାରୀ ।୨୪
ପାକ ବିଦ୍ୟା ଶିକ୍ଷା ଦେଇ ଅଛନ୍ତି
ଗୋଟିଏ ରାନ୍ଧିଲେ ହୁଅଇ କୋଟି ।୨୫

ଯେତେ ଖାଉଥିଲେ ନ ହୁଏ ଶେଷ
ସୁମିଷ୍ଟ ଭୋଜନେ ସକଳେ ତୋଷ । ୨୬
ଲକ୍ଷେ ନୃପତି କରିବେ ଭୋଜନ
ଅଭାବ ନ ହେବ ଅନ୍ନ ବ୍ୟଞ୍ଜନ । ୨୭
ଧନ ପାଇଁ ମନେ ଚିନ୍ତା ନ କର
ଯୋଗାଇବ ଧନ ଆହେ ନୃବର । ୨୮
ଯେତେ ବ୍ୟୟ କଲେ ନ ହେବ ଶେଷ
ଗୋପନ ରଖ ନ କର ପ୍ରକାଶ । ୨୯
କନ୍ୟାର ମହିମା ଜାଣି ନୃପତି
ସ୍ୱୟମ୍ବର କଲେ ବରି ନୃପତି । ୩୦
ଥାଟ ଭୂଲେ ଲକ୍ଷେ ରାଜା ପ୍ରବେଶ
ସଭିଙ୍କୁ ସମ୍ମାନ କଲେ ନରେଶ । ୩୧
ଭାନୁମତି ବୋଲେ କର ମୋ ବୁଦ୍ଧି
ଯା କରେ ଶଙ୍ଖନିଧି ପଦ୍ମନିଧି । ୩୨
ସେ ନୃପଙ୍କୁ ମୋତେ କର ପ୍ରଦାନ
ଅନ୍ୟଠାରେ କାର୍ଯ୍ୟ ନାହିଁ ସ୍ୱଜନ । ୩୩
କନ୍ୟା କଥାରେ ଭୂମନ୍ୟୁ ନୃପତି
ସଭା ମୁଖ ଗୃହିଁ ବୋଲନ୍ତି ଉକ୍ତି । ୩୪
ଶଙ୍ଖ ପଦ୍ମ-ନିଧି ବହେ ଯେ କର
ପ୍ରଦାନ କରିବି କନ୍ୟା ମୋହର । ୩୫
ସେହି ଭାଗ୍ୟବାନ ହେବ ଜାମାତା
ଅନ୍ୟଥା ନ ହେବ ଆମ୍ଭର କଥା । ୩୬
ଭୂମନ୍ୟୁ ବାକ୍ୟେ କହେ ଜଗପତି
ଏହି ଲକ୍ଷଣ ବହେ ରାମଚନ୍ଦ୍ର । ୩୭
ଦେବ ଦୈତ୍ୟ-ନରେ ନାହିଁ କେ ଜନ
କେବଳ ବହନ୍ତି ଶ୍ରୀ ନାରାୟଣ । ୩୮
ସଭାରେ ଶୁଣି ସ୍ୱୟମ୍ବର ପଣ
ଥୋକାଏ ନୃପ କଲେ ପଳାୟନ । ୩୯

ଦୁଷ୍ଟ ବଳାଏ ଗୋଳ ଆରମ୍ଭିଲେ
ବଳେ କନ୍ୟା ଘେନ ଯିବା ଭାବିଲେ । ୪୦

ଦ୍ୱନ୍ଦ ଲଗାଇଲେ ଦୁଷ୍ଟ ନୃବର
ଦେଖି ଭୂମନ୍ୟୁ ଭୟେ ଥରହର । ୪୧
ରୈବତ ପର୍ବତେ ଶୁଭିଲା ଗୋଳ
ମିଳିଲେ ଆସି ଧୃତରାଷ୍ଟ୍ର ବାଳ । ୪୨
ଧନୁ ଧରି କର୍ଣ୍ଣ ବିନ୍ଧିଲେ ବାଣ
ଛତ୍ରଭଙ୍ଗ ଦେଲେ ଦୁଷ୍ଟ ରାଜନ । ୪୩
ରାଧେୟ ରଖନ୍ତେ ଭୂମନ୍ୟୁ ମାନ
ବିଚାରିଲେ କନ୍ୟା କରିବେ ଦାନ । ୪୪
ନୃପତି ପ୍ରସ୍ତାବ ଶ୍ରବଣେ କର୍ଣ୍ଣ
କହିଲେ ଶୁଣ କୋଶଳ ରାଜନ । ୪୫
ନୁହେଁ ମୁହିଁ ରାଜା କ୍ଷତ୍ରୀୟ ସୁତ
ନାହିଁ ମୋର ରାଜ୍ୟ ଦଣ୍ଡ ବା ଛତ୍ର । ୪୬
କନ୍ୟା ପାଇଁ ନୁହେଁ ମୁଁ ଯୋଗ୍ୟ ବର
କ୍ଷତ୍ରୀ ବୃତ୍ତି କରେ ସୂତ କୁମର । ୪୭
କହିଲେ ଭୂମନ୍ୟୁ ଶୁଣ ହେ କର୍ଣ୍ଣ
ପିତାଦତ୍ତ କନ୍ୟା ଶାସ୍ତ୍ର ବିଧାନ । ୪୮
ଅନ୍ୟଥା ନ ଭାବ କର ଗ୍ରହଣ
କ୍ଷତ୍ରୀୟ ଷଣ୍ଢ ବୀର ଅଗ୍ରଗଣ୍ୟ । ୪୯
ନୃପଙ୍କ କଥାରେ ବିଚାରେ କର୍ଣ୍ଣ
ଦାନବୀର ପଣେ ମୋହର ଠାଣ । ୫୦
ସତ୍ୟ କରିଛି ଧରି ଧନୁର୍ବାଣ
ଆଶ୍ରିତ ବ୍ୟକ୍ତିଠୁ ନ ଘେନେ ଦାନ । ୫୧
ପିତା ଦତ୍ତ ହେଲେ ଏ କନ୍ୟା ରତ୍ନ
ଗ୍ରହଣ କରିବା ପାଇଁ ଅକ୍ଷମ । ୫୨
ରାଜା ଦୁର୍ଯ୍ୟୋଧନ ବିଶ୍ୱାସୀ ମିତ୍ର
ଅଙ୍ଗ ରାଜ୍ୟ କରିଅଛି ନୃନାଥ । ୫୩

ସମ୍ମାନିତ କରି ଅଛ ରାଜନ
ସୁଝାଇବ ଆଜ ତାହାର ଋଣ ।୫୪
ପ୍ରତିଉପକାର ମନରେ ଚିନ୍ତି
କହିଲେ ରାଜନ ଶୁଣ ଶ୍ରୀପତି ।୫୫
ଜାଣୁଛି ଏ କନ୍ୟା ନୁହେଁ ମୋହର
ରାଜା ଦୁର୍ଯ୍ୟୋଧନ ବର ଏହାର ।୫୬
ଏ କନ୍ୟା କରେ ଶଙ୍ଖ ପଦ୍ମନିଧି
ମଜ୍ଜନ କରେ ଶଙ୍ଖ ପଦ୍ମନିଧି ।୫୭
ଦୁର୍ଯ୍ୟୋଧନେ କର କନ୍ୟା ପ୍ରଦାନ
ନିଷ୍କଳଙ୍କ ସୋମବଂଶୀ ରାଜନ ।୫୮
ଲକ୍ଷେ ନୃପତି ଖଟନ୍ତି ଚରଣ
ପନ୍ନଗନାରାୟଣ ଦୁର୍ଯ୍ୟୋଧନ ।୫୯
ସାକ୍ଷାତେ ଏହି ବିଷ୍ଣୁ ଅବତାର
ନିଃଶଙ୍କ ଲୋକରେ କରେ ବିହାର ।୬୦
ଜନ୍ମ ମୃତ୍ୟୁ ରହିତ ନିରାକାର
ଶୂଦ୍ରକ ବ୍ରହ୍ମା ଶାପେ ଅବତାର ।୬୧
ଚଳନ୍ତେ ଚରଣ ଫୁଟେ ଜଳଜ
କୋଟିପାଦେ ଲକ୍ଷ୍ମୀ କନ୍ଧେ ବିରାଜ ।୬୨
ଅନର୍ଘମଣିମୁକୁଟ ମଥାରେ
ସର୍ବ ଗୁଣେ ଜାତ କୁରୁ ବଂଶରେ ।୬୩
ଜାମାତା କର ବଢ଼ିବ ସୁଖ୍ୟାତି
ପନ୍ନଗ ବିଷ୍ଣୁ ଏ ହସ୍ତିନାପତି ।୬୪
ପଟ୍ଟପତ୍ନୀ ହେବା ପାଇଁ ଜନମ
ପ୍ରକାଶିଲ ତଥ୍ୟ ଯେବେ ରାଜନ ।୬୫
ଦୁର୍ଯ୍ୟୋଧନ କରେ ସଙ୍କେତ ଦେଖି
ବରଣ କରିଲେ କମଳମୁଖୀ ।୬୬
ବେଦ ବିଧାନରେ ବିଭା ସମ୍ପନ୍ନ
ଶୁଣି ଆନନ୍ଦିତ ଅନ୍ଧ ରାଜନ ।୬୭

ଦୁର୍ଯୋଧନର୍ଯ୍ୟ ବିଘ୍ନେ ଶତଭ୍ରାତ
ବିବାହ କରି ହେଲେ ପ୍ରମୋଦିତ । ୬୮
ବର୍ଦ୍ଧିତ ହୋଇଲା କୌରବ ବଂଶ
ପୁତ୍ର କନ୍ୟା ନାତି ଶତ ସହସ୍ର । ୬୯
ସତୁରି ପଦେ ଅଧ୍ୟାୟ ସମ୍ପୂର୍ଣ୍ଣ
ବୃନ୍ଦାବନ ଗୀତେ କଲା ରଚନ । ୭୦

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ
କଥନେ ମଥୁରା-ଦ୍ୱାରକା ଲୀଳା ଖଣ୍ଡେ
ଦୁର୍ଯୋଧନ ବିବାହ ଆଖ୍ୟାନେ ନାମ
ଦ୍ୱାଦଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

—❈—

**ବୋଲି —**

ମନ ବାଇରେ !
ଭଜନ୍ତୁ କାଳିଆ ଗୋସେଇଁ ।
ଭଜିଲେ ତୋ ଦୁଃଖ ରହିବ ନାହିଁ
କାଳିଆ ବଦନ କମଳ ଲୋଚନ
କମଳା ରମଣ ଚରଣ ଧ୍ୟାୟୀ । ୧
ନୀଳ ଅଧରରେ ଖିଳି ଖିଳି ହସ
ଦର୍ଶନ ମାତ୍ରକେ ଜଏ ଭୁଲଇ
ସେ ରୂପ ଦର୍ଶନ କରି ବୃନ୍ଦାବନ
ତାଳି ମାରି ନାଚି ବାଣ୍ଡେ ଗଡ଼ଇ । ୨

— ❈ —

# ତ୍ରୟୋଦଶ ଅଧ୍ୟାୟ

## ଅଷ୍ଟ ପାଟବଂଶୀ ଉପାଖ୍ୟାନ

( ରାଗ - ବଙ୍ଗଳାଶ୍ରୀ )

ଏଥୁ ଅନନ୍ତରେ ଶୁଣ ସ୍ୱଜନରେ କୃଷ୍ଣ ଚରିତ ମାନସ
କାଶୀ ନଗ୍ରୀ ତିରେ କୋଶଳବନ୍ଧ ନାମେ ବର୍ଦ୍ଧମାନ ଏକ ଦେଶ । ୧
ସୂର୍ଯ୍ୟବଂଶୀ ରାଜା ନାମ ସତ୍ୟବ୍ରତ ସେଠାରେ କରନ୍ତି ରାଜ୍ୟ
କନ୍ୟା ସ୍ୱୟମ୍ବର କରାଇଲେ ନୃପ ବର ଆଣି ବହୁରାଜ । ୨
ଗଡ଼ ସିଂହ ଦ୍ୱାରେ ଖମ୍ବେକ ପୋତିଣ ପାଟ ରଜ୍ଜୁ ବାନ୍ଧିଛନ୍ତି
ସେ ରଜ୍ଜୁରେ ଯିଏ ଶତ ଷଣ୍ଢ ବାନ୍ଧି ଦେବ ହେବ କନ୍ୟାପତି । ୩
ଷଣ୍ଢ ବାନ୍ଧିବାକୁ ରାଜା ମହାରାଜା କେତେ ଆସି ଚେଷ୍ଟା କଲେ
ଶତ ଚେଷ୍ଟା କରି ଗୋଟିଏ ଷଣ୍ଢକୁ ଖମ୍ବେ ବାନ୍ଧି ନ ପାରିଲେ । ୪
ସମ୍ବାଦ ପାଇଣ ଦ୍ୱାରକାଧିପତି ସେଠାରେ ମିଳିଲେ ଯାଇଁ
ପାଦ ଗତି କରି ଦାଣ୍ଡେ ଗଲାଛନ୍ତି ଲୋକେ ଦେଖି ହେଲେ ବାଇ । ୫
ପଛରେ ଗୋଡ଼ାଇ ଯାଉଛନ୍ତି ଲୋକେ ଆଗେ ଯାନ୍ତି ନଟବର
ଗୋପାଳ ସୁନ୍ଦର କଳେବର ଦେଖି ଚକିତ ହେଲେ ନୃବର । ୬
ଆସିବା ମାର୍ଗକୁ ଚାହିଁ ରହିଛନ୍ତି ଧୀରେ ପଚାରିଲେ କୃଷ୍ଣ
ଆମ୍ଭେ ଯେବେ ଷଣ୍ଢ ବନ୍ଧନ କରିବୁ କରିବକ କନ୍ୟାଦାନ ? । ୭
ଶ୍ରୀକୃଷ୍ଣଙ୍କୁ ଦେଖି ଭାବିଲେ ନୃପତି ଦୁର୍ବାସା କହିବା କଥା
ଏ କନ୍ୟାକୁ ବିଭା କରିବା ନିମନ୍ତେ ଆସିବେ ବିଷ୍ଣୁ ଦେବତା । ୮
ସେ କଥା ସୁମରି ବୋଲେ ଦଣ୍ଡଧାରୀ କଥାରେ ସମ୍ମତ ମୋର
ଖମ୍ବେ ଯେ ଷଣ୍ଢଙ୍କୁ ବନ୍ଧନ କରିବେ କନ୍ୟାଏ ହେବେ ତାଙ୍କର । ୯
ରାଜା କଥା ଶୁଣି ଧୀରେ ବେଣୁପାଣି ମିଳିଲେ ଗୁହାଳ ଦ୍ୱାରେ
ଗୋଶାଳାର ଦ୍ୱାର କରେ ଖୋଲିଦ୍ୟନ୍ତେ ଧାଇଁଲେ ଷଣ୍ଢେ ବେଗରେ
ଲାଞ୍ଜକୁ ଟେକିଣ ହାକୁଡ଼ି ଖାଇଣ ଖୁରରେ ଧୂଳି ଉଡାଇ
ପରସ୍ପର ମଧ୍ୟେ ଲଢ଼େଇ କରିଲେ କମ୍ପମାନ ହେଲା ମହୀ । ୧୧

ଗୋଟିଏ ଷଣ୍ଢର ପରାକ୍ରମ ସଙ୍ଗେ ଦଶ ହସ୍ତୀ ବଳସମ
ଷଣ୍ଢକରେ ଶତ ଗାଭୀ ରହିଛନ୍ତି ତାହାଙ୍କ ଶକ୍ତି ଅସୀମ । ୧୨
ଏହିପରି ଶତ ଶଣ୍ଢ ପୋଷାଛନ୍ତି ଖାଇପିଇ ସର୍ବେ ମସ୍ତ
ଶତ ଷଣ୍ଢ ଦେଖି ନୃପେ ଭୟଭୀତ କଏ କରିବ ଆୟତ୍ତ । ୧୩
ଏ ବିଚିତ୍ର ଦୃଶ୍ୟ ଦେଖି ଗୋପନନ୍ଦନ ଗୋମୋହନ ବେଶ ଧରି
ଗୁଣ୍ଡ୍ର କେଶ ରାନଗ ବଂଶୀ ବଜାଇଲେ ସ୍ତମ୍ଭୀଭୂତ ନରନାରୀ । ୧୪
ନାସା ପୁଟେ ବେଣୁ ବଜାଇଲେ ଯେଣୁ ପ୍ରାଣ ପବନକୁ ଛଡ଼ି
ମନ ପବନକୁ ଅମନ ମଧ୍ୟରେ ରଖିଲେ ତ୍ରିଧାରେ ବାନ୍ଧି । ୧୫
ଯଜୁର୍ବେଦ ମନ୍ତ୍ର ବେଣୁ ସ୍ୱନୁ ଜାତ ପଞ୍ଚମ ତାନେ ଫୁଙ୍କନ୍ତି
ଗୋମୋହନ ବଂଶୀ ସ୍ୱନ ଶୁଣି ଷଣ୍ଢେ ସ୍ଥିର କଲେ ନିଜ ମତି । ୧୬
ଲଢ଼େଇ ନ କରି ଠିଆ ହୋଇଗଲେ ଖମ୍ବର ଚାରି ପାଖରେ
ନିର୍ଭୟରେ କୃଷ୍ଣ ରଜ୍ଜୁରେ ବାନ୍ଧିଲେ ଶତଷଣ୍ଢ ନିଜ କରେ । ୧୭
ଷଣ୍ଢମାନେ ଖମ୍ବେ ବନ୍ଧନ ହେବାରୁ ଗାଭୀମାନେ ହେଲେ ସ୍ଥିର
ଏ ଅପୂର୍ବ ଦୃଶ୍ୟ ଦେଖି ନୃପ ଗଣେ କଲେ ଜୟ ଜୟ କାର । ୧୮
ତ୍ରିଭଙ୍ଗ ଭଙ୍ଗିରେ ଠିଆଛନ୍ତି କୃଷ୍ଣ ଗୋମୋହନ ବେଶ ଧରି
ଗୋବିନ୍ଦଙ୍କୁ ବେଢ଼ି ଗଲେ ଗୋରୁ ପଲ ଗୋଲକାର ଦୁର୍ଗ ପରି । ୧୯
ବେଦ ବିଧାନରେ ସତ୍ୟବ୍ରତ ନୃପ କନ୍ୟାଙ୍କୁ କଲେ ପ୍ରଦାନ
ଶତଷଣ୍ଢ ସଙ୍ଗେ ଶତ ଗାଭୀ ପଲ ଯୌତୁକ ଦେଲେ ରାଜନ । ୨୦
ଶ୍ରିୟା, ସତ୍ୟବତୀ ଦୁଇ ପାଟବଂଶୀ ପୁରେ ଘେନ ଗଲେ କୃଷ୍ଣ
ତିନ ପତ୍ନୀ ଘେନ ଦ୍ୱାରକାଧିପତି ସୁଖେ କଟାଇଲେ ଦିନ । ୨୧
କିଛି ଦିନ ପରେ ଦ୍ୱାରକାଧିପତି କାନନ ଭ୍ରମଣ କାଳେ
ବନ ମଧ୍ୟେ ତିନ କନ୍ୟାଙ୍କୁ ଭେଟିଲେ ଯୋଗାସନେ ବସିଥିଲେ । ୨୨
ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ ତିନଙ୍କ ଔରସୁ ତିନ କନ୍ୟା ହେଲେ ଜାତ
ମେନକା, ଉର୍ବଶୀ, ରମ୍ଭା ତିନ ନାରୀ ତିନ କନ୍ୟାଙ୍କର ମାତ । ୨୩
ସାତ ମନୁଯାଏ ଯୋଗାସନେ ବସି କୃଷ୍ଣେ କରୁଥିଲେ ଧ୍ୟାନ
ଦ୍ୱାପର ଯୁଗରେ କୃଷ୍ଣ ଅବତାରେ ଲକ୍ଷ ହୋଇଲ ପୂରଣ । ୨୪
ଆଚାର୍ଯ୍ୟ ବରଣ ହେଲେ ବୃହସ୍ପତି ତିନ ପିତା ବେଦୀ ପରେ
ବେଦ ବିଧାନରେ କନ୍ୟାଦାନ କଲେ ଦ୍ୱାରକାଧୀଶଙ୍କ କରେ । ୨୫

କାଳନ୍ଦୀ, କମିଳା, ତୁଳସୀ ଏ ତିନ କନ୍ୟା କୃଷ୍ଣ ମନୋହାରୀ
ଶ୍ରିୟା, ସତ୍ୟବତୀ, ରୁକ୍ମିଣୀ ମିଶାଇ କୃଷ୍ଣଙ୍କର ଷଡନାରୀ । ୨୬
ଏଥି ଅନ୍ତେ ଶୁଣ ଆହେ ସୁଜ୍ଞଜନେ ଶ୍ରୀକୃଷ୍ଣ ଲୀଳା ଚରିତ
ଅନ୍ଧକ ବଂଶରେ ଦ୍ୱାରକା ନଗ୍ରରେ ଶତ୍ରାଜିତ ସୂର୍ଯ୍ୟ ଭକ୍ତ । ୨୭
କାଶୀ ଓ କାଞ୍ଚନ ନାମେ ଦୁଇ ସୁତ କନ୍ୟା ନାମ ସତ୍ୟଭାମା
ରୂପେ ଗୁଣେ ତାଙ୍କୁ ସମାନ ନ ହେବେ ସ୍ୱର୍ଗ-ମର୍ତ୍ତ୍ୟ ପୁର ବାମା । ୨୮
ପାତ୍ର ପଣେ ସଦା ଉଗ୍ରସେନ ପାଦେ ଖଟିଥାନ୍ତି ଶତ୍ରାଜିତ
ସୂର୍ଯ୍ୟ ସେବା କରି ସ୍ୟମନ୍ତକ ମଣି ପ୍ରାପ୍ତ ହେଲେ ସୂର୍ଯ୍ୟ ଭକ୍ତ । ୨୯
ସମୁଦ୍ର ମନ୍ଥନେ ସାଗରୁ ଜନମି ମଣିଥିଲା ସୂର୍ଯ୍ୟ ପାଶେ
ସୂର୍ଯ୍ୟ ପୂଜା କରି ଭକ୍ତ ଶତ୍ରାଜିତ ମଣିକୁ ଲଭିଲେ ହର୍ଷେ । ୩୦
ସେ ମଣି ବଳରେ ନିତ ପାଇଥାନ୍ତି ଆଠଭାର ଶୁଦ୍ଧ ସ୍ୱର୍ଣ୍ଣ
ବିଦ୍ୟା, ବୁଦ୍ଧି, ଜ୍ଞାନ, ସ୍ତମ୍ଭନ, ମୋହନ ସଙ୍ଗେ ବୈଶ୍ୟ ଉଚାଟନ ।୩୧
ଯଶ ଖ୍ୟାତି ଅର୍ଜି ଶତ୍ରାଜିତ ବୀର ହୋଇଗଲେ ଶକ୍ତିବାନ୍
ଯାଦବ ସଭାରେ ପଡିଲା ସେ କଥା ଜାଣିଲେ ଶ୍ରୀରାମ କୃଷ୍ଣ । ୩୨
ଆଜ୍ଞା ଦେଲେ ରାମ ଆଣ ସେ ମଣିକୁ କେନ୍ଦ୍ରେ କରିବା ଦର୍ଶନ
ଶୁଣି ଶତ୍ରାଜିତ ସନ୍ଦଗ୍ଧ ମାନସ କାଳେ ନେଇ ଯିବେ କୃଷ୍ଣ । ୩୩
" କାଲି ଦେଖାଇବି କହି ଶତ୍ରାଜିତ କପଟ ରକ୍ଷଣ ଚିତ୍ତେ
ଭାଇ ପ୍ରସ୍ନାଜିତ ହାତେ ମଣି ଦେଇ କହିଲା ଚଳ ତ୍ୱରିତେ । ୩୪
ଭ୍ରାତାଠାରୁ ମଣି ପାଇ ପ୍ରସ୍ନାଜିତ ଚଳିଗଲେ ଅର୍ଦ୍ଧରାତ୍ରେ
ଗୋମତ ପର୍ବତ ଶିଖରେ ଉଠିଲେ ଅଶ୍ୱ ଆରୋହି ଏକାନ୍ତେ । ୩୫
ସେ ପର୍ବତେ ସିଂହ ପ୍ରସ୍ନାଜିତ ମାରି ମଣି ଘେନି ଚଳିଗଲା
ଜାମ୍ବବାନ ବୀର ସିଂହକୁ ବିନାଶି ସ୍ୟମନ୍ତକ ଘେନି ଗଲା । ୩୬
ସେ ମଣିକୁ ନେଇ କନ୍ୟା ଜାମ୍ବବତୀ କଣ୍ଠଦେଶେ ଲମ୍ବାଇଲା
ରାତିକ ଭିତରେ ଦ୍ୱାରକାରୁ ମଣି ଯାଇ ପାତାଳେ ରହିଲା । ୩୭
ପରଦିନ ସଭାସ୍ଥଳେ ଶଙ୍କର୍ଷଣ କହିଲେ ଦେଖାଅ ମଣି
ଶତ୍ରାଜିତ କହେ ଭାଇ ପ୍ରସ୍ନାଜିତ ପଳାଇଛି ରାତ୍ରେ ଘେନି । ୩୮
ଏମନ୍ତ ସମୟେ ଦୂତ ଜଣାଇଲେ ଶୁଣ ରାଜା ଉଗ୍ରସେନ
ସଖାମେ ଶିକାରୀ ଯେଉଁ ପ୍ରସ୍ନାଜିତ କାନନେ ହେଲେ ନିଧନ । ୩୯

ଅଶ୍ୱ ସହିତରେ ମରି ପଡ଼ିଛନ୍ତି ଦେଖି ଆସିଲୁ ନୟନେ
ଦୂତ କଥା ଶୁଣି ଭ୍ରାତା ଶଙ୍କାଜିତ କ୍ରୋଧାନ୍ୱିତ ହେଲେ ମନେ ।୪୦
ଦୂତେ ଅଭିଯୋଗ ଆଗତ କରିଲେ ରାମ-କୃଷ୍ଣ କାର୍ଯ୍ୟ ଏହି
ମାଗୁଥିଲେ ମଣି ନ ଦେବାରୁ ତାହା ଶେଷକଲେ ଭାଇ ମରାଇ ।୪୧
ଏତେ ବଡ଼ ତୁଚ୍ଛ ହୋଇ ଧନେ ଲୋଭ ଯଦ କଲେ ରାମକୃଷ୍ଣ
ଯାଦବେ କପରି ବିଶ୍ୱାସ କରିବେ ନିରାପଦ ନୁହେଁ ଧନ ।୪୨
ସର୍ବଜ୍ଞ ଶ୍ରୀକୃଷ୍ଣ ଅଜ୍ଞାତେ ମୋ ଭ୍ରାତା ମୃତ୍ୟୁ କି ସମ୍ଭବ ହୋଇ
ସଭାରେ ଶୁଭିଲା କୃଷ୍ଣ ଏହା କଲେ ମଣି ପାଇବାର ପାଇଁ ।୪୩
ସଭାରେ ପ୍ରକାଶ କରନ୍ତେ ଏକଥା ପାଇଲେ ଲୋକାପବାଦ
ଅନମିତେ ମାନ ସମ୍ମାନ ହରଇ ବଢ଼ିଲା ମନେ ବିଷାଦ ।୪୪
ସତ୍ୟ ଉଦ୍‌ଘାଟନ କରିବା ନିମନ୍ତେ ବାହାରିଲେ ଶିରୀକୃଷ୍ଣ
ଅକ୍ରୂର, ଉଦ୍ଧବ, ସାତ୍ୟକି ମିଶାଇ ଅନାଧୃଷ୍ଟ ପାଞ୍ଚ ଜଣ ।୪୫
ସ୍ୱର୍ଗ ମର୍ତ୍ତ୍ୟପୁରେ ମଣି ଖୋଜଗଲେ ନ ପାଇ ନନ୍ଦ ନନ୍ଦନ
ପାତାଳ ବିବରେ ପ୍ରବେଶ ହୋଇଲେ ବିଷାଦିତ ପାଞ୍ଚଜଣ ।୪୬
ଉଦ୍ଧବ, ସାତ୍ୟକି, ଅନାଧୃଷ୍ଟ ତିନି ବସାଇ ବିବର ଦ୍ୱାରେ
ଆଜ୍ଞା ଦେଲେ ଏଠି ତିନ ଦିନ ଯାଏଁ ଜଗିଥିବ ତିନି ବୀରେ ।୪୭
ତିନି ଦିନ ମଧ୍ୟେ ନ ଆସିଲେ ଫେରି ଦ୍ୱାରକା ପୁରକୁ ଯାଇ
ପିତାଙ୍କୁ କହିବ ମଣିକୁ ନ ପାଇ କୃଷ୍ଣ ନାଶ ଗଲେ ତହିଁ ।୪୮
ଏହା କହି କୃଷ୍ଣ ଅକ୍ରୂର ସଙ୍ଗରେ ଚଳିଲେ ପାତାଳ ପୁରେ
କିଛି ଦୂର ପଥ ଅତିକ୍ରମ କରି ମିଳିଲେ ଜାମ୍ବବ ପୁରେ ।୪୯
ଦେଖିଲେ କନ୍ୟାଏ ଝୋଲୁଛି ଉଦ୍ୟାନେ କଣ୍ଠେ ସ୍ୟମନ୍ତକ ମଣି
ଧାଇଁ ଯାଇ କୃଷ୍ଣ କନ୍ୟାର କଣ୍ଠରୁ ମଣିକୁ ଆଣିଲେ ଟାଣି ।୫୦
ଶତପୁର କରି ଘେରି ଯାଇ ବାଳୀ କହିଲେ ଲଜ୍ଜା ବଚନ
" ପୁରୁଷ ପ୍ରବର ହୋଇ ନାରୀ କଣ୍ଠୁ କରୁଛ ମଣି ହରଣ ? ୫୧
ତସ୍କର ପ୍ରାୟେକ ତୁମ୍ଭ ବ୍ୟବହାର ମାଡୁ ନାହିଁ ଟିକେ ଲାଜ
ରୁଳ ଧରି ନେଇ ରାଜା କରେ ଦେବା ଛଡ଼ାଇ ରଖିବେ ତଜ ।୫୨
ତରୁଣୀଙ୍କ ମୁଖୁ ନିନ୍ଦା କଥା ଶୁଣି କହୁଛନ୍ତି ଚକ୍ରପାଣି
ବହୁସ୍ଥାନ ଖୋଜି ନ ପାଇଲି ମଣି ଧାତା ଭେଟାଇଲା ଆଣି ।୫୩

ଆମ୍ଭର ପଦାର୍ଥ ଆମ୍ଭେ ନେଇ ଗଲୁ ରାଜା ଆଗେ କହ ଯାଇଁ
ନ କହିଣ ନେବା ଚୌର୍ଯ୍ୟ ବୃତ୍ତି ଅଟେ କହିବ ନେଉଛୁ ମୁହିଁ ।୫୪

ଏହା କହି କୃଷ୍ଣ କରେ ଧରିଥିବା ମଣି ବାନ୍ଧିଲେ ଅଣ୍ଟାରେ
ଡାକ ପକାଇଲେ ପରିଘ ଗଣ ରକ୍ଷା କର ନୃପବରେ ।୫୫

ନୃପଙ୍କ ଆଦେଶେ ମନ୍ତ୍ରୀ ଶିରୋମଣି ନିରୋଧିଲେ ଗଡ ଦ୍ୱାର
ହୁହୁଁ ହୁହୁଁ ଯୁଦ୍ଧ ଭୟଙ୍କର ହେଲା ହାରିଗଲେ ମନ୍ତ୍ରୀବର ।୫୬
କ୍ରୋଧେ ଜାମ୍ବବାନ ସମରେ ପଶିଲେ ହେଲା ଘୋର ମଲ୍ଲଯୁଦ୍ଧ
ବିବର ପଥରେ ରକ୍ତର ପ୍ରବାହ ଦେଖି ଯଦୁବୀରେ ସ୍ତବ୍ଧ ।୫୭

ବିବର ଦ୍ୱାରରେ ତିନି ଦିନ ରହି କୃଷ୍ଣ ସମ୍ବାଦ ନ ପାଇ
ବିଷର୍ଣ୍ଣ ବଦନେ ଦ୍ୱାରକାକୁ ଫେରି କହିଲେ କଥା ଫିଟାଇ ।୫୮
ଉଦ୍ଧବ କହିଲେ ଶୁଣ ହୋ ରାଜନ ବୁଲିଲୁ ବହୁତ ସ୍ଥାନ
ମଣିର ସନ୍ଧାନ ନ ପାଇ ରାଜନ ବିଷାଦିତ ପ୍ରଭୁ ମନ ।୫୯
ପାତାଳ ବିବର ଦ୍ୱାରଦେଶେ ଆମ୍ଭ ତିନ ଜଣଙ୍କୁ ବସାଇ
ଅକ୍ରୂରଙ୍କୁ ନେଇ ବିବରେ ପଶିଲେ ମଣି ଖୋଜିବାର ପାଇଁ ।୬୦
ଗମନ ସମୟେ ଆଜ୍ଞା ଦେଇ ଗଲେ ଏହିଠାରେ ଜଗି ଥିବ
ତିନିଦିନ ମଧ୍ୟେ ନ ଫେରିଲେ ଆମ୍ଭେ ଦ୍ୱାରକାରେ ବାର୍ତ୍ତା ଦେବ ।୬୧
ତିନିଦିନ ଗତ ହୋଇଲା ନୃନାଥ ନ ଫେରିଲେ କୃଷ୍ଣାକ୍ରୂର
ବିବର ଦ୍ୱାରରୁ ପ୍ରଖର ବେଗରେ ବହିଲା ରୁଧିର ଧାର ।୬୨
କାହା ସଙ୍ଗେ ଯୁଦ୍ଧ ହେଲା ଜଣା ନାହିଁ କିଏ ବା ହୋଇଲା ବଧ
ରକ୍ତେ ଦ୍ୱାର ରୁଦ୍ଧ ହେବାରୁ ଫେରିଲୁ ଦେବାକୁ ଏ ଦୁଃସମ୍ବାଦ ।୬୩
ଏ ସମ୍ବାଦ ପାଇ ଦ୍ୱାରକା ନଗରେ ଖେଳିଗଲା ଶୋକଗ୍ରସ୍ତା
ଷଡ ପାଟବଂଶୀ କ୍ରନ୍ଦନ କରିଲେ ଶୋକାକୁଳ ବାପା ମାଆ ।୬୪
ବିଧି ବିଧାନରେ ପ୍ରେତକ୍ରିୟା କଲେ ଖାଇଲେ ଦଶାହ ଅନ୍ନ
ଏକାଦଶ ଦିନେ ଘିଅ ମହୁ ଖାଇ ପିଣ୍ଡ କରିଲେ ପ୍ରଦାନ ।୬୫
ବାଢ଼ିଲେ ଦ୍ୱାଦଶ ପିଣ୍ଡ ବିଧାନରେ ବିପ୍ରଙ୍କୁ ଦେଲେ ଭୋଜନ
ଦକ୍ଷିଣା ପାଇଣ ଚାଲିଗଲେ ବିପ୍ରେ କଲ୍ୟାଣ କରି ପ୍ରଦ୍ୟୁମ୍ନ ।୬୬
ବିଚିତ୍ର କଥାଏ ଶୁଣ ସୁଜ୍ଞଜନେ ପ୍ରଦ୍ୟୁମ୍ନ ଦିଅନ୍ତେ ପିଣ୍ଡ
ସେ ପିଣ୍ଡାନ୍ନ ଯାଇ ତକ୍ଷଣେ ପଡିଲା କୃଷ୍ଣ ଭଗବାନ ତୁଣ୍ଡ ।୬୭

ପୁଷ୍ଟ ଦତ୍ତ ପିଣ୍ଡ ଖାଇ ଯଦୁନାଥ ହୋଇଗଲେ ବଳବନ୍ତ
ପନ୍ଦର ଦିବସ ମଲ୍ଲଯୁଦ୍ଧେ ବ୍ୟସ୍ତ ରହିଣ ଥିବାରୁ କ୍ଷୁଧିତ ।୬୮

ପ୍ରଦ୍ୟୁମ୍ନ ପ୍ରଦତ୍ତ ପିଣ୍ଡ ପାଇ କୃଷ୍ଣ ଶକ୍ତି କରି ସଞ୍ଚରଣ
ତ୍ରେତାଯୁଗ ମଲ୍ଲ ଜାମ୍ବବାନ ବୀରେ କଲେ ଶକ୍ତ ଆକ୍ରମଣ ।୬୯

ବକ୍ଷସ୍ଥଳେ ବସି ମୁଷ୍ଟିକୁ ଉଞ୍ଚାଇ କହିଲେ କୃଷ୍ଣ ସୁମର
ରାମ, ରାମ, ରାମ ନାମ ଉଚ୍ଚାରିଲେ ଶୁଣି ଶାନ୍ତ ଯଦୁବୀର ।୭୦

କୃଷ୍ଣ ରୂପ ଛାଡ଼ି ରାମ ରୂପ ଧରି ଦେଖା ଦେଲେ ନାରାୟଣ
ଶତ ପ୍ରଣିପାତ କଲେ ଜାମ୍ବବାନ ଚରଣ କରି ବନ୍ଦନ ।୭୧

କୃଷ୍ଣଙ୍କ ଦର୍ଶନ ପାଇ ଜାମ୍ବବାନ ବୋଲେ ଦୋଷ କ୍ଷମାକର
ମୁଁ ତୁମ୍ଭର ଦାସ ତୁମ୍ଭେ ମୋର ପ୍ରଭୁ ଚରଣ ତଳ ନୌକର ।୭୨

ଭକ୍ତ ଜାମ୍ବବାନ ବିନୟ ସ୍ୱଭାବ ଦେଖି ପ୍ରୀତ ଯଦୁପତି
ବାହୁ ବିସ୍ତାରିଣ କୋଳାଗ୍ରତ କଲେ ଛାତିରେ ଲଗାଇ ଛାତି ।୭୩

ଜାମ୍ବବାନ ବୋଲେ ମାୟାରେ ପଡ଼ିଣ ମୁହିଁ ନ ପାରିଲି ଚିହ୍ନି
ମାତ୍ର ତୁମ୍ଭେ ପ୍ରଭୁ ଅନ୍ତର୍ଯ୍ୟାମୀ ହୋଇ କମ୍ପା ନ ପାରିଲ ଜାଣି ?୭୪
ଶ୍ରୀକୃଷ୍ଣ କହିଲେ ତ୍ରେତା ଯୁଗ କଥା ମନେ ପକା ଜାମ୍ବବାନ
ଆମ୍ଭ ସଙ୍ଗେ ମଲ୍ଲଯୁଦ୍ଧ କରିବାକୁ ବଳାଇ ଥିଲୁ ତୁ ମନ ।୭୫
ଜାଣିଲି ତୋହର ମନ କଥା ସତ୍ତଁ ତୋତେ ଦେଇଥିଲି ବର
ଦ୍ୱାପର ଯୁଗରେ କୃଷ୍ଣ ଅବତାରେ ପୂର୍ଣ୍ଣ ହେବ ଇଚ୍ଛା ତୋର ।୭୬
ତୋହ ମନୋବାଞ୍ଛା ପୂର୍ଣ୍ଣ କରିବାକୁ ଆସି ମିଳିଲି ତୋପୁର
ଅନିମିତ୍ତେ ତୁମ୍ଭ ସଙ୍ଗେ ମଲ୍ଲଯୁଦ୍ଧ କଲି ଆହେ ମନ୍ତ୍ରୀବର !୭୭
ଶୁଣି ଜାମ୍ବବାନ ମଥାକୁ ନୁଆଇଁ କହିଲେ ହେ ଇଚ୍ଛାମୟ
ଭକ୍ତ ମନୋବାଞ୍ଛା ପୂର୍ଣ୍ଣକାରୀ ତୁମ୍ଭେ ନାମ ବହ ଦୟାମୟ ।୭୮
ଶ୍ରୀକୃଷ୍ଣ କହିଲେ ଆହେ ଜାମ୍ବବାନ ବର କରୁଛୁ ପ୍ରଦାନ
କୁଟୁମ୍ବ ଘେନିଣ ପାତାଳ ପୁରରେ ସୁଖରେ କଟାଅ ଦିନ ।୭୯
ବ୍ରହ୍ମ ବାର ବର୍ଷ ଥିଲା ତୋ ଆୟୁଷ ହେଲା ଷୋଳ ବ୍ରହ୍ମବର୍ଷ
କୁଟୁମ୍ବ ଘେନିଣ ସୁଖ ଭୋଗ ଶେଷେ କର ବଇକୁଣ୍ଠ ବାସ ।୮୦
ଜାମ୍ବବାନ ବୋଲେ ଯାଚି ଦେଲେ ବର ମାଗି ତ ନ ଥିଲି ହରି
ଯତ୍ନ ବର ମୋର ପ୍ରୟୋଜନ ନାହିଁ ମାଗୁଛି ଦିଅ ଶ୍ରୀହରି ।୮୧

ଶ୍ରୀକୃଷ୍ଣ କହିଲେ ଯାହାକୁ ମାଗିବୁ ନିଶ୍ଚେ ଦେବ ଜାମ୍ବବାନ
ଜାମ୍ବବାନ ବୋଲେ କନ୍ୟା ଜାମ୍ବବତୀ ତା ପାଣି କର ଗ୍ରହଣ ।୮୨
ଅବିବାହୀ ହୋଇ ରହିଅଛି କନ୍ୟା ଗତ ହେଲା ମନୁସାତ
ତୁମ୍ଭର ବଲ୍ଲଭୀ ହେବାକୁ କୁମାରୀ ରହି ବସି ଅଛି ପଥ ।୮୩
ରାମ ଅବତାରେ ବର ବରି ଥିଲା ମାତ୍ର ତା ନ ହେଲା ପୂର୍ଣ୍ଣ
ଏକ ପତ୍ନୀ ବ୍ରତ ଗ୍ରହଣ କଲରୁ ନ କୁମାରୀ ମୋ କନ୍ୟା ରତ୍ନ ।୮୪
ଭକ୍ତର କଥାରେ ସମ୍ମତ ହୋଇଲେ ଭାବଗ୍ରାହୀ ଭଗବାନ
ବେଦ ବିଧାନରେ ପିତା ଜାମ୍ବବାନ ଦାନ କଲେ କନ୍ୟା ରତ୍ନ ।୮୫
ଦକ୍ଷିଣା ସ୍ୱରୂପ ସ୍ୟମନ୍ତକ ମଣି ପ୍ରଭୁଙ୍କୁ କଲେ ଅର୍ପଣ
ଜାମ୍ବବତୀ ସଙ୍ଗେ ସ୍ୟମନ୍ତକ ମଣି ନେଇ ଆସିଲେ ଶ୍ରୀକୃଷ୍ଣ ।୮୬
ଜନ ମୁଖେ ନିନ୍ଦା ସହି ନ ପାରିଣ ବହୁ କଷ୍ଟ ଭୋଗ କଲେ
କାର୍ଯ୍ୟ ସିଦ୍ଧି ହେଲା ସମ୍ମାନ ମିଳିଲା ମଣିକୁ ଉଦ୍ଧାର କଲେ ।୮୭
ପିଣ୍ଡ ଚେର ବନ ଫେରିଲେ ଶ୍ରୀକୃଷ୍ଣ ମିଳିଲେ ଦ୍ୱାରକାପୁର
ଜୀଇଁ ଥାଉଁ ଥାଉଁ ମୃତପିଣ୍ଡ ପାଇ ଶୋକ ଦଶେ କଳେବର ।୮୮
ଅନ୍ତପୁର ମଧ୍ୟେ ଜାମ୍ବବତୀ ନେଇ ଚଳିଲେ ଅକ୍ରୂର ତାତ
ଷଡ଼ ପାଞ୍ଚବଂଶୀ ଗବାକ୍ଷ ସେ ପାଖେ ରହି ଦେଖାଇଲେ ହାତ ।୮୯
ବିଧବା ପତ୍ନୀଙ୍କୁ ସଧବା କରାଇ ସିନ୍ଦୂର ଶଙ୍ଖା ପିନ୍ଧାଇ
ଅନ୍ତଃପୁରେ ବସି ଶାନ୍ତ କରାଇଲେ ପ୍ରୀତି କଥାମାନ କହି ।୯୦
ରାମ ପ୍ରିୟ ଭକ୍ତ ଜାମ୍ବବାନ କନ୍ୟା ନବ ବଧୂ ରୂପେ ପାଇ
ଦ୍ୱାରକା ନଗରେ ଉତ୍ସବ କରିଲେ ଉଗ୍ରସେନ ନରସାଇଁ ।୯୧
ଯାଦବ ସଭାରେ ସଭିଙ୍କ ସମ୍ମୁଖେ କୃଷ୍ଣ ଦେଖାଇଲେ ମଣି
ସ୍ୟମନ୍ତକ ମଣି ଦେଖି ସଭା ଜନ କଲେ ଜୟଜୟ ଧ୍ୱନି ।୯୨
ସଭା ମୁଖ ଚାହିଁ କହିଲେ ଅକ୍ରୂର ଶୁଣ ସଭାସଦ୍ ଗଣ
ସ୍ୟମନ୍ତକ ମଣି ପାଇଁ ବହୁ ଦୁଃଖ ଭୋଗ କଲେ ନାରାୟଣ ।୯୩
ଜାମ୍ବବାନ ଠାରୁ ସମ୍ବାଦ ମିଳିଲା ସିଂହ ଶଙ୍କାଜତ ମାରି
ମୁଖେ ମଣି ଧରି ଯାଉଥିବା କାଳେ ଜାମ୍ବବାନ ନେଲେ ହରି ।୯୪
ଶ୍ରୀରାମଙ୍କ ଭକ୍ତ ବୀର ଜାମ୍ବବାନ ପାତାଳପୁର ନୃମଣି
ତାଙ୍କ ସଙ୍ଗେ ପ୍ରଭୁ ଘୋର ଯୁଦ୍ଧ କଲେ ତ୍ୟାଗ କରି ଅନ୍ନ ପାଣି ।୯୫

ଶରୀରରେ ପୀଡ଼ା ପାଇଲେ ଅନେକ ହେଲେ ବଳବୀର୍ଯ୍ୟ ଶୂନ୍ୟ
ପ୍ରଦ୍ୟୁମ୍ନ ହସ୍ତରୁ ପିଣ୍ଡାନ୍ତ ବେଳେ ବଢ଼ିଗଲା ପରାକ୍ରମ । ୯୬
ମଲ୍ଲଯୁଦ୍ଧେ ଜାମ୍ବବାନକୁ ହରାଇ ଛାଡ଼ିଦେଲେ ପ୍ରିୟ ଭକ୍ତ
ସ୍ୟମନ୍ତକ ମଣି ସଙ୍ଗେ କନ୍ୟା ରତ୍ନ ଦେଇ ଚରଣେ ଆଶ୍ରିତ । ୯୭
ସ୍ୟମନ୍ତକ ମଣି ସଙ୍ଗେ କନ୍ୟା ରତ୍ନ ନବ ବନ୍ଧୁତ୍ୱ ଅର୍ଜ୍ଜନ
ଶତ୍ରାଜିତ ଅପ ପ୍ରଚୁର ହେତୁରୁ ସୁକୀର୍ତ୍ତି ହେଲା ଅର୍ଜ୍ଜନ । ୯୮
ତୁଚ୍ଛ ବୋଲି ସିନା ଏ ଦୁରୂହ କାର୍ଯ୍ୟ ଅତି କଷ୍ଟେ ହେଲେ ସାଧ୍ୟ
ନୋହିଲେ କୁଳକୁ କଳଙ୍କ ଲାଗନ୍ତା ଲୋକ ମୁଖେ ଅପବାଦ । ୯୯
ବଞ୍ଚି ଥାଉଁଥାଉଁ ପୁତ୍ରର ହାତରୁ ପାଇଲେ ଦ୍ୱାଦଶ ପିଣ୍ଡ
ସଧବା ହସ୍ତୀଏ ବିଧବା ହୋଇଲେ ଘଟିଲା ବିଚିତ୍ର କାଣ୍ଡ । ୧୦୦
ସାଧୁ ହୋଇ ଶେଷର ଘୋଷିତ ହୋଇଲେ ନିର୍ଦ୍ଦୋଷରେ ଦୋଷ ଘୋର
ଗୁରୁତର ଅଭିଯୋଗ କଲେ ଲୋକେ ଶ୍ରବଣେ କର୍ଣ୍ଣ ବଧିର । ୧୦୧
ଭାବାବିଷ୍ଟ ହୋଇ କହନ୍ତେ ଅକ୍ରୂର ବିଗଳିତ ହୃଦମନ
କହୁଁ କହୁଁ କଣ୍ଠ ରୁଦ୍ଧ ହୋଇଗଲା ଅକ୍ରୂର ହେଲେ ମଉନ । ୧୦୨
ସଭା ମଧ୍ୟେ ବସି ଥିଲେ ଶତ୍ରାଜିତ ତାଙ୍କୁ ଡ଼କାଇ କୃଷ୍ଣ
କହିଲେ ଏମଣି ନିଅ ଶତ୍ରାଜିତ ତୁମ୍ଭର ତପ ଅର୍ଜ୍ଜନ । ୧୦୩
ଶତ୍ରାଜିତ କହୁ ଅଛନ୍ତି ମୋ ଦୋଷ କ୍ଷମା କର ରାମକୃଷ୍ଣ
ସ୍ୟମନ୍ତକ ମଣି ତୁମ୍ଭର ହୋଇଲା ନାହିଁ ମୋର ପ୍ରୟୋଜନ । ୧୦୪
ଆଗରୁ ଯେବେ ମୁଁ ମଣି ଦେଇ ଥାନ୍ତି ନ ମରନ୍ତା ମୋର ଭାଇ
ଏ ସଭାରେ ଗଉରବ ପାଇଥାନ୍ତି ଦାତା ବୋଲାଅନ୍ତି ମୁହିଁ । ୧୦୫
ମାତ୍ର ପଦାର୍ଥରେ ଲୋଭ କରିବାରୁ ଭାଇଗଲା ପ୍ରାଣେ ନାଶ
ତୁଚ୍ଛ ମନେ ପୁଣି ଦୁଃଖଜାତ ହେଲା ପାଇଲେ ବହୁତ କ୍ଳେଶ । ୧୦୬
ଦୋଷ ଅନୁରୂପେ ଦଣ୍ଡ ଦିଅ ମୋତେ ତାହା ମୋର ପ୍ରୟୋଜନ
ଏହା କହି ଭୟେ ଶତ୍ରାଜିତ ବୀର ଧଇଲେ ପ୍ରଭୁ ଚରଣ । ୧୦୭
ଶତ୍ରାଜିତ କଥା ଶୁଣି ରାମକୃଷ୍ଣ ବସିଲେ ହୋଇ ମଉନ
ପ୍ରଜାଏ ଜାଣିଲେ ସକଳ ଘଟଣା ଦୋଷ ଶୂନ୍ୟ ରାମ କୃଷ୍ଣ । ୧୦୮
ଉଗ୍ରସେନ ନୃପ ବୃଦ୍ଧପ୍ରାଜ୍ଞ ଡ଼ାକି ପୁଚ୍ଛିଲେ କହ ଘରଣୀ
ବିନା ଦୋଷେ କପାଇଁ ରାମ କୃଷ୍ଣଙ୍କୁ ପଡ଼ିଲା ଘୋର ବିପତ୍ତି ? ୧୦୯

ଜୀବନରେ ଥାଉଁ ଦ୍ୱାରକାଧୀଶଙ୍କ କମ୍ପା ହେଲା ଶୁଦ୍ଧି ଘର
ବଧୂଏ ମୋହର ବିଧବା ହୋଇଲେ ଲୁକେ ଅପବାଦ ଘୋର ।୧୧୦
ମିଛେ ମଣି ଚୋର ହୋଇଲେ କୁମରେ ନିର୍ଦ୍ଦୋଷ ପୁରୁଷ ହୋଇ
ପ୍ରଜାଙ୍କ ଆଗରେ ମୁଖ ଦେଖାଇବା ସମ୍ଭବ ହୋଇଲା ନାହିଁ ।୧୧୧
ଅପବାଦ ସହି ନ ପାରି ଶ୍ରୀହରି ଗଲେ ଘରଦ୍ୱାର ଛାଡ଼ି
ନିର୍ଦ୍ଦୋଷ ହୋଇଣ ଦୋଷୀ ଗଣା ହେଲେ ଲାଜେ ଗଲା ମୁହଁ ପୋଡ଼ି
ଏପରି ଦୁର୍ଦ୍ଦଶା ପଡ଼ିଲା କାହିଁକି ବୁଝାଇ କହନ୍ତୁ ଗୁରୁ
କେଉଁ ଗ୍ରହ ଦୋଷେ ମରଣ ଯନ୍ତ୍ରଣା ଗ୍ରାସିଲା ଆସି ଶୂନ୍ୟରୁ ।୧୨୩
ଉଗ୍ରସେନ କଥା ଶୁଣି ବୃହସ୍ପତି ଗ୍ରହ ଚକ୍ର ଗୋଟି ପାଡ଼ି
ଗଣନା କରିଣ ତ୍ରୁଟି ନ ପାଇଣ କହିଲେ ଶୁଣ ନୃପତି ।୧୧୪
ଗ୍ରହମାନେ ସବୁ ଶୁଭ ଘରେ ଛନ୍ତି ଶୁଭଫଳ ପ୍ରଦାୟକ
ତେଣୁ ଶୁଭ କର୍ମ ସମ୍ପାଦିତ ହେଲା ଗ୍ରହଙ୍କ ବ ଯୋଗ ଠିକ୍ ।୧୧୫
ପୁଚ୍ଛା କଲେ ରାଜା କେଉଁ ଦୋଷେ ତେବେ ପଡ଼ିଲା ଘୋର କଷଣ ?
ବୋଲୁଛନ୍ତି ଗୁରୁ ତହିଁର କାରଣ ଶୁଣ ରାଜା ଦେଇ ମନ ।୧୧୬
ଗଣେଶ ଚତୁର୍ଥୀ ନଷ୍ଟ ଚନ୍ଦ୍ର ଦିନ ଚନ୍ଦ୍ର ଦର୍ଶନ କାରଣ
ସେ ଦିନ ଜଳରେ ଚନ୍ଦ୍ର ପ୍ରତିବିମ୍ବ ଶ୍ରୀହରି କଲେ ଦର୍ଶନ ।୧୧୭
ସେହି ଦୋଷେ ପୁତ୍ରେ ପଡ଼ିଲା ବିପତ୍ତି ନିର୍ଦ୍ଦୋଷେ ପାଇଲେ ଦଣ୍ଡ
ପ୍ରଭୁ ବୋଲି ଦୋଷୁ ନିବର୍ତ୍ତି ରହିଲେ ନୋହିଲେ ଛିଣ୍ଡନ୍ତା ମୁଣ୍ଡ ।୧୧୮
ନଷ୍ଟ ଚନ୍ଦ୍ର ଅବା ଚନ୍ଦ୍ର ପ୍ରତିବିମ୍ବ ଯେଦିନ କଲେ ଦର୍ଶନ
ବରଷକ ପାଏଁ ଯଶକୀର୍ତ୍ତି ବନ୍ଧ ମିଳେ ନିନ୍ଦା ଅପମାନ ।୧୧୯
ସାଧୁ ହୁଏ ଚୋର ନୃପତି ଫକୀର ମିଳେ ନାନା ଅପବାଦ
ଜୀବନ ଘାତକ ଅଟେ ନଷ୍ଟ ଚନ୍ଦ୍ର ପ୍ରାଣୀକୁ ପଡ଼େ ପ୍ରମାଦ ।୧୨୦
ପ୍ରଭୁ ହୋଇ ଦୋଷୁ ତ୍ରାହି ନ ପାଇଲେ ଆଉ କେ ପାଇବ ତ୍ରାହି
ଏଥିକୁ ବ୍ୟବସ୍ଥା ଯେମନ୍ତ ଅଛଇ ଶୁଣ ହେ ଦ୍ୱାରକା ସାଇଁ ।୧୨୧
ବ୍ରହ୍ମ ବୈବର୍ତ୍ତ ପୁରାଣେ ରଚିତ ସ୍ୟମନ୍ତକ ଉପାଖ୍ୟାନ
ଶ୍ରବଣେ ପଠନେ ଦୁରିତ ଖଣ୍ଡନ ହୋଇଥାଏ ନରଗଣ ।୧୨୨
ହରି ତାଳିକା ଏ ଚନ୍ଦ୍ର ନାମ ଅଟେ ନିଷେଧ ଚନ୍ଦ୍ର ଦର୍ଶନ
ଯଦି ଭ୍ରମେ କେହି ଦର୍ଶନ କରିବେ ଶୁଣିବେ ମଣି ଆଖ୍ୟାନ ।୧୨୩

କଷ୍ଟିତ ପ୍ରମାଣେ ଦୋଷ ନାଶ ଯାଇ ଅବଶ୍ୟ ମିଳିବ ହାନି
ଉପଦେଶ ଦେଇ ଗୁରୁ ବୃହସ୍ପତି ସ୍ୱସ୍ଥାନେ ଗଲେ ଫେରିଣ । ୧୨୪
ସଭା ମଧ୍ୟେ ବସି ଥିଲେ ଶତ୍ରାଜିତ ବୃହସ୍ପତି କଥା ଶୁଣି
ବିଗୁରିଲେ ମନେ ମୋହ ପ୍ରତି କ୍ଷୋଭ ହେଲେ ହରି ହଲପାଣି ।୧୨୫
ଏହା ଚିନ୍ତ ମନେ ଶତ୍ରାଜିତ ବୀର ବସିଲେ ହୋଇ ହର୍ଷିତ
ଶତ୍ରାଜିତ ମନ କଥା ଜାଣି କୃଷ୍ଣ ଅଭୟ କଲେ ପ୍ରଦାନ । ୧୨୬
ଆଶ୍ୱାସନା ଦେଇ କହିଲେ ଶ୍ରୀକୃଷ୍ଣ ମାଗି ନେଇ ଇଚ୍ଛାବର
ଶତ୍ରାଜିତ ବୋଲେ ଯେବେ ଦୟା ହେଲା ମୋ କନ୍ୟାକୁ ବିଭାକର ।୧୨୭
ସତ୍ୟଭାମା ନାମେ ଦୁହିତା ମୋହର ଜନ୍ମି ଅଛି ସରସ୍ୱତୀ
କନ୍ୟା ବିଭା କରି କନ୍ଧୁଭାବ କରି ଏଇ ମାଗୁଣି ଶ୍ରୀପତି । ୧୨୮
ଶତ୍ରାଜିତ କଥା ଶୁଣି ଉଗ୍ରସେନ ସମ୍ମତି କଲେ ପ୍ରଦାନ
ଯାଦବେ କହିଲେ ଏ କଥା ଯୋଗାଏ କରନ୍ତୁ କନ୍ୟା ଗ୍ରହଣ ।୧୨୯
ବରବେଶ ହୋଇ ବେଦୀରେ ବସିଲେ ଶୁଭ ସମୟେ ଶ୍ରୀକୃଷ୍ଣ
ବିଧି ବିଧାନରେ ଶତ୍ରାଜିତ ବୀର ସତ୍ୟଭାମା କଲେ ଦାନ । ୧୩୦
କନ୍ୟାଦାନ ସଙ୍ଗେ ସ୍ୟମନ୍ତକ ମଣି ପ୍ରଭୁଙ୍କୁ କଲେ ପ୍ରଦାନ
ଶ୍ରୀକୃଷ୍ଣ କହିଲେ ତୁମ୍ଭର ଏ ମଣି ତପଫଳେ ଉପାର୍ଜନ । ୧୩୧
ଫେରାଇଣ ମଣି କନ୍ୟାରତ୍ନ ନେଇ ଫେରିଲେ ସାରଙ୍ଗଧର
ସତ୍ୟଭାମା ରୂପ ଶୋଭା ଦେଖି ଧନ୍ୟ ଧନ୍ୟ କଲେ ଯଦୁ ବୀର । ୧୩୨
ରୁକ୍ମିଣୀ ବଲ୍ଲଭ ସତ୍ୟଭାମାଧବ ଭଗବାନ ଶ୍ରୀକୃଷ୍ଣ
ଅଷ୍ଟପାଟବଂଶୀ ସଙ୍ଗେ ଅଷ୍ଟନିଧି ଅଷ୍ଟ ଅଇଶ୍ୱର୍ଯ୍ୟବାନ୍ । ୧୩୩
ଶତେ ଚଉଚିଶ ପଦେ ଅଧ୍ୟା ଶେଷ ସୁଜନେ ନ ନେନ ଦୋଷ
ରାମକୃଷ୍ଣ ପାଦେ ଶରଣ ପଶିଣ ଗୀତେ ଭଣେ ବୃନ୍ଦାବାସ । ୧୩୪

**ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ**
**ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ଅଷ୍ଟପାଟବଂଶୀ ଆଖ୍ୟାନେ**
**ନାମ ତ୍ରୟୋଦଶ ସର୍ଗଃ ପୂର୍ଣ୍ଣଂ ।**

**ଶ୍ରୀକୃଷ୍ଣାର୍ପଣମସ୍ତୁ ।**

ବୋଲ— ବାଙ୍ମନ ହୋ !

ଭାଗବତ ପଠନ କର
ଭାବ ସମୁଦ୍ରରେ ସ୍ନାହାନ କରିଣ
ତରିଯାଅ, ଭବସାଗର ॥ ଘୋଷା ॥

"ଭାଗବତ" ଯେଉଁ ଗୁରୋଟି ଅକ୍ଷର
ଗୁରି ଅର୍ଥରେ ହେତୁ କର
ଭାବ - ଜ୍ଞାନ - ବ୍ରହ୍ମ - ତତ୍ତ୍ୱ ଗୁରି ଅର୍ଥ
ହେତୁ ସୂତ୍ରରେ ତାକୁ ଧରି । ୧

ଭାଗବତକୁ ତୁ କାମଧେନୁ କରି
ମନକୁ ବାଛୁରି ବଗୁର
ମନବାଞ୍ଛା ଛନ୍ଦ ଦୋହନ କରିଣ
ପାନ କର ଭକତି କ୍ଷୀର । ୨

ଭକତି କ୍ଷୀରକୁ ଯେ ପାନ କରନ୍ତି
ରୋଗ ଶୋକ ତାହାର ଦୂର
ଅଶୋକ କଡ଼ିକୁ ଖାଇଲା ଦିନରୁ
ଶୋକ ସାଗରରୁ ଉଦ୍ଧାର । ୩

ବୋଲେ ବୃନ୍ଦାବାସ ଆରେ ମୂଢ଼ ମନ
ଭାଗବତ ଚରଣ୍ଟ କର
ଭାବ ସାଗରରେ ସ୍ନାହାନ କରିଣ
ତରିଯାଅ ଭବସାଗର । ୪

—●—

# ଚତୁର୍ଦ୍ଦଶ ଅଧ୍ୟାୟ

## ଦୁଃଶିଳା ବିବାହ

ରାଗ — ଚୈକ୍ଷି

କୃଷ୍ଣ ଚରିତ ମାନସ     ପାନ କର ସୁଧା ରସ
ଦୁର୍ଜନ ବିନାଶେ ହେବ ପୁଣ୍ୟ ଉଦିତ
ସିନ୍ଧୁ ଦେଶ ସୂର୍ଯ୍ୟ ବଂଶରେ     ସମ୍ଭୂତ ନରନାଥ
ବୃଦ୍ଧକ୍ଷତ୍ର ନାମେ ମର୍ତ୍ତ୍ୟପୁରେ ବିଖ୍ୟାତ
ଜୟଦ୍ରଥ ତାଙ୍କ ନନ୍ଦନ
ସର୍ବଗୁଣେ ପରିପୂର୍ଣ୍ଣ ବିଜ୍ଞ ବିଦ୍ୱାନ । ୧

ପାଞ୍ଚାଳ ରାଜ ନନ୍ଦିନୀ     ସୁକୁମାରୀ ଯାଜ୍ଞସେନୀ
ପୁତ୍ରବଧୂ କରିବାକୁ ପେଷିଲେ ଦୂତ
ସଚିବ ବିଜୟ ସେନ     ପାଞ୍ଚାଳେ କରି ଗମନ
ଜଣାଇଲେ ଦ୍ରୁପଦଙ୍କୁ ରାଜାଙ୍କ ମତ
ଶୁଣି ପାଞ୍ଚାଳ ରାଜନ
କ୍ରୋଧେ ମନ୍ତ୍ରୀଙ୍କର ଶିର କଲେ ଛେଦନ । ୨

ସଙ୍ଗେ ଯାଇଥିବା ସୈନ୍ୟ     ଭୟେ କଲେ ପଳାୟନ
ଜଣାଇଲେ ସିନ୍ଧୁ ନୃପେ ବର୍ତ୍ତା ବହନ
ଶ୍ରବଣେ ସିନ୍ଧୁ ରାଜନ     ହୋଇ ଅତି କୋପମାନ
ପାଞ୍ଚାଳ ଦେଶକୁ ଦର୍ପେ ବାହୁଲେ ସୈନ୍ୟ
ପଥେ ସୁବାହୁଙ୍କୁ ଭେଟିଲେ
ପାଞ୍ଚାଳେ ସୈନ୍ୟ ଗୃଜନା କରୁଁ ବୋଇଲେ । ୩

ସୁବାହୁ ବୋଲେ ରାଜନ     ତା ଭୁଲେ ନ କର ରଣ
ଶିବ ବରେ ବଳବାନ ପାଞ୍ଚାଳ ନାଥ
ତାହାଙ୍କ ଭୟରେ ମୁହିଁ     କାନନେ ଲୁଚି ଅଛଇ
କିରାତ ସେନର ମୁହିଁ କନିଷ୍ଠ ଭ୍ରାତ
ପ୍ରତ୍ୟକ୍ଷ ସମର ନ କରି
ଉପାୟେ ମରାଇବା ହେ ଦଣ୍ଡଧାରୀ । ୪

ଭୀଷ୍ମ, ଦ୍ରୋଣ, ଦୁର୍ଯ୍ୟୋଧନ   ଜିଣିବାକୁ ନରଗଣ
ଶିବଠାରୁ ବର ପାଇ ସେ ବଳବନ୍ତ
ଅର୍ଜ୍ଜୁନଙ୍କୁ କନ୍ୟାଦାନ   କରି ଉଦ୍ଧାରିବ ମାନ୍ୟ
ଏମନ୍ତ ସଂକଳ୍ପ କରି ଅଛି ନୃନାଥ
ପୋଡ଼ିମଲେ ପାଣ୍ଡୁ ନନ୍ଦନ
ଆଉ କି ବିଭା କରିବ ତା କନ୍ୟାରତ୍ନ ? ୫

ଦୁର୍ଯ୍ୟୋଧନର ବଇରୀ   ହୋଇବାରୁ ଦଣ୍ଡଧାରୀ
କୁରୁପତି ସଙ୍ଗେ ଆମ୍ଭେ ମିତ୍ରତା କରି
ମନାଇବା ଦୁର୍ଯ୍ୟୋଧନ   ସକୂଟେ କହି ବଚନ
ପରସ୍ପରେ ଲଢ଼ାଇବା ହେ ଦଣ୍ଡଧାରୀ
ଏମନ୍ତ ବିଚାରି କରିଣ
ଚଳିଗଲେ ହସ୍ତିନାକୁ ବେନି ରାଜନ । ୬

ଦୁର୍ଯ୍ୟୋଧନଙ୍କ ମଇତ୍ର   କର୍ଣ୍ଣଙ୍କୁ କଲେ ସାକ୍ଷାତ
କର୍ଣ୍ଣ ଜୟଦ୍ରଥ ବେନି ହୋଇଲେ ସଙ୍ଗାତ
ବୋଲୁଛନ୍ତି ବୃଦ୍ଧ କ୍ଷତ୍ର   ମୋ ତନୟ ଜୟଦ୍ରଥ
ଦୁର୍ଯ୍ୟୋଧନେ କହି ଭଗ୍ନି କରଅ ଦାନ
ବିଚାରି ଉତ୍ତମ ପ୍ରସ୍ତାବ
ମଇତ୍ରଙ୍କୁ ଜଣାଇଲେ ଅଙ୍ଗ ନୃଦେବ । ୭

ସେ ପ୍ରସ୍ତାବେ ଦୁର୍ଯ୍ୟୋଧନ   ସମ୍ମତି କଲେ ପ୍ରଦାନ
ଜୟଦ୍ରଥ ଦୁଃଶିଳା ବିବାହ ସମ୍ପନ୍ନ
ଦୁଷ୍ଟ ନୃପଗଣେ ମେଳ   ଲାଗିବ ଘୋର କନ୍ଦଳ
ଦିନୁଦିନ ସତ୍ୟଶାନ୍ତି-ଧର୍ମ ବିପନ୍ନ
ଆଠ ପଦେ ଅଧ୍ୟାୟ ଶେଷ
ବୃନ୍ଦଦାସ ବୋଲେ   ଜନେ ନ ଧର ଦୋଷ । ୮

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ଦୁଃଶିଳା ବିବାହ
କଥନେ ନାମ ଚତୁର୍ଦ୍ଦଶ ଅଧ୍ୟାୟ ସଂପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

ବୋଲି —

ଆଉ ଚିହ୍ନିବନି ହେ ଚକାଡୋଳା !
ଯେଣୁ ଧରଣୀ ତୁମ୍ଭର କମଳା ।
ଧର୍ମ କି ସିନା ଧର୍ମଏ ଚିହ୍ନନ୍ତି
କଏ ବା ଚିହ୍ନଇ ନନ୍ଦ'ମା ବଳା' ? ଘୋଷା
ଗରିବ ତୋତେ କି ଦେଇ ତୋଷିବ
ନନ୍ଦନନ ତାର ଚୁଲି ଅଜଳା
କୁଟୁମ୍ବେ ତାର ଭୋକେ ଶୋଇଛନ୍ତି
ବୁଢ଼ିଲାଣି ଆସି ସଂସାର ଭେଳା । ୧
ଛପ୍ପନ କୋଟି ଜୀବେ ଭୁଞ୍ଜାଇ ଭୁଞ୍ଜି
ଆନନ୍ଦ ବଜାରେ ଅନ୍ନର ଖେଳା
ଗଜପତି ରାଜା ଖଞ୍ଜି ଦେଇଛନ୍ତି
ଷାଠିଏ ପଉଟି ଗୋଟିଏ ବେଳା । ୨
ମୋ ପରି ଆର୍ତ୍ତ ଭୋକେ ଛଟପଟ
ସହି ନ ପାରଇ ପେଟର ଜ୍ୱାଳା
ତୋପରି ସାଆନ୍ତ ଆଶ୍ରିତ ହୋଇ
ମନା ହେଲି ଟଙ୍କ ତୋରାଣି ଟୋଲି । ୩

—※—

# ପଞ୍ଚଦଶ ଅଧ୍ୟାୟ

## ବ୍ୟାସ ବାସୁଦେବ ମନ୍ତ୍ରଣା ଓ
## ପାଞ୍ଚାଳୀଙ୍କ ସ୍ୱୟମ୍ବର ଯୋଗାଡ଼

ରାଗ — ଆଦ୍ୟ ମରୁଣିର ବାଣୀ

ଶୁଣ ସୁଜ୍ଞଜନ ଦେଇ ମନ କର୍ଣ୍ଣ କୃଷ୍ଣ ଚରିତ ମାନସ
ବ୍ୟାସ ବାସୁଦେବ ଏକତ୍ର ବସିଣ କଲେ ବିଚ୍ଛର ବିମର୍ଶ
ବୋଲନ୍ତି, ବ୍ୟାସଦେବ ହେ ପିତବାସ !
ତୁମ୍ଭଙ୍କୁ ଆଶ୍ରୟ କରି ପାଣ୍ଡୁପୁତେ ଭୋଗୁଛନ୍ତି କ୍ଳେଶ ଅଶେଷ । ୧

ତିନି ବର୍ଷ ବନ ବାସରେ କଠିନ ପାଉଛନ୍ତି ବହୁ ଦୁଃଖ
ଭିକ୍ଷା ବୃତ୍ତି କରି ଜୀବନ ବିତାନ୍ତି ଅଧାହିନ ଉପବାସ
ସେମାନେ, ବଞ୍ଚନ୍ତି ସଦା ତୋ ଆଶ୍ରୟେ
କୃପା ନ କରିଲେ ରାଜ୍ୟ କି ଫେରିବେ ମାତା ସଙ୍ଗେ ପାଞ୍ଚ ତନୟେ ? ୨

ଧର୍ମରେ କଷଣ ଆଜି କେତେ ଦିନ ଦେଉଥିବ ନାରାୟଣ
ଦିନୁଦିନ ଧର୍ମ ମ୍ଳାନ ଘଟୁଅଛି ବଢୁଛି ଧର୍ମରେ କଷଣ
ପାଣ୍ଡବେ, ପାଣ୍ଡୁଙ୍କ ତନୟ ହୋଇଣ
ରାଜ୍ୟ ନିର୍ବାସିତ ହୋଇ ବନବାସେ ଭୋଗୁଛନ୍ତି ବହୁ କଷଣ । ୩

କୂଟ କପଟରେ ଦୁଷ୍ଟ ଦୁର୍ଯ୍ୟୋଧନ କରୁଛି ରାଜ୍ୟ ଶାସନ
ବ୍ୟାସ କଥା ଶୁଣି କହିଲେ ଶ୍ରୀହରି ସତ୍ୟ ତୁମ୍ଭର ବଚନ
ଯଦ୍ୟପି, ଭିକ୍ଷାନ୍ନେ ଯାପନ ଜୀବନ
ତଥାପି ସେମାନେ ଧର୍ମରେ ରହିଣ ଦୁର୍ଯ୍ୟୋଧନଠୁ ଭାଗ୍ୟବାନ୍ । ୪

ପାଣ୍ଡବଙ୍କ ଦୁଃଖେ ମୋ ପ୍ରାଣ କାନ୍ଦଇ ତାଙ୍କ ପାଇଁ ମର୍ମାହତ
ସହାୟ ସମ୍ବଳ ହୀନ ହେଲେ ମଧ୍ୟ ନ ଛାଡନ୍ତି ଧର୍ମପଥ
କୌରବେ, ସ୍ୱଭାବେ ଈର୍ଷା ପରାୟଣ
ଐଶ୍ୱର୍ଯ୍ୟ ବିଳାସୀ କ୍ଷମତା ଅଶାବ୍ଦୀ ମତ୍ତଗର୍ବୀ, ଦର୍ପୀ, ଦୁର୍ଜ୍ଜନ । ୫

ତାଙ୍କ ଅତ୍ୟାଚ୍ଚର ଅନାଚ୍ଚର ବଳେ ଦେଶବାସୀ ଜର୍ଜରିତ
ପ୍ରଜାଙ୍କ ଶୋଣିତ ଶୋଷଣେ ସର୍ବଦା ହେଉଥାନ୍ତି ପରିତୃପ୍ତ
ସେ ମନ୍ଦ, ଶକ୍ତି ନାଶିବ ଧର୍ମ ବଳେ
ଦୁର୍ବଳ ମନରେ ଶକ୍ତିର ସଞ୍ଚାର କରାଇବ ଏ ମନ୍ତ୍ର ଛଳେ । ୬
ପାଣ୍ଡବଙ୍କ ଠାରେ ଦେବତ୍ୱ ଆରୋପ କରିବେ ଭାରତବାସୀ
ଧର୍ମର ପ୍ରତୀକ ଅଟନ୍ତି ସେମାନେ ତାଙ୍କ ପ୍ରତି ଲୋକେ ଖୁସି
ସଂଯମୀ, ସ୍ଥିର ବୁଦ୍ଧି, ଧୈର୍ଯ୍ୟବାନ ,
ଭଦ୍ର, ସତ୍ୟଭାଷୀ, ଦୟାଳୁ, ସାହସୀ, ବୀର୍ଯ୍ୟବାନ ଓ ବୁଦ୍ଧିମାନ । ୭
ସେମାନଙ୍କ ସଙ୍ଗେ ପ୍ରିତିଭାବ ମୋର ସେମାନେ ମୋ ପାଞ୍ଚପ୍ରାଣ
ନିବିଡ଼ ସମ୍ପର୍କେ ଜଡିତ ହୋଇ ମୁଁ କରାଇବ ଶତ୍ରୁଶୂନ୍ୟ
ହେ ବ୍ୟାସ ! ମାନ ବଚନକୁ ମୋହର
ପାଞ୍ଚାଳ ରାଜ୍ୟରେ ଯୋଗାଡ଼ କର ଯା ପାଞ୍ଚାଳୀ ଦେବୀ ସ୍ୱୟମ୍ବର । ୮
ମହାଲକ୍ଷ ବୋଲି ଲକ୍ଷେକ ପାଡ଼ିବ ଅଦୃଷ୍ଟ, ଅଶ୍ରୁତ ଲକ୍ଷ
ଲକ୍ଷେ ରାଜା ଲକ୍ଷ ବିନ୍ଧି ନ ପାରିବେ ବିନ୍ଧିବେ ପାର୍ଥ ପ୍ରତ୍ୟକ୍ଷ
ରାଜନେ, ଦେଖିବେ ପାର୍ଥଙ୍କ ମହିମା
ମହାଲକ୍ଷ ବିନ୍ଧି ସେ ମହାସଭାରେ ପ୍ରାପ୍ତ ହେବେ ପାଞ୍ଚାଳ ଜେମା । ୯
ପରାମର୍ଶ ପାଇ ପାଞ୍ଚାଳେ ପ୍ରବେଶ ପୂଜାକଲେ ପାଞ୍ଚାଳେଶ
କୁଶଳ ପୁଚ୍ଛନ୍ତେ ଦୁଃଖିତ ମାନସେ ପ୍ରକାଶ କଲେ ନରେଶ
ମୋ କନ୍ୟା, ଯାଜ୍ଞସେନୀ ଯଜ୍ଞ ଉତ୍ପତ୍ତି
ପାର୍ଥଙ୍କୁ ବିବାହ ଦେଇ ପ୍ରତିଶୋଧ ନେବାକୁ ଭାବିଥିଲି ମତି । ୧୦
ହେ ବ୍ୟାସ ! ସେ କଥା ହେଲା କି ଅନ୍ୟଥା କହିଥିଲେ ଯା ଶଙ୍କର
ଜତୁ ଗୃହେ ପାଣ୍ଡୁ ପୁତ୍ରେ ପୋଡ଼ିମଲେ ମୋ କନ୍ୟା ହୋଇବ କାହାର ?
ବୋଲନ୍ତୁ ! ବିବାହ ଦେବି ମୁଁ କାହାରେ ?
ଉଦ୍ଧରିବ ମାନ ସମ୍ମାନ ମୋହର ଶତ୍ରୁଙ୍କୁ ସଂହାରି ସମରେ । ୧୧
ଦ୍ରୁପଦ ବଚନେ ବୋଲୁଛନ୍ତି ବ୍ୟାସ ବୁଝିଲି ତୁମ୍ଭର ମନ
ପ୍ରତିଶୋଧ ପରାୟଣ ହେବା ହେତୁ ଅସ୍ଥିର ଚିତ୍ତ ରାଜନ
ଶଙ୍କର, କଥାରେ ନ ଜନ୍ମେ ବିଶ୍ୱାସ
ପ୍ରତିହିଂସା ବହ୍ନି ପ୍ରଜ୍ୱଳିତ ହେତୁ ହୋଇଛ ବିବେକ ବିଧ୍ୱଂସ । ୧୨

ସତ୍ୟର ଆଧାର ଅଟନ୍ତି ଶଙ୍କର ସତ୍ୟ, ଶିବ ଓ ସୁନ୍ଦର
ତାଙ୍କର ବଚନ ଅସତ୍ୟ ହେବନି ହେତୁ ରଖ ନୃପବର
ଯଦ୍ୟପି, ମନ୍ଦେ ବୋଲି ପଡ଼ଇ ହୁରି
ତଥାପି ବିଶ୍ୱାସ ନ ଜନ୍ମେ ମୋ ମନେ କେ ପାରିବ ପୁତ୍ରଙ୍କୁ ମାରି ? ୧୩
କୃଷ୍ଣ ପଞ୍ଚପ୍ରାଣ ଅଟନ୍ତି ତୁମରେ ସେ ଯେବେ ହେବେ ନିଧନ
ଶ୍ରୀକୃଷ୍ଣ କି ଆଜ ଏ ମର୍ତ୍ତ୍ୟମଣ୍ଡଳେ ବର୍ତ୍ତିବେ ହୋ ନରବର ?
ଅର୍ଜୁନ ! ଧରନ୍ତି ଦ୍ୱିତିକୃଷ୍ଣ ନାମ
କୃଷ୍ଣ ଥାଉଁ ଥାଉଁ ଦ୍ୱିତୀ କୃଷ୍ଣ କାହୁଁ ଅଗ୍ନିରେ ହୋଇବେ ଦହନ ? ୧୪
ଖାଲି ତାତ ତାଙ୍କ ଅଟନ୍ତି ବିଦୁର ରକ୍ଷା କରିଛନ୍ତି ସୁତ
ବାସୁଦେବଙ୍କର ଅନୁଗୃହୀତ ସେ ବାସବ ପୁତ୍ରଙ୍କ ତାତ
ଆମ୍ଭର ! ଆଶୀର୍ବାଦ ସର୍ବଦା ଥାଏ
ବ୍ୟାସ, ବାସୁଦେବ, ବାସବ, ବିଦୁର ଥାଉଁ କେ ମାରିବ ତନୟେ ? ୧୫
ଭକ୍ତ ଭଗବାନ ବେଳଙ୍କ ସହାୟେ ପାଣ୍ଡୁ ପୁତ୍ରେ ସୁରକ୍ଷିତ
ସେମାନଙ୍କ ମୃତ୍ୟୁ ଜନରବ ଅଟେ କଥାରେ ନ ଥାଏ ସତ୍ୟ
ବିଶ୍ୱାସ, ଗହନ ବିପିନେ ଗୁପତ
ବେଳ କାଳ ଜାଣି ପ୍ରକଟ ହୋଇବେ ସତ୍ୟ ହୋଇବ ପରିସ୍ଫୁଟ । ୧୬
କୃଷ୍ଣା ଜନ୍ମକାଳେ ଶୂନ୍ୟବାଣୀ କର୍ଣ୍ଣେ ଶୁଣିଅଛ ନରବର
ଏହି କନ୍ୟା ଯୋଗୁ ପୃଥିବୀରେ ଧର୍ମ ସ୍ଥାପନ କରିବେ କୃଷ୍ଣ
ପାଞ୍ଚାଳୀ, କୌରବ ନାଶିନୀ ଅଟନ୍ତି
ପାଣ୍ଡବଙ୍କୁ କନ୍ୟା ଦାନ କରି ମାନ ଉଦ୍ଧାର କରନ୍ତୁ ନୃପତି । ୧୭
ପାଣ୍ଡବଙ୍କ ପତ୍ନୀ ପାଞ୍ଚାଳ ନନ୍ଦନୀ ପାଣ୍ଡବେ କର ପ୍ରଦାନ
କୌରବ ନିଧନେ ପାଣ୍ଡୁ ପାଞ୍ଚ ପୁତ୍ରେ ପୃଥିବୀ ପୃଷ୍ଠେ ଅବତୀର୍ଣ୍ଣ
ପାଞ୍ଚାଳୀ, ପ୍ରତିଜ୍ଞା ପୂରଣେ ସମ୍ଭୂତ
ପିତୃ ଅପମାନ ପ୍ରତିଶୋଧ ବହ୍ନି ନନ୍ଦନୀ ପ୍ରାଣେ ପ୍ରଜ୍ୱଳିତ । ୧୮
ଯୁଗେ ଯୁଗେ ନାରୀ ସୃଜନ ସଂହାର କାର୍ଯ୍ୟ ପାଇଁ ଅବତାର
ନାରୀ ବିନା କେବେ ସଂସ୍କାର କରମ ସମ୍ଭବ ନୁହେଁ ନୃବର
ତେଣୁ ସେ, ପିତା କ୍ରୋଧ ବହ୍ନିରୁ ଜାତ
କ୍ରୋଧାଗ୍ନି ସହିତ ଯୋଗାଗ୍ନି ମିଶିଣ ଦୁଇଗୁଣ ପରଜ୍ୱଳିତ । ୧୯

ମୁନି ମନ୍ତ୍ର ବଳେ ଜନ୍ମିଛି ଯେ କନ୍ୟା ସେ କାହୁଁ ହେବ ଅନାଥ
ଲକ୍ଷ ପାତି ରାଜା କର ସ୍ୱୟମ୍ବର କନ୍ୟା ବର ହେବେ ପାର୍ଥ
ପୃଥିବୀରେ, ଅଛନ୍ତି ଯେତେ ନରନାଥ
ସୋମ ସୂର୍ଯ୍ୟ ମୂଳେ ଅଷ୍ଟାଦଶ ବଂଶ ବରଣ କର ନରନାଥ । ୨୦
ଗୃହବର୍ଣ୍ଣେ ଯେତେ କ୍ଷତ୍ରି ରହିଛନ୍ତି ବରଣ କରିବ ନୃନାଥ
ଯଦ୍ୟପି ଜୀବନେ ଥିବେ ପାଣ୍ଡୁ ପୁତ୍ରେ ସଭାକୁ ଆସିବେ ନିଶ୍ଚିତ
ମୋହର, ମନରେ ହୁଅଇ ବିଶ୍ୱାସ
ଲକ୍ଷେ ରାଜା ଆଗେ କନ୍ୟାକୁ ଦେନିବେ ନୟନେ ଦେଖିବେ ନରେଶ । ୨୧
ମହା ଲକ୍ଷ ଆମ୍ଭେ ନିର୍ମାଣ କରିବୁ ବିଚିତ୍ର ଅଦ୍ଭୁତ ରାଜନ
ଯେ ଲକ୍ଷ ବିନ୍ଧିବ ସମ୍ମାନ ସହିତ ତାଙ୍କୁ ଦେବ କନ୍ୟାଦାନ
ସନ୍ତୁଷ୍ଟେ, ବ୍ୟାସ କଲେ ଲକ୍ଷ ସ୍ଥାପନ
ଦେବେ ଅଗୋଚର ମାନବେ ଅଦୃଶ୍ୟ ଅଶ୍ରୁତ ପୂର୍ବ ତା ଲକ୍ଷଣ । ୨୨
ଦେବତାଳେ ସାତ ତାଳ ଉଚ୍ଚ ଖମ୍ବ ନିର ତାକେ ଅଷ୍ଟଗୁଣ
ଏତେକ ଉଚ୍ଚରେ ସ୍ଥାପିତ ହୋଇଲା ମହାଲକ୍ଷ ସ୍ତମ୍ଭ ଶୀର୍ଷ
ସେ ସ୍ଥାନେ, ସୁବର୍ଣ୍ଣ ମତ୍ସ୍ୟେକ ରଖିଲେ
ତା ବାମ ନୟନ ଲକ୍ଷ ସ୍ଥିର କରି ରାଧାଚକ୍ର ନିମ୍ନେ ସ୍ଥାପିଲେ । ୨୩
ଏକ ତାଳ ଉଚ୍ଚ ବେଦୀ ନିର୍ମାଣିଲେ ବେଦି ତଳେ ଜଳକୁମ୍ଭ
ସ୍ତମ୍ଭ ଶୀର୍ଷ ଦେଶେ ଥିବା ସ୍ୱର୍ଣ୍ଣ ମତ୍ସ୍ୟ କୁମ୍ଭେ ଦୃଶ୍ୟ ପ୍ରତିବିମ୍ବ
ରଖିଲେ, ଧନୁ ଏକ ଲକ୍ଷ ବଳର
କହିଲେ ଏ ସୂତ୍ରେ ଯେ ଲକ୍ଷ ବିନ୍ଧିବ କନ୍ୟାତ ହୋଇବ ତାଙ୍କର । ୨୪
ତଳେ ଥିବ ଦୃଷ୍ଟି ଉପରକୁ ମୁଷ୍ଟି ଓଟାରି ଛାଡ଼ିବ ଶର
ଚକ୍ରଭେଦି ମତ୍ସ୍ୟ ବାମଚକ୍ଷୁ ଭେଦି ଦକ୍ଷିଣେ ହୋଇବ ବାହାର
ରାଜନ, ଜାଣିବ ତାଙ୍କୁ ପାର୍ଥବୀର
ନିଃସନ୍ଦେହେ ତାଙ୍କୁ କନ୍ୟା ଦାନ ଦେବ ଉଦ୍ଧାରିବେ ମାନ ଭୂମ୍ପର । ୨୫
ମହାଲକ୍ଷ ପାତି ବ୍ୟାସ ମହାମୁନି ପାଞ୍ଚାଳରୁ ଚଳିଗଲେ
ଏକାନ୍ତରେ ପାଣ୍ଡୁ ପୁତ୍ରଙ୍କୁ ଭେଟିଣ ଆଶିଷ ପ୍ରଦାନ କଲେ
କୁମରେ, ପଯୂର ପଖାଳି ଦେଇଣ
ଫଳମୂଳ ଦେଇ ଚରଣ ଛୁଇଁଲେ ସନ୍ତୋଷ ହେଲେ ମହାମୁନ୍ୟ । ୨୬

ନନ୍ଦନ କରିଣ କହିଲେ ଜନନୀ ତୁମ୍ଭେ ଆଉଁ ପୁତ୍ରେ ମୋର
ବନବାସ କରି ହୀନଜନ ପ୍ରାପ୍ୟ ଭୋଗୁଛନ୍ତି ଦୁଃଖ ଘୋର
ଉପାସେ, ଉଜାଗରେ କାଟନ୍ତି ଦିନ
ଆହା କହିବାକୁ ସାହା କେହି ନାହିଁ ଦିନକୁ ଦିନ ତନୁ କ୍ଷୀଣ । ୨୭
ଗାନ୍ଧାରୀ ତନୟେ ସମ୍ପଦ ଭୁଞ୍ଜିଲେ ମୋ ପୁତ୍ର ପାଇଲେ ଦୁଃଖ
ଏକାନ୍ତ ଭୋଜ କନ୍ୟା କୁରୁ କୁଳବଧୂ ହୋଇ ମୋ କପାଳ ବିପାକ
ମୋ ପୁତ୍ର, କରୁ ଅଛନ୍ତି ଭିକ୍ଷା ବୃତ୍ତି
ରାଜମାତା ହୋଇ ଏତେ ଅଭାଗିନୀ ଜୀବନ ଗୋଟାକ ଅଶାନ୍ତି । ୨୮
କହୁଛନ୍ତି ମୁନି ନ କାନ୍ଦ ଜନନୀ ଦୁଃଖେ ହୋଇ ମର୍ମାହତ
ମର୍ତ୍ତ୍ୟ ମହାଭାର ଉଶ୍ୱାସିବା ପାଇଁ ତୁମ୍ଭ ପାଣ୍ଡୁପୁତ୍ର ଜାତ
ବିଶ୍ୱର, କଲ୍ୟାଣ ପାଇଁ ବନବାସୀ
ଏଣିକି ତୋ ପୁତ୍ରେ ଐଶ୍ୱର୍ଯ୍ୟ ଭୋଗିବେ ଶେଷ ହେଲାଣି ଦୁଃଖ ନିଶି ।୨୯
ଜନମ ନକ୍ଷତ୍ର ପଡନ୍ତେ କୁମରେ କାନନେ ଭୋଗିଲେ ଦୁଃଖ
କର୍ମ ନକ୍ଷତ୍ରରେ ଭୁଞ୍ଜିବେ ଏଥର ଅଧିକନ୍ତୁ ମହାସୁଖ
ଶୁଣ ମା ! ପାଞ୍ଚାଳ ରାଜ୍ୟର ଖବର
ଲକ୍ଷେ ରାଜା ବରି ପାଞ୍ଚାଳୀଙ୍କ ପାଇଁ ରାଜା କରନ୍ତି ସ୍ୱୟମ୍ବର । ୩୦
ତୋ ପୁତ୍ରେ ସେଠାକୁ ଗମନ କରିଲେ ପାଇବେ ସଭାରେ ସମ୍ମାନ
ଲକ୍ଷେ ରାଜା ଜିଣି ସେ କନ୍ୟା ଲଭିବେ ସଦର୍ପେ ବୀର ଅର୍ଜୁନ
ସମାପ୍ତ, ଅଛି ମାତ୍ର ଦ୍ୱାଦଶ ଦିନ
ପଚାରିଲେ ଧର୍ମ ଅବରଣେ ଆମ୍ଭେ କପରି କରିବୁ ଗମନ ? ୩୧
ବ୍ୟାସ ବୋଲୁଛନ୍ତି ପାଣ୍ଡୁ ପୁତ୍ର ପାଇଁ ସ୍ୱୟମ୍ବର ଆୟୋଜନ
ଦ୍ରୁପଦ ରାଜାଙ୍କ ଧାରଣା ହୋଇଛି ପ୍ରାଣେ ଅଛନ୍ତି ନନ୍ଦନ
ଦ୍ରୁପଦ, ଜାଣନ୍ତି ଆଗତ ଭବିଷ୍ୟ
ମହାଲକ୍ଷ କୂଟେ ପାତିଛି ରାଜନ ରଖିଛି ମନରେ ବିଶ୍ୱାସ । ୩୨
ଲୋକେ ଜାଣିବାକୁ କୃଷ୍ଣା ସ୍ୱୟମ୍ବର ଅର୍ଜୁନଙ୍କୁ କନ୍ୟାଦେବ
ଦ୍ରୋଣ ଅପମାନ ପ୍ରତିଶୋଧ ସଙ୍ଗେ କୁରୁବଂଶ ବିନାଶିବ
ସମ୍ବାଦ, ଦେଇ ଚଳିଲେ ମୁନିବର
ବିଳମ୍ବ ନ କରି ପାଞ୍ଚାଳ ରାଜ୍ୟକୁ ଯାତ୍ରାକଲେ, କୁନ୍ତୀ, କୁମର । ୩୩

ବିନବିତ୍ତ ପଥ ଅତିକ୍ରମ କରି ମିଳିଲେ କାମ୍ପିଲ୍ୟ ଠାରେ
ସ୍ୱୟମ୍ବର ହୋଇ ଅଛି ରାଜଧାନୀ ନବୀନ ବଧୂ ବେଶରେ
ପାଞ୍ଚାଳ, ଜନ ସମୁଦ୍ରରେ ପୂରିତ
ସ୍ୱୟମ୍ବର ପଣ ସ୍ୱୟମ୍ବରା ଗୁଣ ଶୁଣିକରି ଲୋକେ ଆକୃଷ୍ଟ । ୩୪
ଦ୍ୱିଜଶ୍ରୀକୃଷ୍ଣ ସଙ୍ଗେ କୃଷ୍ଣାଙ୍କ ବିବାହ କରିବା ପାଇଁ ସମ୍ପନ୍ନ
କୃଷ୍ଣ ପରାମର୍ଶେ କୃଷ୍ଣଦ୍ୱୈପାୟନ କରିଅଛନ୍ତି ନିର୍ମାଣ
ଶ୍ରବଣେ, ଛୁଟି ଅଛଇ ଜନସ୍ରୋତ
ଦେଖିବେ ପାଣ୍ଡବେ ଉଦ୍ଧତ ହୋଇବେ ଲକ୍ଷଭେଦ କରିବେ ପାର୍ଥ ।୩୫
ଯାଜ୍ଞସେନୀ ଜନ୍ମ ବୃତ୍ତାନ୍ତ ସହିତ ଅଲୌକ୍ୟ ସାମାନ୍ୟା ଗୁଣ
ଦେଶ ବିଦେଶରେ ପ୍ରଘଟ ହେବାରୁ ପାଞ୍ଚାଳଟା ଲୋକାରଣ୍ୟ
ହୋମାଗ୍ନି, ନିଷ୍କ୍ରାନ୍ତା ଅଯୋନି ସମ୍ଭୂତା
ଜଳନ୍ତା ଅନଳ ପ୍ରାୟ ତେଜୋମୟୀ ଦ୍ରୁପଦ ରାଜାଙ୍କ ଦୁହିତା । ୩୬
ଗୁଣେ ଅଗ୍ରଗଣ୍ୟା ପଣ୍ଡିତା, ବିଦୁଷୀ, ଶିକ୍ଷାଦୀକ୍ଷା, ଆଚରଣ
କଥା ବାର୍ତ୍ତା, ଚାଲି ଚଲଣାଦି କାର୍ଯ୍ୟେ ଯାଜ୍ଞସେନୀ ତ୍ରୁଟିଶୂନ୍ୟ
ଆଧ୍ୟାତ୍ମ, ତଥା ସାଂସାରିକ କରମେ
କୃଷ୍ଣା ସଙ୍ଗେ କେହି ସରି ହେବେ ନାହିଁ କବି କଳ୍ପନା ବିଭ୍ରମେ । ୩୭
ଗୁରୁ ଚାରୁକଳା ସଂଗୀତ ଶାସ୍ତ୍ରରେ ରହିଛି ପ୍ରଚଣ୍ଡ ଜ୍ଞାନ
ରୂପ ପାରିପାଟି ଆଚାର, ବେଶର ଆଦି ଗୁଣେ ପରିପୂର୍ଣ୍ଣ
ସୁନ୍ଦର, ବେଶ ପୋଷାକରେ ସୁସଜ୍ଜ
ମେଘ ପୁଞ୍ଜ ପରି ନିବିଡ ଓ ଦୀର୍ଘ ତା ଘନକୃଷ୍ଣ କେଶ ଗୁଚ୍ଛ । ୩୮
ଶ୍ୟାମାଙ୍ଗୀ, କୃଶାଙ୍ଗୀ ଦିବ୍ୟ ଅଙ୍ଗଭଙ୍ଗୀ ଅନିନ୍ଦ୍ୟ ସୁନ୍ଦରୀ ନାରୀ
ମନୀଷା, ବକ୍ତୃତ୍ୱ, ବିଦ୍ୟା, ବୁଦ୍ଧି, ଜ୍ଞାନ ସମ୍ଭ୍ରମେ ରହିଛି ପୂରି
କର୍ତ୍ତୃତ୍ୱ, ଜାହିର କରିବା ଶକତି
ସହଜାତ ଗୁଣ ହୋଇଣ ଥିବାରୁ ଅସାମାନ୍ୟା ସେ ଗୃହକର୍ତ୍ତ୍ରୀ । ୩୯
ଦେଖିବାକୁ ଶାନ୍ତ ମୂରତି ହେଲେହେଁ ସୃଷ୍ଟି ସଂହାର କାରିଣୀ
ଶକ୍ତିଧରି ମର୍ତ୍ତ୍ୟେ ଜନମି ଅଛନ୍ତି ଅତୁଳନୀୟା ରମଣୀ
କାହାଣୀ, କିମ୍ବଦନ୍ତୀ ପ୍ରାୟ ପ୍ରଚୁର
ସ୍ୱୟମ୍ବର କଥା ପ୍ରଚୁର ହେବାରୁ ଛୁଟିଅଛି ଜନସାଗର । ୪୦

ନୃପଙ୍କୁ ବରଣ କରିବା ନିମନ୍ତେ ଦ୍ରୁପଦ ପେଷିଲେ ଦୂତ
ଚାରି ଦିଗେ ଚାରି ଦୂତ ଚାଲିଗଲେ ଯେଝା ବରଣ ପଦାର୍ଥ
ହସ୍ତିନା, ରାଜାଙ୍କୁ ଜଣାଇଲ ଦୂତ
କନ୍ୟା ସ୍ୱୟମ୍ବର କରନ୍ତି ଦ୍ରୁପଦ ଲକ୍ଷବନ୍ଧା ହୋଇବ ତହ । ୪୧
ଏ ଆର୍ଯ୍ୟାବର୍ତ୍ତର ଧନୁର୍ଦ୍ଧାରୀ ଗଣେ କରିଛନ୍ତି ନୃପବର
ଆଜିଠାରୁ ଦଶ ଦିନ ପରେ ହେବ ଯାଜ୍ଞ ସେନୀ ସ୍ୱୟମ୍ବର
ବିଧାନେ, ବରଣ କରି ରାଜଦୂତ
ଚାଲିଯାନ୍ତେ ରାଜା ପାଞ୍ଚାଳେ ଯିବାକୁ ସଜ କରିଲେ ଦଣ୍ଡଛତ୍ର । ୪୨
ଶକୁନିଙ୍କୁ ଚାହିଁ ପୁଚ୍ଛେ ଦୁର୍ଯ୍ୟୋଧନ ସତ୍ୟକହ ମନ୍ତ୍ରୀବର
ସ୍ୱୟମ୍ବର ମଣ୍ଡ ସ୍ଥଳେ ଧନୁର୍ବିଦ୍ୟା ପରୀକ୍ଷା ହେବକି ବୀର ?
ଶକୁନି, କହେ ଶୁଣ ପ୍ରଶ୍ନ ଉତ୍ତର
ଦ୍ରୁପଦ ରାଜନ ଶ୍ରେଷ୍ଠ ଧନୁର୍ଦ୍ଧର ତାଙ୍କ ତନୟେ ମହାବୀର । ୪୫
ଦ୍ରୋଣ, ଭୀଷ୍ମ ଜୟ କରିବାକୁ ଶକ୍ତି ବହୁଛନ୍ତି ବେନି କୁମର
ତାଙ୍କଠାରୁ ମହାବୀର ବାଛିବାକୁ କରୁଛନ୍ତି ସ୍ୱୟମ୍ବର
ସଭାରେ, ବୀରତ୍ୱ ହେବ ମୂଲ୍ୟାୟନ
ମହାଲକ୍ଷ ଯିଏ ସନ୍ଧାନ କରିବ ଲଭିବସେ କନ୍ୟା ରତନ । ୪୪
ପ୍ରାପ୍ତ ଅପମାନ ପ୍ରତିଶୋଧ ପାଇଁ ପ୍ରକାରାନ୍ତେ ସ୍ୱୟମ୍ବର
ଦ୍ରୋଣଠାରୁ ଶ୍ରେଷ୍ଠ ଧନୁର୍ଦ୍ଧର ବୀର ବରିବେ କନ୍ୟାର ବର
ତା ହାତେ, ନେବେ ଦ୍ରୋଣଙ୍କ ପ୍ରତିଶୋଧ
ଏଣୁ ଲକ୍ଷ ବନ୍ଧା ଲକ୍ଷ ରଖିଛନ୍ତି ପାଞ୍ଚାଳ ରାଜନ ଦ୍ରୁପଦ । ୪୫
ଶକୁନି କହିଲ ଅର୍ଜୁନ କାହିଁଯେ ହୋଇବ ବିଜୟୀ ବୀର
ମୋ ବିଚାରେ ଆମ୍ଭେ ସ୍ୱୟମ୍ବରେ ଗଲେ ଲଭିବା ସେ କନ୍ୟାବର
ରାଧେୟ, ଅଟନ୍ତି ମହାଧନୁର୍ଦ୍ଧର
ଅକ୍ଳେଶରେ ଲକ୍ଷ ଭେଦସେ କରିବେ ସନ୍ଦେହ ନାହିଁତ ମୋହର ।୪୬

ବିଦୁର କହିଲେ ପ୍ରତିହିଂସାର କି ବିଚାର ଗତି ଅଟଇ
ଦ୍ରୋଣ ଦ୍ରୁପଦଙ୍କ ପ୍ରତିଶୋଧ ନେଲ ଏବେ ଦ୍ରୁପଦ ଇଚ୍ଛଇ
ଗାଙ୍ଗେୟ, ବୋଲୁଛନ୍ତି ବିଦୁର ଶୁଣ
ମନୁଷ୍ୟ ନିଃଶେଷ ହୋଇଯାଇପାରେ କାଳର ମୁଖରେ ପଡ଼ିଣ । ୪୭

କିନ୍ତୁ ପ୍ରତିଶୋଧ ନେବାର ଯେ ଇଚ୍ଛା ଉର୍ଜ୍ଜୀବିତ ରହିଥାଏ
ଅଗ୍ନି ନିର୍ବାପିତ ହେବାପରେ ଧୂମ ନିର୍ଗତ ହେଉଥାଏ
ଯେପରି, କାମନାର ନାହିଁ ବିନାଶ
ସେହିପରି ପ୍ରତିହିଂସାର ବିନାଶ ନ ହୋଇ ଥାଏ ଅବଶେଷ । ୪୮
ରାଜା ଧୃତରାଷ୍ଟ୍ର କହିଲେ ସଭାରେ ତେବେ ପାଞ୍ଚାଳ ରାଜନ
ପ୍ରତିଶୋଧ ଅଗ୍ନି କୁଣ୍ଡେ କନ୍ୟାହୁତି ଦେବାକୁ ଏ ଆୟୋଜନ ?
ଗାଙ୍ଗେୟ, କହିଲେ ଏହା ବିଲକ୍ଷଣ
ଯଜ୍ଞ ଅଗ୍ନି ଜାତ ଯେଉଁ ଯାଜ୍ଞସେନୀ ଆହୁତିରେ କି ପ୍ରୟୋଜନ ? ୪୯
କନ୍ୟା ଲାଭ ଆଶା ରଖି କୁରୁପତି ଯିବାକୁ ହୋଇଲେ ସଜ
ଏକା ଦଶ ଅକ୍ଷୌହିଣୀ ସୈନ୍ୟ ଘେନି ଚଳିଲେ ପାଞ୍ଚାଳ ରାଜ୍ୟ
ମିଳିଲେ, ଲକ୍ଷେକ ସଂଖ୍ୟାରେ ରାଜନ
ସମାଦର କରି ବସା ସଞ୍ଚାଦେଇ ରଖାନ୍ତି ପାଞ୍ଚାଳ ରାଜନ । ୫୦
ତଣ୍ଡୁଳ, ଗୋଧୂମ, ଘୃତ, ତୈଳ, ମାଂସ କ୍ଷୀର, ଦହି ଶାଳି ଅନ୍ନ
ବିଭିନ୍ନ ପ୍ରକାର ପିଷ୍ଟକ, ମିଷ୍ଟାନ୍ନ ସହିତ ନାନା ବ୍ୟଞ୍ଜନ
ବିଧାନେ, ଯୋଗାଇ ଦିଅନ୍ତି ରାଜନ
ଦ୍ରବ୍ୟ ଯୋଗାଡରେ ଅଭାବ ନଥାଏ ଭଣ୍ଡାରେ ଦ୍ରବ୍ୟ ପରିପୂର୍ଣ୍ଣ । ୫୧
ସ୍ଥାନେ ସ୍ଥାନେ ଅନ୍ନଛତ୍ର ଖୋଲାଯାଇ ମାଗଣା ଖାଦ୍ୟ ବଣ୍ଟନ
ଦେଖଣା ହାଟ ଏ ଉତ୍ସବ ଦେଖନ୍ତି ଆକଣ୍ଠ କରିଣ ଭୋଜନ
ବିଭିନ୍ନ, ମନୋରଞ୍ଜନ କାର୍ଯ୍ୟକ୍ରମ
ନୃତ୍ୟଗୀତ ସଙ୍ଗେ ମୋଗଲୀ ତାମସା ଭୋଜ ବାଜିର ପ୍ରଦର୍ଶନ । ୫୨
ନାନାଦେଶୁ ନଟ ନଟୀ, ସୂତ୍ରଧାରକ, ଭାଟ, ବୈତାଳିକ ଗଣ
ନିଜ ନିଜ ବିଦ୍ୟା ପ୍ରଦର୍ଶନ କରି ହରନ୍ତି ଦର୍ଶକ ମନ
ପାଇକେ, ଯୁଦ୍ଧ କୌଶଳ ପ୍ରଦର୍ଶନ
ଆମୋଦ, ପ୍ରମୋଦ ଗୃହେ ଅନୁକ୍ଷଣ ଦେଖିଣ ଲୋକେ ହୃଷ୍ଟମନ । ୫୩
ନଗର ପୂର୍ବ ଦିଗେ ସୃଜିଛି ମଣ୍ଡପ, ସ୍ୱୟମ୍ବର ସଭାସ୍ଥାନ
ପୁଷ୍ପଉଦ୍ୟାନରେ ଶୋଭା ପାଉଅଛି ଫୁଟିଛି କୁସୁମ ମାନ
ଚୌଦିଗେ, ଘେରିଛି ଅଟ୍ଟାଳି ଭବନ
ପୂର୍ଣ୍ଣ ରାଜସିକ ଐଶ୍ୱର୍ଯ୍ୟ ମଣ୍ଡିତ ଆଲୋକ ମାଳାରେ ଶୋଭନ । ୫୪

ଶ୍ରେଣୀ ଶ୍ରେଣୀ ହୋଇ ସୁରମ୍ୟ ବିପଣୀ ବସିଅଛି ମଞ୍ଚ ହେର
ତାହାଗୃହ ପାଖେ ସୁଉଚ୍ଚ ପ୍ରାଚୀର ରଖିଛି ବେଷ୍ଟନ କରି
ଗମ୍ଭୀର, ପରିଖା ଜଳେ ପରିପୂର୍ଣ୍ଣ
ହଂସ ସାରସର କଳ କଣ୍ଠ ରବେ ମୁଖରିତ ସଦା ସେ ସ୍ଥାନ । ୫୫
ମଣ୍ଡପର ଦ୍ୱାରଦେଶରେ ତୋରଣ ଶ୍ରେଣୀ ଶ୍ରେଣୀ ସୁଶୋଭିତ
ସଭାସ୍ଥଳ କେନ୍ଦ୍ର ବିନ୍ଦୁରେ ମଣ୍ଡପ ଚନ୍ଦନ କାଠରେ ନିର୍ମିତ
ଭୂମିରେ, ପଡ଼ିଛି କାଶ୍ମୀର ଗାଲିଚ୍ଛ
ତଥିପରେ ପୁଣି କୁସୁମର ଶଯ୍ୟା କର୍ପୂରଧୂଳି ଯେ ବିଞ୍ଚା । ୫୬
ଅଗୁରୁ ଧୂପରେ ସୁଗନ୍ଧିତ ମଞ୍ଚ ଗୋଲାପ ଅତର ବାରି
ସିଞ୍ଚା ହେଉଅଛି ବାରମ୍ବାର ତହିଁ ଶୀତଳ ସେ ସ୍ଥାନ ଘରି
ଗାଲେରି, ଉପରେ ବସିଛନ୍ତି ଲୋକେ
ଉତ୍ସବ ମୁଖର ପାଞ୍ଚାଳ ନଗର ଉପଭୋଗ କରନ୍ତି ସୁଖେ । ୫୭
ବାରକୋଶ ବ୍ୟାପୀ କାମ୍ପିଲ୍ୟ ନଗର ନମିଳେ କେଉଁଠି ଠାବ
ପୂରିଛନ୍ତି ରଜା, ପରଜା, ଦର୍ଶକ ସିନ୍ଧୁ ଘୋଷ ମୁଖରିବ
ପଶ୍ଚିମେ, କୃଷ୍ଣାବେଣୀ ନଦୀ କୂଳରେ
ଗ୍ରାମେକ ରହିଛି ମାତାପୁତ୍ର ତହିଁ ରହିଲେ କୁମ୍ଭାର ଶାଳରେ । ୫୮
କୁମ୍ଭାର ଶାଳକୁ ଦେଖି କୁନ୍ତୀମାତା ହୋଇଲେ ଅତ୍ୟନ୍ତ ଖୁସି
ଅଗ୍ନି ଜଳୁଅଛି ଉଷୁମ ଲାଗୁଛି ମାଘମାସ ଶୀତ ନାଶି
ସେଠାରେ, ବିଶ୍ରାମ କଲେ ପାଞ୍ଚଭାଇ
ନିର୍ବିକାର ଚିତ୍ତ ଅଟନ୍ତି ସେମାନେ ମନରେ ବିକାର ନଥାଇ । ୫୯
ଦେଶ କାଳ ପାତ୍ର ଦେଖିଣ ବର୍ତ୍ତନ୍ତି ଦୁଃଖକୁ ମଣନ୍ତି ସୁଖ
ରାଜ ପୁତ୍ର ହୋଇ ପାଉଁଶ ଗଦାରେ ଶୋଇଲେ ନ କରି ଦୁଃଖ
ବିପତ୍ତି, ସମସ୍ତେ ସୁଖ ଦୁଃଖ ଦୁଇ
ସମଯେ ମଣଇ ତାହାପରି ଗୁଣୀ ଖୋଜିଲେ ନ ମିଳନ୍ତି କାହିଁ ? ୬୦
କୁମ୍ଭାର ଶାଳରେ ମାତାପୁତ୍ରଙ୍କର ସୁଖରେ ପାହିଲା ରାତି
ବ୍ରହ୍ମ ମୂହୂର୍ତ୍ତରୁ ଶଯ୍ୟାତ୍ୟାଗ କରି ନିତ୍ୟ କର୍ମେ ଗଲେ ମାତି
ଅଧ୍ୟାୟ, ଏକଷଠି ପଦେ ସମ୍ପୂର୍ଣ୍ଣ
ମୂଢ଼ ବୃନ୍ଦାବନ ଗୀତରେ ଭଣିଲା ହୃଦେ ସ୍ମରି କୃଷ୍ଣାଭିରାମ । ୬୧

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ବ୍ୟାସ ବାସୁଦେବ ସାକ୍ଷାତ ଓ କୃଷ୍ଣା ସ୍ୱୟମ୍ବର ଆଖ୍ୟାନେ ନାମ ପଞ୍ଚଦଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।

ଶ୍ରୀ କୃଷ୍ଣାର୍ପଣ ମସ୍ତୁ ।

ବୋଲି - ଜୟ ଜୟ ଜଗନ୍ନାଥ ଜଗତ ଜନଙ୍କ ତାତ
କୋଟି କଳାକର ନିନ୍ଦାକରେ ଶ୍ରୀମୁଖ
ରଙ୍ଗାଧରେ ମନ୍ଦ ହାସ୍ୟ ଦେଖିକେ ନୋହିବ ବଶ
ଶ୍ରୀମୁଖ ଦର୍ଶନେ ଦୂର ହୁଅଇ ଦୁଃଖ
କଳ୍ପଦ୍ରୁମର ବାହୁ ଅଲକ୍ଷ୍ୟ
ଆଶ୍ରିତ ଜନର ଏକ ମାତ୍ର ସାହାପକ୍ଷ ।
ଶ୍ରୀ ବତ୍ସ ଲାଞ୍ଛନ ଚିହ୍ନ ବକ୍ଷସ୍ଥଳେ ଶୋଭିବନ
କ୍ଷମାମୟ ପ୍ରଭୁ ବୋଲି ଏ ପ୍ରମାଣ ପ୍ରତକ୍ଷ୍ୟ
ଏ ଯେଉଁ ପଦ୍ମ ପୟର ଦିଶୁଛି କେଡ଼େ ସୁନ୍ଦର
ସେ ଅଭୟ ପାଦତଳେ ଦାସକୁ ରଖ
ପଦ୍ମକୁ ରଖିଲ ପରି ହେ ପଙ୍କଜ ମୁଖ । ୨

# ଷୋଡଶ ଅଧ୍ୟାୟ

## ସ୍ୱୟମ୍ବର ସଭା ଓ ରାଜାମାନଙ୍କର ଲାଖବିନ୍ଧା

( ରାଗ - ଶଙ୍କରାଭରଣ )

ଶ୍ରୀକୃଷ୍ଣ ଚରିତ ମାନସ ଶୁଣ ସୁଜନେ
କୃଷ୍ଣ ପ୍ରେମ ରସ ଧାର ବହେ ଅନୁକ୍ଷଣେ
ବ୍ରାହ୍ମଣ ବେଶେ କୁମରେ
ସ୍ୱୟମ୍ବର ସଭାସ୍ଥଳେ ଚଳିଲେ ସତ୍ୱରେ । ୧

ବ୍ରାହ୍ମଣ ବେଶ ଧରିଣ ଗଲେ ସଭାସ୍ଥଳ
କପାଳେ ଚନ୍ଦନ କଣ୍ଠରେ ରୁଦ୍ରାକ୍ଷ ମାଳ
କନ୍ଧରେ ଯଜ୍ଞୋପବୀତ
କଟିରେ ଶୁକ୍ଳ ବସନ ଶରୀର ଉନ୍ମୁକ୍ତ । ୨

ଯଦ୍ୟପି ବିପ୍ର ବେଶରେ ଲୁଚିଅଛନ୍ତି କାଏଁ
ସ୍ୱରୂପ ପ୍ରକଟେ ଧୂମହୀନ ଅଗ୍ନି ପ୍ରାଏଁ
ସେ ରୂପ କରି ଦର୍ଶନ
ଚମତ୍କାର ମଣିଲେ ସଭା ବିପ୍ର ଗଣ । ୩

ନଗର ପଶ୍ଚିମ ଦିଗେ ବିଶାଳ ମଣ୍ଡପ
ଚାରି ଦିଗେ ଚାରିଦ୍ୱାର ଧରେ ଦିବ୍ୟ ରୂପ
ଯଜ୍ଞ କର୍ମକୃତ୍ୟ ପାଇଁ
ସ୍ୱତନ୍ତ୍ର ଦ୍ୱାରେକ ଅଛି ଯାତାୟତ ତହିଁ । ୪

ପ୍ରଧାନ ପ୍ରବେଶ ପଥ ଅତ୍ୟନ୍ତ ପ୍ରଶସ୍ତ
ଏକ ସଙ୍ଗେ ଗତି କରି ପାରେ ତିନି ରଥ
ଦୁଇଗଜ ଦ୍ୱାର ଉଚ୍ଚ
ତୋରଣ, ପତାକା, ପୁଷ୍ପ, ବସ୍ତ୍ରରେ ସୁସଜ୍ଜ । ୫

ସ୍ଥାପ୍ୟା ମଣ୍ଡପ ଦକ୍ଷିଣେ ବ୍ରାହ୍ମଣଙ୍କ ସଭା
ଜ୍ୟୋତି ପ୍ରକଟଇ ଯେହ୍ନେ ଆଦିତ୍ୟଙ୍କ ପ୍ରଭା
ସେଠାରେ ମିଳିଲେ ଯାଇ
ସୁବେଣୀ ନାମରେ ବିପ୍ର ବସାଇଲେ ନେଇ । ୭

ବିଦେଶରୁ ଆସିଛନ୍ତି ଲକ୍ଷେ ନୃପବର
ମାନ୍ୟ କରି ବସାଆନ୍ତି ଧୃଷ୍ଟଦ୍ୟୁମ୍ନ ବୀର
ନୃପ ଦେଖନ୍ତେ ଆସନ
ସିଂହାସନେ ବିଜେ ହେଲେ ଦ୍ରୁପଦ ରାଜନ । ୮

ଭ୍ରାତା ସଙ୍ଗେ ଯାଜ୍ଞସେନୀ ସଭାକୁ ବିଜୟ
ବାଜଇ ମଙ୍ଗଳ ବାଦ୍ୟ ଭେରୀ ତୂରୀ ଚୟ
ଗଜ ପୃଷ୍ଠେ ଆଗମନ
ସଭାସ୍ଥଳ ପରିକ୍ରମା କଲେ କନ୍ୟା ରତ୍ନ । ୯

ସ୍ଥିର ହେଲା ବାଦ୍ୟ ଧ୍ୱନି ଶୁଭ ଆବାହନ
ବ୍ରାହ୍ମଣ ଗଣେ ଗାଇଲେ ସ୍ୱସ୍ତିକ ବଚନ
ଗଜ ପୃଷ୍ଠୁ ଓହ୍ଲାଇଣ
ମହାରାଜାଙ୍କ ଚରଣ କରିଲେ ବନ୍ଦନ । ୧୦

କୋମଳ ଶରୀରେ ପରଶ ହୋଇବ ଜାଣି
ଗହଣା ଗାଣ୍ଠି ପିନ୍ଧାଇ ନାହାନ୍ତି ଜନନୀ
ମଣିବନ୍ଧ ବାଜୁବନ୍ଧ
କଣ୍ଠ କେଶାଦି ମଣ୍ଡିତ କୁସୁମ ସୁଗନ୍ଧ । ୧୧

ହୀରା ଆଦି ବହୁମୂଲ୍ୟ ପ୍ରସ୍ତରେ ଖଚିତ
ନ ହୋଇ ମଥା ମୁକୁଟ ପୁଷ୍ପେ ସୁଶୋଭିତ
ପିନ୍ଧିଛନ୍ତି ଶୁକ୍ଳବାସ
ଚରଣ ଶୋଭା ଦିଶଇ ଆରକ୍ତ ସାରସ । ୧୨

ଅର୍ଦ୍ଧଶତ ସଖି ସଙ୍ଗେ ବିଜେ ରାଜବାଳା
କର ପଲ୍ଲବେ ଧରିଛନ୍ତି ବରଣ ମାଳା
କୁଳ ପୁରୋଧା ଗହଣେ
ମାଙ୍ଗଳିକ ଗୀତ ଗାଇ ଯାନ୍ତି ବନ୍ଦନନେ । ୧୩

ମହାଲକ୍ଷ ସ୍ଥଳେ ଯିବା କାଳେ ଧୃଷ୍ଟଦ୍ୟୁମ୍ନ
ଭଗ୍ନୀଙ୍କ ସହିତ କଲେ ସଦର୍ପେ ଗମନ
ଗୁରୁ ସାନ୍ଦିପନୀ ତହିଁ
ଦେଖି ନମସ୍କାର କଲେ ଭାଇଭଗ୍ନୀ ଦୁହିଁ । ୧୪

କୁଶାସନ ପରେ ଥୁଆ ବିରାଟ କାର୍ମୁକ
ସୂର୍ଯ୍ୟ କିରଣ ପଡ଼ିଣ ଦିଶେ ଜକଜକ
ସୁବର୍ଣ୍ଣେ ନିର୍ମିତ ତୀର
ତୂଣୀରରେ ରହିଅଛି ପାଞ୍ଚଗୋଟି ଶର । ୧୫
କୁସୁମେ ସଜ୍ଜିତ ଧନୁ ଦିଶେ ଶୋଭାବନ
ଧନୁ ପାଶେ ଯାଇଁ ଦେଖା କରିଲେ ବନ୍ଦନ
ବେଦୀ ପରେ ଠିଆ ହୋଇ
ସଭାମଣ୍ଡପକୁ ଦଣ୍ଡେ ରହିଲେ ଅନାଇଁ । ୧୬
ବସିଛନ୍ତି ସମ୍ମାନିତ ଲକ୍ଷେ ନରରାୟ
ମନେ ହେଉଥିଲା ସୁଧର୍ମାସଭା ପରାୟେ
ଶୋଭା ଝଟକ ଉଠଇ
ଗୃହଆଡ଼େ ସ୍ୱର୍ଣ୍ଣ ଆଭା ପ୍ରକାଶ ହୁଅଇ । ୧୭
ରାଜନ୍ୟ ବର୍ଗଙ୍କ ଶିରେ ସୁବର୍ଣ୍ଣ ମୁକୁଟ
କଣ୍ଠଦେଶେ ସୁବର୍ଣ୍ଣ ହାର ଜ୍ୟୋତି ପ୍ରକଟ
ସୁବର୍ଣ୍ଣ କମର ପଟି
ବିଭିନ୍ନ ରତ୍ନ ଖଚିତ ଦିବ୍ୟ ପରିପାଟି । ୧୮
ସୁବର୍ଣ୍ଣ ଖଚିତ ଗଦା, ଖଡ଼୍ଗ, ଧନୁଶର
ଉଦ୍‌ଭାସିତ ହୁଏ ପଡ଼ି ବାଳ ସୂର୍ଯ୍ୟକର
କର୍ଣ୍ଣରେ ରତ୍ନ କୁଣ୍ଡଳ
ସ୍ୱର୍ଣ୍ଣାସନେ ବସିଛନ୍ତି ଲକ୍ଷେକ ଭୂପାଳ । ୧୯
ସୁବର୍ଣ୍ଣର ଲକ୍ଷେ ଦୀପ ଲକ୍ଷେକ ଚାମର
ସୁବର୍ଣ୍ଣ ଖଚିତ ଲକ୍ଷେ ଶଙ୍ଖ କରେ ସ୍ୱର
ସୁବର୍ଣ୍ଣେ ହୋଇ ଗଢ଼ଣି
ରହିଅଛି ଆସ୍ଥାନରେ ଲକ୍ଷେ ପିକଦାନି । ୨୦

ସୁବର୍ଣ୍ଣେ ନିର୍ମିତ ଖମ୍ବ ଖଚିତ ରତ୍ନରେ
ସ୍ୱର୍ଣ୍ଣ ଜରିକାମ ଚନ୍ଦ୍ରାତପ ତଥିପରେ
ସ୍ୱର୍ଣ୍ଣମୟ ପରିବେଶ
ବସିଛନ୍ତି ଆସ୍ଥାନରେ ଲକ୍ଷେକ ନରଇଶ । ୨୧

ବହୁ ମୂଲ୍ୟ ଆଭରଣେ ଶ୍ରୀ ଅଙ୍ଗ ମଣ୍ଡନ
ଦେଖାଯାନ୍ତି ନୃପଗଣେ କନ୍ଦର୍ପ ସମାନ
ନେତ୍ର କୋଣେ ଯାଜ୍ଞସେନୀ
ଦର୍ଶନ କରି ନମିଲେ ହରି ହଳପାଣି । ୨୨

ରାଜନ୍ୟ ବର୍ଗଙ୍କୁ ଦେଖି ନେତ୍ର କୋଣେ ଗୃହିଁ
ପ୍ରଣାମ କଲେ ସମ୍ଭ୍ରମେ ଯୋଡ଼ି କର ହୋଇ
ବିପ୍ରକୁଳ, ଋଷିଗଣ
କୁଶାସନେ ଉପବିଷ୍ଟ ବନ୍ଦିଲେ ଚରଣ । ୨୩

ବେଦୀର ସମ୍ମୁଖ ଭାଗେ ଅର୍ଦ୍ଧ ଗୋଲାକୃତି
ଆସନରେ ବସିଛନ୍ତି ଜନ ପ୍ରଜା ତଥି
ସେମାନଙ୍କୁ କଲେ ମାନ୍ୟ
ଜୟ ଧ୍ୱନି କଲେ ସର୍ବେ ହସ୍ତକୁ ଟେକିଣ । ୨୪

ବେଦୀରୁ ଆସି ନିର୍ଦ୍ଦିଷ୍ଟ ସ୍ଥାନରେ ଆସନ
ଗ୍ରହଣ କରିଲେ କୃଷ୍ଣା ପିତା ସନ୍ନିଧାନ
ମନ୍ତ୍ରୋଚ୍ଚାରି ବିପ୍ରବରେ
ଅକ୍ଷତ ସିଞ୍ଚନ କଲେ ଯାଜ୍ଞସେନୀ ଶିରେ । ୨୫

ଚାରଣ କବି ସଭାରେ ବୀରତ୍ୱ ଆଖ୍ୟାନ
ଗାଇଲେ ଉର୍ଦ୍ଧ୍ୱ ମୁଖରେ ସ୍ୱରକୁ ଟେକିଣ
ବିଧିବିଧାନ ସମ୍ପନ୍ନ
ହେବା ପରେ ଠିଆ ହେଲେ ଭ୍ରାତା ଧୃଷ୍ଟଦ୍ୟୁମ୍ନ । ୨୬

ପିତାଙ୍କର ଅନୁମତି ନେଇଣ ନନ୍ଦନ
ଧୀରେ ନମ୍ରେ ବ୍ୟକ୍ତ କଲେ ସ୍ୱାଗତ ଭାଷଣ
ହେ ଆର୍ଯ୍ୟ, ନରଶ୍ରେଷ୍ଠ
ବିଶାଳ ଦର୍ଶକ ଶ୍ରେଣୀ ଆଗନ୍ତୁକ ଚୟ । ୨୭

ମହାରାଜାଙ୍କ ପକ୍ଷରୁ ସଭାରେ ସ୍ୱାଗତ
ଅଭିବାଦନ କରୁଛୁ ଯୋଡ଼ି ବେନି ହସ୍ତ
ପାଇ ସଦସ୍ୟ ଦର୍ଶନ
କୃତାର୍ଥ ପାଞ୍ଚାଳ ରାଜ୍ୟ, ରାଜା, ପ୍ରଜାଗଣ । ୨୮
ଆମ୍ଭେ ତଥା ଆମ୍ଭ ରାଜଭକ୍ତ ପ୍ରଜାଗଣ
କୃତଜ୍ଞତା ସହକାରେ କରୁ ନିବେଦନ
ଏ ସଭାର ଆୟୋଜନ
ପ୍ରକାଶ କରୁଛି ନିୟମ କର ଶ୍ରବଣ । ୨୯
ବିବାହ ଯୋଗ୍ୟା ଦ୍ରୌପଦୀ ଭଉଣୀ ମୋହର
ଯୋଗ୍ୟବର ପାଇବାକୁ କଲୁ ସ୍ୱୟମ୍ବର
ଲକ୍ଷେ ରାଜନ ସଭାରେ
ବସିଅଛ ସସମ୍ମାନେ କନ୍ୟା କାମନାରେ । ୩୦
ସମସ୍ତେ ତ ସମ୍ମାନୀୟ ଲକ୍ଷେକ ନୃପତି
ନିୟମେ ବରଣ କରି ଆଣିଛୁ ନିମନ୍ତି
ସର୍ବେ ମାନ୍ୟ ନରପତି
କାହାକୁ କରିବୁ ଅସ୍ତି କାହାକୁ ବା ନାସ୍ତି । ୩୧
ତେଣୁ ମହାଲକ୍ଷ୍ୟ ପାତି କଲୁ ସ୍ୱୟମ୍ବର
ଇଚ୍ଛାବର ନ ଯୋଗାଏ ଭଗ୍ନିକୁ ମୋହର
ବେଦ ବାକ୍ୟ ନିର୍ଦ୍ଧାରି
ଯେ ଲକ୍ଷ୍ୟ ବିନ୍ଧିବେ କନ୍ୟା ହୋଇବ ତାଙ୍କର । ୩୨
ଲକ୍ଷ୍ୟର ଚରିତ ଯାହା ଶୁଣ ନୃପବରେ
କନକ ମାଛ ଅଛଇ ସ୍ତମ୍ଭର ଶୀର୍ଷରେ
ଉଚ୍ଚତାରେ ସାତତାଳ
ରାଧାଚକ୍ର ଘୂରୁଅଛି ରହି ଗୃହଚାଳ । ୩୩
ଲକ୍ଷେ ବଳ ଧନୁ ଧରି ପଟାରେ ଉଠିବ
ସ୍ତମ୍ଭ ତଳେ ଜଳକୁମ୍ଭେ ମତ୍ସ୍ୟ ପ୍ରତିବିମ୍ବ
ପଡ଼ୁଛି ତହିଁ ଦେଖିବ
ଊର୍ଦ୍ଧ୍ୱ ମୁଷ୍ଟି, ନିମ୍ନଦୃଷ୍ଟି ହୋଇଣ ରହିବ । ୩୪

ନାଗଚରେ ଶରଖଞ୍ଜି ମାଛକୁ ବିନ୍ଧିବ
ବାମଚକ୍ଷୁ ଫୁଟି ଡାହାଣରେ ହାବାଣିବ
ମାଛ ଭୂମିରେ ପଡ଼ିବ
ଏ ନିୟମେ ଯେଉଁ ବୀର ଲକ୍ଷକୁ ବିନ୍ଧିବ । ୩୫

ଲକ୍ଷେ ରାଜା ଦେଖୁଥିବେ କନ୍ୟା ଘେନି ଯିବ
ଶୁଣି ସମ୍ମତ ହୋଇଲେ ସକଳ ଭୂଦେବ
ଲକ୍ଷ ବିନ୍ଧାର ବିଧାନ
ବର୍ଣ୍ଣିନ ଶେଷେ ବସିଲେ ବୀର ଧୃଷ୍ଟଦ୍ୟୁମ୍ନ । ୩୬

ଷୋଡଶ ଶୃଙ୍ଗାର ଯୁକ୍ତା ଶ୍ୟାମଳାଙ୍ଗୀ କୃଷ୍ଣା
ଅନନ୍ୟ ସୁନ୍ଦରୀ ବାମା ରୂପ ଗୁଣେ ଧନ୍ୟା
ଢଳ ଢଳ ନୀଳ ନେତ୍ର
ସଘନ ମେଘ ମଧ୍ୟରେ ଯେସନେ ବିଦ୍ୟୁତ । ୩୭
ଅଧରରେ ମୃଦୁହାସ୍ୟ ମୁଖରେ ସୌନ୍ଦର୍ଯ୍ୟ
ବୃଦ୍ଧି କରୁଥିଲା ଶିରୀ ବିକଶିତ ତେଜ
ଯେଉଁ ଦିଗେ ପଡ଼େ ଦୃଷ୍ଟି
ଦର୍ଶକେ ମୋହିତ ହୁଅନ୍ତି ମୁଖ ଶୋଭାଦେଖି । ୩୮

କୃଷ୍ଣାଙ୍କ ମୁଖକୁ କେହି ନ ପାରନ୍ତି ଚାହିଁ
ଝଲକ ଉଠଇ ନେତ୍ର କାମ ପ୍ରଭା ପାଇ
ଅନଳରୁ ଅବତୀର୍ଣ୍ଣ
ଅନନ୍ୟ ସୁନ୍ଦରୀ ଅନୁପମେୟ ଆନନ । ୩୯

କନ୍ୟା ଅଙ୍ଗଶୋଭା ଦେବା କାହାକୁ ବା ଲକ୍ଷ
ତେଣୁ ଅଳଙ୍କାର ହେଲା ଅତୁଳ୍ୟ, ଅଲକ୍ଷ
ରୂପ ଶୋଭାର ସାଗର
ମଣ୍ଡି ହୋଇ ନାହିଁ ଏଣୁ ଦେହେ ଅଳଙ୍କାର । ୪୦
ବିଭିନ୍ନ ରତ୍ନ ମଣ୍ଡନା ଦାସୀ ପରିବାରୀ
ଖଟିଛନ୍ତି କନ୍ୟା ପାଦେ ହୋଇ ସେବାକାରୀ
ଶ୍ରୀକରେ ବରଣ ମାଳ
ନିରେଖନ୍ତି ନେତ୍ର କୋଣେ ଭାରତ ଭୂପାଳ । ୪୧

କନ୍ୟା ରୂପ ଦେଖି ନୃପେ ବିମୁଗ୍ଧ ହୋଇଲେ
ପଲକ ଶୂନ୍ୟ ନୟନେ ଅନାଇ ରହିଲେ
  କେ ବୋଲେ ନୟନ ଧନ୍ୟ
ନୃପଙ୍କୁ ଆହ୍ୱାନ କଲେ ଭ୍ରାତା ଦୃଷ୍ଟଦ୍ୟୁମ୍ନ । ୪୩

ପରାକ୍ରମ ପ୍ରତିଷ୍ଠାରେ ଯେ ରାଜା ପ୍ରଧାନ
ସେହି ନୃପତିଙ୍କୁ ଆଗ କରିଲେ ଆହ୍ୱାନ
  " ଆହେ ! ମାନି ଦୁର୍ଯ୍ୟୋଧନ
ନୃପଙ୍କ ମଧ୍ୟରେ ତୁମ୍ଭେ ଅଟ ସର୍ବମାନ୍ୟ । ୪୩

ସୁବିଖ୍ୟାତ ସୋମବଂଶେ ହୋଇଛ ଉତ୍ପତ୍ତି
ନୃପ ଅଗ୍ରଗଣ୍ୟ ଆହେ ମାନ ଚକ୍ରବର୍ତ୍ତୀ
  କର ହେ ଲକ୍ଷ ସନ୍ଧାନ
ଲକ୍ଷେ ରାଜା ସମ୍ମୁଖରେ ଘେନ କନ୍ୟା ରତ୍ନ । ୪୪

ଧୃଷ୍ଟଦ୍ୟୁମ୍ନ ଆହ୍ୱାନରେ ରାଜା ଦୁର୍ଯ୍ୟୋଧନ
ଲକ୍ଷ ବିନ୍ଧିବାକୁ କଲେ ସଦର୍ପେ ଗମନ
  ସିଂହ ଶିଶୁ ସମଠାଣି
ଝଲକଇ ଗଜମୁକ୍ତା ମାଳଗର ଶ୍ରେଣୀ । ୪୫

ଅନର୍ଘ ମଣି ମୁକୁଟ ମଥାରେ ମଣ୍ଡିତ
ଚଳନ୍ତେ ଅବେଣ୍ଟ ପଦ୍ମ ହୁଏ ପ୍ରସ୍ଫୁଟିତ
  ଚୌରାଶୀ ଲକ୍ଷଣ ଯୁକ୍ତ
ସମକକ୍ଷ ଜଣେ ରାଜା ନାହିଁ ଏ ଭାରତ । ୪୬

ଦୁର୍ଯ୍ୟୋଧନ ଆଗମନ ଦେଖି ଯାଜ୍ଞସେନୀ
ପଚାରିଲେ ପରିଚୟ ଦିଅଲେ କେଶିନୀ ?
  କେଶିନୀ କହିଲେ ଶୁଣ
ରାଜା ଧୃତରାଷ୍ଟ୍ର ସୁତ ନାମ ଦୁର୍ଯ୍ୟୋଧନ । ୪୭

ଏ ପନ୍ନଗ ନାରାୟଣ ମର୍ତ୍ତ୍ୟେ ଅବତାର
ପିତାମାତା ଗୁରୁଜନେ ନ କରେ ଜୁହାର
  ଭାର୍ଯ୍ୟା ନାମ ଭାନୁମତୀ
ଆଠ ଦିନେ ବିଭା ହେଉଥାଏ ସେ ଯୁବତୀ । ୪୮

କୁଙ୍କୁମ ଲେପନ ଅଙ୍ଗେ ବରବେଶେ ଆସେ
ମଙ୍ଗୂଳ ହୋଇବା ପରି ରୂପ ଶୋଭା ଦିଶେ
ଦୁର୍ଗୁଣରେ ପରିପୂର୍ଣ୍ଣ
ସଙ୍ଗେ ଶତ ଭ୍ରାତା ଛନ୍ତି ସକଳେ ଦୁର୍ଜ୍ଜନ । ୪୯

ଭୀମେ ବିଷ ଲଡ୍ଡୁ ଦେଲେ ଖାଦ୍ୟରେ ମିଶାଇ
ପାଣ୍ଡବଙ୍କୁ ବିନାଶିଲେ ଜତୁ ଗୃହେ ଏହି
ବିବେକ ବିଧ୍ୱଂସ ପଣେ
ମାତୃ ବଂଶ ନାଶ କଲେ ରକ୍ଷଣ ନରଚନ୍ତେ । ୫୦

ଦ୍ରୌପଦୀ କହିଲେ ଏତ ବୟସରେ ଅଳ୍ପ
ଏ ବୟସେ ଅରଜିଲେ ହତ୍ୟା ମହାପାପ
ବିଶ୍ୱାସ ଘାତକ ସେହି
ତାହାଙ୍କ ମୁଖକୁ ସଖୀ ଦେଖି ନ ଯୋଗାଇ । ୫୧

ଏ ସମୟେ ଦୁର୍ଯ୍ୟୋଧନ ଘେନି ଶତଭ୍ରାତ
ବେଦୀ ଉପରେ ଉଠିଲେ ଯାଇଁଣ ତ୍ୱରିତ
କୃଷ୍ଣାକୁ ଚହିଁ ମୋହିତ
କାର୍ମୁକ ନ ଧରି କୁମ୍ଭ କୁଣ୍ଠାଇଲେ ସେତ । ୫୨

କରତାଳ ମାରି ବାଳୀ ହସିଲେ ଉଚ୍ଚରେ
ଲଜ୍ଜା ପାଇ ବସିଲେ ସେ ଯାଇ ଆସନରେ
କେଶିମା ବୋଲେ ଘରନ୍ତି
ଜରାସନ୍ଧ ବୀର ଏହି ମଗଧ ନୃପତି । ୫୩

କଂସର ଶ୍ୱଶୁର ଏହି ମହା ବଳବାନ
ଏହା ଭୟେ ଦ୍ୱାରକାରେ ରହିଲେ ଶ୍ରୀକୃଷ୍ଣ
କୃଷ୍ଣା କହିଲେ ଗୋ ଶୁଣ
ବନ୍ଧୁ ଦ୍ରୋହୀ ମହାପାପୀ ଏ ବଡ଼ ଦୁର୍ଜ୍ଜନ । ୫୪

ତୋଳିଲି କାର୍ମୁକ ଗୁଣ ନ ପାରିଲି ଦେଇ
ବସିଲି ସଭାରେ ଜରି ଅପମାନ ପାଇ
ଉଠି ଶିଶୁପାଳ ବୀର
ଧାଇଁ ଧାଡିକାରେ ଧନୁ ଧଇଲା ଶ୍ରୀକର । ୫୫

ଭୂମିର ଉପରୁ ଧନୁ ତୋଳି ନ ପାରିଲା
ଅପମାନ ପାଇ ନିଜ ଆସନେ ବସିଲା
ରୁକ୍ମି ଉଠିଲେ ବେଗରେ
ଟେକି ନ ପାରିଣ ଧନୁ ପଡ଼ିଲେ ଭୂମିରେ । ୫୬
ମଦ୍ରଦେଶ ମହୀପତି ଶଲ୍ୟ ମହାମଲ୍ଲ
ମାଦ୍ରୀଦେବୀଙ୍କ ସୋଦର ନକୁଳ ମାତୁଳ
ସଦର୍ପେ ଉଠି ବେଗରେ
ଧନୁକୁ ଛୁଇଁ ନିଜର ଆସନେ ବସିଲେ । ୫୭
ତାହାପରେ ଜୟଦ୍ରଥ ସଦର୍ପେ ଚଳିଲେ
ବେଗର ଉପରେ ଉଠି ଧନୁକୁ ଧଇଲେ
ନିମ୍ନକୁ କରନ୍ତେ ଦୃଷ୍ଟି
ମୂର୍ଚ୍ଛା ଯାଇ ପଡଗଲେ ସିନ୍ଧୁ ନରପତି । ୫୮
ଉଠିଲେ ଶକୁନି ମାମୁଁ ଗାନ୍ଧାର ନୃପତି
ଧନୁ ଦେଖି ହୃଦ ମଧ୍ୟେ କରିଲେ ପ୍ରଣତି
ପିତା କହିଥିବା କଥା
ମନେ ପକାଇଣ ତାଙ୍କ ଘୂରିଗଲା ମଥା । ୫୯
କୌରବ ନାଶିନୀ କୃଷ୍ଣା ଦର୍ଶନ କରିଣ
ଫେରିଗଲେ ଆସ୍ଥାନକୁ ଧନୁ ନ ଧରିଣ
ହବେ କୌରବ ନାଶିନୀ
ପାଣ୍ଡବଙ୍କ ପ୍ରିୟ ପତ୍ନୀ ଦେବୀ ଯାଜ୍ଞସେନୀ । ୬୦
ମାଳବ ଦେଶର ରଜା କୃତବର୍ମା ବୀର
ଟେକି ନ ପାରିଣ ଧନୁ ଫେରିଲେ ସତ୍ୱର
କାଶୀରଜା କାଶୀଶ୍ୱର
ଗୁଣ ଦେଇ ନ ପାରିଣ ଲଜ୍ଜିତ ନୃବର । ୬୧
ଶରଦ ଦେଶ ରାଜନ କୀଚକ ଉଠିଲେ
ଧନୁ ଟେକି ନ ପାରିଣ ବାହୁଡ଼ି ଆସିଲେ
ବଜ୍ରନାଭ, ବାଣାସୁର
କୁମ୍ଭ, ନିକୁମ୍ଭ, କଙ୍କଣ, ନାରକାସୁର । ୬୨

କୃତାନ୍ତକ ବଳକେତେ ଜଣା ତ ନ ଥାଇ
ବିନ୍ଧୁଛନ୍ତି ଲକ୍ଷ ସର୍ବେ ସ୍ୱୟମ୍ବରେ ଥାଇ
ସୋମବଂଶ, ସୂର୍ଯ୍ୟବଂଶ
ବିନ୍ଧି ନ ପାରିଲେ ଲକ୍ଷ ଅଷ୍ଟାଦଶ ବଂଶ । ୬୩

ଯାଦବମାନେ ଯଦ୍ୟପି ଉପସ୍ଥିତ ଥିଲେ
ଉଗ୍ରସେନ ନରପତି ଆଜ୍ଞା ଦେଇଥିଲେ
ଲକ୍ଷ ବିନ୍ଧାରେ ଯାଦବେ
ପ୍ରତିଯୋଗୀ ନ ହୋଇଣ ଦର୍ଶକ ହୋଇବେ । ୬୪

କାରଣ ସେ ଜାଣିଥିଲେ ଦେବୀ ଯାଜ୍ଞସେନୀ
ନିଶ୍ଚିତ ହେବେ ଅଟନ୍ତି ପାଣ୍ଡବ ଘରଣୀ
ଏଣୁ ପ୍ରତିଯୋଗୀତାରେ
ଯୋଗ ନ ଦେଇ ବସିଥିଲେ ସର୍ବେ ସଭାରେ । ୬୫

କ୍ଷୋଭ ପ୍ରକାଶ କରିଲେ ଦ୍ରୁପଦ ରାଜନ
କହିଲେ କି ହୀନବୀର୍ଯ୍ୟ ହେଲେ ନୃପଗଣ
ହୁଅଇ ପ୍ରତୀୟମାନ
ବୀର ପ୍ରସୂ ବସୁନ୍ଧରା ବଳବୀର୍ଯ୍ୟ ହୀନ । ୬୬

ଯଦି ଜାଣିଥାନ୍ତି ନୃପେ ବୀରତ୍ୱ ବିହୀନ
ଲୋକହସା ନ ହୁଅନ୍ତି ଲକ୍ଷକୁ ସ୍ଥାପିଣ
ପଣ ଭଗ୍ନେ ଲଜ୍ଜା ହେବ
କି କରିବ କୁମାରୀ ମୋ କୁମାରୀ ରହିବ । ୬୭

ବସିଲେ ରାଜାଏ ଯହୁଁ କରି ମୌନବ୍ରତ
କ୍ଷତ୍ରୀପୁତ୍ରଗଣଙ୍କୁ ଚାହିଁ ପୁଛିଲେ ନୃନାଥ
ଯଦି କେହି ସାମରଥ
ଏ ଲକ୍ଷ ବିନ୍ଧିଲେ କନ୍ୟା ଦେବଇଁ ନିଶ୍ଚିତ । ୬୮

ଶ୍ରୀକୃଷ୍ଣଙ୍କୁ ପୁଛା କଲେ ଭ୍ରାତା ବଳଦେବ
ଦୁର୍ଲ୍ଲଭ ଲକ୍ଷ ପାତିଛି ଦ୍ରୁପଦ ଭୂଦେବ
ନୃପେ ହେବାରୁ ଅକ୍ଷମ
କ୍ଷତ୍ରିପୁତ୍ରେ ଆହ୍ୱାନ ଦେଇଛନ୍ତି ନୃପୋତ୍ତମ । ୬୯

"ଦୃଷ୍ଟି ଭେଦୀ ବିଦ୍ୟାବଳେ ବୀରବର କର୍ଣ୍ଣ
ଭେଦିବେ ଅଭେଦ୍ୟ ଲକ୍ଷ ବିଗୃହିଇ ମନ
ଜିଣି ନେବ କନ୍ୟାରତ୍ନ
ମିଶିଛନ୍ତି ଦୁର୍ଯ୍ୟୋଧନେ କରିବ ପ୍ରଦାନ " ୭୦

ଜ୍ୟେଷ୍ଠ ଭ୍ରାତାଙ୍କର କଥା ଶୁଣି ଯଦୁନାଥ
ଭାବିଲେ କହିଲେ ଭ୍ରାତା ବଚନ ଯଥାର୍ଥ
ଦୃଷ୍ଟି ଭେଦୀ ବିଦ୍ୟାବଳେ
ଲକ୍ଷ ଭେଦ କରି ପାରେ କର୍ଣ୍ଣ ଅବହେଳେ ।୭୧

ଏମନ୍ତ ବିଚାରି ମାୟା ରଚିଲେ ଶ୍ରୀକୃଷ୍ଣ
ଆଜ୍ଞା ଦେଲେ ଡାକି ପ୍ରଭୁ ଚକ୍ର ସୁଦର୍ଶନ
"ରାଧାଚକ୍ର ପରେ ଥିବୁ
କର୍ଣ୍ଣ ବାଣ ଗୋଟି ତହୁଁ ଫେରାଇଣ ଦେବୁ" ୭୨

ଗୁଣ ଦେଇ ଧନୁ ଧରି ଆମନ୍ତ୍ରନ କଲେ
ସାଧୁ ସାଧୁ କର୍ଣ୍ଣ ବୋଲି ସଭାରେ କହିଲେ
ବିନ୍ଧିବା ପାଇଁ ଉଦ୍ୟତ
କେତିକି କହିଲି ଏହି କର୍ଣ୍ଣ ସୂତପୁତ୍ର । ୭୩

ଦ୍ରୌପଦୀ କହିଲେ ସଖୀ ଶୁଣ ମୋ ବଚନ
ସୂତପୁତ୍ରେ ବରିବାକୁ ନାହିଁ ମୋର ମନ
ଯଦ୍ୟପି ବିନ୍ଧିବେ ଲକ୍ଷ
ଜୀବନ ତେଜିବି ସଖୀ ! ସତ୍ୟ ମୋର ବାକ୍ୟ ।୭୪

କୃଷ୍ଣା କଥା ଶୁଣି କର୍ଣ୍ଣ ବେଦିର ଉପରେ
ଧନୁକୁ ପକାଇ ଦେଇ କହିଲେ କ୍ରୋଧରେ
ସଭାକୁ ଅବମାନନା
କ୍ଷତ୍ରିୟ ବୃତ୍ତିକୁ ନିନ୍ଦା କମ୍ପା ରାଜକନ୍ୟା ? ୭୫

ଯାଜ୍ଞସେନୀ କଥା ଶୁଣି ସଭା ସ୍ତମ୍ଭୀଭୂତ
ପ୍ରତିବାଦ କଲେ କର୍ଣ୍ଣ ହୋଇ ବିଷାଦିତ
କମ୍ପା ଦିଅ ଅପମାନ
ସ୍ୱୟମ୍ବର ସଭାକୁ ତ କରିଛ ବରଣ ? ୭୬

ପୁରୁଷାକାର ପ୍ରତିଏ କଠିନ ଆଘାତ
ପୁରୁଷ ହୋଇ ସହିବା ଅପୁରୁଷୋଚିତ
ଶୁଣି ବୋଲେ ଧୃଷ୍ଟଦ୍ୟୁମ୍ନ
ଜାତିବର୍ଣ୍ଣ ଭାବି କରିଥିଲୁ ଆମନ୍ତ୍ରଣ । ୭୮
ଜାଣି ତ ନ ଥିଲୁ ଆମ୍ଭେ ତୁମ୍ଭେ ସୂତପୁତ୍ର
ଅଙ୍ଗ ନରପତି ଜାଣି ବରିଥିଲୁ ମାତ୍ର
ପ୍ରତି ବାକ୍ୟ କଲେ କର୍ଣ୍ଣ
ଏହା କି ନ୍ୟାୟ ତୁମ୍ଭର ଆହେ ଧୃଷ୍ଟଦ୍ୟୁମ୍ନ ? ୭୯
ତୁମ୍ଭ ଭ୍ରମ ସଂଶୋଧନ କରିବାର ପାଇଁ
ପ୍ରତିଶୋଧ ନେବ ମୋତେ ଅପମାନ ଦେଇ
ଶୁଣି କହିଲେ ଘୋଷକ
ସୀମା ଅତିକ୍ରମ କରି କମ୍ପା କର ବାକ୍ୟ ? ୮୦
ଆମେ ଆପଣଙ୍କୁ ଦେଇ ନାହୁଁ ଅପମାନ
ବରଂ ସ୍ୱାଗତ କରିଛୁ ତୁମ୍ଭ ଆଗମନ
ଲକ୍ଷ ବିନ୍ଧିବାକୁ ନାମ
ଘୋଷିତ ହେବା ଆଗରୁ ଆସିଲ କେସନ ? ୮୧
ଅନଧିକାର ପ୍ରବେଶ କରିଛ ଆପଣ
ସେଥିପାଇଁ ଅପମାନ ମନରେ ନ ଘେନ
ଶୁଣି କର୍ଣ୍ଣ ସ୍ତମ୍ଭୀଭୂତ
ବେଦୀରେ ଠିଆ ରହିଲେ ମୁଖ ଅବନତ । ୮୨
ପ୍ରତିବାଦ କଲେ ଉଠି ମାମ୍ପ ଦୁର୍ଯ୍ୟୋଧନ
ଅଙ୍ଗରାଜ ଅଧିପତି ବୀରବର କର୍ଣ୍ଣ
ଲକ୍ଷ ଭେଦିବା ଉଚିତ
ଅଧିକାରରୁ କମ୍ପାଇ ହୋଇବେ ବଞ୍ଚିତ ? ୮୩
ଘୋଷକ କହିଲେ ଶୁଣ ହସ୍ତିନା ନୃନାଥ
କ୍ଷତ୍ରିୟ ଧର୍ମରେ ଯେଉଁ ବ୍ୟବସ୍ଥା ବିହିତ
ତୁମ୍ଭ କ୍ଷମତା ବଳରେ
କର୍ଣ୍ଣେ ରାଜା କହିପାର କୌଣସି ରାଜ୍ୟରେ । ୮୪

କିନ୍ତୁ ସୂତ ପୁତ୍ରେ କରି ନ ପାର କ୍ଷତ୍ରିୟ
ସେ କ୍ଷମତା ନାହିଁ ତୁମ୍ଭ କୁରୁକୁଳ ପ୍ରିୟ
ଶୁଣି ଘୋଷକ ବଚନ
ସଭାସ୍ଥଳ ହାସ୍ୟ ରୋଳେ ହେଲା ପରିପୂର୍ଣ୍ଣ । ୮୫
ପ୍ରତ୍ୟୁକ୍ତି କରି କହୁଛନ୍ତି ବୀର କର୍ଣ୍ଣ
ସୂତ କୁଳେ ହୋଇ ପାରେ ମୋହର ଜନମ
ମାତ୍ର କ୍ଷତ୍ର ଅଗ୍ରଗଣ୍ୟ
ତେଜସ୍ୱୀ ପଣେ ନୃପଠୁଁ ନୁହଇଁ ନ୍ୟୂନ । ୮୬
କେବଳ ନୃପଙ୍କୁ ଯଦି ବରିବାର ଥିଲା
ଲିଖି ବାର୍ତ୍ତା ପ୍ରହସନ କିମ୍ପା ରଖାଗଲା
ଧନୁର୍ବିଦ୍ୟା ପ୍ରଦର୍ଶନ
ସ୍ୱୟମ୍ବରେ କିମ୍ପା କଲ ମିତ ନିର୍ଦ୍ଧାରଣ ? ୮୭
ବୀରଭୋଗ୍ୟା ଯଦ୍ୟପି ଅଟେ କନ୍ୟା ଲଭି ପନ୍ଥା
ତେବେ କିମ୍ପା ଉଠୁ ଅଛି ଜାତିପତି ପ୍ରଥା
ଯହିଁ ବୀରତ୍ୱ ପ୍ରମାଣ
ପ୍ରଦର୍ଶନେ ଦେଇଅଛ କ୍ଷତ୍ରିୟେ ଆହ୍ୱାନ । ୮୮
ଆହ୍ୱାନ ଦେଇ ବଚନ କରୁଅଛ ଭଙ୍ଗ
ବରଣ କରି ଉଡ଼ାଇ ଦିଅ ଅପମାନ
ବୀରତ୍ୱ ଅବହେଳିତ
ସହିବ କେଉଁ ପୁରୁଷ ହୋଇ ଉପେକ୍ଷିତ ? ୮୯
ଏ ପ୍ରକାର ସାମାଜିକ ଅବ୍ୟବସ୍ଥା ପାଇଁ
ପଣ କଲେ କର୍ଣ୍ଣବୀର କରିବେ ଲଢେଇ
ଭାଙ୍ଗି ଦେବେ ଜାତି ଭେଦ
କ୍ଷତ୍ରିୟର ଅହଂକାରେ କରି ଘୋର ଯୁଦ୍ଧ । ୯୦
କଠୋର ପ୍ରତିଜ୍ଞା କଲେ ବୀରବର କର୍ଣ୍ଣ
ସଭାସ୍ଥଳେ ଯାଜ୍ଞସେନୀ ଦେଲେ ଅପମାନ
ଏହି ପରି ସଭାସ୍ଥଳେ
ଅପମାନ ପ୍ରତିଶୋଧ ନେବ ଏକ ବେଳେ । ୯୧

ପୁରୁଷାକାରକୁ ଯେଣୁ କରଅଛ ହେୟ
ପ୍ରତିଶୋଧେ ନାହିଁର ହେବ ଅବକ୍ଷୟ
କ୍ରୋଧ ବହ୍ନି ପ୍ରଜ୍ୱଳିତ
ବସିଲେ ସଭାରେ କର୍ଣ୍ଣ ହୋଇ ମର୍ମାହତ । ୯୨

ସ୍ତବଧ ହୋଇଗଲ ସଭା ସର୍ବେ ନିରୁତ୍ତର
ମନ ମଧ୍ୟେ ଧୃଷ୍ଟଦ୍ୟୁମ୍ନ କରିଲେ ବିଚାର
ନାହାନ୍ତି କି କ୍ଷତ୍ରି କେହି
ଭେଦିବ ଏ ମହାଲକ୍ଷ କନ୍ୟାଲାଭ ପାଇଁ ? ୯୩

ଏକାଳେ ଉଠିଲେ ଭୀଷ୍ମ କ୍ଷତ୍ରିୟ ଗରିଷ୍ଠ
ପୁଛିଲେ ମୁଁ ଲକ୍ଷ ଭେଦି କନ୍ୟା ହେଲେ ପ୍ରାପ୍ତ
କହ ହେ ପାଞ୍ଚାଳ ନାଥ
ଦୁର୍ଯ୍ୟୋଧନେ କନ୍ୟା ଦେବ ତୁମ୍ଭେ କି ସମ୍ମତ ? ୯୪
ଶିଖଣ୍ଡୀ କହିଲେ ତୁମ୍ଭ ବୀରପଣ ଜଣା
ଲକ୍ଷ ଭେଦ କଲେ ସିନା ପ୍ରାପ୍ତ ହେବ କନ୍ୟା
ଶିଖଣ୍ଡୀକୁ ଦେଖି ଭୀଷ୍ମ
ଧନୁ ନ ଧରି ବସିଲେ ହୋଇଣ ମଉନ । ୯୫
ଦ୍ରୋଣ, କୃପାଚାର୍ଯ୍ୟ, ଅଶ୍ୱତ୍ଥମା କ୍ଷତ୍ରଗଣ
ନ ଭେଦି ଲକ୍ଷ ବସିଲେ ହୋଇଣ ମୋଉନ
ଝଙ୍କାସିଲେ ଧୃଷ୍ଟଦ୍ୟୁମ୍ନ
କ୍ଷତ୍ରୀୟମାନେ କି ହେଲ ବଳବୀର୍ଯ୍ୟ ଶୂନ୍ୟ ? ୯୬

ଏତେ ବଡ ସ୍ୱୟମ୍ବର ହେବ କି ନିଷ୍ଫଳ
ମହାଲଜ୍ଜା ଉପୁଜିବ ନଷ୍ଟେ କ୍ଷତ୍ରିକୁଳ
ବୋଲେ ଜରାସନ୍ଧ ଶୁଣ
ଦେବଙ୍କୁ ଦୁର୍ଲ୍ଲଭ ଲକ୍ଷ କେ କରେ ସନ୍ଧାନ ? ୯୭

କାହିଁ ଅଛୁ ସ୍ତମ୍ଭ ଶୀର୍ଷ କାହିଁ ସ୍ୱର୍ଣ୍ଣ ମୀନ
ଏକଲକ୍ଷ ଧନୁ ବଳ ଲୌହ ତାର ଗୁଣ
ଅଦୃଷ୍ଟ ଲକ୍ଷ କେମନ୍ତେ
ଭେଦି କରିବେ ରାଜନ ନ ହୁଏ ପରତେ ? ୯୮

ସଭାକୁ ଚାହିଁ ପୁଚ୍ଛିଲେ ପାଞ୍ଚାଳ ରାଜନ
କାହାଭିତରେ ପରୀକ୍ଷା ଦେବାକୁ ମୂଳ୍ୟାୟନ
ଯଦି ଅଛୁ କା କ୍ଷମତା
ପ୍ରଦର୍ଶନ କରୁ ଆସି ଆପଣା ଦକ୍ଷତା । ୯୯

ଦର୍ଶକ ମଞ୍ଚ ମଧ୍ୟରୁ କର୍କଶ ଧ୍ଵନରେ
ପୁଚ୍ଛିଲା ଜଣେ ଯୁବକ ଅତି ଆବେଗରେ
ଆଦେଶ ହେଲେ ରାଜନ
ଲକ୍ଷ୍ୟ ବିନ୍ଧିବାକୁ ମୁହିଁ ଅଟଇ ଭାଜନ ? ୧୦୦

କିନ୍ତୁ ମୁଁ କ୍ଷତ୍ରିୟ ନୁହେଁ ଜନଜାତି ଜନ
ଖିଲ୍ଲିପୁତ୍ର ଅଟେ ମୁହିଁ ବାସ ଘୋରବନ
ବହେ ଶବର ଶୋଣିତ
ଲକ୍ଷ୍ୟ ଭେଦ କରିବାକୁ ରହିଛି ସାମର୍ଥ୍ୟ । ୧୦୧

ମାତ୍ର ଜାତି ଭେଦର ଏ ଅଭେଦ୍ୟ ପ୍ରାଚୀର
ଭେଦ କରିବାକୁ ନାହିଁ କ୍ଷମତା ମୋହର
ଶୁଣି ସ୍ତବ୍ଧ ସଭାସ୍ଥଳ
ସଭିଙ୍କ ଦୃଷ୍ଟି ପଡ଼ିଲା ଯାଇତା ଉପର । ୧୦୨

ଦ୍ରୌପଦୀ, ଧୃଷ୍ଟଦ୍ୟୁମ୍ନ, ଦ୍ରୁପଦ, ଶ୍ରୀକୃଷ୍ଣ
ଦୁର୍ଯ୍ୟୋଧନ, ଭୀଷ୍ମ, ଦ୍ରୋଣ, କୃପ, ଦୁଃଶାସନ
ରହିଲେ ଉତ୍ସୁକେ ଚାହିଁ
ମୃଦୁ ହାସ୍ୟ ମୁଖେ ପୁଣି ଯୁବକ ବୋଲଇ । ୧୦୩

ଆଦେଶ ଦିଅନ୍ତୁ ମୋତେ ପାଞ୍ଚାଳ ରାଜନ
ଲକ୍ଷ୍ୟ ଭେଦ କରିବାକୁ ଅଟେ ମୁଁ ଭାଜନ
ଉତ୍ତରିଲେ ନରରାଣ
ଏଠାରେ ନାହିଁ ତୁମ୍ଭର କିଛି ପ୍ରୟୋଜନ । ୧୦୪

ନୃପଙ୍କ ନାସ୍ତି ବାଚକ ବଚନକୁ ଶୁଣି
ପୁଚ୍ଛିଲା ଯୁବକ ଘୃଣା କଲକ ନୃମଣି ?
ରହିଛି ମୋହର ଶକ୍ତି
ଜାତିଗତ ଈର୍ଷାଯୋଗୁଁ ନ ଚାହିଁ ନୃପତି । ୧୦୫

ତେବେ ଏହି ସ୍ୱୟମ୍ବର ନାଟକ ସମାପ୍ତ
ଉପଯୁକ୍ତ ପତ୍ରରୁଷ ଯହିଁ ଉପେକ୍ଷିତ
ସମାଜର ଉଚ୍ଚବର୍ଣ୍ଣ
କ୍ଷତ୍ରିୟ ବ୍ରାହ୍ମଣ ଦୁଇ ଧ୍ୱଂସର କାରଣ । ୧୦୬

ବେନଙ୍କ ଈର୍ଷାରୁ ମୋର ଆଙ୍ଗୁଳି କର୍ତ୍ତିତ
ଦେଖାଇଲେ ସେ ଆଙ୍ଗୁଳି ସଭାରେ ସତତ
ଦେଖି ସଭା ସ୍ତମ୍ଭୀଭୂତ
"ଆରେ ଇଏ ଏକଲବ୍ୟ" ଧ୍ୱନି ପ୍ରସାରିତ । ୧୦୭

ହସିହସି ଏକଲବ୍ୟ ଦେଖାଏ ଆଙ୍ଗୁଳି
କ୍ଷତ୍ରିୟ ବ୍ରାହ୍ମଣ ମୁଖେ ପଡ଼ିଗଲା କାଳି
ସ୍ଖଳିତ ସେ ପରାକ୍ରମ
ପରିହାସ କରୁଥିଲା ଗାଇଣ ଦୁର୍ନାମ । ୧୦୮

ଜାତିଗତ ସ୍ୱାଭିମାନ ଘୃଣ୍ୟ ଆଭିଜାତ୍ୟ
ବକ୍ଷ ଦେଶେ କରୁଥିଲା ଶତ ପଦାଘାତ
ପୁଚ୍ଛେ ଚହ୍ଲିଲି କି ନାହିଁ
ଆସିଥିଲି ଆଖଡାକୁ ଦେଲି ଢଉଡ଼ାଇ । ୧୦୯

ବିଦ୍ୟା ଶିକ୍ଷାରୁ ବଞ୍ଚିତ କ୍ଷତ୍ର ଅହଂକାରେ
ସାଧ୍ୟ କଲି ଅସ୍ତ୍ର ବିଦ୍ୟା ଦୃଢ଼ ମନୋବଳେ
ହୋଇ ତୁମ୍ଭେ ଈର୍ଷାନ୍ୱିତ
କଟାଇ ନେଲ ଆଙ୍ଗୁଳି କରାଇ କପଟ । ୧୧୦

ତଥାପି ବୀରତ୍ୱ ମୋର ବାହୁରେ ସଞ୍ଚିତ
ଏହାଠାରୁ ବଡଲକ୍ଷ ଭେଦି ମୁଁ ପାରେତ
ପବିତ୍ର କ୍ଷତ୍ରିୟ ଧର୍ମ
ହେଲେ ଆଜ ଦେଖାଯାଏ ଘୋର ବ୍ୟତିକ୍ରମ । ୧୧୧

ଅସ୍ତ୍ରଶିକ୍ଷା କରିବାକୁ ନ ଦେଲ ସୁଯୋଗ
ଅସ୍ତ୍ର ପରୀକ୍ଷାରେ ମଧ୍ୟ ନ ମିଳିଲା ଭାଗ
ସ୍ୱାର୍ଥପର କ୍ଷତ୍ରିବୃତ୍ତି
ରାଜଧର୍ମ କଳୁଷିତ କିବା କାର୍ଯ୍ୟ ଏଥି । ୧୧୨

ରାଜ ସଭା ମଧ୍ୟେ ନ୍ୟାୟ ନ ଥିବାର ଦେଖି
ଉଠିଗଲେ ଏକଲବ୍ୟ ଆସନ ଉପେକ୍ଷି
ତା କଟା ଆଙ୍ଗୁଳି ରକ୍ତ
ବନ୍ଦୁ ବନ୍ଦୁ ଝରୁଥିଲ ବସ୍ତ୍ରକ୍ଷତ ମୁଖ । ୧୧୩

ଯୁବକର ଚଲପଥେ ଏକ ଧ୍ୟାନେ ଚାହିଁ
ବସିଗଲେ ସଭାଜନେ ସ୍ଥିର ନେତ୍ର ହୋଇ
ଶତେ ଚୌଦ୍ଦ ପଦେ ଶେଷ
ଗୀତରେ ଭଣିଲ ମୂଢ଼ମତି ବୃନ୍ଦାବନ । ୧୧୪

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ଦ୍ରୌପଦୀ ସ୍ୱୟମ୍ବର
ଓ ରାଜାମାନଙ୍କର ଲକ୍ଷ୍ୟବିନ୍ଧା ଉପାଖ୍ୟାନେ
ନାମ ଷୋଡ଼ଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀ କୃଷ୍ଣାର୍ପଣ ମସ୍ତୁ ।

●—●
✳

ବୋଲି —

ଜଗନ୍ନାଥଙ୍କୁ ମୁଁ ଚିହ୍ନି ପାରିଲିଣି
ଚିହ୍ନାଇଣ ଦେବ ଜଗତ
ସେ ମୋତେ ଚିହ୍ନିଲେ ମୁଁ ତାଙ୍କୁ ଚିହ୍ନିଲି
ଭକତ ଭାବେ ବନ୍ଧିଲତ ॥ ୧

ସେ ମୋତେ ଖୋଜନ୍ତି ମୁଁ ତାଙ୍କୁ ଖୋଜଇ
ଜଣେ ଭାବ୍ୟ ଜଣେ ଭାବତ
ତାଙ୍କଣ୍ଠ ପରମ ମୋକ୍ଷଣ୍ଠକ ଜୀବ
ଏକୁ ଦୁଇ ହେଲୁ ସମ୍ଭୂତ । ୨
ସେ ଯାହା କରନ୍ତି ମୁଁ ତାହା କରଇ
ସାଆନ୍ତ ମୋର ସାମରଥ
ନିର୍ଗୁଣରୁ ଆସି ଗୁଣବନ୍ତ ହୋଇ
ଖେଳନ୍ତି ଭକତ ସହିତ । ୩

ସକଳ ଘଟରେ ସମେ ବିରାଜିତ
ନାହିଁ ପରାପର ଜ୍ଞାନ ତ
ଭ୍ରମର ଗୁମ୍ଫାରେ ଭ୍ରମଣ କରନ୍ତି
ପରଂବ୍ରହ୍ମ, ଜୀବବ୍ରହ୍ମତ । ୪
ଏକଲି କାଳରେ ନୀଳ କନ୍ଦରରେ
ହୋଇଛନ୍ତି ଦାରୁବ୍ରହ୍ମ ତ
ଭାଇ ବଳରାମ ଭଉଣୀ ସୁଭଦ୍ରା
ଆପଣେ ଶିଶୁ ଜଗନ୍ନାଥ । ୫

ସଙ୍ଗେ ସୁଦର୍ଶନ ହେନ ନାରାୟଣ
ନୀଳ କନ୍ଦରେ ବିରାଜିତ
ଚିହ୍ନି ଚିହ୍ନାଇଣ ଦେଲେ ଗୁରୁବ୍ରହ୍ମ
ଅଭିରାମ ସୁବ୍ରତା ସୁତ । ୬

—●—

# ସପ୍ତଦଶ ଅଧ୍ୟାୟ

## ଅର୍ଜ୍ଜୁନଙ୍କ ଲକ୍ଷ ବିନ୍ଧା

( ରାଗ - ଶଙ୍କରାଭରଣ )

ଶ୍ରୀକୃଷ୍ଣ ଚରିତ ମାନସ ସୁଜନେ ଶୁଣ
କୃଷ୍ଣା ସ୍ୱୟମ୍ବର କଥା ରସେ ପରିପୂର୍ଣ୍ଣ
ପୃଚ୍ଛା କଲେ ଶଙ୍କର୍ଷଣ
ବିନ୍ଧି ନ ପାରିଲେ ଲକ୍ଷ ନୃପ କ୍ଷତ୍ରିଗଣ । ୧
ଲକ୍ଷ ବିନ୍ଧିବାକୁ କିଏ ଅଛୁ କି ରାଜନ
ଜାଣିଥିଲେ ସେହି କଥା କର ହେ। ବଖାଣ
ସଧୀରେ କହିଲେ କୃଷ୍ଣ
ଅଛନ୍ତି ଏ ତିନପୁରେ ମାତ୍ର ତିନି ଜଣ । ୨
ସ୍ୱର୍ଗେ ସୁରପତି ପାତାଳେ ନାଗ ରାଜନ
ମର୍ତ୍ତ୍ୟେ ମଧ୍ୟମ ପାଣ୍ଡବ ଏ ତିନି ପ୍ରମାଣ
ମାତ୍ର ବନ୍ଧୁ ଭ୍ରାତ ଶତ୍ରୁ
ସ୍ୱୟମ୍ବର ସଭାମଧ୍ୟେ ନ ବିନ୍ଧିବେ ଲକ୍ଷ । ୩
ବସୁଧା ଗୁରୁ ବାସୁକି ନ ଆସିବେ ମର୍ତ୍ତ୍ୟ
ଶୁଣି ବୋଲୁଛନ୍ତି ରାମ ଶୁଣ ହେ। ଅଚ୍ୟୁତ
ଲକ୍ଷ ବିନ୍ଧି ନେବା କନ୍ୟା
ଦ୍ୱାରକା ଶୋଭା ବଢିବ ବିଜେ କଲେ କୃଷ୍ଣା । ୪
ସଧୀରେ କହିଲେ କୃଷ୍ଣ ଶୁଣ ଜ୍ୟେଷ୍ଠ ଭ୍ରାତ
ମୁଁ କିମ୍ପା ବିନ୍ଧିବି ଲକ୍ଷ ପାଞ୍ଚାଳୀ ଅପ୍ରାପ୍ତ
ପାଣ୍ଡବ ଗୃହିଣୀ ସେହି
ଏ କାରଣୁ କୃଷ୍ଣାଙ୍କୁ ମୁଁ ସମ୍ମାନ କରଇ । ୫
ପ୍ରତିବାକ୍ୟ କଲେ ରାମ ଶୁଣ ହେ କଂସାରି
"ଇନ୍ଦ୍ର ପୁତ୍ରବଧୂ ତୋତେ ଅପ୍ରାପ୍ତ କୁମାରୀ"
ବାସୁକି ନ ଆସେ ମର୍ତ୍ତ୍ୟ
ଜତୁଗୃହେ ଦଗ୍ଧ ହେଲେ ପାଣ୍ଡୁ ପାଞ୍ଚ ପୁତ୍ର । ୬

ଆବର ଏଠାରେ କଷ୍ଟା ବସି ରହିଥିବା
ଚାଲ ଏବେ ଦ୍ୱାରକାକୁ ବାହୁଡ଼ିଣ ଯିବା
ପ୍ରତିବାକ୍ୟ କଲେ କୃଷ୍ଣ
ଦେଖିବା କପରି ଲଖ ବନ୍ଧିବେ ଅର୍ଜୁନ ? ୭

ଶ୍ରୀକୃଷ୍ଣଙ୍କ ଶ୍ରୀମୁଖରୁ ନଷ୍ଟା କଥା ଶୁଣି
ବିସ୍ମିତ ହୋଇ ପୁଚ୍ଛିଲେ ଭାଇ ହଳପାଣି
ସତ୍ୟ କହୁ କି ଅଚ୍ୟୁତ
ନ ମରି ପାଣ୍ଡବେ ତେବେ ଅଛନ୍ତି ଜୀବିତ ? ୮

ଶ୍ରୀକୃଷ୍ଣ କହିଲେ ଶୁଣ ହେ ଜ୍ୟେଷ୍ଠ ସୋଦର
ପାଣ୍ଡବେ ରହିଲେ କୂଟେ ନେଇ ଜତୁ ଘର
ରାତ୍ରେ ଶୟନ ସମୟେ
ପୋଡ଼ି ମାରିବେ ପୁଅଙ୍କୁ ନ ଜାଣିବେ କିଏ । ୯

ସହଦେବ ମନ୍ତ୍ରୀ ଜାଣେ ଭୂତ ଭବିଷ୍ୟତ
ତା ବୁଦ୍ଧି ବଳେ ବିପଦୁ ତରିଗଲେ ପୁଅ
ଯାହାଙ୍କ ସାହା ଅନନ୍ତ
ତାଙ୍କର କି କରି ପାରେ ଧୃତରାଷ୍ଟ୍ର ସୁତ ? ୧୦

ଶବରୁଣୀ ପାଞ୍ଚ ପୁଅ ବିପ୍ର ପୁରୋଚନ
ପୋଡ଼ି ମଲେ ସାତ ଜଣ ବଞ୍ଚିଲେ ନନ୍ଦନ
ଗୋପନେ ପଳାଇ ଯାଇ
ଦେବହିତ କାର୍ଯ୍ୟ କଲେ ବନେ ଦୁଃଖ ପାଇ । ୧୧

କିର୍ମୀର, କନ୍ଧର, ହିଡମ୍ବକ, ବକାସୁର
ମାରି ଚାରି ଦୈତ୍ୟ ଉଶ୍ୱାସିଲେ ମହୀଭାର
ସ୍ୱୟମ୍ବର ବାର୍ତ୍ତା ପାଇ
ବସିଛନ୍ତି ସଭାମଧ୍ୟେ ବିପ୍ରବେଶ ହୋଇ । ୧୨

ଆଗ୍ରହେ ପୁଚ୍ଛିଲେ ରାମ କହ ହେ କହ୍ନାଇ
ଲଖ ବନ୍ଧିବାକୁ ପାର୍ଥ ନ ଆସେ କିମ୍ପାଇ ?
କହୁଛନ୍ତି ଚକ୍ରଧର
ଆସିବାକୁ ଆଜ୍ଞା ଦେଇ ନାହାଁନ୍ତି ଠାକୁର । ୧୩

କମ୍ପା ଆଜ୍ଞା ନ ଦିଅନ୍ତି ପାର୍ଥେ ଧର୍ମସୁତ
ଦେଖିବା ନା କୁତୁହଳ ଲକ୍ଷ ବିନ୍ଧୁ ପାର୍ଥ
ଶ୍ରୀକୃଷ୍ଣ କହିଲେ ଶୁଣ
କ୍ଷତ୍ରିୟ ବିନ୍ଧନ୍ତୁ ଲକ୍ଷ ବୋଲନ୍ତି ରାଜନ । ୧୪

ଲକ୍ଷ ବିନ୍ଧା ମହାଯାଗେ ଦ୍ରୁପଦ ରାଜନ
ଏଯାଏଁ ବ୍ରାହ୍ମଣ ଗଣେ ଦେଇନ ଆହ୍ୱାନ
ଯେବେ ଡ଼ାକିବେ ନୃପତି
ଆଜ୍ଞା ଦେବେ ଅର୍ଜ୍ଜୁନଙ୍କୁ ଧରମ ଯୁଧିଷ୍ଠି । ୧୫

ଏକଥା ପଡ଼ନ୍ତେ ଯାଇଁ ଦ୍ରୁପଦ କର୍ଣ୍ଣରେ
ସଭିଙ୍କୁ ଅନାଇଁ ରାଜା କହିଲେ ଗମ୍ଭୀରେ
ବିପ୍ର କୁଳେ କେହି ବୀର
ଲକ୍ଷ ଭେଦ କଲେ ଦେବ କନ୍ୟାକୁ ମୋହର । ୧୬

ଦ୍ରୁପଦ ଆହ୍ୱାନ ଶୁଣି ଉଠିଲେ ଅର୍ଜ୍ଜୁନ
ବାରଣ କରିଲେ ବିପ୍ରେ ତାହାଙ୍କ କରିଣ
"ରଥୀ, ମହାରଥୀ ଗଣ
ବିଫଳ ହୋଇଲେ ଲକ୍ଷ ବିନ୍ଧି ନ ପାରିଣ । ୧୭

ତୁମ୍ଭେ ପରାଜିତ ହେଲେ ହୋଇବୁ ଲଜ୍ଜିତ ।
ଏ କଥା ଯୋଗାଏ ନାହିଁ ଆମ୍ଭର ଏ ମତ"
ବସାଇଲେ ବିପ୍ରଗଣ
ମନ୍ତ୍ରୀଙ୍କୁ ପୁଚ୍ଛିଲେ ରାଜା ଉପାୟ କେସନ ? ୧୮

ବୋଲୁଛନ୍ତି ମନ୍ତ୍ରୀବର ଶୁଣ ହେ ରାଜନ
ଲକ୍ଷର ନିଗୂଢ଼ ତତ୍ତ୍ୱ କରୁଛି ବଖାଣ
ନରତାଳେ ଅଣଗୃଣ
ନିରେଖି ବୁହିଁଲେ ଦିଶଇ ଅର୍ଦ୍ଧ ଆକାଶ । ୨୦

ବୃତ୍ତାକାର ଉଚ୍ଚେ ରାଧାଚକ୍ର ରହିଅଛି
କୁମ୍ଭାର ଚକ ସଦୃଶ ନିରତେ ଘୂରୁଛି
ଅର୍ଦ୍ଧାକାଶ ସ୍ତମ୍ଭ ଶୀର୍ଷ
ତହିଁ ଲକ୍ଷ୍ୟ କଲେ ଦିଶେ ସୁବର୍ଣ୍ଣର ମତ୍ସ୍ୟ । ୨୧

ତାଳେକ ଉଚ୍ଚରେ ବେଦ କଟେଲେ ନିର୍ମାଣ
ସ୍ତମ୍ଭ ତଳେ ଜଳଘଟ ରଖିଲେ ଶଙ୍କୁନ
ନମ୍ର ଦୃଷ୍ଟି କଲେ ଘଟେ
ମୀନ ପ୍ରତିବିମ୍ବ ଦୃଶ୍ୟ ହୋଇଥାଏ ନେତ୍ରେ । ୨୨

ଶ୍ରୀମନ୍ଦର ମଧ୍ୟେ କାକ ଭୁଷଣ୍ଡ ଆସ୍ଥାନ
କ୍ଷୁଦ୍ର ଏକବେଦ ପରେ ଅଛି ଚକ୍ର ଚିହ୍ନ
ଚକ୍ର ଖୋପେ ପୂର୍ଣ୍ଣ ଜଳ
ସେ ଜଳେ ଦିଶନ୍ତି ତିନ ମୂର୍ତ୍ତି ଅବିକଳ । ୨୩

ମନ୍ଦର ଶୀର୍ଷ ଦେଶରେ ଥିବା ତିନ ମୂର୍ତ୍ତି
ଚକ୍ର ଖୋପ ଜଳେ ଦୃଶ୍ୟ କଲେ ନମ୍ର ଦୃଷ୍ଟି
ସେହି ସୂତ୍ରେ ବ୍ୟାସଦେବ
ସ୍ଥାପିଲେ ଏ ମହାଲକ୍ଷ ଶୁଣ ଧର୍ମଦେବ । ୨୪

ନମ୍ର ଦୃଷ୍ଟି ଉର୍ଦ୍ଧ୍ୱ ମୁଷ୍ଟି କଲେ ଲକ୍ଷ ସୂତ୍ର
ତେଣୁ ବୀରଗଣଙ୍କର ଥରୁଥାଏ ଗାତ୍ର
ନିଷ୍କାମ ଅଟନ୍ତି ପାର୍ଥ
ତେଣୁ କୂଟ କରି ବ୍ୟାସ ପାତିଛନ୍ତି ଲକ୍ଷ । ୨୫

ସକୂଟେ ଥୋଇ ଅଛନ୍ତି ଧନୁ ଲକ୍ଷେ ବଳ
ବହିବାକୁ ନାହିଁ କେହି ଏ ମହୀ ମଣ୍ଡଳ
ନିଜ ଧନୁ ନିଜ ସଜ
ଲକ୍ଷେ ବଳ ଲୌହ ଧନୁ ବୀରଙ୍କୁ ଅସଜ । ୨୬

ଏ ସଭାରେ ଯେତେ ବୀର ହୋଇଛନ୍ତି ଠୁଳ
ଲକ୍ଷେ ବଳଠାରୁ ଅଳ୍ପ ତାଙ୍କ ଧନୁ ତୁଳ
ଧନୁ ଟେକି ନ ପାରିଣ
ବସିଲେ ସଭାରେ ନୃପେ ମଥାକୁ ପୋତିଣ । ୨୭

ଜମ୍ବୁଦ୍ୱୀପେ ଧନଞ୍ଜୟ ଧନୁର୍ଦ୍ଧର ବୀର
ଏକଲକ୍ଷ ଧନୁତୁଳ ଗାଣ୍ଡୀବ ତାଙ୍କର
ପାର୍ଥଙ୍କୁ ନୁହେଁ ବଚନ
ବ୍ୟାସ ବାସୁଦେବ କୂଟେ ଜୟୀ କୁନ୍ତୀପୁତ୍ର । ୨୮

କହୁଛନ୍ତି ସହଦେବ ଶୁଣ ଜ୍ୟେଷ୍ଠ ଭ୍ରାତ
ବ୍ୟାସ କୃଷ୍ଣ ମହାଜ୍ଞାନୀ ଶ୍ରୀକୃଷ୍ଣ ଚରିତ
ଦେବ ତାଙ୍କେ ସାତ ତାଳ
ମାନବ ତାଙ୍କେ ଉତ୍ସର୍ଗ ଅଣ୍ଟଣ ତାଳ । ୨୯
ଏ ଭେଦ ନୃପତି ଗଣେ ନୁହିଁଇ ପ୍ରତ୍ୟକ୍ଷ
ମାନବ ସାତ ତାଳକୁ ଯାରେ କଲେ ଲକ୍ଷ
ତେଣୁ ନ ପାରିଲେ ବନ୍ଧି
ଅର୍ଜୁନ ପ୍ରତିଷ୍ଠା ପାଇଁ ଏ ଦୂରଭିସନ୍ଧି । ୩୦
ସହଦେବ ମୁଖୁ ଶୁଣି ନିଷ୍ଠୁର ବଚନ
ଯୁଧିଷ୍ଠିର ଦେବ ଗୃହିଁଲେ ପାର୍ଥଙ୍କ ବଦନ
ଧାଡିକାରେ ଠିଆ ହେଲେ
ଅର୍ଜୁନ ଉଠନ୍ତେ ପୁଣି ବଳେ ବସାଇଲେ । ୩୧
ବୋଇଲେ ରାଜାଏ ବସିଛନ୍ତି ପାଇ ଲଜ୍ଜ
ତୁମ୍ଭେ କି ବନ୍ଧିବ ଲକ୍ଷ ଏତେକ ନିର୍ଲଜ
ପୁଣି ଭିକ୍ଷୁକ ବ୍ରାହ୍ମଣ
ରାଜକୁମାରୀରେ କିବା ଅଛି ପ୍ରୟୋଜନ ? ୩୨
ହାତ ଟାଣି ଧରି ବିପ୍ରେ ବଳେ ବସାଇଲେ
ବ୍ରାହ୍ମଣ ସଭାକୁ ଗୃହିଁ ଦ୍ରୁପଦ କହିଲେ
ବିପ୍ର ବୀର ପଶୁରାମ
ଏକ ବିଂଶବାର କ୍ଷତ୍ରି କରିଲେ ନିଧନ । ୩୩
ଦ୍ରୋଣ, କୃପ, ଅଶ୍ୱଥାମା, ବିପ୍ର ବଂଶେ ଜାତ
ହୋଇ କରୁଛନ୍ତି ଦେଖ ଏବେ କ୍ଷତ୍ରି ବୃତ୍ତ
ବିପ୍ର କୁଳେ ଯାତ ମୋର
କ୍ଷାତ୍ର ବୃତ୍ତି କରୁଅଛି ଧରି ଧନୁଶର । ୩୪
ଧନୁର୍ବିଦ୍ୟାରେ ପାରଗ ଅଟେ ଯେଉଁ ବୀର
ବ୍ରାହ୍ମଣ ହେଲେ ହେଁ ସେହି କ୍ଷତ୍ରିୟ ପ୍ରବର
କଲେ ସେହି ଲକ୍ଷ ଭେଦ
ଲଭିବ ସେ କନ୍ୟାରତ୍ନ ତୁଟିବ ବିବାଦ । ୩୫

ପୁଣିଥରେ ଆଜ୍ଞା ଦେଲେ ଧର୍ମଙ୍କ ନନ୍ଦନ
ବାହାନାଦ କରି ଦର୍ପେ ଉଠିଲେ ଅର୍ଜୁନ
ଧରି ବସାନ୍ତେ ବ୍ରାହ୍ମଣେ
ବିପ୍ରଙ୍କୁ କହିଲେ ଧର୍ମ କୃତାର୍ଥ ବଚନେ । ୩୬
ଯାହାର ଶରୀରେ ଥାଏ ବଳବୁଦ୍ଧି ବିଦ୍ୟା
ପ୍ରତିଯୋଗିତାକୁ ତାର ବଳଥାଏ ଶ୍ରଦ୍ଧା
ପାର୍ଥଙ୍କ କର ଦେଖାନ୍ତି
ଦେଖ ବେନି ଭୁଜେ ଫଳ ଅଛଇ ଅଙ୍ଗୁଠି । ୩୭
ଧନୁର୍ଦ୍ଧର ନୋହିଲେ କି ଥାଆନ୍ତା ଏ ଚିହ୍ନ
ଧନୁର୍ଦ୍ଧର ଗଣେ ଅଗ୍ରଗଣ୍ୟ ଏ ବ୍ରାହ୍ମଣ
ସାଧିଅଛନ୍ତି ଧନୁର୍ବେଦ
ମନେ ହୁଏ ଏହା ଯୋଗୁଁ କାର୍ଯ୍ୟ ହେବ ସିଦ୍ଧ ।୩୮
ଯେବେ ଏ ବ୍ରାହ୍ମଣ ଲକ୍ଷ ବିନ୍ଧିବେ ହେ ଦ୍ୱିଜ
ସମ୍ମାନିତ ହେବା ଆମ୍ଭେ ଏ କ୍ଷତ୍ରି ସମାଜ
ନୃପଙ୍କ ମୁଖରେ କାଳି
ଲଭିବା ସଭାରେ ଆମ୍ଭେ ଦ୍ରୁପଦ ଦୁଲାଳୀ । ୩୯
ଲକ୍ଷ ବିନ୍ଧି ବିପ୍ର ଯେବେ କନ୍ୟାକୁ ଲଭିବେ
ବ୍ରାହ୍ମଣଙ୍କୁ ଦେଖି ନୃପେ ଭୟ ଆଚରିବେ
ଶୁଣି ବିପ୍ର ହେଲେ ମୌନ
ଆଜ୍ଞା ଦେଲେ ଯୁଧିଷ୍ଠିର ଚଳହୋ ବହନ । ୪୦
ସିଂହ ଠାଣି ଗତି କରି ଚଳିଲେ ଅର୍ଜୁନ
ଦେଖିଣ ଚକିତ ହେଲେ ନରପତିଗଣ
ଶକୁନି ବୋଲେ ବଚନ
ଦେଖିଲ କି ବ୍ରାହ୍ମଣଙ୍କ ବିଗ୍ରହ କେସନ ? ୪୧
ପଠାଇ ଦେଲେ ସେମାନେ ବାଛି କରି ଜଣେ
ଉପହାସ ପାଇଯାନ୍ତୁ ଏଥୁ ନୃପଗଣେ
ବ୍ରାହ୍ମଣେ କ୍ଷତ୍ରିୟ ବୈଶ୍ୟ
ନାଶ କଲେ ବର୍ଣ୍ଣାଶ୍ରମ କ୍ଷତ୍ରି ବୃତ୍ତି କରି । ୪୨

ଦୁର୍ଯ୍ୟୋଧନ ବୋଲେ ମାମୁଁ ରହ କିଛିକ୍ଷଣ
ଦେଖିବା ଏ ମହାଲକ୍ଷ ବିନ୍ଧେ କି ବ୍ରାହ୍ମଣ ?
କି କରିବ ରାଜକେମା
ଧନରତ୍ନ ଦେଇ ଆମ୍ଭେ କନ୍ୟା ନେବା ଯିମା ।୮୩
ଯଥାର୍ଥ କହିଲେ ଯହୁଁ ଶ୍ରୀମାନ ଗୋବିନ୍ଦ
ଶୁଣି ଦୁଷ୍ଟ ରାଜାମାନେ ହୋଇଲେ ଆନନ୍ଦ
ମଞ୍ଚେ ଉଠିଲେ ଅର୍ଜ୍ଜୁନ
ଦେଖି ଆନନ୍ଦିତ ହେଲେ ଦେବକୀ ନନ୍ଦନ । ୮୪
କହିଲେ କି ଶୁଭ ଲଗ୍ନେ କଲି ଆଗମନ
ପ୍ରାଣସଖା ଅର୍ଜ୍ଜୁନର ପାଇଲି ଦର୍ଶନ
ବିଦୁର କହିଲେ ଧନ୍ୟ
ଦେଖିଲି ମୁଁ ଏତେ ଦିନେ ପୁତ୍ରଙ୍କ ବଦନ । ୮୫
ଭୀଷ୍ମ ଦ୍ରୋଣ କଥାବାର୍ତ୍ତା ଆମ୍ଭେ ବରଯାତ୍ରୀ
ଏତେବେଳେ ମିଳିଗଲି ବରପାତ୍ର ଏଥି
ଭାବିଲେ ଦ୍ରୁପଦ ନୃପ
ବିପ୍ର କି କ୍ଷତ୍ରିୟ ଏବେ ଜାଣିବା ସ୍ୱରୂପ । ୮୬
ବେଦୀ ପରେ ରଖିଛନ୍ତି ବିଭିନ୍ନ ଶକୁନ
ଧନୁଶର, ଗଦା, ଖଡ଼୍ଗ, ପୋଥି, ଧନରତ୍ନ
ବ୍ରାହ୍ମଣ ଆସିବ ଯେବେ
ଧନରତ୍ନ କୁଢ଼ ଦେଖି ରହିଯିବ ତେବେ । ୮୭
ଲକ୍ଷ ବିନ୍ଧିବାକୁ ଯେବେ କ୍ଷତ୍ରିୟ ଆସିବ
ଧନୁ, ଗଦା, ଖଡ଼୍ଗ ଦେଖି ତାହାକୁ ଧରିବ
ଯେଉଁ ଖାର ବସ୍ତୁ ଭକ୍ତ
ପୁରାଣ ପୁସ୍ତକ ଛୁଇଁ ଶନ୍ତ୍ରିବ ଅଚ୍ୟୁତ । ୮୮
ଏପରି ଶକୁନ ମାନ ରହିଅଛି ତହିଁ
କିଏ କେଉଁ ପ୍ରକୃତିର ଜାଣିବାର ପାଇଁ
ଯେଉଁ ମନର ଗାତ୍ରରେ
ତିନଗୁଣ ଚିତ୍ରମାନ ଖୋଦିତ ଭଙ୍ଗିରେ । ୮୯

ଯିଏ ଯେଉଁ ପ୍ରକୃତିର ସେହି ଚିହ୍ନ ଦୃଶ୍ୟ
ସାତ୍ତ୍ୱିକ, ରାଜସିକ, ତାମସିକ ବିଶେଷ
ଯାହାର ଯହିଁକି ମନ
ସେହି ଚିହ୍ନମାନ ନେଇ କରିବ ଦର୍ଶନ । ୫୦
ଏକାକେ ବେଦୀ ପାଖରେ ମିଳିଲେ ଅର୍ଜୁନ
ବାମକରେ ସ୍ପର୍ଶ କଲେ ଦେଖି ଧନୁରତ୍ନ
ଧନୁର୍ଧର ବାମ ହସ୍ତ
ଆମନ୍ତ୍ରଣ କରି ପୁଣି ରଖି ଦେଲେ ପାର୍ଥ । ୫୧
ପୂର୍ବାଣ ଧରି ଥୋଇଲେ ଚିନ୍ତି ଯଦୁନାଥ
ବିଚିତ୍ର ବେଶରେ ଦେଖି ଭାବିଲେ ନୃନାଥ
ବିସ୍ମିତ ହେଲେ ରାଜନ
ମଧ୍ୟମ ପାଣ୍ଡବ ଏହି ମଘବା ନନ୍ଦନ । ୫୨
କେଶିନୀର ମୁଖ ଚାହିଁ କୃଷ୍ଣା କହୁଛନ୍ତି
ଏହି ମୋର ବର ମୋର ଅନ୍ୟ ବରପାର୍ଥୀ
କେଶିନୀ କହିଲେ ଯାହା
ଭାଗ୍ୟେ ଲେଖା ଅଛି ଭୋଗ ହୋଇବତ ତାହା । ୫୩
ଲକ୍ଷେ ରାଜା ଦେଖି ତୁମ୍ଭ ନ ବଳିଲା ମନ
ଭିକ୍ଷୁକ ବ୍ରାହ୍ମଣ ଠାରେ ସମର୍ପିଲ ପ୍ରାଣ
କେ କରି ପାରିବ ଆନ
ନିୟତି ବିଧାନ ଯାହା କପାଳ ଲିଖନ । ୫୪
ପାଞ୍ଚାଳୀ କହିଲେ ଥିଲେ ତପସ୍ୟା ମୋହର
ନୃପତି ଦୁହିତା ହୋଇ ହେବି ବିପ୍ରନାରୀ
ବେଦୀ ରେ ଠିଆ ଅର୍ଜୁନ
ନୃପେ ଚିହ୍ନି ନ ପାରିଲେ ସ୍ୱରୂପ ଦେଖଣ । ୫୫
ଅନାବୃତ୍ତ କଳେବର ଶ୍ୟାମଳ ବରଣ
ସୁଗଠିତ ସୁଶ୍ରୀ ବପୁ ଦିଶେ ଶୋଭାବନ
ଜ୍ୟୋତି ହୁଏ ବିକିରଣ
ଦେଖିଲା ଦେଖିଲା ପରି ବିଗୁରନ୍ତି ମନ । ୫୬

ଊର୍ଦ୍ଧ ବାହୁ ହୋଇ ଧନୁ ତୋଳିଲେ ଅର୍ଜୁନ
ସଭାମଧ୍ୟେ ଶୁଣାଗଲା ଜୟ ଜୟ ସ୍ୱନ
ବିଗିଡ଼ିଲେ ଖଳ ମନ
ଏ ଧନୁରେ ଗୁଣ ଦେଇ ଅଛି ବୀର କର୍ଣ୍ଣ । ୫୭

ଗୁଣ ଦେଲା କ୍ଷତ୍ରିୟର ଅଛି ଅର୍ଦ୍ଧ ଭାଗ
ବାନ୍ଧିଲେ ଏହି ଧନୁରେ ନେବ ସେହି ଭାଗ
ତେଣୁ ଗୁଣ ଉତ୍ତାରିଲେ
ଧନୁ ସଳଖାଇ ପୁଣି ଗୁଣ ଚଢ଼ାଇଲେ । ୫୮

ଦେଖିଣ ଆଶ୍ଚର୍ଯ୍ୟ ହେଲେ ସଭାରେ ନୃପତି
ବ୍ରାହ୍ମଣ ହେଲେ ହେଁ ଧରେ କ୍ଷତ୍ରିୟ ପ୍ରକୃତି
ନାରାଚେ ଶର ପୂରାଇ
ଦ୍ରୋଣ ଗୁରୁ ସ୍ମରି ହସ୍ତ ଶିରରେ ଲଗାଇ । ୫୯

ଦକ୍ଷିଣକୁ ମୁଖ କରି ଦେଖି ରାମକୃଷ୍ଣ
ପ୍ରଣାମ କଲେ ଭକ୍ତିରେ ପାଣ୍ଡୁଙ୍କ ନନ୍ଦନ
ସ୍ୱର୍ଗପୁରେ ମଘବାନ
ତାଙ୍କୁ ନମସ୍କାର କଲେ ବୀର ଅରଜୁନ । ୬୦

ଋଷିଙ୍କ ସଭାରେ ଦେଖି ବ୍ୟାସ ମହାମୁନି
ନମସ୍କାର କଲେ ମାନ୍ୟେ ବୀର ଫାଲଗୁନି
ବିପ୍ର ସଭାରେ ଯୁଧିଷ୍ଠି
ତାଙ୍କୁ ନମସ୍କାର କଲେ ଶ୍ରଦ୍ଧାରେ କରିଛି । ୬୧

କୃତାର୍ଥେ କହିଲେ ଧର୍ମ ବିପ୍ରଙ୍କୁ ଅନାଇଁ
ସଭାକୁ ଜୁହାର କଲେ ଆଶିର୍ବାଦ ପାଇଁ
ବିପ୍ରେ ଆଶିର୍ବାଦ କଲେ
ମନୋବାଞ୍ଛା ପୂର୍ଣ୍ଣ ହେଉ କଲ୍ୟାଣ ବାଞ୍ଛିଲେ । ୬୨

ଗୁରୁ-ଈଷ୍ଟ-ଋଷି-ବିପ୍ର ଆଶିର୍ବାଦ ଘେନି
ଆକର୍ଷି ଧଲେ ଧନୁ ଶ୍ରୀକରେ ଫାଲ୍‌ଗୁନି
ପାର୍ଥ ଅଙ୍ଗେ ପାଞ୍ଚ ମୂର୍ତ୍ତି
ଶିବ-ବ୍ରହ୍ମା-ବିଷ୍ଣୁ-ବ୍ୟାସ-ବାସବଙ୍କ ଜ୍ୟୋତି । ୬୩

ଦ୍ରୌପଦୀଙ୍କ ଇଚ୍ଛାଶକ୍ତି ଦେଖି ମାହେଶ୍ୱରୀ
ଧନୁ ତୁଳେ ବଳେ କଲେ ପ୍ରିୟ ଭାବ ଧରି
ଗୁଣ ଟଙ୍କାରିଲେ ପାର୍ଥ
ଗୁଣ ଘୋଷେ ସଭାସ୍ଥଳ ହେଲା ପ୍ରକମ୍ପିତ । ୬୪
କୃଷ୍ଣ ନାମ ସ୍ମରି ହୃଦେ ଛାଡ଼ିଦେଲେ ଶର
ମାଛ ବାମ ଆଖି ଭେଦି ଦକ୍ଷିଣେ ବାହାର
ଖସି ପଡ଼ିଲା ଭୂମିରେ
କରତାଳି ଦେଇ କୃଷ୍ଣ ସ୍ୱାଗତ କରିଲେ । ୬୫
ଚଳିଲେ ପାଞ୍ଚାଳୀ ବରଣ ମାଳା ଘେନିଣ
କ୍ରୋଧାନ୍ୱିତ ହୋଇ ନୃପେ କରିଲେ ବାରଣ
ମୁଖରୁ ଗାଳି ବର୍ଷଣ
କହିଲେ ନାନାବିଧ କଥା କରି ଆସ୍ଫାଳନ । ୬୬
"ଅନୁଲୋମ ବିଭା କରି ପାରନ୍ତି ବ୍ରାହ୍ମଣ
ମାତ୍ର ସ୍ୱୟମ୍ବର କଥା ବିପ୍ରଙ୍କୁ ବାରଣ
ସ୍ୱୟମ୍ବରୁ କନ୍ୟା ରତ୍ନ
ଜିଣି ନେଲେ ନୃପତିଙ୍କୁ ହେବ ଅପମାନ । ୬୭
ଏହା ଦ୍ୱାରା ବର୍ଣ୍ଣାଶ୍ରମ ବ୍ୟବସ୍ଥା ବିପନ୍ନ
ବଳାତ୍କାରେ ଛଳ କନ୍ୟା କରିବା ହରଣ
ଦୁଷ୍ଟ ରାଜାଙ୍କର ନୀତି
ଦେଖି ମଧ୍ୟସ୍ଥତା କଲେ ଶିଶୁ ଯଦୁପତି । ୬୮
"ଲକ୍ଷ୍ୟ ଭେଦ କରିବାରେ ରାଜାଏ ଅକ୍ଷମ
ହୋଇବାରୁ ଏ ବ୍ୟବସ୍ଥା ଥିଲା ପ୍ରୟୋଜନ
ଅଛି ଶାସ୍ତ୍ରୀୟ ନଜିର
ଧନୁର୍ବିଦ୍ୟା ପ୍ରଦର୍ଶନେ ବିପ୍ରେ ଅଧିକାର । ୬୯
ପ୍ରଚଳିତ ପ୍ରଥା ଏହା କିମ୍ପା ପ୍ରତିବାଦ
କ୍ଷାନ୍ତ ହୁଅ କ୍ଷତ୍ର ପତି ନ କର ବିରୋଧ"
ନ ଶୁଣିଲେ ଦୁଷ୍ଟ ଗଣ
ବଳେ କନ୍ୟା ନେବା ପାଇଁ କଲେ ଆସ୍ଫାଳନ । ୭୦

ମତ୍ତଗର୍ବେ ଗର୍ଜି କହେ କୁରୁକୁଳ ରାଜ
ଦେଖିବା କାହାର ବଳେ କନ୍ୟାନେବ ଦ୍ୱିଜ ?
ଜରାସନ୍ଧ, ଶିଶୁପାଳ
ଦୁର୍ଯ୍ୟୋଧନ ସଙ୍ଗେ ମିଶି କଲେ ଗଣ୍ଡଗୋଳ ।୭୧

ମାରମାର କ୍ଷତ୍ରିୟଙ୍କୁ ତପୋଧନ ଛାଡ଼
ଉଠିଲେ କୋପରେ ବିପ୍ରେ ଧରି ଶୁଷ୍କବାଡ
ପୃଚ୍ଛାକଲେ ଧର୍ମ ସାଇଁ
ସଭାରୁ ଉଠିଲ କିମ୍ପା ବ୍ରାହ୍ମଣ ଗୋସେଇଁ ? ୭୨

ବିପ୍ରର ଅଛଇ ଇନ୍ଦ୍ର ସମ ପରାକ୍ରମ
ପରଶୁରାମ ପରି ତେଜ ଯୁଦ୍ଧେ କାଳଯମ
ଅବିଚଳିତ ଭାବରେ
କୌତୁକ ଦେଖିବା ଆମ୍ଭେ ବସିଣ ସଭାରେ । ୭୩

ଧର୍ମରାଜ କଥା ଶୁଣି ବସିଲେ ବ୍ରାହ୍ମଣ
ଗୁହୁଁ ଗୁହୁଁ ଲାଗିଗଲା ଭୟଙ୍କର ରଣ
ଏକାକୀ ଯୁଝନ୍ତି ପାର୍ଥ
ଭୀମଙ୍କୁ ପଠାଇ ଦେଲେ କୁନ୍ତୀ ଧର୍ମ ସୁତ । ୭୪

ବେନି କରେ ବେନି ବୃକ୍ଷ ଧରି ବୃକୋଦର
ସମର କ୍ଷେତ୍ରେ ସଂଗ୍ରାମ କଲେ ଭୟଙ୍କର
ଉଡ଼ନ୍ତା ପର୍ବତ ପ୍ରାୟ
ମାଡ଼ି ଆସୁଅଛି ଦେଖି ନୃପେ କଲେ ଭୟ । ୭୫

ଭୀମ ଭୟଙ୍କର ରୂପ ଦେଖିଣ ଯୁଧିଷ୍ଠି
ବିଚାରିଲେ କୁରୁକୁଳେ ପଡ଼ିଲା ଅରିଷ୍ଟି
ବନବାସ ଦୁଃଖ କଷ୍ଟ
ସ୍ମରି କୌରବଙ୍କୁ ଭୀମ କରିବ ବିନଷ୍ଟ । ୭୬

ନକୁଳଙ୍କୁ ଆଜ୍ଞାଦେଲେ ଯାଅ ବେଗ ହୋଇ
ବେନି ଭ୍ରାତା ଘେନି ଆସ କନ୍ୟା ସଙ୍ଗେ ଭାଇ
ଧାଇଁଲେ ନକୁଳ ବୀର
ଭୀମ ଠାରୁ ବଳିଗଲେ ପ୍ରତିଜ୍ଞା ତାଙ୍କର । ୭୭

କୂଟ କରି କହୁଛନ୍ତି ଧର୍ମ ଦେବ ସୁତ
ବେଳୁ ବେଳ ଯୁଦ୍ଧ ବଢ଼େ ଦେଖ ମାଦ୍ରୀସୁତ
ତୁମ୍ଭେ ଯା ଭୀମେ କହିବ
ଶୀଘ୍ରେ ନମାରି ମାତ୍ର ଘୋଡ଼ାଇ ଦେବ । ୭୮

ଆଜ୍ଞା ପାଇ ସହଦେବ ଧାଇଁଲେ ପ୍ରଖର
କ୍ଷେପଣାସ୍ତ୍ର ପ୍ରାସ୍ତୁ କ୍ଷେପିଲେ ଯୁଦ୍ଧ ପ୍ରାନ୍ତର
ଚାରି ଭାଇଙ୍କ ସମର
ପ୍ରାଣ ଭୟେ ପଳାଇଲେ ଧାଇଁ କୁରୁବୀର । ୭୯

ସାଧୁରେ ପାଣ୍ଡବେ ବୋଲି କହିଲେ ଶ୍ରୀକୃଷ୍ଣ
ଚାରିଜଣ ଗୋଡ଼ାଇଛ ଲକ୍ଷେକ ରାଜନ
ଦେଖି ରାମ ବିଷାଦିତ
ପାଇବେକି ପ୍ରାଣ ଆଜି ଧୃତ ରାଷ୍ଟ୍ର ସୁତ ! ୮୦

ବୋଲୁଛନ୍ତି ବଳରାମ ଚାଲ ପଳାଇବା
ଧୃତରାଷ୍ଟ୍ର ପୁତ୍ରଙ୍କର ଦୁଃଖ ନ ଦେଖିବା
ଶ୍ରୀକୃଷ୍ଣ କହିଲେ ଏଥେ
ଦେଖିବା ପାଣ୍ଡବେ କନ୍ୟା ନିଅନ୍ତି କେମନ୍ତେ ? ୮୧

ସଭାରେ ଲକ୍ଷ ବିନ୍ଧିଲେ ବୀର ଧନଞ୍ଜୟ
ଚାରିଭାଇ ମିଳି ଶତ୍ରୁ କରୁଛନ୍ତି କ୍ଷୟ
ଯୁଧିଷ୍ଠି ଅବିବାହିତ
ବରଣ ମାଳା ନ ନେଲେ ଧର୍ମ ଚିନ୍ତି ପାର୍ଥ । ୮୨

କାହାକୁ ବିବାହ ହେବେ ଦେବୀ ଯାଜ୍ଞସେନୀ
କି ବ୍ୟବସ୍ଥା କରାଇବେ ବ୍ୟାସ ମହାମୁନି
ଏହାଶୁଣି ରାମ ମୌନ
ଗୋଡାଇ ପିଟନ୍ତି ପୃଷ୍ଠେ ପଳାୟିତ ସୈନ୍ୟ । ୮୩

ଭଗ୍ନବଳ ହୋଇ ଦୁଷ୍ଟେ ଯୋଜନ ଅନ୍ତରେ
ପ୍ରାଣ ରକ୍ଷା କଲେ ଯାଇ ପର୍ବତ ଗୁହାରେ
କନ୍ୟା ହୋଇ ଚାରି ଭ୍ରାତ
ଜ୍ୟେଷ୍ଠ ଭ୍ରାତା ପାଦେ ଆସି କଲେ ପ୍ରଣିପାତ । ୮୪

ପାଞ୍ଚାଳୀକୁ ଚାହିଁ ପୁତ୍ରେ ବଡ଼ ଆନନ୍ଦିତ
ବିଚାରିଲେ ବ୍ୟାସ ମୁନି କହିଥିଲେ ସତ୍ୟ
କନ୍ୟା ଯେଣୁ ପାଞ୍ଚ ଭାଇ
ପଥେ ଯାନ୍ତି ଭାବୁଥାନ୍ତି କନ୍ୟା ରୂପଗୁଣ୍ହିଁ । ୮୫
ମନ ମଧ୍ୟେ ବିଚାରନ୍ତି ଧର୍ମଙ୍କ ନନ୍ଦନ
ପାର୍ଥ ନ ଘେନିଲେ ମାନା ଶାସ୍ତ୍ର କୁଳଧର୍ମ
ମୁଁ ଅଟେ ଜ୍ୟେଷ୍ଠ ନନ୍ଦନ
ନ୍ୟାୟରେ ମୁଁ ବିଭାହେବି ଏହି କନ୍ୟା ରତ୍ନ । ୮୬
ମନ ମଧ୍ୟେ ଭୀମସେନ କରନ୍ତି ବିଚାର
ଯୁକତେ ଏ କନ୍ୟା ଗୋଟି ହୋଇବ ମୋହର
ମୁହିଁ ରହିଥିଲେ ଭୁନ
ଆଣନ୍ତା କି ପାର୍ଥ ନିଜ ବଳେ କନ୍ୟା ଜିଣି ? ୮୭
ଭ୍ରାତାମାନେ କନ୍ୟା ମୋତେ ନ କଲେ ପ୍ରଦାନ
ବଳାତ୍କାରେ ନେଇ ବନେ କଟାଇବି ଦିନ
ପାର୍ଥ କରନ୍ତି ବିଚାର
ହସ୍ତଗତେ ଏ କନ୍ୟା ଗୋଟି ଅଟଇ ମୋହର ।୮୮

ନକୁଳ ଭାବନ୍ତି ମୋତେ ସୁକୁମାର ଦେଖି
ନିଶ୍ଚୟ ବରିବେ କୃଷ୍ଣା ଶରଚନ୍ଦ୍ର ମୁଖୀ
କନ୍ୟାକୁ ସୁନ୍ଦର ବର
ମୋପରି ସୁନ୍ଦର ନୁହନ୍ତି ମୋର ସୋଦର । ୮୯
ମନମଧ୍ୟେ ବିଚାରନ୍ତି ମନ୍ତ୍ରୀ ଚୂଡ଼ାମଣି
ଆଗତ ଭବିଷ୍ୟ କଥା ପାରଇ ମୁଁ ଜାଣି
ଭେଦ ବତାଇ ନ ଥିଲେ
ଜିଣନ୍ତା କି ପାର୍ଥ କନ୍ୟା ତାହା ବୁଦ୍ଧିବଳେ ।୯୦

ପାଞ୍ଚ ଭାଇ ପାଞ୍ଚ କଥା ପାଞ୍ଚି କରି ମନେ
ପାଞ୍ଚାଳୀ ଘେନି ମିଳିଲେ ମାତା ସନ୍ନିଧାନେ
ପଦ୍ମରେ ପ୍ରଣାମ କଲେ
ପୁତ୍ରଙ୍କର ମନଜାଣି ଜନନୀ କହିଲେ । ୯୧

ପଞ୍ଚାଳୀକୁ ପାଞ୍ଚଭାଇ ବିବାହ କରିଣ
ପାଞ୍ଚମନ ଏକ କରି ରହ ପାଞ୍ଚଜଣ
ଶୁଣି ପାଣ୍ଡବ ବିସ୍ମୟ
ପୁଚ୍ଛିଲେ କପରି ପାଞ୍ଚ କରିବୁ ବିବାହ ? ୯୨
ଜନନୀ କହିଲେ ମୋର ସିଦ୍ଧାନ୍ତ ବଚନ
ତୁମ୍ଭେମାନେ ସାଧୁ ପୁତ୍ର କରିବ ପାଳନ
ଯଥାର୍ଥ କହିଲେ ମାତା
ମାତା ଜାଣେ ପିତା ପୁତ୍ରଙ୍କର ମନକଥା । ୯୩
ବୃନ୍ଦାବନ ଦାସ ବୋଲେ ଧନ୍ୟ ଭରତ ଜନନୀ
ପାଞ୍ଚ ପୁତ୍ରେ ଗୁନ୍ଥାଇଲେ ସୂତ୍ରେ ଯାଜ୍ଞସେନୀ
ସୁଜନେ ନ ଘେନ ଦୋଷ
ଚୌଦିନବେ ପଦେ ଅଧ୍ୟାୟ ହୋଇଲା ଶେଷ ।୯୪

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ
କଥନେ ମଥୁରା-ଦ୍ୱାରକା ଲୀଳା ଖଣ୍ଡେ
ଅର୍ଜ୍ଜୁନଙ୍କ ଲକ୍ଷବିନ୍ଧା ଆଖ୍ୟାନେ ନାମ
ସପ୍ତଦଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ

**ବୋଲି -**

ଭବ ବିନୋଦିଆ ଠାକୁର ଆହେ ଜୀବଜୀବନ
ଚରଣେ ଶରଣ ପଶିଲି ପ୍ରଭୁ କରି କାରଣ । ୧
ଜୀବର ଜୀବନ ଆପଣ ଜୀବ ହୃଦୟେ ବାସ
ହୃଦୟ ଦେବତା ହୃଦୟ ରାଜ୍ୟେ ହୁଅ ପ୍ରକାଶ । ୨
ମୁଁ ଦୀନ ଦରିଦ୍ର ଅଟଇ ଦୀନ ବାନ୍ଧବ ତୁହି
ଦୀନବନ୍ଧୁ ପରି ବନ୍ଧୁ କେ ଜଣେଦେଖିତ ନାହିଁ । ୩
ଦୀନବନ୍ଧୁ ନାମ ବହିଛ ଜୀବ ଭବକୁ ବହି
ବିଶ୍ୱ ବନ୍ଧୁ ନାମ ବୋଲିଅ ବିଶ୍ୱ ମଇତ୍ର ହୋଇ । ୪

ତୁମ୍ଭେ ମୋ ବଶ୍ୱସ୍ତ ମଇତ୍ର ବନ୍ଧୁ, ଅନ୍ୟ କେ ନାହିଁ
ଅଭେଦ ପୀରତି ରହିଛି ତୁମ୍ଭଠାରେ ଗୋସାଇଁ । ୫

ଭକତ ଯଦ୍ୟପି କାନ୍ଦଇ ତୁମେ କର କ୍ରନ୍ଦନ
ଭକ୍ତର ଆନନ୍ଦ ଦେଖିଲେ ତୁମ ଆନନ୍ଦ ମନ । ୬

ଭାବ ବନୋଦଆ ଠାକୁର ଆହେ ଭକତ ପ୍ରିୟ
ଅଭୟ ପଙ୍କଜ ପୟରେ ପ୍ରଭୁ ଆଶ୍ରୟ ଦିଅ ।୭

କାଳ ନଦୀ କୂଳେ କବିତା ବୁଲ୍ଲ କରେ ରଚନ
କାବ୍ୟର ନାୟକ କୃଷ୍ଣ ହେ ! କର କୃପା ବର୍ଷଣ ।୮

—●—

# ଅଷ୍ଟାଦଶ ଅଧ୍ୟାୟ

## ପାଞ୍ଚାଳୀଙ୍କ ପାଞ୍ଚପତି ବିବାହ ପ୍ରସଙ୍ଗ

( ରାଗ- ବଙ୍ଗଳା ଶ୍ରୀ )

ଧୀରଚିତ୍ତେ ଶୁଣ ହେ ବନ୍ଧୁଗଣ ଜଗେ କୃଷ୍ଣ ଚରିତ ମାନସ
ପାଞ୍ଚାଳୀଙ୍କ ପାଞ୍ଚ ପ୍ରତିଙ୍କ ପ୍ରସଙ୍ଗ ଜନନୀ ମୁଖେ ପ୍ରକାଶ । ୧

ପୁତ୍ରମାନଙ୍କର ମନକଥା ଜାଣି କହିଲେ ଜନନୀ ଚିନ୍ତି
ପାଞ୍ଚ ଭାଇଙ୍କର ଭିତରେ ଏକତା ବିହୁନେ ହେବ ଅଶାନ୍ତି । ୨

ପାଞ୍ଚାଳୀଙ୍କ ପାଇଁ ପାଞ୍ଚ ଭାଇ ମଧ୍ୟେ ଯଦ୍ୟପି ବିବାଦ ହେବ
ଗୃହ ବିବାଦରୁ ଅଶାନ୍ତି ଜନ୍ମିଣ ଶାନ୍ତି ବିପନ୍ନ ହୋଇବ । ୩

ଗୃହର ଭିତରେ ଶାନ୍ତି ନ ରହିଲେ ରାଷ୍ଟ୍ରେକି ରହିବ ଶାନ୍ତି
ଧର୍ମ ସଂସ୍ଥାପନା କାର୍ଯ୍ୟେ ବିଘ୍ନ ଘଟି ଉଦ୍ଦେଶ୍ୟ ହୋଇବ ମାଟି । ୪

ଭାଇ ଭାଇ ମଧ୍ୟେ ଶତ୍ରୁତା ହୋଇଲେ ଦୁରାଗ୍ରହୀ କୁରୁପତି
ଶତଭ୍ରାତା ଶୁଣ ମୋ ପାଞ୍ଚ ପୁତ୍ରଙ୍କୁ ଧରି ନେଇ ଦେବ ଶାସ୍ତି । ୫

ଏକତା ଅଟଇ ସଫଳତା ଗୃହ ଉନ୍ନତିର ମୂଳମନ୍ତ୍ର
ପତ୍ନୀ ପାଇଁ ଘରେ କଜିଆ ଲାଗିଲେ ଲକ୍ଷ ହେବ ନଷ୍ଟଭ୍ରଷ୍ଟ । ୬

ତେଣୁ କରି ମାତା ପାଞ୍ଚ ତନୟଙ୍କୁ ଏକତ୍ର ରଖିବା ପାଇଁ
ପାଞ୍ଚାଳୀକୁ ପାଞ୍ଚ ପୁତ୍ରେ ବିଭା ହେବା ନିଷ୍ପତ୍ତି ଦେଲେ ଶୁଣାଇ । ୭

ମାତା କଥା ଶୁଣି ବିଚାରିଲେ କୃଷ୍ଣା ମୁଁ ଅଟଇ ଯାଜ୍ଞସେନୀ
ପୃଥିବୀରେ ଧର୍ମ ସ୍ଥାପନ ନିମନ୍ତେ ଜାତ ହୋଇଛି ଅବନୀ । ୮

ବୃହତ୍ତର ସ୍ୱାର୍ଥ ସୁରକ୍ଷା ନିମନ୍ତେ ମୁହିଁ ଯେବେ ପାଞ୍ଚ ପତି
ଗ୍ରହଣ ନ କରେ ଏକ ପତି ବ୍ରତେ ଅବଶ୍ୟ ବଢ଼ିବ ଖ୍ୟାତି । ୯

ମାତ୍ର ମାତାଙ୍କର କଥା ନ ରହିବ ସ୍ୱାମୀ ହେବେ ସତ୍ୟ ଭଗ୍ନ
ପୃଥିବୀରେ ଧର୍ମ ସଂସ୍ଥାପନେ ବାଧା ଉପୁଜିବ ଏ କାରଣ । ୧୦

ତେଣୁ ସ୍ୱାମୀଙ୍କର ଧର୍ମରକ୍ଷା ପାଇଁ ମାତାଙ୍କ ଆଦେଶ ମାନି
ପାଞ୍ଚ ପତି ବିଭା କରିବାକୁ ଇଚ୍ଛା ପ୍ରକାଶିଲେ ଯାଜ୍ଞସେନୀ । ୧୧

କହିଲେ ପୃଥ୍ୱୀରେ ଧର୍ମରକ୍ଷା ପାଇଁ ମୋହର ଏହି ଶରୀର
ଧର୍ମାହୁତ ହେଲେ ଆନନ୍ଦ ପାଇବ ହୁଅନ୍ତୁ ମୋ ପାଣ୍ଡବର । ୧୨
କୁନ୍ତୀ କହୁଛନ୍ତି ଶୁଣ ଯାଜ୍ଞସେନୀ ମୋହର ଯେ ଇତିହାସ
ଧର୍ମରକ୍ଷା ପାଇଁ ସ୍ୱାମୀଙ୍କ ନିର୍ଦ୍ଦେଶେ ବରିଲି ପାଞ୍ଚ ପୁରୁଷ । ୧୩
ସୂର୍ଯ୍ୟ, ପାଣ୍ଡୁ, ଧର୍ମ, ବାୟୁ, ମଘବାନ ଅଟନ୍ତି ମୋ ପାଞ୍ଚପତି
ପାଞ୍ଚ ପତି କରି ସତୀ ନାରୀ ରୂପେ ରହିଛି ମୋହର ଖ୍ୟାତି । ୧୪
ଅବଶ୍ୟ ତହିଁକି ଅପଖ୍ୟାତି ପାଇ ହୋଇଛି ଉପହସିତ
ମାତ୍ର ମୋ ମନକୁ ଆବିଳତା କେବେ କରି ନାହିଁ କଳୁଷିତ । ୧୫
କାରଣ ମୁଁ ଯେଉଁ କାର୍ଯ୍ୟ କରିଅଛି ତା ଜଗତ ହିତ ପାଇଁ
ତେଣୁ ପୁଣ୍ୟବତୀ ଭାବୁଛି ନିଜକୁ ଆବିଳତା ଧୋଇ ଦେଇ । ୧୬
ପରହିତ ପାଇଁ ପ୍ରାଣ ତେଜିବାକୁ କେତେ ଜଣ ଭାଗ୍ୟେ ଜୁଟେ
ପରହିତ ପାଇଁ ଯେ ପ୍ରାଣ ତେଜଇ ଜଗତ ତା ଯଶ ରଟେ । ୧୭
ଦ୍ରୁପଦ ରାଜାଙ୍କୁ ଆଜ୍ଞା ଦେଲେ କୁନ୍ତୀ ପାଞ୍ଚ ବେଦୀ ନିର୍ମା କର
ମୋ ପାଞ୍ଚ ପୁତ୍ରଙ୍କୁ ବିଭା ହେବେ କୃଷ୍ଣା ଏହାହିଁ ମତ ମୋହର । ୧୮
ଦ୍ରୁପଦ ପୁଚ୍ଛିଲେ ଏହା କି ସମ୍ଭବ ଏକ ନାରୀ ପାଞ୍ଚ ପତି
ସେହି ନାରୀ ଭ୍ରଷ୍ଟା ଅବା ବାରାଙ୍ଗନା ରୂପେ ହେବ ଅପଖ୍ୟାତି । ୧୯
ଏକ ନାରୀ ହୋଇ ପାଞ୍ଚ ପୁରୁଷଙ୍କୁ କିପରି ବରିବ ପତି
ଏପରି ହୋଇଲେ ନାରୀ ଜୀବନର ନ ହେବ କି ଅଧୋଗତି ? ୨୦
ମୋ କନ୍ୟା ପାଞ୍ଚାଳୀ ପାଞ୍ଚ ପତି ବିଭା କରିବାକୁ ଦେବି ନାହିଁ
କୁଳ ଯଶ ନାଶ ସଙ୍ଗେ ନାରୀ ଧର୍ମ କଳୁଷିତ ହେବ ଯହିଁ । ୨୧
କ୍ଷତ୍ରିୟ ଧର୍ମରେ ଏକ ପୁରୁଷର ହୋଇପାରେ ବହୁ ନାରୀ
ମାତ୍ର ଏକ ସ୍ତ୍ରୀର ଏକାଧିକ ପତି ଶୁଣିନି କର୍ଣ୍ଣେ ମୋହର । ୨୨
ଯୁଧିଷ୍ଠି କହିଲେ ଜନନୀଙ୍କ କଥା ପାଳିବା ପୁତ୍ରର ଧର୍ମ
ମାତା ମନେ ଦୁଃଖ ଦେଇ ନ ପାରିବୁ ହେ ପାଞ୍ଚାଳ ନୃପୋତ୍ତମ । ୨୩
ଜନନୀ ଆଦେଶ ପାଳନ କରିବା ଅର୍ଥ ଧର୍ମ ଆଚରଣ
ଏଣୁ ପାଞ୍ଚ ଭାଇ ବିଭା ହେବୁ କୃଷ୍ଣା ବିଘ୍ନ ନ କର ରାଜନ । ୨୪
ଦ୍ରୁପଦ କହିଲେ ପୂର୍ବରୁ ଏପରି ଦୃଷ୍ଟାନ୍ତ କି ରହିଅଛି
ଯୁଧିଷ୍ଠି କହିଲେ ଗୌତମଙ୍କ କନ୍ୟା ସାତ ପତି ବରି ଅଛି । ୨୫

ନାରୀ ଧର୍ମ ପାଳି ସତୀ ସାଧ୍ୱୀ ନାରୀ ନାମେ ଅଛି ତାଙ୍କ ଖ୍ୟାତି
ଦଶ ପ୍ରଚେତାଙ୍କ ଦାକ୍ଷାୟଣୀ ନାମେ ଥିଲେ ମାତ୍ର ଏକ ପତ୍ନୀ । ୨୬
ନିତଂତ ନାମକ ରାଜ ଋଷିଙ୍କର ଥିଲେ ପାଞ୍ଚ ଗୋଟି ସୁତ
ଉଶୀନର ରାଜ ଦୁହିତା ଅନତା ବରିଲେ ସେ ପାଞ୍ଚ ଭ୍ରାତ । ୨୭
ଏପରି ବ୍ୟବସ୍ଥା ପୂର୍ବୁ ପ୍ରଚଳିତ ରହିଅଛି ନରନାଥ
ଯଥାର୍ଥରେ ମାତା କହିଣ ଅଛନ୍ତି ଶାସ୍ତ୍ର ପୁରାଣର ମତ । ୨୮
ଧର୍ମରକ୍ଷା ପାଇଁ ଏକାଧିକ ପତି ଗ୍ରହଣରେ ବାଧା ନାହିଁ
ଭାରତ ସଂସ୍କୃତି ସ୍ୱୀକୃତି ଦେଉଛି ଦ୍ୱିଧା କର କାହିଁ ପାଇଁ । ୨୯
ଏକାଳେ ଶ୍ରୀକୃଷ୍ଣ ମିଳିଲେ ସେଠାରେ କହିଲେ ନୃପତି ଶୁଣ
ନ୍ୟାୟ ନୀତିମାନ ଜଣା ଆପଣଙ୍କୁ ତୁମ୍ଭେ ତ ବିଜ୍ଞ, ବିଦ୍ୱାନ । ୩୦
ଧର୍ମଶାସ୍ତ୍ରମତେ ଗୃହସ୍ଥ ଧର୍ମରେ ମାତା କଥା ବେଦ ଗାର
ଏଣୁ ମୋ ମତରେ କୃଷ୍ଣାଙ୍କୁ ବିବାହ କରନ୍ତୁ ପାଞ୍ଚ କୁମର । ୩୧
ବୁଝାଇ କହିଲେ ରାଜାଙ୍କୁ ଶ୍ରୀକୃଷ୍ଣ ଆଚରଣରେ ସଂଯମ
ନିୟମ ବନ୍ଧନ ରହିଲେ ସ୍ୱଜନ ନ ହେବ କର୍ମେ ବିଭ୍ରମ । ୩୨
ପାଞ୍ଚ ଦିନେ ପାଞ୍ଚ ଭ୍ରାତାଙ୍କୁ ପାଞ୍ଚାଳୀ ବିଭା ଦିଅ ପାଞ୍ଚ ଥର
ଜଣ ଜଣ କରି ଭୋଗ କଲେ କୃଷ୍ଣା ନ ହୋଇବ ବ୍ୟଭିଚର । ୩୩
ଘରେ ଯଦି ପତ୍ନୀ ଚତୁରା ହୋଇବ ଏପରି ବିବାହ ସଫଳ
ବହୁ ପତି କରି ବହୁ ନାରୀ ସତୀ ହୋଇଛନ୍ତି ମହୀପାଳ । ୩୪
ଆହେ ମହାରାଜା ! ଧର୍ମ ରକ୍ଷା ପାଇଁ ପାଣ୍ଡୁ ପାଞ୍ଚ ପୁତ୍ରେ ଜାତ
ଅଧର୍ମ ବିନାଶି ଧର୍ମକୁ ସ୍ଥାପିବେ ମୁକ୍ତ ହେବେ ନିପିଡ଼ିତ । ୩୭
ଅନେକ ଦିନର ପାପ ଆବର୍ଜନା ଧର୍ମବଳେ ଧୋଇଯିବ
ଧର୍ମାନୁଶାସନ ଅଧର୍ମ ନାଶନ ଦୁର୍ଜନ ଦଳନ ହେବ । ୩୮
ଧର୍ମର ରକ୍ଷକ ରୂପେ ନରପତି ବିଶ୍ୱବିଦିତ ହୋଇଣ
ରାଜ ପ୍ରତିନିଧି ପ୍ରଜାର ସେବକ ଏ କଥା କରି ହେ ଜ୍ଞାନ । ୩୯
ପ୍ରଜା ପାଇଁ ରାଜା ପ୍ରଜା ହାତ ରଜା ପ୍ରଜାହିଁ ରାଜ ଶକତି
ପ୍ରାଚୀନ ଭାରତ ରାଜଧର୍ମ ଏହା ଏଥିରେ ନାହିଁ ବିଚ୍ୟୁତି । ୪୦
ଏ ମହା ଆଦର୍ଶ ଶିକ୍ଷା ଦେବା ପାଇଁ ପାଣ୍ଡବଙ୍କ ଅବତାର
ନୂଆ କରି ଏହି ଭାରତ ବର୍ଷକୁ ଗଢ଼ିବେ କୁନ୍ତୀ କୁମର । ୪୧

ଆପାତତଃ ନେଶେ ରାଜାଙ୍କର ବୋଲି ଜଣା ଯାଉଥାଏ ଯାହା
ବାସ୍ତବ କ୍ଷେତ୍ରରେ ପ୍ରଜାଗଣଙ୍କର ଅଟଇ ସମ୍ପଦ ତାହା । ୪୨
ରାଜାଙ୍କ ନିଜସ୍ୱ ବୋଲି କିଛି ନାହିଁ ସକଳ ଅଟେ ରାଷ୍ଟ୍ରର
ରାଷ୍ଟ୍ରର ସେବକ ଅଟନ୍ତି ନୃପତି ରାଷ୍ଟ୍ର ସେବା ଧର୍ମ ସାର । ୪୩
ଭାରତର ରାଜ ଧର୍ମ ସନାତନ ଉଦ୍ଦେଶ୍ୟ ଜନ କଲ୍ୟାଣ
ପରଜା ପାଳନ ପରଜା ରଂଜନ ପ୍ରଜାଙ୍କ ହିତ ସାଧନ । ୪୪
ବୁଝାଇ କହିଲେ ଦ୍ରୁପଦଙ୍କୁ କୃଷ୍ଣ ଦୃଷ୍ଟାନ୍ତ ମାନ ଦେଖାଇ
ମୁକ୍ତା ଅବା ପୁଷ୍ପ ଯାହା ହେଉ ପଛେ ଦେବତା କଣ୍ଠ ମଣ୍ଡଇ । ୪୫
ମାଳା ଗୁନ୍ଥିବାକୁ ସୂତା ବ୍ୟତିରେକେ ଯେହ୍ଲେ ଗୁନ୍ଥି ହୁଏ ନାହିଁ
ଆଜି ସେହିପରି ଏ ଆର୍ଯ୍ୟାବର୍ତ୍ତରେ ପାଞ୍ଚାଳୀ ସୂତ୍ର ଅଟଇ । ୪୬
ପାଣ୍ଡୁ ପାଞ୍ଚ ପୁତ୍ରେ ଗ୍ରଥିତ ନ ହେଲେ ଏକତା ରହିବ ନାହିଁ
ଏ କଥା ବିଚାର କରି ନୃପବର କହୁଛି ବିନମ୍ରୀ ହୋଇ । ୪୭
ତୁମ୍ଭ କନ୍ୟା କୃଷ୍ଣା ସୂତ୍ର ପ୍ରାପ୍ତ ହୋଇ ଗୁନ୍ଥିବ ସୋଦର ପାଞ୍ଚ
ମାଳାର ଭିତରେ ସୂତ୍ର ରହି ମଧ ଦିଶିବ ଅତି ସୁପଞ୍ଚ । ୪୮
ଦେବ କଣ୍ଠେ ପୁଷ୍ପ ଶୋଭା ପାଇଲେ ହେଁ ସୂତା ମହାମ୍ୟ ଗୁଣ
ସଂଯୋଗର ସେତୁ ହୋଇଣଥିବାରୁ ଫୁଲଠୁ ସୂତା ମହାନ । ୪୯
ପୁଷ୍ପ ସଙ୍ଗେ ସୂତା ମିଶିଣ ରହିଲେ ଏକତା ହେବ ସ୍ଥାପିତ
ପାଞ୍ଚାଳୀଙ୍କ ଯୋଗୁଁ ଏ ମହାଭାରତେ ପାଣ୍ଡୁପୁତ୍ରେ ପ୍ରତିଷ୍ଠିତ । ୫୦
ସେଥିପାଇଁ ଯଜ୍ଞାନଳୁ ଯାଜ୍ଞସେନୀ ହୋଇଛନ୍ତି ଅବତୀର୍ଣ୍ଣ
ଏବର ବର୍ତ୍ତିମା ପ୍ରତିଯେ ଆକୃଷ୍ଟ ନୁହେଁ ଜଡ଼ ସେହି ଜନ । ୫୧
କୃଷ୍ଣା ଲଭିବାକୁ ଏ ଭାରତ ବର୍ଷେ ବିବାଦର ସୂତ୍ରପାତ
କୃଷ୍ଣାଙ୍କୁ ପାଣ୍ଡବେ ଲଭି କରିବାରୁ ଶତ୍ରୁଙ୍କ ସଂଖ୍ୟା ବର୍ଦ୍ଧିତ । ୫୨
କୃଷ୍ଣାଙ୍କୁ ଯେ ଥରେ ଦେଖିଛି ନେତ୍ରରେ ଭୁଲି ନ ପାରଇ ଲବେ
ଈର୍ଷ୍ୟା ସଫଳତା, ଗ୍ଲାନି, ଅସୂୟାରେ ଜୀବନ ଦୁଃସହ ଭବେ । ୫୩
ତେଣୁ ପାଞ୍ଚ ଭାଇ ପାଞ୍ଚାଳୀଙ୍କ ପାଇଁ ହୋଇଛନ୍ତି ଅଭିଳାଷୀ
ଯେ ବଞ୍ଚିତ ହେବ ବିଦ୍ରୋହ କରିବ ଗୃହ ବିବାଦରେ ପଶି । ୫୪
କୃଷ୍ଣ ପରାମର୍ଶେ ପାଞ୍ଚ ପାଣ୍ଡବଙ୍କୁ ଏକତ୍ର ରଖିବା ପାଇଁ
ସୂତା ଖିଅ ପରି ସୂକ୍ଷ୍ମ ହୋଇଗଲେ ଦ୍ରୁପଦ ରାଜ ତନୟୀ । ୫୫

ଆଜ୍ଞା ଦେଲେ କୃଷ୍ଣ ଆୟୋଜନ କର ପାଞ୍ଚାଳୀଙ୍କ ବିଭାଘର
ପ୍ରଭୁ ଆଜ୍ଞା ପାଇ ପାଞ୍ଚାଳ ନରେଶ ନିର୍ମାଣିଲେ ବେଦି ଘର । ୫୬
ଉତ୍ସବ ମୁଖର କାମ୍ପିଲ୍ୟ ନଗର କନ୍ୟାକୁ ମିଳିଲେ ବର
ଅପମାନ ପ୍ରତିଶୋଧ ନେବା ପାଇଁ ଦ୍ରୁପଦ ରାଜା ତତ୍ପର । ୫୭
ପାଞ୍ଚାଳୀକୁ ପାଞ୍ଚ ଭାଇ ବିଭା ହେବା ବାର୍ତ୍ତା ହେବାରୁ ପ୍ରଚୁର
ଜନ ସମୁଦ୍ରରେ ପୂରିତ ହୋଇଲା କ୍ରମେ ପାଞ୍ଚାଳ ନଗର । ୫୮
ବୁଲିଦାସ ତାଳ ମାରି ନାଚୁଥାଏ ମଙ୍ଗଳ ମହୁରୀ ଶୁଣି
ହାତକୁ ଦି ହାତ ହୋଇବେ କ୍ରମରେ ଶୋଭା ବଢିବ ଧରଣୀ । ୫୯
ପାଞ୍ଚାଳର ରାଜଧାନୀ କାମ୍ପିଲ୍ୟରେ ହୋଇଲା ବିବାହୋତ୍ସବ
ନିମନ୍ତ୍ରଣ ପାଇ ସହସ୍ର ସଂଖ୍ୟାରେ ଯୋଗ ଦେଲେ ନୃପଦେବ । ୬୦
ଏକଷଠି ପଦେ ଅଧ୍ୟାୟ ସମ୍ପୂର୍ଣ୍ଣ ସୁଜନେ ନ ଘେନ ଦୋଷ
ଶ୍ରୀକୃଷ୍ଣ ଚରଣେ ଶରଣ ପଶହୋ ବୃଜନ ହେବ ବିନାଶ । ୬୧
ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା ଦ୍ୱାରକା ଲୀଳା ଖଣ୍ଡେ ପାଞ୍ଚ ପତି ବିବାହ ପ୍ରସଙ୍ଗେ
ନାମ ଅଷ୍ଟାଦଶ ଅଧ୍ୟାୟ ସମ୍ପୂର୍ଣ୍ଣଂ । ଶ୍ରୀକୃଷ୍ଣାର୍ପଣମସ୍ତୁ ।

—●—

**ବୋଲି —** ଠାକୁରେ ! କି ବର୍ଣ୍ଣିବି ଲୀଳା ତୁମ୍ଭର
କେଉଁ ଭକ୍ତ ସଙ୍ଗେ କି ଲୀଳା କରୁଛ
ଅନ୍ତର୍ଯ୍ୟାମୀଙ୍କୁ ସିନା ଗୋଚର ॥ ଘୋଷା ॥
"ଚନ୍ଦନ ଉତ୍ସବ ଦିନର ଘଟଣା
ଆନନ୍ଦାଶ୍ରମ ଉତ୍ସବ ମୁଖର
ଆଶ୍ରମ ବାସୀଙ୍କୁ ପାଖକୁ ଡକାଇ
କହିଲ ବଚନ ଧୀର ମଧୁର । ୧
ଆସ କୃଷ୍ଣା ମାତା ଆସ ମା ପାଞ୍ଚାଳୀ
ବୈକୁଣ୍ଠ, କଣ୍ଡୁରି, ପରଭା କର
ଆଶ୍ରମ ବାସୀଏ ବସ ମୋ ପାଖରେ
ଶୁଣିବ ଭକତର ଭକ୍ତି ଅପାର । ୨

ଅଭିନ୍ନ ସୁନ୍ଦର ବଚନ ମଧୁର
ଶୁଣି ସର୍ବେ ହେଲେ ଚଞ୍ଚଳ
ଚକାସନ ପାଶ ବସିଗଲେ ଯେଣ
ମିଳିଲା ଆସି ଆଶ୍ରମ କୁକୁର । ୩

ପରଣ ଦେବତା ପାଦ ପାଖେ ବସି
ମୁଖକୁ ରଖିଲା ପଦ୍ମ ପସ୍ତର
କୁକୁର ଦେଖିରେ ରାଗେ ଗରଗର
କୃଷ୍ଣାମାତା କହିଲେ ଦୁରଦୂର ।୪

ଠାକୁର କହିଲେ ନ ତଡ଼ ତାହାକୁ
ବଦାଯ୍ନ ନେବ ସେ ଇହ ସଂସାର
ସେଥିପାଇଁ ତୁମ୍ଭ ସଭିଙ୍କୁ ଡ଼ାକୁଛୁ
ଚରଣ ଧୂଳି ଦିଅ ତାହା ଶିର ।୫

ଠାକୁରଙ୍କ କଥା ଶୁଣି କୃଷ୍ଣମାତା
କହିଲେ ଏ କଥା ବଡ଼ ଗମ୍ଭୀର
କାହିଁକି ବଦାଯ୍ନ ନେବ ଆଜ ଏବେ
ସୁସ୍ଥ ସବଳ ଏହା ଶରୀର ! ୬

ଠାକୁରେ କହିଲେ ଶୁଣ ସେହି କଥା
ଶ୍ରବଣେ ସନ୍ଦେହ ହୋଇବ ଦୂର
ଏ କୁକୁର ପୂର୍ବେ ନରଜନ୍ମ ପାଇ
ଅର୍ଜିଥିଲା ଧନରତ୍ନ ପ୍ରଚୁର । ୭

ସ୍ୱଭାବେ କୃପଣ ଥିଲା ଏ ଧନିକ
ଧର୍ମପତ୍ନୀ ଦାନଶୀଳା ଏହାର
ଏକଦା ମିଳିଲେ ସାଧୁ ପାଞ୍ଚ ସାତ
ଯାଇଁଣ ଦୁଆରେ ଏ ଧନିକର ।୮

ଭକ୍ତି ଭରେ ପତ୍ନୀ ଭିକ୍ଷା ଦେବା କାଳେ
ହାତରୁ ଛଡ଼ାଇ ନେଲା ସତ୍ୱର
କହିଲା ଏହାଙ୍କୁ ଦେବାରେ କି ଲାଭ
କୁକୁର ଖାଇଲେ ଲାଭ ମୋହର ।୯

ଅପମାନ ପାଇ ଫେରିଲେ ସାଧୁଏ
କ୍ଷୁଧାରେ ଜଳୁଛି ତାଙ୍କ ଉଦର
ଯେହ୍ନ ଦୋଷେ ଏହ୍ନ ଶ୍ୱାନ ଜନ୍ମ ପାଇ
ଆଶ୍ରମେ ରହିଲା ବରଷ ବାର । ୧୦

ସାଧୁ, ବୈଷ୍ଣବଙ୍କ ଉଚ୍ଛିଷ୍ଟ ଭୋଜନେ
ପବିତ୍ର ତାହାର ମନ ଶରୀର
ଠାକୁରଙ୍କ ସେବା କରି ନିରନ୍ତର
ପୁଣ୍ୟ ଫଳ ଅର୍ଜି ହେବ ଉଦ୍ଧାର ।୧୧

ତାହା ଶେଷ ଇଚ୍ଛା ପୂର୍ଣ୍ଣ କରିବାକୁ
ପଦ୍ମରେ ରଖିଛି ମୁଖ ତାହାର
ଏହା କହି ପ୍ରଭୁ ଆପଣା ହସ୍ତରେ
ଆଉଁସି ଦେଲେ ତା ସାରା ଶରୀର ।୧୨

ଶ୍ରୀମୁଖକୁ ଚାହିଁ କହିଁ କହିଁ କାନ୍ଦି
ତେଜିଲା ଶରୀର ଭକ୍ତ କୁକୁର
ଠାକୁରଙ୍କ ନେତ୍ରୁ ଦୁଇଧାର ଲୁହ
ଝରି ପଡ଼ିଲା ଶ୍ୱାନର ଶରୀର । ୧୩

ଏମନ୍ତ ଦୟାଳୁ ଠାକୁର ଅଟନ୍ତି
କରନ୍ତି ଜଗତ ଜୀବ ଉଦ୍ଧାର
ନର ଦେହ ଧରି ଖେଳ କରୁଛନ୍ତି
କୃଷ୍ଣ ଅଭିରାମ ଶ୍ୟାମ ସୁନ୍ଦର ।୧୪

ଆରେ ମୂଢ଼ମତି ଭଜ ଦିନ ରାତି
ଅଭିନ୍ନ ସୁନ୍ଦର ଅବ୍ଜ ପଦ୍ମର
ଆରତ ତାରଣ ପତିତ ପାବନ
କରିବେ ଭବ ସାଗରୁ ଉଦ୍ଧାର । ୧୫

# ଊନବିଂଶ ଅଧ୍ୟାୟ

## ପାଞ୍ଚାଳୀ ବିବାହ

( ରାଗ — ରେଖା )

କୃଷ୍ଣ ଚରିତ ମାନସ    ଝରୁଛି ଅମିୟ ରସ
ପାନ କର ସୁଧୀଜନେ ହୋଇବ ଧନ୍ୟ
ମଙ୍ଗଳେ ପାହିଲା ରାତି    ରାବିଲେ କଜଳପାତି
କକ୍‌କୁଟ କଣ୍ଠୁ ଶୁଭିଲା କଳର ସ୍ୱନ
କୁମ୍ଭାଟୁଆ କୁହୁ କରିଲା
କାକ, କୋଇଲି କୂଜନେ ଉଷା ବର୍ଣ୍ଣିଲା । ୧

କୃଷ୍ଣ ବର୍ଣ୍ଣ ପକ୍ଷୀଗଣ    କୃକାର ଧ୍ୱନ କରିଣ
କୃଷ୍ଣ ନାମ ସ୍ମରି କଲେ କୁଶଳ ଗୀତି
ସନ୍ତୁଆଳେ କମ୍ବୁ ସ୍ୱନ    ଶୁଭେ ଘଣ୍ଟ ଘଣ୍ଟାସ୍ୱନ
ବିପ୍ର ମୁଖୁ ଉଚ୍ଚାରିତ ବିଭୁଙ୍କ ସ୍ତୁତି
ମୁଖରିତ ହେଲା ଅବନୀ
ଯାଗ ଯାଗ ଯାଜ୍ଞସେନୀ ଯଜ୍ଞ - ନନ୍ଦନୀ । ୨

ବରଣ ପଦାର୍ଥମାନ    ଦେଲେ ଦ୍ରୁପଦ ରାଜନ
ମିଳିଲେ କୁରାଳ ଶାଳେ ଆସି ବହନ
ପାଞ୍ଚ ପୁତ୍ର ଏକ ମୂର୍ତ୍ତି    ଦେଖି ପାଞ୍ଚାଳ ନୃପତି
ପୁତ୍ରଙ୍କ ମୁଖକୁ ଚାହିଁ ପୁଚ୍ଛିଲେ ପ୍ରଶ୍ନ
କିଏ ବଡ଼ କିଏ ବା ସାନ
କାହାକୁ କରିବ ଆଗ ବର ବରଣ ? ୩

ଏହି ସମୟରେ ବ୍ୟାସ    ଆସି ହୋଇଲେ ପ୍ରବେଶ
ଦେଖି ସ୍ତୁତି ଗାନ କଲେ ପାଞ୍ଚାଳଈଶ
ନମସ୍ତେ ନମସ୍ତେ ବ୍ୟାସ    ପରାଶର ଋଷି ଶିଷ୍ୟ
ମହା ବ୍ରହ୍ମ ବେଦ ରୂପେ ଆତ୍ମ ପ୍ରକାଶ
ସତ୍ୟବତୀ ସୁତ ସୁଜ୍ଞାନୀ
ମାତୃ ଗର୍ଭେ ବ୍ରହ୍ମ ବିଦ୍ୟା ସାଧି ବିଜ୍ଞାନୀ । ୪

ନମୋ କୃଷ୍ଣ ଦ୍ୱିପାୟନ   ଜଗତ ଜନ ଲୋଚନ
ବେଦ ବିଦ୍ୟା ବିଶାରଦ ହେ ଗୁରୁ ବ୍ରହ୍ମ
ନିରାକାର, ନିରଞ୍ଜନ   ଜ୍ଞାନଦାତା ପରଂବ୍ରହ୍ମ
ସକଳ ବିଦ୍ୟା ପ୍ରବକ୍ତା ବିନତି ଯେନ
ସନ୍ଦେହ କରନ୍ତୁ ମୋଚନ
ଏକ ପତ୍ନୀ ପାଞ୍ଚ ପତି ଅଛି ପ୍ରମାଣ ? ୫

ବ୍ୟାସ ବୋଇଲେ ରାଜନ ଶୁଣ ଆମ୍ଭର ବଚନ
ଇନ୍ଦ୍ର ପଞ୍ଚ ଆତ୍ମା ପାଣ୍ଡୁ ପାଞ୍ଚ ନନ୍ଦନ
ଯୋଗମାୟା ଯାଜ୍ଞସେନୀ   ଜନ୍ମି ଅଛନ୍ତି ଅବନୀ
ମହୀଭାର ନିବାରଣେ ଏ ଷଡ଼ ଜନ୍ମ
ଶୋଚନା ନ କର ରାଜନ
ପାଞ୍ଚାଳୀର ପାଞ୍ଚ ପତି ପାଞ୍ଜି ପ୍ରମାଣ । ୬

ଶୁଣି ବ୍ୟାସଙ୍କ ବଚନ   କଲେ ବିଭା ଆୟୋଜନ
ବରଣ ହୋଇ ଆସିଲେ ଋଷି ବ୍ରାହ୍ମଣ
ଆସିଲେ ନୃପତିଗଣ   ବନ୍ଧୁ, କୁଟୁମ୍ବ, ସ୍ୱଜନ
ପ୍ରିୟ ଜନେ ରାଜପୁରୀ ହୋଇଲା ପୂର୍ଣ୍ଣ
ସ୍ୱାଗତ କରିଲେ ରାଜନ
ବିବାହ ବେଦୀରେ ସର୍ବେ କଲେ ଆସନ । ୭

ନିମନ୍ତ୍ରଣ ପତ୍ର ପାଇ   ହରି-ହଳୀ ଦୁଇ ଭାଇ
ପାଞ୍ଚାଳ ନଗରେ ଆସି କଲେ ପ୍ରବେଶ
ରାମକୃଷ୍ଣ ଦେଖି ରାଜା   କଲେ ମାନ୍ୟେ ପାଦପୂଜା
ଚରଣ ତଳେ ପଡ଼ିଲେ ପାଞ୍ଚାଳ ଈଶ
ଦ୍ରୁପଦଙ୍କୁ କୋଳ କରିଣ
ଶ୍ୱଶୁର ହୋଇଲ ମାନ୍ୟେ କହିଲେ କୃଷ୍ଣ । ୮

ଉତ୍ତମ ପୁରୁଷ ଜ୍ୱାଇଁ   ବହୁ ଭାଗ୍ୟେ ଥିଲେ ପାଇ
ସୁର ସୁନ୍ଦର ପୁରୁଷ କନ୍ୟାର ବର
ଯଜ୍ଞ ଜାତ ଯାଜ୍ଞସେନୀ   ମହୀ ଭାର ନିବାରିଣୀ
କେନ କୁଳ ଜାଣ କହ ଆହେ ନୃବର

ଉତ୍ତମ ଲୋକେ କନ୍ୟା ଦାନ
କରିବାରୁ କୁଳ ତୁମ୍ଭ ହୋଇଲା ଧନ୍ୟ । ୯
ଅନେକ ପ୍ରଶଂସା କରି    କହିଲେ ସାରଙ୍ଗଧାରୀ
ଶ୍ରୀହରି ବଚନେ ପ୍ରେମ ଅଶ୍ରୁ ଝରଇ
ଦ୍ରୁପଦ କହିଲେ ଦେବ    ତୁମ୍ଭେ ମୋର ଇଷ୍ଟ ଦେବ
ଏ ସବୁ ଭିଆଣ ସ୍ୱାମୀ ତୋର ଅଟଇ
ପଡ଼ିଲେ ଶ୍ରୀହରି ପୟରେ
କୋଳ କରି ନେଲେ ପ୍ରଭୁ ସ୍ନେହେ ନୃବରେ । ୧୦

ପୁଚ୍ଛା କଲେ ନୃପବର    କହ ଆହେ ମାୟାଧର
କେଉଁଠି ଲୁଚିଇ ଥିଲ ପାଞ୍ଚ କୁମର
ଜତୁଗୃହ ଦହନରେ    ନ ମଲେ କୁନ୍ତୀ କୁମରେ
ବିପ୍ର ବେଶେ ପୂର୍ଣ୍ଣ କଲେ ଇଚ୍ଛା ମୋହର
ଶ୍ରୀକୃଷ୍ଣ କହିଲେ ରାଜନ
ମୋ ପଞ୍ଚ ପ୍ରାଣ ପ୍ରାୟେକ ପାଣ୍ଡୁ ନନ୍ଦନ । ୧୧

ସେମାନେ ହେଲେ ନିଧନ    ମୁହିଁକି ଧରିବ ପ୍ରାଣ
ଜଳ ବିହୁନେ ମୀନ ବଞ୍ଚି ପାରଇ କି ?
ଯୁଗ ଲୀଳା ଶେଷ ପାଇଁ    ଜନ୍ମିଛନ୍ତି ପାଞ୍ଚ ଭାଇ
ପାଞ୍ଚାଳୀ ହେଇଛି ତାଙ୍କୁ ପରାଣ ବିକ
ବ୍ୟାସ ବିଦୁର ଏ ଦୁଇ
ରହିଛନ୍ତି ପୁତ୍ରଙ୍କର ସୁ ର କ୍ଷା ପାଇଁ । ୧୨

ବରକନ୍ୟା ବେଦୀପରେ    ବସାଇଲେ ବିପ୍ରବରେ
ପୁଚ୍ଛା କଲେ ପାଞ୍ଚାଳୀଙ୍କୁ ମହର୍ଷି ବ୍ୟାସ
ବସିଛନ୍ତି ପାଞ୍ଚ ମୂର୍ତ୍ତି    କାହାକୁ ବଳେ ତୋ ମତି
ମନ କଥା ଗୋଟି ମା ଗୋ କର ପ୍ରକାଶ
ବ୍ୟକ୍ତ କଲେ ରାଜ ନନ୍ଦିନୀ
ସତ୍ୟ କଥା କହୁଅଛି ଶୁଣ ହେ ମୁନି । ୧୩

କଳ୍ପନା କଥା ନୁହଁଇ    ଯାହା ଦେଖେ ବୋଲୁଛଇଁ
ପାଞ୍ଚ ଜଣ ଦେଖାଯାନ୍ତି ଏକା ସମାନ

ଏକରୂପ, ଏକ ବର୍ଣ୍ଣ, ନାହିଁ କିଛି ଭିନ୍ନା ଭିନ୍ନ
ଏକଆତ୍ମା ପ୍ରାୟ ପାଞ୍ଚ କରେ ଦର୍ଶନ
ସାନ ବଡ଼ କେଏ ନ ଜାଣେ
ସମାନ ଦିଶନ୍ତି ମୋତେ ପାଞ୍ଚ ନନ୍ଦନେ । ୧୪

ବ୍ୟାସ ବୋଇଲେ ଦ୍ରୁପଦ ପାଳିଲ କଥାର ଭେଦ
ଆମ୍ଭେ ଯାହା କହିଥିଲୁ ଅଟେ ତ ସତ୍ୟ
ସମ୍ମତ ହେଲେ ରାଜନ ସନ୍ଦେହ ହେଲା ମୋଚନ
ଫିଟିଗଲା ମନୁ ଭ୍ରାନ୍ତି ଜ୍ଞାନ ଉଦିତ
ଆନନ୍ଦେ ପାଞ୍ଚାଳ ରାଜନ
ପାଣ୍ଡୁ ପାଞ୍ଚ ପୁତ୍ରେ ପୁତ୍ରୀ କଲେ ପ୍ରଦାନ । ୧୫

ପାଞ୍ଚ ପୁତ୍ରେ ଅବହେଳେ ବସିଲେ ବ୍ୟାସଙ୍କ କୋଳେ
ମହାବାକ୍ୟ ଉଚ୍ଚାରିଲେ କୁଳ ପ୍ରୋହିତେ
ସଙ୍କଳ୍ପ ବାକ୍ୟେ ବ୍ରାହ୍ମଣେ ସିଉକାର ସମ୍ବୋଧନେ
ବାନ୍ଧିଲେ କୌତୁକ ସୂତା ନେଇଣ ହସ୍ତେ
କୁଶ ବଟୁକା ଅଙ୍ଗୁଳିରେ
କନ୍ଧରେ ପଇତା ଦେଇ ମନ୍ତ୍ର ପଢ଼ିଲେ । ୧୭

ଦୁବ ଆମ୍ବ ବରକୋଳି ପତ୍ରକୁ ଏକତ୍ର କରି
ବରକନ୍ୟା ବେନି କରେ ବାନ୍ଧିଲେ ସୂତ୍ରେ
ଗ୍ରହ ପୂଜେ ଗ୍ରହ ଶାନ୍ତି କରି ମନ୍ତ୍ର ଉଚ୍ଚାରନ୍ତି
କୁଳ ଗୋତ୍ର ପ୍ରକାଶିଲେ କୁଳ ପ୍ରୋହିତ
ସୋମ ଗୋତ୍ରୀୟ ପାଣ୍ଡୁ ପୁତ୍ର
ବିଚିତ୍ର ବୀର୍ଯ୍ୟ ପୌତ୍ର ସାନ୍ତନୁ ପ୍ରପୌତ୍ର । ୧୭

ଆତ୍ରେୟ ଋଷିଙ୍କ ଗୋତ୍ରୀ ଉତ୍ପନ୍ନ ନୃପ ପ୍ରପୌତ୍ରୀ
ବୃଷଃ ପୌତ୍ରୀ, ପାଞ୍ଚାଳୀ ଦ୍ରୁପଦ ପୁତ୍ରୀ
ଏପରି ଉଭୟ ଗୋତ୍ର ଉଚ୍ଚାରିଲେ ପୁରୋହିତ
ଶୁଭ ଲଗ୍ନେ ଫିଟାଇଲେ ହସ୍ତରେ ଗ୍ରନ୍ଥି
ହୁଳ ହୁଳି ଶଙ୍ଖ ଶୁଭିଲା
ବର କନ୍ୟା କର ପତ୍ର ଏକତ୍ର ହେଲା । ୧୮

ପାଞ୍ଚଥର ଯାଜ୍ଞସେନୀ ସାକ୍ଷୀ ରହି ଯଜ୍ଞ ଅଗ୍ନି
ପାଞ୍ଚ ପତି ବରି ହେଲେ ପାଞ୍ଚ ଦିବସେ
ପାଞ୍ଚ ଥର ବରି ବେଦୀ ପ୍ରଦକ୍ଷିଣ କରି ଦେବୀ
ପାଞ୍ଚ ପତି ପ୍ରାପ୍ତ ହେଲେ ଶତ୍ରୁ ହରଷେ
ପାଞ୍ଚ ଦିନ ପର୍ବ ପାଳନ
ପାଞ୍ଚ ଥର ପାଞ୍ଚ ଜଣେ ପାଞ୍ଚାଳୀ ଦାନ । ୧୯
ପାଞ୍ଚ ଜ୍ୱାଇଁ ପାଇ ରଜା ଯୋଗାଡ଼ିଲେ ପାଞ୍ଚ ଶଯ୍ୟା
ରଖାଇଲେ ପାଞ୍ଚ ଜଣ ପାଞ୍ଚ ସଦନେ
ପାଞ୍ଚ ପତି ପାଞ୍ଚ ଦିନେ ପାଞ୍ଚାଳୀ ପ୍ରୀତି ପ୍ରଦାନେ
ଚତୁର ପୂଜନ କଲେ ଜ୍ୟେଷ୍ଠାନୁକ୍ରମେ
ପରମ ଆନନ୍ଦେ ବଞ୍ଚିଲେ
ପାଞ୍ଚାଳୀ ପତ୍ନୀ ପାଇ ପାଞ୍ଚ ପ୍ରୀତ ହୋଇଲେ । ୨୦
ପାଣ୍ଡବ ପାଞ୍ଚ ମୂରତି ପାଞ୍ଚାଳ ରଜ ଦୁହିତା
କୁନ୍ତୀ ମାତା ସହିତରେ ସଖା ଶ୍ରୀକୃଷ୍ଣ
ପରାଶର ଋଷି ପୁତ୍ର ମିଶି ଏ ନବ କଥିତ
କରିବେ ଭାରତ ବର୍ଷେ ଧର୍ମ ସ୍ଥାପନ
ଗୀତେ ଭଣିଲି ବୃନ୍ଦାବନ
ଏକୋଇଶ ପଦେ ଅଧ୍ୟା ହୋଇଲା ଶେଷ । ୨୧

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକାଲୀଳା ଖଣ୍ଡେ ପାଞ୍ଚାଳୀ ପାଞ୍ଚ ପତି ବିବାହ
ଆଖ୍ୟାନେ ନାମ ଊନବଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

**ବୋଲି —**

ଠାକୁରେ ! କି ବର୍ଣ୍ଣିବି ଲୀଳା ତୁମ୍ଭର ?
ମାଘ ମାସ ଶୁକ୍ଳ ପକ୍ଷ ଚତୁର୍ଦ୍ଦଶୀ
ଯୋରନ୍ଦା ମେଳାର ଖବର ॥ ଘୋଷା ॥

ଢେଙ୍କାନାଳ ରେଳ-ଷ୍ଟେସନ ଗେଟ୍‌ରେ
ରାତି ତିନଘଡ଼ି ବେଳର
ଠିଆ ହୋଇଥିଲି ଯୋରନ୍ଦା ଯିବାକୁ
ପଇସା ନ ଥିଲା ପାଖର । ୧

ମେଳା ଦେଖିବାକୁ ଇଚ୍ଛା ହୋଇବାରୁ
ଏକାକି ଚାଲିଲି ପାଦର
ଖଣ୍ଡେ ଦୂର ବାଟ ଯିବା ଅନ୍ତେ ଭେଟ
ହେଲା ତୁମ୍ଭ ସଙ୍ଗେ ମୋହର । ୨

ପଛରୁ ଡାକିଣ ପୁଛିଲେ ଆପଣ
ଯିବକି ଯୋରନ୍ଦା ନଗର ?
ହଁ କହିବାରୁ ତୁମ୍ଭେ ତ କହିଲ
ମିଳିଗଲା ସାଥି ମୋହର । ୩

ଏକଲା ଯିବାକୁ ଭୟ ଲାଗୁଥିଲା
ନିର୍ଭୟ ହୋଇଲି ଏଥର
ଆଗ ଚାଲ ତୁମ୍ଭେ ଗଲେ ଯିବି ମୁହିଁ
ଅନୁସରି ପଥ ତୁମ୍ଭର । ୪

ମୁଁ କହିଲି ଆଗ ଚାଲନ୍ତୁ ଆପଣ
ତୁମ୍ଭ ପଛେ ଗତି ମୋହର
ଉତ୍ତରିଲ ତୁମ୍ଭେ ଗାଈ ପଛେ ଯିନା
ବାଛୁରି ଚାଲିବା ସୁନ୍ଦର । ୫

ଗାଈର ପଛରେ ବାଛୁରି ଗୋଡ଼ାଏ
କ୍ଷୀର ଲାଳସାରେ ତାହାର
ସେପରି ନ୍ୟାୟରେ ତୁମ୍ଭର ପଛରେ
ଯିବାରେ ଆନନ୍ଦ ଅପାର । ୬

ଢେଙ୍କାନାଳ ଠାରୁ ଯୋରନ୍ଦା ପର୍ଯ୍ୟନ୍ତ
ପଥରେ ଗୁଲିଲି ମୋହର
ସୁନ୍ଦର ଫାଟିବା ସମୟେ କହିଲି
ଯାଉଛୁ ମୋ ବାଟେ ଏଥର । ୭

ଅଭିଜ୍ଞ ଭକ୍ତ ନେ ଯଦି ଇଚ୍ଛା ଅଛି
ଗୁଲି ଆସ ସଙ୍ଗେ ମୋହର
ମୁଁ କହିଲି ଆଜ ଯୋରନ୍ଦାକୁ ଯାଇ
ଦର୍ଶନ କରିବି ଶୂନ୍ୟ ମନ୍ଦିର । ୮

ଖଣ୍ଡେ ଦୂରେ ଯାଇ ଡାକଣ କହିଲି
ଚହ୍ନି ପାରିଲୁ କି କୁମର
ନିର୍ଗୁଣ ହୋଇ ମୁଁ ସଗୁଣ ଶରୀରେ
ଖେଳିଲି ସାଥିରେ ତୋହର । ୯

ଏକାକି ରାତିରେ ଅଜଣା ବାଟରେ
ଗମିବା ଦୂରୂହ ବ୍ୟାପାର
ସାଥି ଦେବା ପାଇଁ ଆସିଥିଲି ମୁହିଁ
ମୁଁ ଯେଣୁ ଭକ୍ତର ନୌକର । ୧୦

ସଦା ବେଳେ ଭକ୍ତ ପୃଷ୍ଠ ଭାଗ ରକ୍ଷା
କରିବା ଦାୟିତ୍ୱ ମୋହର
ଜନନୀ ଯେପରି ଜଗି ରଖେ ସୁତ
ଧରି ଯୋଗମାୟା ଶରୀର । ୧୧

ସୁଧା ଝରା ବାଣୀ ଶୁଣି କର୍ଣ୍ଣ ପଥେ
ଦେଖିଲି ନେତ୍ରରେ ମୋହର
ଦ୍ୱିଭୁଜ ମୁରଲୀ କର ଅଭିରାମ
ସହାସ୍ୟ କମଳ ଅଧର । ୧୨

ଠାକୁରେ ! କି ବର୍ଣ୍ଣିବି ଲୀଳା ତୁମ୍ଭର ?
ଭକତ ଭାବରେ ବାଇ ହୋଇବାରୁ
ବାଇ ଅଭିରାମ ନାଁ ତୋର ।

# ବିଂଶ ଅଧ୍ୟାୟ

## ହସ୍ତିନାରେ ମନ୍ତ୍ରଣା ଓ ପାଣ୍ଡବମାନଙ୍କର ଘର ବାହୁଡ଼ା

( ରାଗ - ବଙ୍ଗଳାଶ୍ରୀ )

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ କର ଆହେ ସୁଜ୍ଞଜନ
ଭଗ୍ନ ବଳ ଘେନି ସପ୍ତମ ଦିବସେ ଗୃହାଗମ ଦୁର୍ଯ୍ୟୋଧନ । ୧
ସଞ୍ଜୟ କହିଲେ ଧୃତରାଷ୍ଟ୍ର ଆଗେ ବିଜେ ହେଲେ କୁରୁମଣି
ଏକାଦଶ ଅକ୍ଷୌହିଣୀ ଯାଇଥିଲେ ଫେରିଲେ ଦଶାକ୍ଷୌହିଣୀ । ୨
ବ୍ରଣହୀନ ହୋଇ ଜଣେ କେହି ନାହିଁ ଦୁଃଖ ପାଇ ଫେରିଛନ୍ତି
କୁରୁ ପାଣ୍ଡବଙ୍କ ମଧ୍ୟରେ ସମର ପାଞ୍ଚାଳେ ହୋଇଲା ସୃଷ୍ଟି । ୩
ବିଦୁରଙ୍କୁ ଡ଼ାକି ପୁଚ୍ଛା କଲେ ଅନ୍ଧ କହ ଭାଇ ସତ୍ୟ କଥା
ପାଞ୍ଚାଳ ରାଜ୍ୟରେ ସ୍ୱୟମ୍ବର କାଳେ ଘଟିଲା ଯେବଣ କଥା ? ୪
ଅଗୋଚର ଅଟେ ପୁତ୍ରଙ୍କ ମହିମା କି କହିବି ନରନାଥ
କୁମ୍ଭୀର, କନ୍ନର, ବକ, ହିଡ଼ମ୍ବକ ଗୃହ ଦୈତ୍ୟ କଲେ ହତ । ୫
ଦେବ ହିତ କାର୍ଯ୍ୟ ସମ୍ପାଦନ କରି ଅର୍ଜିଲେ ବହୁତ ଖ୍ୟାତି
ସ୍ୱୟମ୍ବର ସ୍ଥଳେ ମହାଲକ୍ଷ ବିନ୍ଧ ଲଭିଲେ ରାଜ ଦୁହିତା । ୬
ମାଳା ଦେବା ପାଇଁ ଦ୍ରୁପଦ ନନ୍ଦିନୀ ଯେତେବେଳେ ବିଜେ କଲେ
ଭୂମି ପୁତ୍ରମାନେ ହିଂସା ଭିଆଇଲେ କନ୍ୟା ଘେନିବାକୁ ବଳେ । ୮
କୌରବେ ପାଣ୍ଡବେ ସମର ହୋଇଲା ସୈନ୍ୟ ବଳ ଗଲେ ନାଶ
ପରାଜିତ ହୋଇ ପଳାଇ ଆସିଲେ ପୁତ୍ରେ ପାଇ ଅପଯଶ । ୯
ପାଣ୍ଡୁ ପୁତ୍ରେ ପ୍ରାଣେ ବଞ୍ଚିଥିବା ଜାଣି ଧୃତରାଷ୍ଟ୍ର ବିଷାଦିତ
ବିଦୁରେ ପୁତ୍ରଙ୍କୁ ପ୍ରମାଦ ପଡ଼ିଲା ଆଉ କି ବଞ୍ଚିବେ ସୁତ ? ୧୦
ପାଣ୍ଡବେ ଜୀବିତ ଥିବା କଥା ଶୁଣି ପ୍ରଜାମାନେ ଆନନ୍ଦିତ
କହିଲେ ଅଧର୍ମ ପରାଜୟ ଘଟି ଧର୍ମ ହୋଇଲା ଉଦିତ । ୧୧

ଆନନ୍ଦ ଉଲ୍ଲାସେ ଦୀପାବଳି ଜାଳି ଉତ୍ସବ କଲେ ପାଳନ
ଆତସ ବାଜିରେ ନଗର କମ୍ପିଲା ମିଷ୍ଟାନ୍ନ କଲେ ବଣ୍ଟନ । ୧୨
ପାଣ୍ଡୁ ପୁତ୍ରଙ୍କର ପ୍ରତିଷ୍ଠା ବଢ଼ିଲା ତପ୍ତ ସୁବର୍ଣ୍ଣ ସାଦୃଶ୍ୟ
ଜ୍ୟୋତି ବିକିରଣ କରୁଥିବା କାଳେ କୌରବମାନେ ବିରସ । ୧୩
ଲାକ୍ଷାଗୃହ ଧୂମ ନିର୍ଗତ କାଳିମା ଆଚ୍ଛାଦନ କଲା ମୁଖ
ପରସନ୍ତା ମନୁ ଉଭେଇ ଯାଇଣ ଗ୍ରାସ କଲା ଘୋର ଦୁଃଖ । ୧୪
ଅନ୍ୟାୟକୁ ସହ୍ୟ କରୁଥିବା ବ୍ୟକ୍ତି ମାନଙ୍କ ଠାରୁ ଅନ୍ୟାୟ
ଆଚରଣ କରୁ ଥିବା ବ୍ୟକ୍ତି ବ୍ୟଗ୍ର ତଥା ବିଷାଦ ହୃଦୟ । ୧୫
ସମ୍ବାଦ ଦେଇଣ ଅମାତ୍ୟ ବିଦୁର ଅନ୍ୟ କାର୍ଯ୍ୟେ ଚାଲିଗଲେ
ଗୁରୁଜନ ସଙ୍ଗେ ରାଜା ଧୃତରାଷ୍ଟ୍ର ମନ୍ତ୍ରଣା କରି ବସିଲେ । ୧୬
ପିତୃବ୍ୟ ଭୀଷ୍ମଙ୍କୁ ଜିଜ୍ଞାସା କରିଲେ ଧୃତରାଷ୍ଟ୍ର ନରନାଥ
ଯାହାଙ୍କ ପାଣ୍ଡବେ ଉଦିତ ହୋଇଲେ କି ଉପାୟ କର ତାତ ? ୧୭
ଧର୍ମ ରାଜନୀତି ବିଶାରଦ ଭୀଷ୍ମ କହିଲେ ଶୁଣ ନୃନାଥ
ପାଣ୍ଡବଙ୍କ ସଙ୍ଗେ ସୌହାର୍ଦ୍ଦ୍ୟ ସ୍ଥାପନ କରି ଦେଇ ଅର୍ଦ୍ଧ ବିତ୍ତ । ୧୮
ରାଜ୍ୟବାସୀଙ୍କର ଏହା ମଧ୍ୟ ଇଚ୍ଛା ତାହା କର ନରରାୟ
ସୋମବଂଶ ମାନ ସମ୍ମାନ ରକ୍ଷାରେ ଏହା ଉଚିତ ଉପାୟ । ୧୯
ଜତୁଗୃହ ଦାହ ବିଷୟରେ ପ୍ରଜା କହୁଛନ୍ତି ନାନା କଥା
ଏହି ଷଡଯନ୍ତ୍ରେ ତୁମ୍ଭେ ମଧ୍ୟ ଲିପ୍ତ ହୋଇ କରି ଜ୍ୟେଷ୍ଠ ପିତା । ୨୦
ଏକାଳେ ଶକୁନି କର୍ଣ୍ଣ ଦୁର୍ଯ୍ୟୋଧନ ଦୁଃଶାସନ ଓ ବିକର୍ଣ୍ଣ
ମନ୍ତ୍ରଣା କକ୍ଷରେ ପହଞ୍ଚି ଦେଖିଲେ ରାଜା, ମନ୍ତ୍ରୀ, ଭୀଷ୍ମ, ଦ୍ରୋଣ । ୨୧
ପାଣ୍ଡବେ ଜୀବିତ ଥିବା ଘଟଣାରୁ ପିତାମହ ଥିଲେ ଖୁସି
ମୁଖ ମଣ୍ଡଳରୁ ଆନନ୍ଦ ଉଲ୍ଲାସ ଧାର ପଡୁଥିଲା ଖସି । ୨୨
ସେମାନଙ୍କୁ ଦେଖି ଉପହାସ କରି କହୁଥିଲେ ପିତାମହ
ମୂର୍ଖ ତୁମ୍ଭେମାନେ ନିୟତି ଗତିକୁ ବୁଝିବାକୁ ନିରୁପାୟ । ୨୩
ନିଜକୁ ବିନାଶ କଲେ ମଧ୍ୟ କେହି ଅନ୍ୟ କାହା ଭାଗ୍ୟରେଖା
ଲିଭାଇ ଦେବାକୁ ସକ୍ଷମ ହୋଇଛି ଦିନେ କାଳେ ନାହିଁ ଦେଖା । ୨୪

ଏକାଳେ ମନ୍ତ୍ରଣା କକ୍ଷରେ ମିଳିଲେ ପାଟ ମହିଷୀ ଗାନ୍ଧାରୀ
ମହାମାତ୍ୟ ତାଙ୍କୁ ମହାରାଜା ପାଶେ ବସାଇଲେ ମାନ୍ୟ କରି । ୨୫

ସର୍ବେ ଉଠି ତାଙ୍କୁ ସ୍ୱାଗତ କରିଣ ଆସନ କଲେ ଗ୍ରହଣ
ପୃଚ୍ଛିଲେ ମହର୍ଷୀ ଆହେ ମହାମାତ୍ୟ ବିଷୟ କର ବାଖାଣ । ୨୬
ଅତ୍ୟନ୍ତ ବିନମ୍ର ଗମ୍ଭୀର ଗଳାରେ ବ୍ୟକ୍ତ କଲେ ମହାମାତ୍ୟ
ପ୍ରଜାଙ୍କର ଇଚ୍ଛା ପାଣ୍ଡବଙ୍କୁ ଡାକି ଆଣିବା ହେବ ଉଚିତ । ୨୭
ଗାନ୍ଧାରୀ ପୃଚ୍ଛିଲେ ପ୍ରଜାଙ୍କ ଇଚ୍ଛାରେ ଅବା ଆମ୍ଭର ଇଚ୍ଛାରେ
ପ୍ରଶାସନ କାର୍ଯ୍ୟ ସମ୍ପାଦିତ ହେବ ବ୍ୟକ୍ତ କର ଏ ସମ୍ବରେ । ୨୮
ମହାମାତ୍ୟ ଯହୁଁ ନୀରବ ରହିଲେ ଉତ୍ତରିଲେ ପିତାମହ
" ପ୍ରକୃତ ପକ୍ଷରେ ପ୍ରଜାଙ୍କ ଇଚ୍ଛାରେ ଚାଲେ ଶାସନ ବିଷୟ । ୨୯
ରାଜା ଅଟେ ପ୍ରଜା ଇଚ୍ଛାର ବାହକ ଶ୍ରେଷ୍ଠ ଅଟେ ପ୍ରଜା ମତ"
ପିତାମହଙ୍କର ସ୍ୱର ଶ୍ରବଣରେ ଗାନ୍ଧାରୀ ହେଲେ ଲଜ୍ଜିତ । ୩୦
ଶଙ୍କୁଚିତ ସ୍ୱରେ କହିଲେ ଗାନ୍ଧାରୀ ତାହାହିଁ ହେଉ ପାଳନ "
ବୁଝାଇ କହିଲେ ପିତାମହ ଭୀଷ୍ମ ରାଜ୍ୟ ଶାସନ ବିଧାନ । ୩୧
''ଯେଉଁ ରାଜା ପ୍ରଜା ମାନଙ୍କ ଇଚ୍ଛାକୁ ନ କରେ ଆଦର ମାନ୍ୟ
ସେ ରାଜ୍ୟ ଅଚିରେ ଧ୍ୱଂସ ପାଇଯାଏ ରହିଛି ଦୃଷ୍ଟାନ୍ତମାନ । ୩୨
ନୃପତି ଈଶ୍ୱର ହେଲେ ହେଁ ଦେଶର ପ୍ରଜାଏ ଅବିନାଶ୍ୱର
କାଲି ତ ନ ଥିଲେ ଆଜି ରହିଛନ୍ତି ଆସନ୍ତା କାଲି ଅନ୍ତର । ୩୩
ପ୍ରଜା କାଲି ଥିଲେ ଆଜି ରହିଛନ୍ତି ରହିବେ ଆସନ୍ତା କାଲି
ଗଙ୍ଗା ଧାର ପ୍ରାୟ ପ୍ରବହମାନ ସେ ଚିର କାଳ ଥିବ ଚାଲି । ୩୪
ରାଜ ସିଂହାସନ ଭୂଲୁଣ୍ଠିତ ହୋଇ ଅଛି ମଧ୍ୟ ହେଉଥିବ
କେତେ ଆସି କେତେ ଗଲେଣି ପଟେଇ କିଏ ବା ଦେବ ହିସାବ ? ୩୫
ଏଣୁ ପ୍ରଜାଙ୍କର ମତକୁ ସମ୍ମାନ ଦେବା ରାଜାଙ୍କ କର୍ତ୍ତବ୍ୟ
ଅନ୍ୟଥା ରାଜ୍ୟରେ ବିଦ୍ରୋହ ହୋଇଣ ରାଜତନ୍ତ୍ର ନାଶ ଯିବ ।୩୬
ରାଜତନ୍ତ୍ର କିବା ଗଣତନ୍ତ୍ର ହେଉ ପ୍ରଜାଶକ୍ତି ଅଟେ ଶ୍ରେଷ୍ଠ
ପ୍ରଜାର ମତରେ ଶାସନ ଚାଳିତ ଶାସକ ନିମିତ୍ତ ମାତ୍ର । ୩୭
ପାଣ୍ଡବଙ୍କୁ ଡାକି ଆଣିଲେ ରାଜ୍ୟକୁ ପ୍ରଜାଏ ହୋଇବେ ଶାନ୍ତ
ତଦ୍ୱାରା ସମ୍ମାନ ବର୍ଦ୍ଧିତ ହୋଇବ ଏହାହିଁ ମୋହର ମତ ।" ୩୮
ନିରପେକ୍ଷ ଭାବେ ପ୍ରକାଶିଲେ ଭୀଷ୍ମ ଆପଣାର ଅଭିବ୍ୟକ୍ତି
ତାହାଙ୍କର ଯୁକ୍ତି ଶୁଣି ପାଟରାଣୀ ଧଇଲେ ମୌନ ମୂର୍ତ୍ତି । ୩୯

ଶକୁନି ପୁଚ୍ଛିଲେ ଆସିବାକୁ ଯେବେ ଅନିଚ୍ଛୁକ ହେବେ ସେହି
ଆମ୍ଭର ସମ୍ମାନ ତଳେ ପଡ଼ିଯିବ ଆମ୍ଭେ ଡାକି ଯିବୁ ନାହିଁ । ୪୦
ଉତ୍ତରିଲେ ଦ୍ରୋଣ ଆପଣାର ଇଚ୍ଛା ମାଟିକେ ଛାଡ଼ି ପାରେଇ
ଜନନୀ ଜନମ ଭୂମିର ମମତା କାହିଁକେ ଜନମି ନାହିଁ ? ୪୧
ପିତୃ ପିତାମହ ଅର୍ଜିତ ଯେ ଭୂମି ନର୍ଜନେ ଚ ସୁଖାକୟ
ଉପବାସେ ଯହିଁ କାଦ ଲାଗିଯାଏ ମମତା ଭରି ସେ ଗୃହ " । ୪୨
ଗାନ୍ଧାରୀ ପୁଚ୍ଛିଲେ ଏବେ ସେମାନଙ୍କ ରାଜ୍ୟରେ କି ଅଧିକାର
ପାଣ୍ଡୁ ମୃତ୍ୟୁ ପରେ ରାଜ୍ୟେ ନରପତି ଅଟନ୍ତି ସ୍ୱାମୀ ମୋହର । ୪୩
ରାଜାଙ୍କ ତନୟ ରାଜା ବିନା ହେବ ଅନ୍ୟକେ ନ ପାରେ ହୋଇ
ମଲା ଗଲା ଲୋକ ରାଜ୍ୟେ ଅଧିକାର ଥାଏ କି ଗୁରୁ ଗୋସେଇଁ ? ୪୪
ପାଣ୍ଡୁ ପୁତ୍ରଙ୍କର ଅନ୍ତ୍ୟେଷ୍ଟି କ୍ରିୟାର ହୋଇଅଛି ସମାପନ
ମୃତ ବ୍ୟକ୍ତିଙ୍କର ଧନେ ଅଧିକାର ଥିବା ଅଛି କି ପ୍ରମାଣ ? ୪୫
ମହାମାତ୍ୟ ତହୁଁ କହିଲେ ନୃପତି ପୁତ୍ରଙ୍କ ଅନ୍ତ୍ୟେଷ୍ଟି କ୍ରିୟା
ସମ୍ପାଦନ କରି ଦେଇ ଅଛ ସତ୍ୟ ପ୍ରଜା ନ ବୁଝନ୍ତି ତାହା । ୪୬
ପ୍ରଜାଙ୍କ ଭିତରେ ବହୁଲୋକ ଛନ୍ତି ଯେଉଁମାନେ ପୁତ୍ରଙ୍କର
ଦଗ୍‌ଧ ହେବା କଥା ବିଶ୍ୱାସ ନ ଯାନ୍ତି ଦୃଢ଼ କରି ମନ ସ୍ଥିର । ୪୭
ଦୁର୍ଯ୍ୟୋଧନ ପୁଚ୍ଛେ ଆପଣ କିପରି ଏ କଥା କହୁ ଅଛନ୍ତି
ବିଦୁର କହିଲେ ସେମାନଙ୍କ ମଧ୍ୟେ ମୋହ ନାମ ରହିଅଛି । ୪୮
ଆପଣମାନଙ୍କ ମନେ ଥିବ କଥା ଅନ୍ତ୍ୟେଷ୍ଟି କ୍ରିୟାର କାଳେ
ତିଳାଞ୍ଜଳି ମୁହିଁ ଦେଇଣ ନ ଥିଲି ପଶି ଜାହ୍ନବୀର ଜଳେ । ୪୯
ଦୁର୍ଯ୍ୟୋଧନ ପୁଚ୍ଛେ ପାଣ୍ଡବେ ଜୀବିତ ବୋଲି ଯଦି ଜାଣିଥିଲ
ମହାରାଜାଙ୍କୁ ସେ କଥା ନ ଜଣାଇ କମ୍ପା ଗୁପତ ରଖିଲ ? ୫୦
ଏହାଦ୍ୱାରା ମହାମାତ୍ୟଙ୍କ କାର୍ଯ୍ୟରେ ହୋଇ ନାହିଁ କି ବିଚ୍ୟୁତି
କ୍ରୋଧେ ମହାମାତ୍ୟ ପ୍ରତିବାଦ କଲେ ମୋ ଦାୟିତ୍ୱ ଅଛି ଚିନ୍ତି ? ୫୧
କେବଳ ବିଶ୍ୱାସ ଦୃଷ୍ଟିରୁ ନୃପଙ୍କୁ ପରାମର୍ଶ ଦେବା ନୁହେଁ
ତଥ୍ୟ ଓ ପ୍ରମାଣ ସହିତ ସମ୍ବାଦ ନୃପଙ୍କୁ ଦେବା ଯୋଗାଏ । ୫୨
ବିରକ୍ତ ହୋଇଣ କହିଲେ ବିଦୁର ପସନ୍ଦ ନ କରେ ମୋଟେ
ତମା ଆଗରେ ଜନ୍ମ ହୋଇଥିବା ଲୋକ ପରାମର୍ଶ ଦେବ ମୋତେ । ୫୩

ଏପରି ଗମ୍ଭୀର ଆବେଗତା ପୂର୍ଣ୍ଣ ପରିସ୍ଥିତିର ଉଶ୍ୱାସ
କରିବାକୁ ଚେଷ୍ଟା କରି ପିତାମହ କହିଲେ କଥା ବିଶେଷ । ୫୪
"ଯେ ପର୍ଯ୍ୟନ୍ତ ପିଲା ଶ୍ରେଷ୍ଠ ରହିଥାଏ ଆମ୍ଭେ ଦେଉଁ ଉପଦେଶ
ବଡ ହେବା ପରେ ଉଚିତ ଆମ୍ଭର ଶୁଣିବା ତାଙ୍କୋପଦେଶ । ୫୫
ସେଥିପାଇଁ ମହାମାତ୍ୟ ରୁଷହେବା ଅଟେ ଅନୁଚିତ କଥା
କନିଷ୍ଠଙ୍କ କଥା ବିଚାରକୁ ନେବା ସୁସ୍ଥ ସମାଜ ବ୍ୟବସ୍ଥା" । ୫୬
ଦ୍ରୋଣ ବ୍ୟକ୍ତ କଲେ ମାନବିକତାର ସ୍ୱାର୍ଥ ପୂର୍ଣ୍ଣ ପରିଧିରେ
ପଶୁଠାରୁ ମଧ୍ୟ ନିର୍ମମ ହୁଅଇ ମନୁଷ୍ୟ ଏହି ସଂସାରେ । ୫୭
ମାନବିକତାକୁ ବିନାଶ କରିବା କି ପ୍ରକାର ରାଜନୀତି
ଗାଙ୍ଗେୟ କହିଲେ ରାଜନୀତି କେବେ ଦେଖୁ ଥାଏ ଯେଉଁ ବ୍ୟକ୍ତି । ୫୮
ମାନବିକତାକୁ ଦେଖି ପାରେ ନାହିଁ ଲକ୍ଷ ପୂରଣେ ତା ମତି
ରାଜନୀତି ଅର୍ଥ ସ୍ୱାର୍ଥ ବିଜଡ଼ିତ ନ ଥାଏ ନୀତି ଅନୀତି । ୫୯
ପାଞ୍ଚ ମହିଷୀଙ୍କ କଥାକୁ ଗାଙ୍ଗେୟ କଲେ ଦୃଢ଼ ପ୍ରତିବାଦ
ଜୀବିତ ଲୋକକୁ ମୃତ ଯେ ବୋଲଇ ସେ ଲୋକ ମୂର୍ଖ ବା ଅନ୍ଧ । ୬୦
ଅନ୍ଧ ବୋଲୁଛନ୍ତି ମାତାଙ୍କ ହୃଦୟ କୁମର ପ୍ରତି କୋମଳ
ନିଜ ସନ୍ତାନର ସୁଖଶାନ୍ତି ଛଡା ନ ଚାହେ ଅନ୍ୟ କୁଶଳ । ୬୧
ଆହେ ତାତ ତୁମ୍ଭେ ଗାନ୍ଧାରୀ କଥାରେ ନ ଦିଅ ଗୁରୁତ୍ୱ ଅତି
ପରନ୍ତୁ ଆମ୍ଭଙ୍କୁ ସୁପଥ ଦେଖାଇ ଦେଇଣ କୁଳେ କର ଶାନ୍ତି । ୬୨
ସ୍ୱାମୀଙ୍କ କଥାରେ ଲଜ୍ଜିତା ହୋଇଣ ଗାନ୍ଧାରୀ ଉଠିଣ ଗଲେ
ମହାମାତ୍ୟ ପରାମର୍ଶେ ନରପତି ଚଳନ୍ତୁ ଭୀଷ୍ମ କହିଲେ । ୬୩
ମନ ଦୁଃଖେ ଅନ୍ଧ କହିଲେ ହେ ତାତ ଯଦି ମୋର ପରାମର୍ଶେ
କାର୍ଯ୍ୟ ହେଉଥାନ୍ତା ଆପଣ ମାନଙ୍କୁ ପୁଚ୍ଛନ୍ତି କେଉଁ ଉଦ୍ଦେଶ୍ୟ ? ୬୪
ନୃପତି କହିଲେ ମୋ ମନେ ଆଶଙ୍କା ଯାହା ଥିଲା ତା ଘଟିଲା
ଈଶ୍ୱର କୃପାରୁ ପାଣ୍ଡବେ ବର୍ତ୍ତିଲେ କେବଳ କଥା ରହିଲା । ୬୫
ଦାନ୍ତକୁ କାମୁଡି କହେ ଦୁର୍ଯ୍ୟୋଧନ ନୁହଁନ୍ତି ସେ ଭଗବାନ
ତୁମ୍ଭ ମହାମାତ୍ୟ ହୀନ ଦାସୀ ପୁତ୍ର ବଞ୍ଚାଇ ଦେଲା ନନ୍ଦନ । ୬୬
କୌରବଙ୍କ ଲୁଣ ଖାଇ ପାଣ୍ଡବଙ୍କ ଗୁଣ କରଇ କୀର୍ତ୍ତନ
ନିମକ ହାରାମ ନୀଚ ପ୍ରକୃତିତା ଅବିଶ୍ୱାସୀ ଓ କୃତଘ୍ନ । ୬୭

ଆପଣ ତାହାଙ୍କୁ ବିଶ୍ୱାସ କରିଣ ରଖିଅଛନ୍ତି ପାଖରେ
ମାତ୍ର ସେ ଆମ୍ଭର ଅମଙ୍ଗଳ ଚିନ୍ତା କରୁଥାଏ ନିରନ୍ତରେ । ୬୮
କହୁଛନ୍ତି ଅନ୍ଧ ତାଙ୍କ ପ୍ରତି କ୍ରୋଧ କରି କିଛି ଲାଭ ନାହିଁ
ସେ ଯାହା କହନ୍ତି ମୁଁ ତାହା କରୁଛି ବୋଲି କହୁଛ କିମ୍ପାଇଁ ? ୬୯
ତୁମ୍ଭେମାନେ ଯାହା ଇଚ୍ଛା କରୁଅଛ କରୁଛ ଆପଣା ଛୁଏଁ
ମୋ କଥାକୁ କର୍ଣ୍ଣ ପାତ କରୁ ନାହଁ ବଡ଼ିମା ପଣରେ ଘୋଏ । ୭୦
ମହାତ୍ମା ବିଦୁର ମହାମାତ୍ୟ ମୋର ମୁଁ ତାଙ୍କ ମନରେ ଦୁଃଖ
ଦେବା ପାଇଁ କେବେ ଚେଷ୍ଟା କରି ନାହିଁ ଅନ୍ଧର ଚକ୍ଷୁ ପ୍ରତ୍ୟକ୍ଷ ।୭୧
ଦୁର୍ଯ୍ୟୋଧନ ବୋଲେ ଭଲ ହୁଅନ୍ତା ଯେବେ ସେ ଚକ୍ଷୁ ଫୁଟିଯାଆନ୍ତା
ଅଶାନ୍ତ ଚିତ୍ତରେ କହୁଛନ୍ତି ଅନ୍ଧ ନିଆରା ଅଟେ ସେ କଥା । ୭୨
କିନ୍ତୁ ସେ ଚକ୍ଷୁକୁ ଫୁଟାଇବା ପାଇଁ ନାହିଁ ତ ମୋହର ଶକ୍ତି
ବିଦୁର ଅଟନ୍ତି ଅନ୍ଧର ଲଉଡ଼ ତାଙ୍କ ଯୋଗୁ ମୋର ଖ୍ୟାତି । ୭୩
ବୁଝାଇ କହିଲେ ପିତା ଧୃତରାଷ୍ଟ୍ର ସମସ୍ତର ଗତି ଭିନ୍ନ
ଏତେ ବଡ଼ ଷଡ଼ଯନ୍ତ୍ରରୁ ପାଣ୍ଡବେ ବର୍ତ୍ତି ରହିଲେ ଜୀବନ । ୭୪
ବିପଦରୁ ବର୍ତ୍ତି ଯିବାରୁ ପାଣ୍ଡବେ ହୋଇଛନ୍ତି ବଳଶାଳୀ
ଦ୍ରୁପଦ ସମାନ ଶକ୍ତିଶାଳୀ ରାଜା ରଖିଲେ ପୁଣି ସମ୍ଭାଳି । ୭୫
ଅନୁଭୂତି ତଥା ଶକ୍ତି ସେମାନଙ୍କ ପ୍ରଭାବ ବୃଦ୍ଧି କରିଛି
ଏଣିକି ସେମାନେ ଆମ୍ଭର ଛଳନା କପଟକୁ ଦେବେ ମୂର୍ଚ୍ଛି । ୭୬
ଆମ୍ଭେମାନେ ଯାହା ଲୋକ ହସା ହୋଇ ହରାଇଛନ୍ତି ବିଶ୍ୱାସ
ଆମ୍ଭେ ଷଡ଼ଯନ୍ତ୍ର କରିଥିବା କଥା ପଞ୍ଚ କଟକେ ପ୍ରକାଶ । ୭୭
ଦୁର୍ଯ୍ୟୋଧନ ପୁଛେ ଏବେ କି ଉପାୟ ଆମ୍ଭଙ୍କୁ ବୁଝାଇ ଦିଅ
ଆଗ ବଢ଼ି କହେ କର୍ଣ୍ଣ ମହାରଥି ସମର କରିବା ଶ୍ରେୟ । ୭୮
କର୍ଣ୍ଣ କଥା ଶୁଣି କହୁଛନ୍ତି ମନ୍ତ୍ରୀ ବ୍ୟଗ୍ରତା ଯୋଗଏ ନାହିଁ
ପ୍ରଥମରେ ଆମେ ବିଶ୍ୱାସ ଘାତକ ଠାରୁ ରହିବା ଦୂରେଇ । ୭୯
ଯେ କୌଣସି କାଳେ ସେମାନଙ୍କୁ ଆମେ କରିପାରୁ ଆକ୍ରମଣ
କିନ୍ତୁ ଏହା କଲେ ପ୍ରଜାଙ୍କ ମନରେ ସନ୍ଦେହ ହେବ ବର୍ଦ୍ଧନ । ୮୦
ଏଥି ପ୍ରମାଣିତ ହୋଇବ ନିଶ୍ଚୟ ତାହାଙ୍କ ନିଃଶେଷ ପାଇଁ
ବାରୁଣାବତକୁ ପଠାଇଣ ଥିଲେ ଜାଣି ଶୁଣି ନିରପାଇଁ । ୮୧

କର୍ଣ୍ଣ ପଚାରିଲେ ପ୍ରଜାମାନେ କଣ ସନ୍ଦେହରେ ରହିଛନ୍ତି
ସେମାନଙ୍କୁ ମୂର୍ଖ ବିଚାରିବା ଅର୍ଥ ମୂର୍ଖତା ହେବ ନୃପତି ? ।୮୨
ପ୍ରକୃତ ପକ୍ଷରେ ଆମ୍ଭଠୁ ସେମାନେ ଅଧିକ ଗୁଣେ ଚତୁର
ଡ଼ାକେ ଡାକେ ଆମ୍ଭେ ଗତି କରୁଥିଲେ ପଛରେ ଗତି ତାଙ୍କର ।୮୩
ଆମ୍ଭେମାନେ ଦୁଇ ଆଖିରେ ଦେଖନ୍ତି କିବା ଶୁଣନ୍ତି ଦ୍ୱ କର୍ଣ୍ଣେ
ମାତ୍ର ପ୍ରଜାଗଣେ ସହସ୍ର ଚକ୍ଷୁରେ ଦେଖନ୍ତି ଶୁଣନ୍ତି କର୍ଣ୍ଣେ ।୮୪
ଆମ୍ଭର କୌଣସି କାର୍ଯ୍ୟ ତାଙ୍କଠାରୁ ଲୁଚିଛପି ରହେ ନାହିଁ
ବରଂ ତାଙ୍କ କଥା ଆମ୍ଭଙ୍କୁ ଅଛପା ସିଏ ସିନ୍ଧୁ ଆମ୍ଭେ ନଈ ।୮୫
ତଥାପି ଏ କ୍ଷେତ୍ରେ ଆମ୍ଭର ଯେ ମତ ସୁସ୍ପଷ୍ଟ ଅଟେ ରାଜନ
ଶତ୍ରୁ ବଳଶାଳୀ ହୋଇବା ଆଗରୁ କରିବା ତାଙ୍କୁ ନିଶ୍ଚିହ୍ନ ।୮୬
ସମସ୍ତ ଗଢ଼ିବା ସଙ୍ଗେସଙ୍ଗେ ପୁତ୍ରେ ତାଙ୍କ ଶକ୍ତି ବଢାଇବେ
ହେତୁ ରାଜା, ମହାରାଜା ମିତ୍ର ଗଣେ ତାଙ୍କୁ ସମର୍ଥନ ଦେବେ ।୮୭
ଏବେତ ସେମାନେ ଆପଣା ଶକ୍ତିରେ ହୋଇଛନ୍ତି ଶକ୍ତିଶାଳୀ
ବାହୁ-ବୁଦ୍ଧି-ବନ୍ଧୁ ବଳରେ ସେମାନେ ଯଥାର୍ଥରେ ମହାବଳୀ ।୮୮
ଦ୍ୱାରକାଧିପତି ସେମାନଙ୍କ ମିତ୍ର ତଥା ମନ୍ତ୍ରଣା ଦାୟକ
ପରାକ୍ରମଶାଳୀ ଦ୍ରୁପଦ ନନ୍ଦନେ ଅଟନ୍ତି ତାଙ୍କ ଶାଳକ ।୮୯
ତାଙ୍କ ସପକ୍ଷରେ ମଥୁରା ରାଜନ ଗୋପପତି ନନ୍ଦରାଣ
ଆଉଆଉ କେତେ ରାଜା ସମର୍ଥନେ ପୁତ୍ରମାନେ ବଳବାନ ।୯୦
ଦୃଢ଼ କଣ୍ଠେ କର୍ଣ୍ଣ ଶୁଣାଇ କହିଲେ ଶତ୍ରୁ ଓ ଆହତ ସର୍ପ
ଜୀବନେ ନ ମାରି ଜୀବିତା-ବସ୍ଥାରେ ଛାଡ଼ି ଦେଲେ ସର୍ବ ନାଶ ।୯୧
ନିଷ୍କଣ୍ଟକ ହୋଇ ରହି ହୁଏ ନାହିଁ କାଳେ ପଡ଼ିଇ ପ୍ରମାଦ
ଏଣୁ ବୁଝିସୁଝି କାର୍ଯ୍ୟ କରି ରାଜା ଯେହ୍ନେ ନ ପଡ଼େ ବିପଦ ।୯୨
ସଭାରେ ଗାଙ୍ଗେୟ ସମ୍ବୋଧନ କରି କହିଲେ ହେ ନରପତି
ପାଣ୍ଡବେ ଜୀବିତ ଥିବା ଘଟଣାରୁ ଆଉ କି ଶୁଭ କାରଣ ? ୯୩
ନିଜ ପୁତ୍ର ପରି ପାଣ୍ଡବେ ଅଟନ୍ତି ନୃପତିଙ୍କ ପାଞ୍ଚ ପୁତ୍ର
ରାଜ୍ୟ ଅର୍ଦ୍ଧେ ଦେଇ ସେମାନଙ୍କ ସଙ୍ଗେ ସନ୍ଧି କର ନରନାଥ ।୯୪
ଶକୁନି ପୁଚ୍ଛିଲେ ରାଜ୍ୟ ଅଧେ ଦେବୁ ପୁନଶ୍ଚ କରିବୁ ସନ୍ଧି
ସେମାନଙ୍କ ଦ୍ୱାରା ଆମ୍ଭେ କି ପରାସ୍ତ କହୁ ଅଛ କଥା ଫାନ୍ଦି ।୯୫

ଦ୍ରୋଣ ବୋଲୁଛନ୍ତି ପରାଜିତ ହୋଇ ନାହିଁ ଅବଶ୍ୟ ତା ସତ୍ୟ
ମାତ୍ର ପାଣ୍ଡୁ ପୁତେ ସମଗ୍ର ରାଜ୍ୟର ଅଧିକାରୀ ରୂପେ ଜ୍ଞାତ । ୯୬
ଅର୍ଦ୍ଧରାଜ୍ୟ ତୁମ ହାତରେ ରହିବ ଏଥି ପାଇଁ କର ସନ୍ଧି
ନୋହିଲେ ସମ୍ପୂର୍ଣ୍ଣ ହରାଇ ବସିବ ପ୍ରକାଶ କଲେ ଦୁର୍ବୁଦ୍ଧି । ୯୭
ଦୁର୍ଯ୍ୟୋଧନ ପ୍ରରୋଚନାରେ ପଡ଼ିଣ କହୁଛନ୍ତି ବୀର କର୍ଣ୍ଣ
ଆପଣ ମାନଙ୍କ ବରୂର ନିଷ୍ପତ୍ତି ଅଟଇ ମହତ୍ତ୍ୱପୂର୍ଣ୍ଣ । ୯୮
ଏପରି ମହତ୍ତ୍ୱ ପୂର୍ଣ୍ଣ ବିଚାରକୁ ରଖନ୍ତୁ ଆପଣା ଠାରେ
ସମସ୍ୟାର ଆମ୍ଭେ ସମାଧାନ କରି ନେବୁ ଆସି ଧରି କରେ । ୯୯
ଦ୍ରୋଣ ବୋଲୁଛନ୍ତି ପ୍ରତ୍ୟେକ ସମସ୍ୟା ଅସି ଦ୍ୱାରା ସମାଧାନ
ହେଉଥିଲେ ଲୋକେ ସମରକୁ ଘୃଣା କରୁ ନ ଥାନ୍ତେ ହେ କର୍ଣ୍ଣ ? ୧୦୦
ଉତ୍ତରିଲେ କର୍ଣ୍ଣ ସମରକୁ ଘୃଣା କରୁଥାଏ ଯେଉଁ ବ୍ୟକ୍ତି
ନପୁଂସକ ଅବା କାପୁରୁଷ ବୋଲି ଲୋକମାନେ କହିଥାନ୍ତି । ୧୦୧
କ୍ରୋଧ ହୋଇ ଦ୍ରୋଣ କହିଲେ ସଭାରେ ନିଜ ବୀରତ୍ୱ ବିଷୟେ
ଅଜ୍ଞଥିବା ବ୍ୟକ୍ତି ଗର୍ଜ୍ଜନ କରିଲେ କାପୁରୁଷ କୁହାଯାଏ । ୧୦୨
ବ୍ୟକ୍ତ କଲେ କର୍ଣ୍ଣ ହେ ଆଚାର୍ଯ୍ୟ ଦ୍ରୋଣ ତୁମ୍ଭେ କଣ ମନେ କର
ଆମ୍ଭେମାନେ ଶର ବୃଷ୍ଟି କରି ଦେଖାଇବୁ ପ୍ରତିଜ୍ଞା ଆମ୍ଭର ? ୧୦୩
ଆପଣଙ୍କ ପରି ପାଣ୍ଡବ ହିତୈଷୀ ଏପରି ମଧ୍ୟ ସ୍ଥଳରେ
ନରହନ୍ତେ ଯେବେ ପାଣ୍ଡବେ ପୂରାଇ ନ ଦଅନ୍ତୁ ହସ୍ତିନାରେ । ୧୦୪
ଦ୍ରୋଣ କହୁଛନ୍ତି ଏତେ ଗର୍ବ କରି କହନା ରାଧା ନନ୍ଦନ
ପାଣ୍ଡବ ମାନଙ୍କ ଶକ୍ତି ସାମର୍ଥ୍ୟକୁ କର ନାହିଁ ଆକଳନ । ୧୦୫
ପାଞ୍ଚାଳ ଦ୍ୱାରକା ଗୋପ ମଥୁରାଦି ସେମାନଙ୍କ ସପକ୍ଷରେ
ସେମାନେ ନିସ୍ସହ ଅଥବା ଦୁର୍ବଳ ନ ଭାବ ନିଜ ମନରେ । ୧୦୬
ଧୃତରାଷ୍ଟ୍ରେ ତୁହିଁ ବୋଲୁଛନ୍ତି କର୍ଣ୍ଣ ମହାରାଜା ଏହିପରି
ଲୋକମାନଙ୍କଠୁ ପରାମର୍ଶ ନେବା ଯୋଗାଏ ନା ଦଣ୍ଡଧାରୀ । ୧୦୭
କାରଣ ଏମାନେ ଆପଣଙ୍କ ଅନ୍ନ ଭକ୍ଷଣ କରୁ ଅଛନ୍ତି
କିନ୍ତୁ ଆପଣଙ୍କ କୁଶଳ କାମନା କେବେ ତ କରୁ ନାହାନ୍ତି । ୧୦୮
ନୀତିଶାସ୍ତ୍ର କହେ ହଲୁଥିବା ଦାନ୍ତ କିବା ଅବଶ୍ୱସ୍ତ ଭୃତ୍ୟ
ଏମାନଙ୍କ ମୂଳୋତ୍ପାଟନ କରିବା ବ୍ୟକ୍ତିର ପକ୍ଷେ ଉଚିତ । ୧୦୯

କର୍ଣ୍ଣ କଥା ଶୁଣି କହିଲେ ଗାଙ୍ଗେୟ ପ୍ରକୃତ ପକ୍ଷରେ ତୁମ୍ଭେ
ଏ ପରିବାରର ମୁଖରେ ହଲୁଥିବା ଦାନ୍ତ ବୋଲି ମୁହିଁ ଭାବେ । ୧୧୦
ମୁଖେ ଯିମା ଦାନ୍ତ ଜାତ ହୋଇଥାଏ କିନ୍ତୁ ତୁମ୍ଭେ କାହିଁ ଆସି
ଆମ୍ଭ ପରିବାର ଦାନ୍ତର ମାଢ଼ିରେ ଲଗିଲ ଆଣ୍ଠା ଭରସି । ୧୧୧
ପ୍ରଥମେ ତୁମକୁ ଉତ୍ପାଟନ କରି ଫିଙ୍ଗି ନ ଦେବା ପର୍ଯ୍ୟନ୍ତ
ଏ ପରିବାରରେ ଶାନ୍ତି ନ ଫେରିବ ଏହାହିଁ ମୋହର ମତ । ୧୧୨
ଭୀଷ୍ମ କଥା ଶୁଣି ଲଜ୍ଜିତ ହୋଇଣ କହୁଛନ୍ତି ବୀରକର୍ଣ୍ଣ
ଯଦି ମୁହିଁ ସବୁ ଅଶାନ୍ତି କାରଣ ଏଠାରେ କି ପ୍ରୟୋଜନ ? ୧୧୩
ଏହା କହି କର୍ଣ୍ଣ ଅଗ୍ନିବାଣ ପରି ଉଠି ବେଗେ ପଳାଇଲେ
ଦୁର୍ଯ୍ୟୋଧନେ ବୃଦ୍ଧ ପିତାମହ ଭୀଷ୍ମ ଧୀର ବଚନ ବୋଇଲେ । ୧୧୪
ବହୁତ ବୁଝାଇ କହିଲେ ଗାଙ୍ଗେୟ ଅନିଚ୍ଛା ସତ୍ତ୍ୱେ ସମ୍ମତ
ହୋଇ ଦୁର୍ଯ୍ୟୋଧନ ବୋଲେ ଡାକି ଆଣ ପାଞ୍ଚାଳରୁ ପାଞ୍ଚଭ୍ରାତ । ୧୧୫
ସମଦଣ୍ଡ ବାହି ଚଳିଲେ ପାଞ୍ଚଳେ ଭୀଷ୍ମ ସଞ୍ଜୟ ବିଦୁର
ସମାଦର କରି ଡ଼କାଇ ଆଣିଲେ ପୁତ୍ରଙ୍କୁ ହସ୍ତିନାପୁର । ୧୧୬
ଧର୍ମ ଆଗମନେ ସୁସଜ୍ଜିତ ମାର୍ଗ ତୋରଣମାନ ନିର୍ମିତ
ଆଲୋକ ମାଳାରେ ନଗ୍ର ପ୍ରଜ୍ୱଳିତ ରାଜଦାଣ୍ଡ ପରିଷ୍କୃତ । ୧୧୭
ସ୍ୱାଗତ ଜ୍ଞାପନ କରିବା ନିମନ୍ତେ ପ୍ରଜାଗଣ ସମବେତ
ଶିରେ ପୁଷ୍ପ ବୃଷ୍ଟି କରିଣ ପ୍ରଜାଏ ପୁତ୍ରଙ୍କୁ କଲେ ସ୍ୱାଗତ । ୧୧୮
ସୈନ୍ୟ ସେନାପତି ସୁସଜ୍ଜିତ ହୋଇ କରିଲେ ଅଭିବାଦନ
ପିତାଙ୍କ ଚରଣେ ପ୍ରଣିପାତ ହେଲେ ବଧୂଙ୍କ ସଙ୍ଗେ ନନ୍ଦନ । ୧୧୯
ଗଉରବ ପାଇ ପାଣ୍ଡୁ ପାଞ୍ଚ ପୁତ୍ରେ ହୋଇଲେ ଘର ବାହୁଡ଼ା
ସ୍ନେହ ଶ୍ରଦ୍ଧା କରି ପୁତ୍ରେ ରଖାଇଲେ ମେଣ୍ଟିଲା ପୂର୍ବ ଝଗଡ଼ା । ୧୨୦
ରାମକୃଷ୍ଣ ଦୁଇ ହସ୍ତିନାକୁ ଆସି ବୁଝାଇଲେ ଦୁର୍ଯ୍ୟୋଧନ
ଭାଇଙ୍କ ସମ୍ମାନ ରକ୍ଷିଲେ ପାଖରେ ବଢ଼ିବ ତୁମ୍ଭର ମାନ୍ୟ । ୧୨୧
ପାଣ୍ଡବେ ତୁମ୍ଭର ସୋଦର ଅଟନ୍ତି ଅତି ଆପଣାର ଜନ
ନିଜ ନିଜ ମଧ୍ୟେ ଶତ୍ରୁତା ନ କରି ଶାନ୍ତିରେ କଟାଅ ଦିନ । ୧୨୨
ପାଣ୍ଡବଙ୍କ ସଙ୍ଗେ ପ୍ରୀତିଭାବ କଲେ ନିର୍ବିଘ୍ନେ ଭୋଗିବ ରାଜ୍ୟ
ତାଙ୍କ ସଙ୍ଗେ ତୁମ୍ଭେ ଶତ୍ରୁତା କରିଲେ ଶେଷେ ହୋଇବ ଦାହ୍ୟସ୍ୟ । ୧୨୩

ରାମକୃଷ୍ଣ କଥା ମାନି ଦୁର୍ଯ୍ୟୋଧନ ସକୂଟେ କରିଲେ ପ୍ରୀତି
ମାଳ ମାମୁଁ ମିଳ ମନେ ପ୍ରତିଦ୍ୱନ୍ଦ୍ୱ‌ଂସା ଜାଗିଲା ଦିବସ ରାତି । ୧୨୪
ଏକଶ ପଚଶ ପଦରେ ଅଧ୍ୟାୟ ଏଠାରେ ହୋଇଲା ଶେଷ
ଗୁରୁ ଅଭିରାମ ଦୟା ହୋଇବାରୁ ଗୀତେ ଭଣେ ବୃନ୍ଦାବାସ । ୧୨୫
ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କ ଥ ନେ
ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ହସ୍ତିନାରେ ମନ୍ତ୍ରଣା ଓ ପାଣ୍ଡବଙ୍କ
ଘରବାହୁଡ଼ା ଉପାଖ୍ୟାନେ ନାମ ବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।

ଶ୍ରୀକୃଷ୍ଣାର୍ପଣମସ୍ତୁ ।

**ବୋଲି —**

ସୁଜନେ ! କୃଷ୍ଣ ପ୍ରେମରେ ରସ
ରସି ପାରିଲେ ଘୋଷି ପାରିଲେ ହେବ ଗୁହ୍ୟରସ ।
ଗୋପ ବୃନ୍ଦାବନ ଏ ଶରୀର ଲଗିଛି ନିତ୍ୟ ରାସ
ରସିକ ରାଜ ରାସ କରନ୍ତି ଭେଦ ଗୁପ୍ତ ରହସ୍ୟ । ୧
ଏ ଗୋପାଙ୍ଗନା କୃଷ୍ଣ ଲଳନା ମୁନିରୁଷି ତାପସ
ରାସ ମଣ୍ଡଳ ରସିକା ନାରୀ ରସିକ ଜନ ଶିଷ୍ୟ । ୨
କୃକାର କୃଷ୍ଣ ଷ୍ଣ ରସବର୍ଣ୍ଣ ନାମତତ୍ତ୍ୱ ବିଶେଷ
ରାଧାକୃଷ୍ଣଙ୍କ ରାସ ଲଗିଛି ଝରୁଛି ପ୍ରେମରସ । ୩

# ଏକବିଂଶ ଅଧ୍ୟାୟ

## ପାଣ୍ଡବମାନଙ୍କ ଖାଣ୍ଡବପ୍ରସ୍ଥରେ ରାଜଧାନୀ ସ୍ଥାପନ

( ରାଗ — ବଙ୍ଗଳାଶ୍ରୀ )

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ କର ଆହେ ସୁଜ୍ଞଜନ
ପଦ ପଦ କରେ କୃଷ୍ଣ ପ୍ରେମ ରସ ହୋଇଅଛି ପରିପୂର୍ଣ୍ଣ । ୧
ହସ୍ତିନା ନଗରେ ରହିଲେ ପାଣ୍ଡବେ ହେନୁହେନ ବଡ଼େ ଖ୍ୟାତି
ଗୁରୁ, ବିପ୍ର, ପ୍ରଜା, ରାଜକର୍ମଚାରୀ ସକଳେ ଶ୍ରଦ୍ଧା କରନ୍ତି । ୨
ସ୍ୱଭାବେ ପାଣ୍ଡବେ ସୁଗୁଣ ସମ୍ପନ୍ନ ତଥା ଗୁରୁଇଷ୍ଟ ଭକ୍ତ
ଥିବାରୁ ପ୍ରଜାଏ ସେମାନଙ୍କ ପ୍ରତି ଅନୁରକ୍ତ ଅନୁଗତ । ୩
ମାତ୍ର ପିଲଦିନୁ ଗାନ୍ଧାରୀ ନନ୍ଦନ ଅବାଟରେ ପରିଚାଳିତ
ପିତାମାତା ଅନ୍ଧଅନ୍ଧୁଣୀ ଥିବାରୁ ସ୍ୱେଚ୍ଛାଚାରୀ ସ୍ୱଭାବତଃ । ୪
ରୂପବାନ୍, ଗୁଣବାନ୍, ବିଚକ୍ଷଣ, ସାହସୀ, ଉଚ୍ଚାଭିଳାଷୀ
ଥାଇ ଦୁର୍ଯ୍ୟୋଧନ ସନ୍ଦେହୀ ଥିବାରୁ ଲୋକ ନେହେ ଗଣା ଦୋଷୀ । ୫
ତା ମନେ ବିଶ୍ୱାସ ହୋଇଛି ତାହାକୁ ଚପାଇ ଦିଆଯାଉଛି
ତେଣୁ ପ୍ରତିଶୋଧ ଚିନ୍ତା ପ୍ରତିରୋଧ କରୁଛି ଜୀବନ ମୂର୍ଚ୍ଛି । ୬
ପିତାମହ ଭୀଷ୍ମ ଗୁରୁ ଦ୍ରୋଣାଚାର୍ଯ୍ୟ ଯୁଧିଷ୍ଠିର ସପକ୍ଷରେ
ରାଜ୍ୟ ସିଂହାସନ ପ୍ରାପ୍ତି ପାଇଁ ମତ ଦେଲେ ଇଷ୍ଟ ଅଧିକାରେ । ୭
ସେମାନେ ନିଶ୍ଚିତ ଭାବେ ଜାଣିଛନ୍ତି ଦୁର୍ଯ୍ୟୋଧନ ରାଜା ହେଲେ
କୁରୁ ସାମ୍ରାଜ୍ୟର ପତନ ଘଟିବ ଅଳମିତେ ହସ୍ତିନାରେ । ୮
ତେଣୁ ଯୁଧିଷ୍ଠିର ନୃପତି ହେବାକୁ ପ୍ରଜାଏ କଲେ ସ୍ୱାଗତ
ଧର୍ମ ଅବତାର ରୂପେ ପରିଚିତ ଯୁଧିଷ୍ଠିର ଜ୍ୟେଷ୍ଠ ସୁତ । ୯
ମାତ୍ର ଦୁର୍ଯ୍ୟୋଧନ ରାଜା ପଦେ ଥାଇ କଲେ ଦୃଢ଼ ପ୍ରତିବାଦ
କହିଲେ ମୁଁ ସିଂହାସନ ନ ଛାଡ଼ିବି ହେଉ ପଛେ ଘୋର ଯୁଦ୍ଧ । ୧୦
ସପକ୍ଷ ବିପକ୍ଷ ହୋଇଗଲେ ପ୍ରଜା ଲାଗିଲା ଘୋର କନ୍ଦଳ
ଶାନ୍ତି ଓ ଶୃଙ୍ଖଳା ବିପନ୍ନ ହୋଇଲା ରାଜ୍ୟରକ୍ଷା ଅସମ୍ଭାଳ । ୧୧

ପୂଜନୀୟା ରାଜମାତା ସତ୍ୟବତୀ ରାଜ୍ୟ ଶାସନ କାର୍ଯ୍ୟରେ
ପ୍ରତ୍ୟକ୍ଷ ଭାବରେ ହସ୍ତକ୍ଷେପ କରୁ ନ ଥିଲେ ହେଁ ପରୋକ୍ଷରେ । ୧୨
କୁଳବୃଦ୍ଧ ଭୀଷ୍ମ ଶ୍ରଦ୍ଧେୟ ବିଦୁର ସିଦ୍ଧାନ୍ତ ଗ୍ରହଣ କାଳେ
ତାଙ୍କ ବିଜ୍ଞ ପରାମର୍ଶ ନେଉଥିଲେ ବଂଶ ପରମ୍ପରା ଆଳେ । ୧୩
କୁରୁ କୁଳେ ସେହି କେବଳ ସାମ୍ରାଜ୍ଞୀ ପଦେ ଅଧିଷ୍ଠ ନ ଥିଲେ
ପରନ୍ତୁ ତାହାଙ୍କୁ ମହୀୟସୀ ମାତା ରୂପେ ମାନ୍ୟ କରୁଥିଲେ । ୧୪
ହସ୍ତିନା ରାଜ୍ୟର ଅଧିଷ୍ଠାତ୍ରୀ ଦେବୀ ରୂପେ ପୂଜା ପାଉଥିଲେ
ଅଶୀତି ବରଷ ହୋଇଥିଲେ ମଧ୍ୟ ସଚଳ ସକ୍ରିୟ ଥିଲେ । ୧୫
ବୃଦ୍ଧାବୟସରେ ଯୌବନ କାଳର ସୌନ୍ଦର୍ଯ୍ୟ ପରିସ୍ଫୁଟ
ତାଙ୍କୁ ଏକ ଦେବୀ ଆଭାସ ପ୍ରଦାନ କରେ ମଥାର ମୁକୁଟ ।୧୬
କୌରବ ପାଣ୍ଡବ ମଧ୍ୟରେ ବିବାଦ ହୋଇବାରୁ ଘନୀଭୂତ
ସର୍ବମୟୀ କର୍ତ୍ତ୍ରୀ ରୂପେ ଦୁର୍ଯ୍ୟୋଧନ କଲେ ତାହାଙ୍କୁ ସାକ୍ଷାତ ।୧୭
ରାଜମାତା ସତ୍ୟବତୀଙ୍କୁ ସାକ୍ଷାତ କରି ବୋଲେ ଦୁର୍ଯ୍ୟୋଧନ
ମୋତେ ଅନ୍ଧ ପୁତ୍ର କହି ଭୀମସେନ ଦେଉଅଛି ଅପମାନ । ୧୮
ବୋଲୁଛି ହସ୍ତିନାପୁରେ ଅଧିକାର ରହିଛି ସେମାନଙ୍କର
ସେମାନେ ନୃପତି ତନୟ ଥିବାରୁ ରାଜ୍ୟେ ପୂର୍ଣ୍ଣ ଅଧିକାର । ୧୯
କୁରୁ ସାମ୍ରାଜ୍ୟର ରାଜଧାନୀ ହୋଇ ଥିବାରୁ ହସ୍ତିନାପୁର
ରାଜପୁତ୍ର ଭାବେ ରାଜଧାନୀ ଅଟେ ସେମାନଙ୍କ ପିତୃଘର । ୨୦
ସେମାନଙ୍କୁ ଭୀଷ୍ମ, ବିଦୁର, ଆଚାର୍ଯ୍ୟ କରୁଛନ୍ତି ସମର୍ଥନ
ଆପଣଙ୍କ ପାଶେ ଆସିଅଛି ମୁହିଁ କରମାତା ସମାଧାନ । ୨୧
ସେମାନେ ହସ୍ତିନା ନଗରେ ରହିଲେ ଆମ୍ଭେ ଛାଡ଼ି ଚାଲିଯିବୁ
ସେଥିକି ବିଚାର କର ରାଜମାତା ବିସ୍ତାରି କହିଲି ସବୁ । ୨୨
ସଶ୍ରଦ୍ଧେ କହିଲେ ଦେବୀ ସତ୍ୟବତୀ ସେମାନେ ତୁମ୍ଭର ଭାଇ
ସେମାନଙ୍କୁ କିମ୍ପା ଦେଖି ପାରୁ ନାହିଁ କାରଣ କହ ଫିଟାଇ ? ୨୩
ସିଂହାସନେ ତାଙ୍କ ଅଧିକାର ଅଛି କେ ତାହା କରିବ ମନା
ପିତୃ ଗୃହେ ବାସ କରିବା କ୍ଷମତା ପୁତ୍ରଙ୍କର ଥାଏ ସିନା । ୨୪
ଦୁର୍ଯ୍ୟୋଧନ ବୋଲେ ହସ୍ତିନାପୁରରେ ସେମାନଙ୍କ ସ୍ଥାନ କାହିଁ
ସେମାନେ ପାଣ୍ଡୁଙ୍କ ପୁତ୍ର ନ ଥିବାରୁ ରାଜ୍ୟେ ଅଧିକାର ନାହିଁ । ୨୫

ଦୁର୍ଯ୍ୟୋଧନ କଥା ଶୁଣି ରାଜମାତା କହିଲେ ଆରେ କୁମର !
ତୋ କଥାରୁ ଜଣା ପଡ଼େ ଯେପରି କି ହସ୍ତିନାପୁର ତୋହର ? ୨୬
କିନ୍ତୁ ଜାଣିରଖ ତୁମେ ଭରତଙ୍କ ବଂଶଧର ମଧ୍ୟ ନୁହଁ
କାରଣ ସମ୍ରାଟ ଶାନ୍ତନୁଙ୍କ ପୁତ୍ର ନହିତ ପରେ ତନୟ । ୨୭
ନ ଥିବାରୁ ତାଙ୍କ ବଂଶ ସେହି ଦିନୁ ହୋଇ ଯାଇଛି ବିଚ୍ଛିନ୍ନ
ଏଣୁ ପାଣ୍ଡୁ ପୁତ୍ର ପରି ତୁମ୍ଭ ଦ ବ ଗୋଟି ମଧ୍ୟ ଅଟେ କ୍ଷୀଣ । ୨୮
ଅର୍ଥାତ୍ ତୁମ୍ଭର ଦାବି ପରି ମଧ୍ୟ ରହିଛି ତାଙ୍କର ଦାବି
ତୁମ୍ଭେ କିବା ସିଏ ହସ୍ତିନା ସମ୍ରାଟଙ୍କର ନୁହଁ ପ୍ରତିଛବି । ୨୯
ତୁମ୍ଭେମାନେ ସବୁ ନିୟୋଗ ପ୍ରଥାରେ ମୋ ପୁତ୍ର ବ୍ୟାସଙ୍କ ପୌତ୍ର
ତୁମ୍ଭ ପିତା ଜ୍ୟେଷ୍ଠ ସୁତ ଥାଇ ଅନ୍ଧ ଥିବାରୁ ରାଜ୍ୟ ବଞ୍ଚିତ । ୩୦
ତୁମେ ଅନ୍ଧ ପୁତ୍ର ହେତୁ ସିଂହାସନେ ନାହିଁ ତୁମ୍ଭ ଅଧିକାର
ଏ ରାଜ୍ୟ ପାଣ୍ଡୁର ପାଣ୍ଡୁତନୟଙ୍କ ଅଛି ପୂର୍ଣ୍ଣ ଅଧିକାର । ୩୧
ତାହାର କାରଣ କହୁଅଛି ଶୁଣ ପାଣ୍ଡୁ ଥିଲେ ନିଃସନ୍ତାନ
ବଂଶରକ୍ଷା ପାଇଁ ଭୀଷ୍ମ ପରାମର୍ଶେ ପାଣ୍ଡୁଙ୍କ ଅନୁମୋଦନ । ୩୨
ନିୟୋଗ ପ୍ରଥାନୁସାରେ ପୁତ୍ରଲାଭ କରିବାକୁ ଅନୁମତି
ମୁଁ କୁନ୍ତୀ ମାଦ୍ରୀଙ୍କୁ ଦେଇଣ ଥିବାରୁ ତନୟ ହେଲେ ଉତ୍ପତ୍ତି । ୩୩
ଧର୍ମ, ବାୟୁ, ଇନ୍ଦ୍ର, ଅଶ୍ୱିନୀ, କୁମାର ଔରଷରୁ ପାଞ୍ଚ ପୁତ୍ର
ଜାତ ହୋଇ କୁରୁ କୁଳ ରକ୍ଷା କଲେ ଯୁଧିଷ୍ଠିର ଜ୍ୟେଷ୍ଠ ସୁତ । ୩୪
ଏ କୁରୁ ସାମ୍ରାଜ୍ୟେ ଯଦି ପାଣ୍ଡବଙ୍କ ଭାବ ନାହିଁ ଅଧିକାର
ତେବେ ମୋ ବିଚାରେ ତୁମ୍ଭ ମାନଙ୍କର ନାହିଁ ମଧ୍ୟ ଅଧିକାର । ୩୫
ମୋହ ପରି ଏକ ଦୋଷୀ ନାରୀ ଯୋଗୁଁ ତୁମ୍ଭ ଦୁଇ ଭାଇଙ୍କର
ଏ କୁରୁ ସାମ୍ରାଜ୍ୟେ ଅଧିକାର ଅଛି ଯାହା ମୁଁ କରେ ସ୍ୱୀକାର । ୩୬
ଭରତ ବଂଶର ପବିତ୍ର ସାମ୍ରାଜ୍ୟ ହସ୍ତାନ୍ତର କରିବାର
ଦାୟିତ୍ୱ କେବଳ ଅଟଇ ମୋହର ମାତ୍ର ନୁହଇଁ ତୁମ୍ଭର । ୩୭
ମୁଁ ଆଉ ଗାଙ୍ଗେୟ ଯେ ନିଷ୍ପତ୍ତି ନେବୁ ତାହାହିଁ ଶେଷ ନିଷ୍ପତ୍ତି
ଆମ୍ଭ ବିଚାରରେ ଯୁଧିଷ୍ଠିର ହେବ ହସ୍ତିନାର ନରପତି । ୩୮
ଏ ହସ୍ତିନାପୁରେ ବାସ କରିବ ସେ ତୁମ୍ଭେମାନେ ଇନ୍ଦ୍ରପ୍ରସ୍ଥେ
ରହିବା ଆମ୍ଭର ନିଷ୍ପତ୍ତି ଅଟଇ ଶୁଣାଇ ଦେଲି ମୁଁ ତୋତେ । ୩୯

ଆମ୍ଭେମାନେ ତୁମ୍ଭ ପାଇଁ କିବା ପାଣ୍ଡୁ ତନୟ ମାନଙ୍କ ପାଇଁ
ଅନ୍ୟାୟ କରିବା ଅବସ୍ଥାରେ ନାହୁଁ କହିଲି କଥା ମିଠାଇ । ୪୦
ତୁମ୍ଭ ଉଭୟଙ୍କ ଅଧିକାରକୁ ତ କରୁ ନାହୁଁ ଅସ୍ୱୀକାର
କାରଣ ତୁମର ଜନମ ଜାତକ ପ୍ରାଚୀନ ପରଂପରାର । ୪୧
ଏହା କହି ଦେବୀ କହିଲେ ଏଠାରୁ ବେଗେ ଚାଲିଯାଅ ସୁତ
ଗୁରୁ ଶ୍ରେଷ୍ଠ କଥା ମାନି କାର୍ଯ୍ୟ କର ତୁମ୍ଭର ହୋଇବ ହିତ । ୪୨
ରାଜମାତାଙ୍କର କଟୁ କଥା ଶୁଣି ହତବାକ୍ୟ ଦୁର୍ଯ୍ୟୋଧନ
ଶରାଘାତ ସିଂହ ସମାନ ଆଘାତ ପାଇ ଫେରିଲେ ଉଚ୍ଛଳ । ୪୩
ନଗର ପରମ ବିଶ୍ୱସ୍ତ ମଇଷ ମାମୁଁ, ଦୁଃଶା, ଅଶ୍ୱତ୍ଥାମା
ସଙ୍ଗେ ପରାମର୍ଶ କଲେ ନିଭୃତରେ ବସି ରାଗି ଦୁଷ୍ଟ ଆତ୍ମା । ୪୪
ପିତାମହଙ୍କ ସତ୍ୟବତୀ, ପିତାମହ ଭୀଷ୍ମ ମିଳିତ ଭାବରେ
ଯୁଧିଷ୍ଠିର ସପକ୍ଷେ ମତ ଦେଇଛନ୍ତି ରାଜ୍ୟେ ରାଜା ହୋଇବାରେ । ୪୫
ଏପରି ନିଷ୍ପତ୍ତି ବିପକ୍ଷେ ସେମାନେ କଲେ ଦୃଢ ପ୍ରତିବାଦ
କହିଲେ ସଶସ୍ତ୍ର ସଂଗ୍ରାମ କରିଣ ପାଣ୍ଡବେ କରିବା ବଧ । ୪୬
ଯେଉଁମାନେ ତାଙ୍କୁ ସମର୍ଥନ ଦେବେ ସେମାନଙ୍କ ରକ୍ତେ ହୁରି
ଖେଳିବାକୁ କୁଣ୍ଠା କରିବା ନାହିଁତ ଧରି ତୀକ୍ଷ୍ଣ ତରବାରି । ୪୭
ଆସନ୍ନ ଯୁଦ୍ଧର ସମ୍ଭାବନା ଜାଣି ଅଭିଷେକ ଉତ୍ସବରେ
ଯୁଧିଷ୍ଠିରେ ଡାକି ପିତା ଧୃତରାଷ୍ଟ୍ର ଆଦେଶ ଦେଲେ ଗମ୍ଭୀରେ । ୪୮
" ସକୂଟେ କହିଲେ ରାଜ୍ୟ ଲାଭ ପାଇଁ ପରସ୍ପରେ ନୋହୁ ଯୁଦ୍ଧ
ଭାଗ କରି ଦେଉଅଛି ମୁଁ ରାଜ୍ୟକୁ ଯେପରି ନ ହେବ ଦ୍ୱନ୍ଦ୍ୱ । ୪୯

ଭାରତେ ବିଖ୍ୟାତ ଏ କୁରୁ ବଂଶର ପୁରାତନ ରାଜଧାନୀ
ଯମୁନା କୂଳରେ ଖାଣ୍ଡବ ପ୍ରସ୍ଥରେ ଥିଲା ଆରେ ପୁତ୍ରମଣି । ୫୦
ସେଠାରେ ଆମ୍ଭର ପୂର୍ବ ବଂଶଧର କରୁଥିଲେ ରାଜପଣ
ନହୁଷ, ଯଯାତି ଆଦି ନୃପତିଙ୍କ ରହିଅଛି କୀର୍ତ୍ତିମାନ । ୫୧
ପୂର୍ବ ପୁରୁଷଙ୍କ କୀରତୀ ଥିବାରୁ ସେହିଠାରେ ତୁମ୍ଭେମାନେ
ରାଜତ୍ୱ କରିଣ ପ୍ରଜା ପାଳନ କର ଆମ୍ଭର ବଚନେ । ୫୨
ହସ୍ତିନା ପୁରରେ ପୁତ୍ର ଦୁର୍ଯ୍ୟୋଧନ ରହିବ ହୋଇ ନୃପତି
ଏହି ମୋ ବଚନରେ ଭାଗ ବାଣ୍ଟି ଦେଲି ବେନି ପକ୍ଷ ହୁଅ ଶାନ୍ତ । ୫୩

ଜ୍ୟେଷ୍ଠ ତାତ କଥା ଶୁଣି ଯୁଧିଷ୍ଠିର ସମ୍ମତି ପ୍ରଦାନ କଲେ
ମାତ୍ର ଭୀମ, ପାର୍ଥ ପ୍ରତିବାଦ କରି ପ୍ରତିକ୍ରିୟା ପ୍ରକାଶିଲେ । ୫୪
ଜନପଦ ଠାରୁ ବହୁତ ଦୂରରେ ଘନ ବନ ପ୍ରଦେଶରେ
କିପରି କୁଟୁମ୍ବ ପୋଷଣ ରହିବୁ ଆଜ୍ଞା ଦିଅ ଅନ୍ୟାୟରେ ? ୫୫
ଭାଇ ଭାଗ ନାମେ ଖାଣ୍ଡବ ପ୍ରସ୍ଥକୁ ପଠାଇ ଦେଉଛ ଦଣ୍ଡ
ନିର୍ବାସନ ଦଣ୍ଡ ଠାରୁ ଏ ଅଧିକ ଶୁଣି ଘୂରିଯାଏ ମୁଣ୍ଡ । ୫୬
ଅନୁର୍ବର, ଅନୁନ୍ନତ, ଜନାକୀର୍ଣ୍ଣ ଅରଣ୍ୟରେ ପରିପୂର୍ଣ୍ଣ
କର୍ଷଣୋପଯୋଗୀ ନୁହଇଁ ସେ ସ୍ଥାନ ନ ହେବ ଶସ୍ୟ ଉତ୍ପନ୍ନ । ୫୭
ହିଂସ୍ରପ୍ରାଣୀ ପୂର୍ଣ୍ଣ ନିବିଡ଼ କାନନ କଣ୍ଟକିତ, କଙ୍କରିତ
ସେ ସ୍ଥାନରେ ଜନ ବସତି କରିବା ନୁହେଁ କେବେ ସମୁଚିତ । ୫୮
ମାତ୍ର ସେମାନଙ୍କ ଆପତ୍ତିକୁ ଅନ୍ଧ କର୍ଣ୍ଣରେ ଶୁଣିଲେ ନାହିଁ
ନିଷ୍ଠୁର ହୃଦୟେ କହିଲେ ଆଦେଶ ବଦଳି ପାରିବ ନାହିଁ । ୫୯
କୂଟେ ଧୃତରାଷ୍ଟ୍ର ଭ୍ରାତୃ ବିଦ୍ରୋହର ଗତିରୋଧ କରି ଦେଇ
ସାମୟିକ ଭାବେ ସମାଧାନ କଲେ କଳି ମଞ୍ଜି ପୋତିଦେଇ । ୬୦
ମାତ୍ର ଧୃତ ରାଷ୍ଟ୍ର-ଙ୍କର ଏ ଅନ୍ୟାୟ ଅବିଚାର କଥା ଦେଖି
ଭୀଷ୍ମ, ଦ୍ରୋଣ କୃପ, ଭୂରି, ସତ୍ୟବତୀ ସକଳେ ହେଲେ ଅସୁଖୀ । ୬୧
ଅଭିଷେକୋତ୍ସବ ନିର୍ବାସନ ଦଣ୍ଡ ରୂପରେ ପରିଗଣିତ
ଭ୍ରାତା, ମାତା, ପତ୍ନୀ, ପ୍ରତିବାଦ ସତ୍ତ୍ୱେ ମାନିନେଲେ ଧର୍ମସୁତ ।୬୨
ପାଣ୍ଡବଙ୍କ ପ୍ରତି ଅନ୍ୟାୟ ବିଚାର ସମ୍ବାଦ ପାଇ ଶ୍ରୀକୃଷ୍ଣ
ହସ୍ତିନାକୁ ଆସି ବୁଝାଇ କହିଲେ ଦୁଃଖକର ନାହିଁମନ । ୬୩
ହସ୍ତିନା ସମାନ ନରକ ପୁରୀରେ ରାଜତ୍ୱ କରିବାପେକ୍ଷା
ଅନ୍ୟତ୍ର ନୂତନ ସାମ୍ରାଜ୍ୟ ସ୍ଥାପନ କର ନକରି ପ୍ରତୀକ୍ଷା । ୬୪
ସଖା ଶ୍ରୀକୃଷ୍ଣଙ୍କ ପରାମର୍ଶ ପାଇ ପାଣ୍ଡୁଙ୍କ ପାଞ୍ଚ କୁମର
ଖାଣ୍ଡବ ପ୍ରସ୍ଥକୁ ଯାତ୍ରା କରିବାକୁ ନଗରୁ ହେଲେ ବାହାର । ୬୫
ନିର୍ଦ୍ଧାରିତ ରାଜ ସମ୍ପଦରୁ ଅଧା ଶସ୍ୟ, ସ୍ୱର୍ଣ୍ଣ, ହସ୍ତି, ଅଶ୍ୱ
ଗାଭୀ ଓଟ ଆଦି ପ୍ରଦାନ କରିଲେ ଧୃତରାଷ୍ଟ୍ର ନରଈଶ । ୬୬
ଅଧାରୁ ଅଧିକ ହସ୍ତିନା ନିବାସୀ ସାଥିରେ କଲେ ଗମନ
ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଶୁଦ୍ର ଭୁଲେ ଛତିଶ ପାଟକ ଗଣ । ୬୭

ସାମରିକ ସାଜ ସରଞ୍ଜାମ ସଙ୍ଗେ ଚତୁରଙ୍ଗ ସୈନ୍ୟ ବଳ
ମଲ୍ଲ, ଧନୁର୍ଦ୍ଧର, କବି, କଳାକାର ଗୁରୁ, ବିଦ୍ୱାନ ସକଳ । ୬୮
ପଣ୍ଡିତ, ବ୍ରାହ୍ମଣ, ଜ୍ୟୋତିଷ, ଗଣକ, ବନ୍ଧୁ, କୁଟୁମ୍ବ, ସ୍ୱଜନ
ଆସବାବପତ୍ର, ପିଲାଛୁଆ ଘେନି, ଚଳିଲେ ଅନେକ ଜନ । ୬୯
ପିଠିଆ ବଳଦେ ଧନଦ୍ରବ୍ୟ ସଙ୍ଗେ ଘେନି ଖାଦ୍ୟଦ୍ରବ୍ୟମାନ
ଶଗଡ଼ ଗାଡ଼ିରେ ବସି କେତେ ଗଲେ କେତେକ ପାଦେ ଚାଲିଣ । ୭୦
ଅନେକ ସମ୍ପଦ, ଘେନି ଧର୍ମରାଜ ଚଳିଲେ ଖାଣ୍ଡବପ୍ରସ୍ଥ
ମନେ ହୁଏ ଏକ ଚଳନ୍ତ ସାମ୍ରାଜ୍ୟ ଯାତ୍ରା କରେ ବନପଥ । ୭୧
ଖାଣ୍ଡବପ୍ରସ୍ଥରେ ପହଞ୍ଚିଣ ସର୍ବେ ଜଙ୍ଗଲ କରି କର୍ତ୍ତନ
କଣ୍ଟକିତ ଭୂମି ପରିଷ୍କାର କରି ବସତି କଲେ ସ୍ଥାପନ । ୭୨
ଅଳ୍ପ କାଳ ମଧ୍ୟେ ସେ ଖାଣ୍ଡବପ୍ରସ୍ଥ ଅଭିନବ ନଗରଭାବେ
ପଞ୍ଚ କଟକରେ ଖ୍ୟାତି ଅରଜିଲା ଦେଖି ଚକିତ କୌରବେ । ୭୩
କୃଷ୍ଣ ବାସୁଦେବ ପରାମର୍ଶ ପାଇ ଧର୍ମରାଜ ଯୁଧିଷ୍ଠିର
ଅକ୍ଳାନ୍ତ ଶ୍ରମରେ ଜନପଦ ରୂପେ ଗଢ଼ିଲେ ରମ୍ୟ ନଗର । ୭୪
ସେ ରମ୍ୟ ନଗରୀ ସାଗର ସାଦୃଶ୍ୟ ପରିଖା ପରିବେଷ୍ଟିତ
ଇନ୍ଦ୍ରଦ୍ୟୁମ୍ନ ସମ ଗମ୍ଭୀର ତଡ଼ାଗ ଶୁଭ୍ର ସାରସେ ଶୋଭିତ । ୭୫
ପାଣ୍ଡୁ ମେଘ ବର୍ଣ୍ଣ ସମାନ ଗଗନ ତଳ ବ୍ୟାପିଣୀ ମନ୍ଦିର
ଶ୍ରେଣୀ ଶ୍ରେଣୀ ହୋଇ ଶୋଭାପାଉଅଛି କପାଟ ବିସ୍ତୃତ ଦ୍ୱାର । ୭୬
ନଗ୍ର ମଧ୍ୟସ୍ଥଳେ ରାଜାଙ୍କ ନବର ଅସ୍ତ୍ରାଗାର, ସୈନ୍ୟାଗାର
ନଭଷ୍ଟୁମ୍ବୀ ଦୁର୍ଗ ଦେଖି ଶତ୍ରୁପକ୍ଷ ଦୂରୁ କରନ୍ତି ଜୁହାର । ୭୭
ଅଟ୍ଟାଳିକା ପୁଞ୍ଜେ ଶୋଭା ପାଉଅଛି ସୁପ୍ରଶସ୍ତ ରାଜପଥ
ସକଳ ଭାଗରେ ବିଭକ୍ତ ହୋଇଛି ଯୋଜନାବଦ୍ଧେ ନିର୍ମିତ । ୭୮
ଦିଲ୍ଲୀ ରାଜଧାନୀ ପ୍ରାପ୍ତ ଶୋଭାବନ ଦିଶଇ ଖାଣ୍ଡବ ନଗ୍ର
ତହିଁ ବସବାସ କରିବାକୁ ଲୋକେ ଛୁଟିଲେ ହୋଇଣ ବ୍ୟଗ୍ର । ୭୯
ପଞ୍ଚ କଟକରେ ସମୃଦ୍ଧ ଶାଳିନୀ ନଗ୍ର ନାମେ ହେଲା ଖ୍ୟାତି
ଧନ ଓ ସମ୍ପଦ ବିଭବ, ଐଶ୍ୱର୍ଯ୍ୟେ ବଳିଲା ଅମରାବତୀ । ୮୦
ସଙ୍ଗୀତ, ସାହିତ୍ୟ, କଳା, ନୃତ୍ୟ, ଗୀତ ଜ୍ଞାନ, ବିଜ୍ଞାନେ ମଣ୍ଡିତ
ଶୌର୍ଯ୍ୟ, ବୀର୍ଯ୍ୟପୂର୍ଣ୍ଣ ବିଦ୍ୟା ବୁଦ୍ଧି, ଜ୍ଞାନ, ରଣକୌଶଳେ ସଂସ୍କୃତ । ୮୧

ରଥୀ ମହାରଥୀ ସୈନ୍ୟ ସେନାପତି ଦେଖି ଶତ୍ରୁଗଣେ ଭୀତ
ଦାନ, ପୁଣ୍ୟ ଧର୍ମ କାର୍ଯ୍ୟ ସମ୍ପାଦନେ ରାଜାପ୍ରଜା ସଦାରତ ।୮୨
ବେଦ ପଠନରେ ବଟୁଗଣେ ରତ ଅଗ୍ନିରେ ଢ଼ାଳନ୍ତି ଘୃତ
ସେ ନଗ୍ରରେ ସୁଖେ ବାସ କଲେ ଲୋକେ ସ୍ୱଦେଶ, ବିଦେଶାଗତ ।୮୩
ବେଦ ବିଶାରଦ, ବିଦ୍ୱାନ, ପଣ୍ଡିତ, ବିଦୂଷକ, ନଟନଟୀ
କବି, କଳାକାର, ଚିତ୍ର ଚିତ୍ରକର, ହସ୍ତଶିଳ୍ପୀ ପରିପାଟି ।୮୪
ରାଜନୀତି ପ୍ରାଜ୍ଞ ଅର୍ଥନୀତି ବିଜ୍ଞ ଭାବୁକ, ଭାବ ବିଦଗ୍‌ଧ
ପ୍ରତିଭା ଅନ୍ୱିତ ବହୁ ଦେଶାନ୍ତରୀ ନଗ୍ର ଶୋଭା ଦେଖି ମୁଗ୍‌ଧ ।୮୫
ସୁରମ୍ୟ ନଗରୀ ନିର୍ମାଣ କୌଶଳ ଦେଖି କଲେ ଧନ୍ୟ ଧନ୍ୟ
ରାଜା ପ୍ରଜା ମିଶି ଗଢ଼ିଛନ୍ତି ନଗ୍ର କରି ବହୁ ଶ୍ରମଦାନ ।୮୬
ଧର୍ମ ମାର୍ଗେ ଥାଇ କର୍ମେ ମନ ଦେଇ ନିର୍ମାଣିଲେ ନବରାଜ୍ୟ
ଟାଙ୍ଗରା ଭୂଇଁରେ ପରିଶ୍ରମ କରି ଫୁଟାଇଲେ ଫୁଲସଜ ।୮୭
ଜ୍ୟେଷ୍ଠ ପୁନ ଭାବେ ପଞ୍ଚ କଟକରେ ଧର୍ମରାଜା ହେବା କଥା
ମାତ୍ର ଜ୍ୟେଷ୍ଠ ପିତା ଅନ୍ୟାୟ ବିଚାରେ ପାଣ୍ଡୁ ତନୟେ ହିନସ୍ତା ।୮୮
ଯୁଦ୍ଧ, ରକ୍ତପାତ ଏଡ଼ାଇବା ପାଇଁ ଶାନ୍ତିପ୍ରିୟ ଯୁଧିଷ୍ଠିର
ଭାଇଭାଗ ପାଇ ଖାଣ୍ଡବପ୍ରସ୍ଥରେ ନିର୍ମାଣିଲେ ଦିବ୍ୟପୁର ।୮୯
ନଗରବାସୀଙ୍କ ସ୍ୱାସ୍ଥ୍ୟ ସେବା ପାଇଁ ସ୍ଥାପିଲେ ଚିକିତ୍ସାଳୟ
ବିଦ୍ୟାର୍ଜ୍ଜନ ପାଇଁ ନଗ୍ର ପେଣ୍ଠ ସ୍ଥାନେ ବସାଗଲା ବିଦ୍ୟାଳୟ ।୯୦
ନିରକ୍ଷର ଜନେ ସାକ୍ଷର ନିମନ୍ତେ ସ୍ୱତନ୍ତ୍ର ବ୍ୟବସ୍ଥା କଲେ
ମାଗଣାରେ ଶିକ୍ଷା ଦେବାକୁ ରାଜ୍ୟରେ ନୀତି ପ୍ରଚଳନ କଲେ ।୯୧
ନାରୀ ଶିକ୍ଷା ପାଇଁ କୃଷ୍ଣାଙ୍କ ଅଧୀନେ ଖୋଲାଗଲା ଶିକ୍ଷାନୁଷ୍ଠାନ
ଅବସର କାଳେ ଗ୍ରାମ୍ୟ ନାରୀଗଣେ କରନ୍ତି ବିଦ୍ୟା ଅର୍ଜ୍ଜନ ।୯୨
ବେକାର ଯୁବକେ ନିଯୁକ୍ତି ଦେବାକୁ କଲେ କର୍ମ ସଂସ୍ଥାନ
ବୈଷୟିକ ଶିକ୍ଷା ପ୍ରବର୍ତ୍ତନ କରି ଶିକ୍ଷା ଦେଲେ ହସ୍ତକର୍ମ ।୯୩
ଶିକ୍ଷିତ ଯୁବକ ଆତ୍ମ ନିଯୁକ୍ତିକୁ ରାଜେ୍ୟ କଲେ ପ୍ରୋତ୍ସାହିତ
ସ୍ୱଳ୍ପ ସୁଧେ ପୁଞ୍ଜି ଯୋଗାଇବା ସଙ୍ଗେ ହୟ କଲେ ଉତ୍ପାଦିତ ।୯୪
ଗ୍ରାମ୍ୟ ଶିଳ୍ପ ପ୍ରତି ଆଗ୍ରହ ବଢ଼ିଲା ଯୁବକେ କଲେ ଆଦର
ଗ୍ରାମ୍ୟ ଅର୍ଥନୀତି ସ୍ୱଚ୍ଛଳ ସହିତ ଗ୍ରାମ୍ୟ ଶିଳ୍ପର ପ୍ରସାର ।୯୫

ଦୁଃଖୀ ରଙ୍କୀ ବାସ କରିବା ନିମନ୍ତେ ନିର୍ମିତ ନବ ନିବାସ
ଜନଜାତିଗଣେ କଲ୍ୟାଣ ଆବାସେ ମାଗଣାରେ କଲେ ବାସ । ୯୬
ପାନୀୟ ଜଳର ବ୍ୟବସ୍ଥା ନିମନ୍ତେ କୂପ, ତଡ଼ାଗ, ଖନନ
ଭୂମିତଳ ଜଳ ବନ୍ଦଯୋଗେ ରାଜ୍ୟ ଫୁଲ ଫଳେ ପରିପୂର୍ଣ୍ଣ । ୯୭
କୃଷିର ଉନ୍ନତି ନିମନ୍ତେ ରାଜ୍ୟରେ କରିଲେ ଜଳ ସେଚନ
ଗିରି ଶିଖରରେ ଜଳଧାର ବାନ୍ଧି ଜଳ ଭଣ୍ଡାର ନିର୍ମାଣ । ୯୮
କୃଷକ ମଙ୍ଗଳ ନିମନ୍ତେ ରାଜ୍ୟରେ ସୃଷ୍ଟି କଲେ ଶସ୍ୟାଗାର
ଧୋଇ. ମରୁଡ଼ିରେ ଯୋଗାଇଣ ଦେଲେ ବିହନ ସହିତ ସାର । ୯୯
ସ୍ୱତନ୍ତ୍ର ଖମାର ମାନ ସୃଷ୍ଟି କଲେ ଉନ୍ନତ ବିହନ ପାଇଁ
କୃଷି ବୈଜ୍ଞାନିକେ ଗବେଷଣାରତ ଅଧିକ ଅମଳ ପାଇଁ । ୧୦୦
ଅଧିକ ଅମଳକ୍ଷମ ହେଲେ ବୀଜ କୃଷୀ ହେବେ ଲାଭବାନ
କୃଷି ବହୁଳ ଏ ଭାରତ ବର୍ଷରେ ସୁଲଭେ ମିଳିବ ଅନ୍ନ । ୧୦୧
ଗୋଜାତି ଉନ୍ନତି ନିମନ୍ତେ ଗୋଚର ତୃଣଭୂମି ହେଲା ସୃଷ୍ଟି
ତୃଣଭୂମି ପାଖେ ନୂତନ ଜଙ୍ଗଲ ନିୟମେ କରିଲେ ସୃଷ୍ଟି । ୧୦୨
ବନ ବୃଦ୍ଧି ହେବୁ ବୃଷ୍ଟିପାତ ଢିଠି ସୃଷ୍ଟି ହେଲା ଶସ୍ୟ ପୂର୍ଣ୍ଣ
ଦୁଧଭାତ ଖାଇ ଆନନ୍ଦିତ ଲୋକେ ସୁଖେ କଟାଇଲେ ଦିନ । ୧୦୩
ଦୁର୍ଭିକ୍ଷ, ମଡ଼କ ବନ୍ୟା ବାତ୍ୟା କମ୍ପ ଅନାବୃଷ୍ଟି, ଅତିବୃଷ୍ଟି
ପ୍ରାକୃତିକ ବିପର୍ଯ୍ୟୟ ନ ବାଧିଲା ପ୍ରଜାଏ ରହିଲେ ଶାନ୍ତ । ୧୦୪
ଦୁର୍ବିପାକୁ ପ୍ରଜାଗଣଙ୍କୁ ଉଦ୍ଧାର ଦେବାକୁ କ୍ଷତି ପୂରଣ
ନକୁଳ କୁମାର ଦାୟିତ୍ୱ ଅଧୀନେ ବିଭାଗ ହେଲା ତିଆରି । ୧୦୫
ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ସୁଲଭ ମୂଲ୍ୟରେ ବିକ୍ରୟ ପାଇଁ
ରାଜାଙ୍କ ପକ୍ଷରୁ ଭଣ୍ଡାର ଖୋଲିଣ ପଦାର୍ଥ ଦେଲେ ଯୋଗାଇ । ୧୦୬
ଭିକ୍ଷା, ଶୋଷୀ ପାଇଁ ଅନ୍ନଛତ୍ର ମାନ ରାଜ୍ୟରେ କଲେ ସ୍ଥାପନ
ଅକର୍ମଣ୍ୟ ପାଇଁ ପଡ଼ର ବ୍ୟବସ୍ଥା ବାର୍ଦ୍ଧକ୍ୟକୁ ଭତ୍ତାଦାନ । ୧୦୭
ଅନାହାରେ ଯେହ୍ନେ ନ ମରିବେ ଲୋକେ ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି
ବିକଳାଙ୍ଗେ ଖୋଜି ଅନ୍ନବସ୍ତ୍ରମାନ ରାଜକୋଷୁ ଦେଲେ ବାଣ୍ଟି । ୧୦୮
ପ୍ରଜାଙ୍କ ପାଖରୁ ଉଚିତ ରାଜସ୍ୱ ସଂଗ୍ରହ କରି ରାଜନ
ରାଜକୋଷେ ତାହା ସଞ୍ଚୟ କରିଲେ ରାଜ୍ୟ ଶାସନ କାରଣ । ୧୦୯

ଆପଣାର ସୁଖ ସ୍ୱାଚ୍ଛନ୍ଦକୁ ଭୁଲି ସାଇତି ରଖିଲେ ଧନ
ବିଳାସ ବ୍ୟସନ ଠାରୁ ଦୂରେ ରହି ମିତବ୍ୟୟେ ଦେଲେ ମନ । ୧୧୦

ପ୍ରଜାଙ୍କ ଗୁହାରି ଶୁଣିବା ନିମନ୍ତେ ରାଜାଙ୍କ ଦ୍ୱାର ଉନ୍ମୁକ୍ତ
ପ୍ରିୟାପ୍ରିୟ ଅବା ପକ୍ଷପାତମୁକ୍ତ ନ ହୋଇଲା ଅନୁସୃତ । ୧୧୧

ଲୋକଙ୍କ ଗୃହଦା ଅଟେ ଭିନ୍ନଭିନ୍ନ ତାହା କରିବାକୁ ପୂର୍ଣ୍ଣ
ବର୍ତ୍ତୁଳ ବୁଦ୍ଧିରେ ଭେଦ କରିବାକୁ ପଞ୍ଚଭ୍ରାତା ଯତ୍ନବାନ । ୧୧୨

ଜନମ କାଳରୁ ଦୁଃଖେ କଷ୍ଟେ ଦିନ କଟାଉଥିବାରୁ ପୂର୍ବେ
ନିଜ ସୁଖ ଠାରୁ ପ୍ରଜାଙ୍କର ସୁଖ ଶ୍ରେୟ ମଣୁଥାନ୍ତି ସର୍ବେ । ୧୧୩

ସେବା ଧର୍ମ ଦ୍ୱାରା ପ୍ରଜାଙ୍କ ହୃଦୟ ଜୟ କଲେ ଧର୍ମରାୟେ
ପ୍ରଜାନୁରଞ୍ଜନ ଶରଣ ବତ୍ସଳ ନାମେ ଶୁଭେ ଜୟେଜୟେ । ୧୧୪

ଯମୁନା କୂଳରେ ସ୍ଥାପିତ ସେ ନଗ୍ର ଧର୍ମପୁରୀ ନାମେ ଖ୍ୟାତ
ଭାରତର କଳା ସଂସ୍କୃତି ସାହିତ୍ୟ ପୀଠରେ ପରିଗଣିତ । ୧୧୫

ଦୁଷ୍ଟ ଜରାସନ୍ଧ ଦୌରାତ୍ମ୍ୟରୁ ରକ୍ଷା ପାଇବାକୁ ରାମକୃଷ୍ଣ
ମଥୁରାକୁ ତେଜି ଦ୍ୱାରକା ନାମରେ ରାଜ୍ୟେକ ଯେପରି ସ୍ଥାପନ ।୧୧୬

ସେପରି ପାଣ୍ଡବେ ଦୁଷ୍ଟ କୌରବଙ୍କୁ ତେଜି ଖାଣ୍ଡବପ୍ରସ୍ଥରେ
ନୂତନ ସାମ୍ରାଜ୍ୟ ଗଠନ କରିଣ ବାସ କଲେ ନିର୍ଭୟରେ । ୧୧୭

ଦ୍ୱାରକା ରାଜ୍ୟର ଯାଦବ ମାନଙ୍କ ଉପାର୍ଜିତ ଧନରତ୍ନ
ଏ ଧର୍ମ ନଗରୀ ନିର୍ମାଣ ନିମନ୍ତେ ଯୋଗାଇ ଦେଇଲେ କୃଷ୍ଣ । ୧୧୮

ବର୍ତ୍ତମାନ ଆମେ ସମସ୍ତେ ମିଶିଣ ଗଢ଼ିଲେ ଖାଣ୍ଡବପ୍ରସ୍ଥ
ଏହା ଅଟେ ଆମ୍ଭ ମାନଙ୍କ ନିଜସ୍ୱ ଅରଜିଲା ରାଜ୍ୟ ବିତ୍ତ । ୧୧୯

ଏହା ମନୁଷ୍ୟଙ୍କୁ ଅଧର୍ମ ଅନ୍ୟାୟୁ ରକ୍ଷା କରି ଦେବ ଶାନ୍ତି
ଏହି ଠାରୁ ଧର୍ମ ଯୁଦ୍ଧର ଆହ୍ୱାନ ଦେବେ ଧର୍ମ ନରପତି । ୧୨୦

ଧର୍ମ ନୃପତିଙ୍କ ଅଭିଷେକୋତ୍ସବ ଯୋଗାଡ଼ ହେଲା ବିଧାନେ
ବରଣ ହୋଇଣ ଆସିଲେ ରାଜନେ ସାଧୁ ଋଷି ବିପ୍ର ଗଣେ । ୧୨୧

ଏକଶ ବାଇଶି ପଦରେ ଅଧ୍ୟାୟ ଏଠାରେ ହୋଇଲା ଶେଷ
ଶ୍ରୀକୃଷ୍ଣ ଚରିତ ମାନସ ସଙ୍ଗୀତ ରଚିଗାଏ ବୃନ୍ଦାବନ । ୧୨୨

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ପାଣ୍ଡବମାନଙ୍କ ଖାଣ୍ଡବ ପ୍ରସ୍ଥରେ
ରାଜଧାନୀ ନିର୍ମାଣ ଆଖ୍ୟାନେ ନାମ ଏକ ବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

**ବୋଲି —**

ଜଗନ୍ନାଥ ହେ ! ଜଗତ ଜନଙ୍କୁ ଉଦ୍ଧାର
ଜଞ୍ଜାଳ ଜାଲରେ ଜଡ଼ ଛଟ ପଟ
ଜୀବନ ନ ଯାଏ ମୋହର ॥ ଘୋଷା ॥
ନାଶି ବହୁ ଦୁଃଖ ହେଲ କି ବିମୁଖ
ଦୁଃଖ ବନ୍ଧୁ ନାମ ତୋହର
ଦୀନ ଦୁଃଖୀ କେତେ ଉଦ୍ଧାର କରିଛ
ଆଜି ନ ଶୁଣ ଡ଼ାକ ମୋର ॥ ୧ ॥
ନାହିଁ, ନାସା, ନେତ୍ର, ପାଦ, ପାଣି କିଛି
ଖଣ୍ଡିଆ ମାଦଳ ଶରୀର
ଜଗତର ହିତେ ବନେ କରି ଅଛୁ
ଦାରୁବ୍ରହ୍ମ ତୋ କଳେବର । ୨
ଆହେ ଦାରୁବ୍ରହ୍ମ ଘେନ ମୋ ପ୍ରଣାମ
ଦୂର କର ଦୁଃଖ ଦାସର
ଚରଣ ତଳରେ ଶରଣ ରଖନ୍ତୁ
ହେ ଶରଣଦ ସର୍ବହର । ୩

—●—

# ଦ୍ୱାବିଂଶ ଅଧ୍ୟାୟ

## ଖାଣ୍ଡବପ୍ରସ୍ଥରେ ଯୁଧିଷ୍ଠିରଦେବଙ୍କ ଅଭିଷେକ

( ବୃତ - ବଙ୍ଗଳାଶ୍ରୀ )

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ କର ହୋ ବିଦୁଷଜନ
ଖାଣ୍ଡବପ୍ରସ୍ଥରେ ରାଜା ଅଭିଷେକ ଯୋଗାଡ଼ କଲେ ଶ୍ରୀକୃଷ୍ଣ । ୧
ସମସ୍ତ ଦାୟିତ୍ୱ ପ୍ରଦାନ କରିଲେ ପୂଜ୍ୟ ପିତାମହ ଭୀଷ୍ମ
ଆଦ୍ୟେ ନିମନ୍ତ୍ରଣ କଲେ ସେ ବ୍ୟାସଙ୍କୁ ସୋମବଂଶୀ ମହାମାନ୍ୟ । ୨
ଢୁଙ୍ଗୁରୁ ପିଟାଇ ଘୋଷଣା କରିଲେ ରାଜ୍ୟରେ ଏ ସୁସମ୍ବାଦ
ଯୁଧିଷ୍ଠିରଦେବ ଅଭିଷେକ ବାର୍ତ୍ତା ପାଇ ପ୍ରଜାଏ ଆନନ୍ଦ । ୩
ପ୍ରଚ୍ଛରିତ ହେଲା କୃଷ୍ଣଦ୍ୱୈପାୟନ ଆସିବେ ଖାଣ୍ଡବପ୍ରସ୍ଥ
ଅଭିଷେକୋତ୍ସବେ ନିମନ୍ତ୍ରିତ ହୋଇ କରିବେ ସେ ପୌରହିତ୍ୟ । ୪
ବିପ୍ରଙ୍କ ସଭାରେ ଯୋଗଦାନ କରି ସଙ୍ଗେ ଦେବେ ପୂର୍ଣ୍ଣାହୂତି
ଅଭିଷେକ ସଙ୍ଗେ ପ୍ରତିଷ୍ଠା ଉତ୍ସବ ପାଳିବେ ଖଣ୍ଡାବପତି । ୫
ଉତ୍ସବର ପୂର୍ବଦିନ ରଜନୀରେ ଶି ଷ୍ୟ ଗ ଣ ଙ୍କ ସହିତ
ପୁତ୍ର ଶୁକଦେବ ଘେନି ବ୍ୟାସଦେବ ନଗରପ୍ରାନ୍ତେ ଉପସ୍ଥିତ । ୬
ପଚ୍ଛେଣ୍ଟି ଆଣିବା ପାଇଁ ଭୀଷ୍ମଦେବ ଘେନି ରାଜଗୁରୁ ଧୌମ୍ୟ
ବିଦୁର ଓ ଦ୍ରୋଣ ପାଣ୍ଡୁ ପାଞ୍ଚ ସହିତ କଲେ ଗମନ । ୭
ସହସ୍ର ସଂଖ୍ୟାରେ ପ୍ରଜାଏ ଚଳିଲେ ଲାଗିଲା ଜନ ଗହଳି
ହରିବୋଲ ହୁଳହୁଳି ଶବ୍ଦରେ ସ୍ଥାନ ପଡ଼ିଲା ଉଚ୍ଛୁଳି । ୮
ଧାର୍ମିକାପୂ କୃଷ୍ଣ ଶରୀର ବିଶିଷ୍ଟ ଆକର୍ଷଣୀୟ ବ୍ୟକ୍ତିତ୍ୱ
ଶୁକ୍ଳ କେଶ ଜଟା ହିମଗିରି ଶୃଙ୍ଗ ପ୍ରାୟ ତୁଷାର ଆବୃତ୍ତ । ୯
ଲଲାଟେ ତ୍ରିଧାର ବିଭୂତିର ରେଖା ତ୍ରିତାପ କରେ ଦୂରିତ
ଦୟାର୍ଦ୍ର, ଉଜ୍ଜ୍ୱଳ ନୟନ ଯୁଗଳ ଜ୍ୟୋତିରାଶି ବିକରିତ । ୧୦
ଯେଉଁ, କୁରୁକ୍ଷେତ୍ରେ ସରସ୍ୱତୀ ନଦୀ ସାମନ୍ତ ପଞ୍ଚକ ହ୍ରଦ
ପ୍ଲାବିତ କରିଣ ଅନ୍ତଃସ୍ରୋତା ହୋଇ ପ୍ରବାହିତ ଅପ୍ରମାଦ । ୧୦

ସେଠାରେ ଆଶ୍ରମ ସ୍ଥାପନ କରିଣ କରୁଛନ୍ତି ଅବସ୍ଥାନ
ଶତଶତ ଶିଷ୍ୟ ତାହାଙ୍କ ଅଧୀନେ ବେଦବିଦ୍ୟା ଅଧ୍ୟୟନ । ୧
ଜଗଦ୍‌ଗୁରୁ ରୂପେ ବିଖ୍ୟାତ ଜଗତେ ବିଦ୍ୟା କରି ବିତରଣ
ଅଧ୍ୟୟନ ଶେଷେ ଶିଷ୍ୟଙ୍କୁ ପଠାଇ କରିଥାନ୍ତି ବିଦ୍ୟା ଦାନ । ୧୨
ଆର୍ଯ୍ୟାବର୍ତ୍ତ ସୀମା ଅତିକ୍ରମ କରି ଆଧ୍ୟାତ୍ମିକ ମୂଲ୍ୟବୋଧ
ପୃଥିବୀର କୋଣେ କୋଣେ ପ୍ରସାରିତ ଗୀତା, ଭାଗବତ, ବେଦ ।୧୩
ଜଳ-ସ୍ଥଳ-ବନ ପଥେ ବହୁସ୍ଥାନ ଭ୍ରମଣ କରିଣ ବ୍ୟାସ
ହିମାଳୟ ଠାରୁ କୁମାରିକାଯାଏ ଶୁଭଇ ବେଦ ନିର୍ଘୋଷ । ୧୪
ବ୍ୟାସଙ୍କ ସହିତ ପୁତ୍ର ଶୁକଦେବ ଆସିଛନ୍ତି ହୋଇ ପ୍ରୀତ
ଦୀର୍ଘକାୟ ବପୁ, ଶ୍ମଶ୍ରୁହୀନ ମୁଖ, ମସ୍ତକ ପୁଣି ଲଣ୍ଡିତ । ୧୫
ଦୀପ୍ତିମନ୍ତ ଚକ୍ଷୁ ଦୁଇଟିରୁ ଜ୍ୟୋତି ହେଉଅଛି ବିକଶିତ
ଏକହସ୍ତେ ଦଣ୍ଡ ଆନହସ୍ତେ ଦୁଇ ଗୋଟି ଜଳପାତ୍ର ଧୃତ । ୧୬
ଏକ ନିଜ ପାଇଁ ଅନ୍ୟଟି ପିତାଙ୍କ ନିମନ୍ତେ ଧରିଅଛନ୍ତି
କଟିଦେଶେ ମୃଗ ଚର୍ମ ପରିଧାନ ମଣ୍ଡିତ ଅଙ୍ଗେ ବିଭୂତି । ୧୭
ଗୁରୁଦେବଙ୍କର ଦୁଇ ଶ୍ରେଷ୍ଠ ଶିଷ୍ୟ ପୈଳ, ବୈଶମ୍ପାୟନ
ପଛୁଣ ଶିଷ୍ୟଙ୍କ ଆଗେ ଚାଲିଛନ୍ତି ଗୁରୁଙ୍କୁ ଅନୁସରଣ । ୧୮
ଗୁରୁଙ୍କୁ ଦର୍ଶନ ପାଇ ଲୋକମାନେ ସାଷ୍ଟାଙ୍ଗରେ ପ୍ରଣିପାତ
ଦୁଇ ହାତ ଟେକି କଲ୍ୟାଣ କରନ୍ତି ମୃଦୁହାସ୍ୟ ବିଚ୍ଛୁରିତ । ୧୯
ସର୍ବେ ଜାଣିଛନ୍ତି ଗୁରୁଙ୍କ ସମଗ୍ର ଜୀବନ ଉତ୍ସର୍ଗୀକୃତ
ଦଳିତ, ପୀଡ଼ିତ, ଦରିଦ୍ର ଓ କ୍ଲିଷ୍ଟ ସେବାରେ ଅନୁପ୍ରେରିତ । ୨୦
ତାଙ୍କ ଆଶୀର୍ବାଦ କରି ଦେଉଥାଏ ରୋଗୀକୁ ଯନ୍ତ୍ରଣାମୁକ୍ତ
ହତଭାଗ୍ୟ ପାଇଁ ଆଣି ଦେଉଥାଏ ଅସୀମ ସମ୍ପଦ ବିତ୍ତ । ୨୧
ପାଦଗତି କରି ଚାଲି ଯାଉଥିଲେ ପୃଥିବୀ ଶୋଭା ମଣ୍ଡିତ
ଦଳ ଦଳ ହୋଇ ନରନାରୀ ଗଣେ ଚରଣ ତଳେ ଆଶ୍ରିତ । ୨୨
ଖାଣ୍ଡବପ୍ରସ୍ଥର ନଗ୍ରେ ପ୍ରବେଶିଣ ବିଶ୍ରାମିଲେ ଦେବାଳୟେ
ଶିଷ୍ୟମାନେ ଅଗ୍ନି ପ୍ରତିଷ୍ଠା କରିଣ ପୂଜା କଲେ ଅଗ୍ନିରୂପେ । ୨୩
ପ୍ରସାଦ ପ୍ରସ୍ତୁତ କରିବାକୁ କହି ରାଜ ପ୍ରାସାଦେ ଚାଲିଲେ
ପରମ ସମ୍ମାନନୀୟା ଜନନୀଙ୍କ ଚରଣ ତଳେ ପଡ଼ିଲେ । ୨୪

ନାତି ଶୁକଦେବ ନୟନରେ ଦେଖି ସତ୍ୟବତୀ ଆହ୍ଲାଦିତ
ମସ୍ତକ ଆଘ୍ରାଣ କରି ସ୍ନେହଭରେ ଚୁମ୍ବନ ଆଙ୍କିଲେ ମାତ । ୨୫
ଦଣ୍ଡକ ମଧ୍ୟରେ ଫେରିଲେ ପ୍ରାସାଦୁ ବିଶ୍ରାମ ସ୍ଥଳକୁ ମୁନି
ପଙ୍ଗୁ, ଅନ୍ଧ, ମୂର୍ଚ୍ଛା, କ୍ଷତ ରୋଗୀ ମାନେ ଶୋଇ ଅଛନ୍ତି ଅବନୀ । ୨୬
ସର୍ବ ପ୍ରଥମରେ ଅଗ୍ନି ଦେବତାଙ୍କୁ ଅର୍ଘ୍ୟ କଲେ ଅରପଣ
ରୋଗୀଙ୍କର ଦୁଃଖ ହରଣ ନିମନ୍ତେ ତହୁଁ ବଳାଇଲେ ମନ । ୨୭
ଗୁରୁଙ୍କ ଆଦେଶେ ପ୍ରତ୍ୟେକ ରୋଗୀଙ୍କୁ ନୂତନ ମାଟି ପାତ୍ରରେ
ପାଧ ପୂର୍ବ କ୍ଷୀର ଦେଇ ମନ୍ତ୍ରପତ ପଳାଇଲେ ତଥିପରେ । ୨୮
ଶିଷ୍ୟମାନେ ଗୁରୁଆଜ୍ଞେ ବୁଲିବୁଲି ରୋଗୀଙ୍କ ସେବା କରିଲେ
କ୍ଷତସ୍ଥାନ ଧୋଇ ସଫା କରି ଦେଇ ଔଷଧ ଲଗାଇ ଦେଲେ । ୨୯
ରୋଗୀମାନେ ଦୁଗ୍ଧ ପାନ କଲା ପରେ ଖାଇବାକୁ ଦେଲେ ଅନ୍ନ
ସଭିଙ୍କ ଭୋଜନ ଶେଷେ ଶିଷ୍ୟ ସଙ୍ଗେ ଆପଣେ କଲେ ଭୋଜନ । ୩୦
ଭୋଜନ ଶେଷରେ ବଟବୃକ୍ଷ ତଳେ ବସିଲେ କରି ଆସନ
ଜଣେ ଜଣେ ରୋଗୀ ଆଶୀର୍ବାଦ ପାଇ କଲେ ଗୃହେ ପଳାୟନ । ୩୧
ରୋଗୀଙ୍କୁ ବିଦାୟ ଦେଇ ଦୁଇଦଣ୍ଡ ସେଠାରେ କଲେ ବିଶ୍ରାମ
ବିଶ୍ରାମ ଶେଷରେ ଶିଷ୍ୟଙ୍କ ସହିତ ଆଲୋଚନା କଲେ ଧର୍ମ । ୩୨
ସନ୍ଧ୍ୟାକାଳ ଆସି ଉପଗତ ହେଲା କଲେ ସେ ଆହ୍ନିକ କର୍ମ
ପୁରାଣ ପାଠରେ ଯୋଗ ଦେଲେ ସର୍ବେ ଆଚାର୍ଯ୍ୟ ବୈଶମ୍ପାୟନ । ୩୩
ପ୍ରହରକ ଯାଏଁ ପୁରାଣ ପଠନ ଅନ୍ତେ କରିଲେ ଭୋଜନ
ଭୋଜନ ଶେଷରେ ରଜନିର୍ ବିଶ୍ରାମ କୁଶ ଶଯ୍ୟାରେ ଶୟନ । ୩୪
ବ୍ରହ୍ମ ମୁହୂର୍ତ୍ତରେ ଶଯ୍ୟା ତ୍ୟାଗ କରି ସମ୍ପାଦିଲେ ନିତ୍ୟ କର୍ମ
ସୂର୍ଯ୍ୟ ପୂଜା ଅନ୍ତେ ଅଗ୍ନିରେ ଆହୁତି ଦେଲେ ଋଷି ବିପ୍ରଗଣ । ୩୫
ନିର୍ଦ୍ଦିଷ୍ଟ ସମୟୁ ବହୁତ ଆଗରୁ ରାଜସଭା ଜନତା ପୂର୍ଣ୍ଣ
ଉତ୍ସବ ଦେଖିବା ପାଇଁ ଲୋକମାନେ କଲେ କ୍ରମେ ଆଗମନ । ୩୬
ସିଂହାସନ କକ୍ଷ ପ୍ରବେଶ ଦ୍ୱାରକୁ ଲମ୍ବିଥିବା ରାଜପଥ
ଉଭୟ ପାର୍ଶ୍ୱରେ ଶହେ ଧନୁର୍ଦ୍ଧାରୀ ଶୃଙ୍ଖଳା କାର୍ଯ୍ୟେ ନିଯୁକ୍ତ । ୩୭
ପ୍ରତ୍ୟେକ ହାତରେ ବର୍ଚ୍ଛା ଧରିଛନ୍ତି କାନ୍ଧରେ ଧନୁ ଓ ତୂଣ
ରାସ୍ତାର ଉଭୟ ପାର୍ଶ୍ୱେ ଜଗି ରକ୍ଷା କରୁଛନ୍ତି ନିୟନ୍ତ୍ରଣ । ୩୮

ସିଂହାସନ କକ୍ଷ ସମ୍ମୁଖ ଭାଗରେ ଚାରି ହସ୍ତୀ ସୁସଜ୍ଜିତ
ନିର୍ଦ୍ଦିଷ୍ଟ ସ୍ଥାନରେ ଠିଆ ରହି ଶୁଣ୍ଢେ ଅବରୁଦ୍ଧ ଚଲାପଥ । ୩୯
ହସ୍ତୀଙ୍କ ଗଳାର ଘଣ୍ଟି ଶବ୍ଦେ ସୃଷ୍ଟି ହେଉଛି ମଧୁର ସ୍ୱନ
ଜଣାଇ ଦେଉଛି ଆଗକୁ ଆସନା ଆସିବା ଅଛି ବାରଣ । ୪୦
ହସ୍ତୀଙ୍କ ପୃଷ୍ଠରେ ବସିଥିବା ଲୋକେ କଲେ ଉଚ୍ଚେ ବାଦ୍ୟ ଧ୍ୱନି
ଅତିଥି ମାନଙ୍କ ଆଗମନ ବାର୍ତ୍ତା ଘୋଷିତ ହେଲା ତକ୍ଷଣି । ୪୧
ରାଜ ଅତିଥିଙ୍କ ପଦବୀକୁ ଚଢ଼ି ପାଲିଙ୍କି, ଶଗଡ଼, ରଥ
କେ ଅବା ପାଦରେ ଚାଲି ଚାଲି ଆସି ସଭା ସ୍ଥଳେ ଉପସ୍ଥିତ । ୪୨
ସନ୍ନ୍ୟାସ ପ୍ରଥମ ମାହାତ୍ମା ବିଦୁର ପ୍ରବେଶ ଦ୍ୱାର ନିକଟେ
ଠିଆ ରହି ଆଗନ୍ତୁକଙ୍କୁ ସ୍ୱାଗତ କରୁଥିଲେ ନିଷ୍କପଟେ । ୪୩
ମଲ୍ଲମାନେ ମାନ୍ୟ କରି ଅତିଥିଙ୍କୁ ବସାନ୍ତି ପାଛୋଟି ନେଇ
ସିଂହାସନ କକ୍ଷ ମଣ୍ଡପ ଉପରେ ସିଂହାସନ ଥାଏ ରହି । ୪୪
ଦଶଗୋଟି ସ୍ୱର୍ଣ୍ଣାସନ ପଡ଼ିଥାଏ ଅତିଥି ମାନଙ୍କ ପାଇଁ
ପ୍ରତ୍ୟେକ ଆସନ ପଶ୍ଚାତ ଭାଗରେ ସୁଶ୍ରୀ ନାରୀ ଏକ ତନ୍ୱୀ । ୪୫
ସୁସଜ୍ଜିତା ହୋଇ ଠିଆ ହୋଇଥାଏ ହାତରେ ଚାମର ଧରି
ରକ୍ତ ମାଂସ ଦେହ ଅଥବା ପ୍ରତିମା ଦୂରରୁ ନ ହୁଏ ବାରି । ୪୬
ସିଂହାସନ କକ୍ଷ କାନ୍ଥ ଗୁଡ଼ିକରେ ରମ୍ଭା ବୃକ୍ଷ କାଣ୍ଡମାନ
ବନ୍ଧା ହୋଇ ମୃଦୁ ହିଲ୍ଲୋଳ ଆଘାତେ ଆନ୍ଦୋଳିତ ପବମାନ । ୪୭
ପ୍ରାଚୀର ପାଖରେ ଶକ୍ତ ପେଶିଯୁକ୍ତ ମଲ୍ଲମାନେ ଠିଆଛନ୍ତି
ଶିରରେ ସ୍ୱର୍ଣ୍ଣାଭ ପଗଡ଼ି କାନ୍ଧରେ ପାଟବସ୍ତ୍ର ଢାଙ୍କିଛନ୍ତି ।୪୮
କଟିଦେଶେ ସବେ ଲୋହିତ ବର୍ଣ୍ଣର ବସ୍ତ୍ରମାନ ପରିଧାନ
ମୁଦ୍‌ଗର ଧରିଣ ଠିଆ ରହିଛନ୍ତି ଶକ୍ତ ଶରୀର ଗଠନ । ୪୯
ମଲ୍ଲମାନଙ୍କର ମୁଖ୍ୟ ଯେ ବଳୀୟୁ ରୌପ୍ୟଯଷ୍ଟି ଧରିଛନ୍ତି
ପାଶେ ପୁତ୍ର ସୋମେଶ୍ୱର ଠିଆ ରହି ସେବା କାର୍ଯ୍ୟ କରୁଛନ୍ତି । ୫୦
ହସ୍ତରେ ବୃହତ ରାଜକୀୟ ଛତ୍ର କରିଅଛନ୍ତି ଧାରଣ
ସେ ଛତ୍ରରେ ସ୍ୱର୍ଣ୍ଣ ତନ୍ତୁ ଲାଗିଅଛି ରାଜକୀୟ ନିଦର୍ଶନ । ୫୧
ସମ୍ରାଟ ପାଣ୍ଡୁଙ୍କ ମୃତ୍ୟୁ ପରଠାରୁ ଏ ରାଜକୀୟ ଛତ୍ରକ
ଖୋଲା ନ ଯାଇଣ ରଖାଯାଇଥିଲା ସେହି ଦିନୁ ଆଜି ଯାକ । ୫୨

କାରଣ ହେଉଛି ପାଣ୍ଡୁଙ୍କ ନିଧନେ ହସ୍ତିନାର ସିଂହାସନ
ଅନଅଧିକୃତ ହୋଇ ରହିଥିଲା ନ ଥିବାରୁ ନୃପବର । ୫୩
ବଳୀୟଙ୍କ ପଛ ଧାଡ଼ିରେ ଗ୍ରହଣ କରିଏ ଦଣ୍ଡାୟମାନ
ସିଂହାସନେ ଅଧିଷ୍ଠିତ ରାଜାଙ୍କର କରିବାକୁ ଯଶଗାନ । ୫୪
ବୃହତ କକ୍ଷର ପ୍ରବେଶ ଦ୍ୱାରଠୁଁ ସେହି ମଣ୍ଡପ ପର୍ଯ୍ୟନ୍ତ
ପ୍ରଶସ୍ତ ପଥର ଉଭୟ ପାର୍ଶ୍ୱରେ ଅଛିଥିଏ ଅଳଂକୃତ । ୫୫
ବିଭିନ୍ନ ରଙ୍ଗର ରଙ୍ଗୁ ଦ୍ୱାରା ତାହା ପରସ୍ପରଠୁ ପୃଥକ
ଦକ୍ଷିଣ ପାର୍ଶ୍ୱରେ ବସିଥିଲେ ଭସ୍ମ ବିଲେପିତ ସାଧୁ ଲୋକ । ୫୬
ଦୁର୍ବାଦଳାସନ ପରେ ମୃଗଚର୍ମ ପାରି ସର୍ବେ ବସିଥିଲେ
ପରବର୍ତ୍ତୀ ଭାଗ ଦୁଇଭାଗ ହୋଇ ବିଦ୍ୱଜନେ ବସି ଥିଲେ । ୫୭
ଗୋଟିଏ ପାଖରେ ଶିକ୍ଷାଦାତା ବିପ୍ରେ କରନ୍ତି ଯେ ବିଦ୍ୟାଦାନ
ଅନ୍ୟ ପାଖେ ଅନ୍ୟ ରାଜ୍ୟ ଆସିଥିବା ବିଶିଷ୍ଟ ଅତିଥିଗଣ । ୫୮
ସିଂହାସନ ବାମ ପାରୁଶ ଭାଗରେ ସର୍ବ ପ୍ରଥମ ବେଢାରେ
ବସିଥିଲେ ରାଜ ପ୍ରତିନିଧିମାନେ କ୍ଷତ୍ରିୟ ବୃତ୍ତି ବେଶରେ । ୫୯
ସେମାନଙ୍କ କଟିଦେଶେ ତରବାରି ଝୁଲୁଥିଲା ଅନୁକ୍ଷଣେ
ସେମାନଙ୍କ ପଛଭାଗେ ବସିଥିଲେ ବିଶିଷ୍ଟ ଧନିକ ଗଣେ । ୬୦
ସ୍ୱର୍ଣ୍ଣ ବୁଟିଦାର ପଗଡ଼ି ମସ୍ତକେ କଣ୍ଠଦେଶେ ରତ୍ନ ହାର
ଅଙ୍ଗୁଳିରେ ଅଷ୍ଟରତନ ମୁଦ୍ରିକା ଖଚିତ ହୀରା ମଣିର । ୬୧
ବାମ ପାର୍ଶ୍ୱ ଶେଷ ଭାଗର ବେଢ଼ାରେ ବସିଥିଲେ ଶିଳ୍ପୀଗଣ
କବି କଳାକାର, ପଣ୍ଡିତ ବିଜ୍ଞାନୀ ଗୁଣୀ, ଜ୍ଞାନୀ ମାନୀ ଜନ । ୬୨
ପ୍ରଧାନ ପ୍ରବେଶ ଦ୍ୱାରରୁ ମଣ୍ଡପ ପର୍ଯ୍ୟନ୍ତ ଲମ୍ବିତ ପଥ
ଲାଗି ଏକ ବର୍ଗାକାର ବେଦିପରେ ଯଜ୍ଞ କୁଣ୍ଡ ସଂରକ୍ଷିତ । ୬୩
ବୈଶମ୍ପାୟନ, ପୈଲ, ବେନ ଋଷି ରାଜଗୁରୁ ଧୌମ୍ୟ ମେଳେ
ବିପ୍ରଗଣେ ବସି ବୈଶ୍ୱ ଦେବତାଙ୍କୁ ଆବାହନ କରୁଥିଲେ । ୬୪
ଏକଶତ ବିପ୍ର ସମବେତ କଣ୍ଠେ ଗାଉଥିଲେ ବେଦମନ୍ତ୍ର
ଘୃତ ଓ ଚନ୍ଦନ କାଠ ସୁଗନ୍ଧରେ ଯଜ୍ଞସ୍ଥଳ ସୁରଭିତ । ୬୫
ମଣ୍ଡପ ଉପରେ ସିଂହାସନ ବାମ ପାର୍ଶ୍ୱେ ମନ୍ତ୍ରୀ ପରିଷଦ
ସହିତ ସଞ୍ଜୟ, ବିଦୁର, ସାତ୍ୟକି ଉଦ୍ଧବାଦି ମନ୍ତ୍ରୀବୃନ୍ଦ । ୬୬

ଏହିକାଳେ ବାଦ୍ୟନାଦ ଶୁଣାଗଲା ମିଳିଲେ ପ୍ରମୁଖ ବ୍ୟକ୍ତି
ଠିଆ ହୋଇ ସର୍ବେ ସମ୍ମାନ କରିଲେ ଗାଇ ଜୟ ଜୟ ଗୀତି । ୬୭
ବ୍ୟାସଦେବ, ଶୁକଦେବ, ବଳଦେବ, ଭୀଷ୍ମଦେବ, ଧୃତରାଷ୍ଟ୍ର
ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, ବାସୁଦେବ, ଧର୍ମ, ଧୌମ୍ୟ ପୁରୋହିତ ।୬୮
ଆସନ ଗ୍ରହଣ କରିବା ଉତ୍ତାରେ ଶୁଣାଗଲା ଶଙ୍ଖସ୍ୱନ
ହସ୍ତୀ ପୃଷ୍ଠେ ବସିଥିବା ବାଦ୍ୟକାରେ କରିଲେ ବାଦ୍ୟ ବାଦନ । ୬୯
ଭାଟମାନେ ଉଚ୍ଚ ସ୍ୱରେ ଗାନ କଲେ ନୃପତିଙ୍କ ଯଶକୀର୍ତ୍ତି
ମଙ୍ଗଳ ଅଷ୍ଟକ ଗାଇଲେ ବ୍ରାହ୍ମଣେ ଆଶୀର୍ବାଦ ଶ୍ଳୋକ ବୃଷ୍ଟି । ୭୦
ସ୍ୱର୍ଣ୍ଣ ସିଂହାସନେ ଉପବିଷ୍ଟ ହେଲେ ଲୋକେ ଚରଣେ ପ୍ରଣତ
ଜୟ ଜୟକାର କହି ଲୋକମାନେ ସଭିଙ୍କୁ କଲେ ସ୍ୱାଗତ । ୭୧
ସ୍ୱର୍ଣ୍ଣ ସିଂହାସନପରେ ମୃଗଚର୍ମ ଆବୃତ ଥିବା ଆସନେ
ବସି ଗୁରୁଦେବ ଆଶୀର୍ବାଦ କଲେ ଉପସ୍ଥିତ ସଭାଜନେ । ୭୨
ଧର୍ମ ଚାରି ଭ୍ରାତ ଆବୋରି ରଖିଲେ ଧର୍ମରାଜ ସିଂହାସନ
ନିଜ ନିଜ ଅସ୍ତ୍ରଶସ୍ତ୍ରେ ବିଭୂଷିତ ବୀରବେଶରେ ଧରିଣ । ୭୩
ବିପ୍ରମାନେ ସିଂହାସନେ ବସିଥିବା ବିଶିଷ୍ଟ ବ୍ୟକ୍ତିଙ୍କ ଶିରେ
ଅକ୍ଷତ ଚାଉଳ ସିଞ୍ଚନ କରିଲେ ମନ୍ତ୍ର ଉଚ୍ଚାର ମୁଖରେ । ୭୪
ମନ୍ତ୍ର ଉଚ୍ଚାରଣ ପରେ ଯୁଧିଷ୍ଠିର ଦେବେ କଲେ ଅଭିଷେକ
ଦକ୍ଷିଣା ବର୍ତ୍ତିକ ଶଙ୍ଖରେ ଢାଳିଲେ କୋଟିଏ ତୀର୍ଥ ଉଦକ । ୭୫
ରାଜମାତା ସତ୍ୟବତୀ ରଖିଥିବା ଶାନ୍ତନୁଙ୍କ ଧନୁଶର
ମଥାର ମୁକୁଟ ସଙ୍ଗେ ରାଜଛତ୍ର ଯୋଗାଇ ଦେଲେ ସତ୍ୱର । ୭୬
ଶିରେ ଶିରସ୍ତ୍ରାଣ ବାନ୍ଧି ରାଜମାତା ସଜା କଲେ ଯୁଧିଷ୍ଠିର
ସିଂହାସନ ଆରୋହଣ କଲେ ଧର୍ମ ଶୁଭେ ଜୟଜୟକାର । ୭୭
କୁରୁକୁଳ ରାଜଛତ୍ରକୁ ଶିରରେ ଟେକିଲେ ଅମାତ୍ୟଗଣ
ଏ ତିନି ପଦାର୍ଥ କୁରୁ ସାମ୍ରାଜ୍ୟର ରାଜ ସଙ୍କେତ ପ୍ରମାଣ । ୭୮
ରାଜମାତା ସତ୍ୟବତୀ ଏ ପଦାର୍ଥ ଧର୍ମଙ୍କୁ ପ୍ରଦାନ କରି
କହିଲେ ଶାନ୍ତନୁ କୁଳ ରକ୍ଷା କର ହୋଇ ରାଜ୍ୟେ ଦଣ୍ଡଧାରୀ । ୭୯

ଆଶୀର୍ବାଦ କରି କହିଲେ ଜନନୀ ମୋ କାର୍ଯ୍ୟ ହୋଇଲା ଶେଷ
ଉପଯୁକ୍ତ ପୁତ୍ର ହାତେ ରାଜ୍ୟଭାର ଦେଇ ଦାୟିତ୍ୱ ଉଶ୍ୱାସ । ୮୦

ରାଜାମାତାଙ୍କର ଚରଣ ବନ୍ଦନ କରିଲେ ଖାଣ୍ଡବପତି
ଅଣନାନ୍ତ ଧର୍ମ ଦେବଙ୍କୁ ନୃପତି କରି ମାତାମହ୍ନ ଶାନ୍ତ । ୮୧
ଆସନରୁ ଉଠି ବିନୟ ଭାବରେ ପ୍ରଣମିଲେ ବ୍ୟାସଦେବ
ଭୀଷ୍ମଙ୍କୁ ପ୍ରଣାମ କରି ପ୍ରଣମିଲେ ଦ୍ରୋଣାଚାର୍ଯ୍ୟ ଗୁରୁଦେବ । ୮୨
ବଳରାମ ପାଦେ ପ୍ରଣାମ କରିଣ ପ୍ରଣମିଲେ ଧୃତରାଷ୍ଟ୍ର
ଜଣଜଣ କରି ଗୁରୁଜନେ ନମି ସଭିଙ୍କୁ କରିଲେ ତୁଷ୍ଟ । ୮୩

ଅଭିଷେକ ଶେଷେ ନଗର ଭ୍ରମଣ କାର୍ଯ୍ୟ କରି ସମାପନ
ସ୍ନାନାନ୍ତେ ସୂର୍ଯ୍ୟାର୍ଘ ପ୍ରଦାନ କରିଲେ ଯୁଧିଷ୍ଠିର ନରରାଣ । ୮୪
ଉତ୍ସବ ଶେଷରେ ସଭିଙ୍କୁ ଭୋଜନେ ତୃପ୍ତ କଲେ ମହୀପତି
ବିପ୍ରେ ବହୁ ଧନ ବସ୍ତ୍ର ଦାନ କରି ଚରଣେ କଲେ ପ୍ରଣତି । ୮୫
ସମସ୍ତିଙ୍କୁ ଭୂରି ଭୋଜନ ଦେଇଣ ଆପଣେ ସାରି ଭୋଜନ
ନିଅବକାଶରେ ବିଜେ କଲେ ରାଜା ତାମ୍ବୁଲ କରି ଚର୍ବଣ । ୮୬
ଗୁରୁଇଷ୍ଟ ଜନ କୁଟୁମ୍ବ ସକଳେ ହୋଇଛନ୍ତି ସମବେତ
ଖୁସି ଗଳ୍ପେ ମଜ୍ଜି ଅଛନ୍ତି ସକଳେ ପ୍ରଫୁଲ୍ଲିତ ମନଚିତ୍ତ । ୮୭
ପୁଣି ବ୍ୟାସଦେବ କହିଲେ ଜନନୀ ଶୁଣ ମୋହର ବଚନ
ଆଗକୁ ଆସୁଛି ବେଳ ନିଦାରୁଣ ଅତ୍ୟନ୍ତ ରୁକ୍ଷ, କଠିନ । ୮୮
କୁରୁବଂଶେ କ୍ରମେ ବଢ଼ିବ ବୃଜିନ କପଟାଚାର, ଅମାତ
ଜ୍ଞାନ ଶୂନ୍ୟ ହୋଇ ବିପଥେ ଗମିବେ ଭ୍ରମନାଶ, ଅଶାନ୍ତ । ୮୯

କୁକର୍ମ କରିଣ କୌରବେ ନିଧନ ହୋଇବେ ଏ କଥା ସତ୍ୟ
ଦେଖି ନ ପାରିବ ସ୍ୱନେତ୍ରେ ଜନନୀ ଆପଣା ବଂଶ ନିପାତ । ୯୦
ଏଣୁ କହୁଅଛି ବନେ ଯାଇ କରି କର ମା ଗୋ! ଯୋଗାସନ
କୃଷ୍ଣ ଚିନ୍ତା କରି ପ୍ରାଣ ତ୍ୟାଗ କରି ଲଭ କର ମା ନିର୍ବାଣ । ୯୧
ଏ ବୃଦ୍ଧ ବୟସେ ସଂସାର ଜାଲରେ ପଡ଼ି କମା ହେବ ଶାନ୍ତି
ତା ଠାରୁ ଉତ୍ତମ ତେଜିବା ଜୀବନ କୃଷ୍ଣ ବାସୁଦେବ ଚିନ୍ତି । ୯୨
ପୁଣି କଥା ମାନ ଚଳିଲେ ଜନନୀ ଦୁଇ ପୁତ୍ର ବଧୂ ସଙ୍ଗେ
ଯମୁନା ପୁଳିନେ ଯୋଗାସନେ ବସି ଧ୍ୟାନ କଲେ ଅନୁରାଗେ । ୯୩
ଏଥୁ ଅନ୍ତେ ଶୁଣ ଆହେ ସୁଜ୍ଞ ଜନେ ଶ୍ରୀକୃଷ୍ଣ ଚରିତ ମାନସ
ଯୁଧିଷ୍ଠିର ଦେବ ରାଜାଙ୍କ ଶାସନ ପ୍ରଣାଳୀ କଥା ବିଶେଷ । ୯୪

ଲୋକହିତକର କାର୍ଯ୍ୟ ସମ୍ପାଦନେ ନିବେଶିଲେ ମନ ପ୍ରାଣ
ନିଜ ସୁଖଠାରୁ ପ୍ରଜାଙ୍କର ସୁଖ ଧେୟ ମଣିଲେ ରାଜନ । ୯୫
ଗ୍ରାସ, ବାସ, ବସ୍ତ୍ର, ଶିକ୍ଷା, ସ୍ୱାସ୍ଥ୍ୟ, ପାଞ୍ଚ ସର୍ବନିମ୍ନ ଆବଶ୍ୟକ
ପୂରଣ ନିମନ୍ତେ ଜନହିତକର ଯୋଜନା କରିଲେ ଠିକ । ୯୬
ସବଳ ଶୋଷଣୁ ଦୁର୍ବଳର ମୁକ୍ତି ନୀତି କଲେ ନୃପବର
ପ୍ରଭୁ ଦାସଭାବ ଦୂର ହୋଇଗଲା ସକଳେ ସମ ବେଭାର । ୯୭
ସତ୍ୟ-ଶାନ୍ତି-ନ୍ୟାୟ ମାର୍ଗେ ଧର୍ମରାୟ ପ୍ରଜା କରିଲେ ପାଳନ
ଆପଣାର ସୁଖଠାରୁ ପ୍ରଜାସୁଖ ମଣିଲେ ପରମୋଧର୍ମ । ୯୮
ବନ୍ୟା, ବାତ୍ୟା, ଧୋଇ, ମରୁଡ଼ି, କୁହୁଡ଼ି, ପ୍ରାକୃତିକ ବିପର୍ଯ୍ୟୟ
ରୋଗ, ମହାମାରି, ଚୋରି, ଅଗ୍ନି ଭୟେ ଦେଲେ ଆର୍ଥିକ ସହାୟ । ୯୯
ବ୍ୟକ୍ତି ଅଭିବୃଦ୍ଧି ରାଷ୍ଟ୍ରୀୟ ସମୃଦ୍ଧି କ୍ଷେତ୍ରେ ସମାନ ସୁଯୋଗ
ରାଜା ପ୍ରଜା ମିଶି ରାଷ୍ଟ୍ର ଗଠନରେ ଶକ୍ତି କଲେ ବିନିଯୋଗ । ୧୦୦
ପ୍ରଜାର ସେବକ ବୋଲାଇଲେ ରାଜା ପ୍ରଜା କଲେ ରାଜା ସେବା
ରାଜାପ୍ରଜା ଦୁଇ ଏକତ୍ରିତ ହୋଇ ସମ୍ପାଦିଲେ ରାଷ୍ଟ୍ରସେବା । ୧୦୧
ଗୃହର କବାଟ ନ କରି ରାତିରେ ନିର୍ଭୟେ ଶୋଇଲେ ଜନ
ହତ୍ୟା, ବଳାତ୍କାର, ଚୋରି, ବାଟମାରୁ ନଥିଲା ନାରୀ ଧର୍ଷଣ । ୧୦୨
ରାଜ୍ୟେ ଦଣ୍ଡ ନୀତି କଠିନ ହୋଇଲା ଦୋଷୀକୁ ଦଣ୍ଡିବା ପାଇଁ
ପିତା ଯେସନେ ପୁତ୍ରେ ଦଣ୍ଡ ଦେଉଥାନ୍ତି ହୃଦେ ସ୍ନେହ ଭାବ ବହି । ୧୦୩
ମୁଖରେ କଠୋର ଅନ୍ତରେ କୋମଳ ନୃପତିଙ୍କ ବ୍ୟବହାର
ପ୍ରିୟ ପୁତ୍ରପ୍ରାୟ ପ୍ରଜାଙ୍କୁ ପାଳିଲେ ଧର୍ମରାଜ ଯୁଧିଷ୍ଠିର । ୧୦୪
ସାମ୍ୟ, ମୈତ୍ରୀ, ପ୍ରୀତି, ଶାନ୍ତି, ସଦ୍‌ଭାବନା ରକ୍ଷାକଲେ ନରପତି
ପ୍ରଜାଏ ରାଜ୍ୟରେ ଶୃଂଖଳିତ ଭାବେ ରହିଲେ ନ କରି ଭୀତି । ୧୦୫
ଏକ ପତ୍ନୀ ବ୍ରତ ନୀତି ଆଚରଣ କଲେ ଧର୍ମ ନରପତି
ନାରୀ ଜାତି ପ୍ରତି ସମ୍ମାନ ବଢିଲା ସୁରକ୍ଷିତ ମାତୃ ଜାତି । ୧୦୬
ପର ଉପକାରୀ ତଥା ସଦାଚାରୀ ହୋଇ ରାଜା ପ୍ରଶଂସିତ
ଅହଂକାର ଶୂନ୍ୟ ନ୍ୟାୟ ପରାୟଣ ତ୍ୟାଗ ଗୁଣରେ ମଣ୍ଡିତ । ୧୦୭
ଧନ ଓ ଜୀବନ ଯୌବନ, ଐଶ୍ୱର୍ଯ୍ୟ ସ୍ୱଭାବେ ଅଟେ ଚଞ୍ଚଳ
ଛାଡା ପାଇବାକୁ ରାଜା ଯୁଧିଷ୍ଠିର ହେଉ ନଥିଲେ ବ୍ୟାକୁଳ । ୧୦୮

ରୋଗ, ଶୋକ, ଜରା ମରଣ ନିଶ୍ଚିତ ଶୋଚନା ନଥାଏ ତହିଁ
ମୂର୍ଖେ ମିଷ୍ଟବାକ୍ୟ କାର୍ଯ୍ୟେ କ୍ଷମାଗୁଣ ସଦ୍ ବ୍ୟବହାର କହି । ୧୦୯
ଆଚରଣବଳେ ଶୁଭ ଫଳ ମିଳେ ଏଣୁ ଧର୍ମ ନୃପବର
ସମସ୍ତଙ୍କୁ ଶ୍ରଦ୍ଧା କରୁଥାନ୍ତି ହୃଦେ ପ୍ରିୟଚିନ୍ତ ନିରନ୍ତର । ୧୧୦
ଶ୍ମଶାନ, ମନ୍ଦିର, ଧର୍ମ ଅନୁଷ୍ଠାନ, ମଠବାଡ଼, ତୀର୍ଥମାନ
ଏସବୁ ବ୍ୟବସ୍ଥା ହୋଇଲା ନଗରେ ଯୋଜନା ବଳେ ନିର୍ମାଣ । ୧୧୧
ଭିନ୍ନ ଧର୍ମର ପ୍ରଜାଙ୍କ ନିମନ୍ତେ ସ୍ୱତନ୍ତ୍ର ବ୍ୟସ୍ଥା କଲେ
ସଂପ୍ରଦାୟ ମଧ୍ୟେ ସଂପ୍ରୀତି ବଢ଼ିଲା ଜାତୀୟ ସଂହତି ବଳେ । ୧୧୨
ରାଷ୍ଟ୍ରର ଏକକ ସନାତନ ଧର୍ମ ସକଳେ କଲେ ଗ୍ରହଣ
ଧର୍ମ ନିରପେକ୍ଷ ନୀତିକୁ ସ୍ଥାପିଲେ ସ୍ୱଧର୍ମେ ରକ୍ଷଣ ତ୍ରାଣ । ୧୧୩
ସ୍ୱଧର୍ମ ପାଳନେ ସମ ଅଧିକାର କେହି ନୁହେଁ ବଡ଼ସାନ
ରାଷ୍ଟ୍ର ଧର୍ମ ସର୍ବେ ପାଳନ କରିଲେ ନଥିଲା ତୁଷ୍ଟିକରଣ । ୧୧୪
ଗୁରୁତର କାର୍ଯ୍ୟେ ଅଗ୍ରସର ଆଗୁଁ ନେଉଥାନ୍ତି ପରାମର୍ଶ
ମନ୍ତ୍ରୀ, ଗୁରୁ, ଋଷି, ଉପଦେଶ ମାନି କାର୍ଯ୍ୟ କରନ୍ତି ନରେଶ । ୧୧୫
କୁମନ୍ତ୍ରଣା କ୍ଷତିକାରକ ଥିବାରୁ ନ ନେଉନ୍ତି ପରାମର୍ଶ
ବିବେକ ଅଟଇ ସୁହୃଦ ବିଶ୍ୱସ୍ତ ଦେବାକୁ ସଦୁପଦେଶ । ୧୧୬
ଅପ୍ରିୟ ସତ୍ୟ ଯେ କହିଲା ସଭାରେ ପରମ ହିତୈଷୀ ସେହି
ତାହାର କଥାରେ କ୍ରୋଧ ନ କରିଣ ଶୁଣୁଥାନ୍ତି ମନ ଦେଇ । ୧୧୭
ଶତ୍ରୁର ସମ୍ପଦ ଦେଖି ଈର୍ଷ୍ୟାନ୍ୱିତ ନ ହୁଅନ୍ତି ନରସାଇଁ
ଈର୍ଷ୍ୟା, ଶତ୍ରୁ, ଚିତ୍ତବୃତ୍ତି ଜାଳ ହିଏ ସାବଧାନ ଏଥି ପାଇଁ । ୧୧୮
ପରରାଜ୍ୟ ଆକ୍ରମଣ ଅନୁଚିତ ସ୍ୱରାଜ୍ୟ ପାଳନ ଧର୍ମ
ପରରାଷ୍ଟ୍ରେ ସୈନ୍ୟ ଗଣନା କରିଲେ କ୍ଷୟ ହୁଏ ଧନଜନ । ୧୧୯
ମାତ୍ର ନିଜ ରାଜ୍ୟ ଆକ୍ରାନ୍ତ ହୋଇଲେ ସମର ଅପରିହାର୍ଯ୍ୟ
ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନୀତିକୁ ପାଳିଥାନ୍ତି ଧର୍ମରାଜ । ୧୨୦
ସତ୍ୟ, ଧର୍ମ, ମୈତ୍ରୀ, ପ୍ରୀତି, ସଂଯମତା ଭକ୍ତିଭାବ ପାଳିମାୟ
ଆଳସ୍ୟ, ଗୃହକ୍ଲି, ଥଟ୍ଟା, ପରିହାସ, ରଙ୍ଗରସ ବର୍ଜମାୟ । ୧୨୧
ସନ୍ଦେହ ଜନ୍ମାଏ ସର୍ବଦା ମନରେ ତୋଷାମଦ, କପଟତା
ଅଯାଚିତ ବନ୍ଧୁ ଭାବ ହାନିକର ସ୍ମରଣୀୟ ଗୁଣ କଥା । ୧୨୨

ସ୍ୱାସ୍ଥ୍ୟ, ଚିତ୍ତ ପ୍ରସନ୍ନତା, ସଦ୍‌ଭାବ କାମ୍ୟ ଏ ତିନି ପଦାର୍ଥ
ସଦ୍‌ଚିନ୍ତା, ସତ୍‌ସଙ୍ଗ, ସଦ୍‌ଗ୍ରନ୍ଥ ପଠନୀୟ ଅନୁବର୍ତ୍ତି । ୧୨୩
ଖାଣ୍ଡବପ୍ରସ୍ଥର ସୁସ୍ଥ ପରିବେଶେ ମୁଗ୍‌ଧ ହୋଇ ପ୍ରଜାଗଣ
ହସ୍ତିନା ତେଜିଣ ଖାଣ୍ଡବ ନଗ୍ରରେ କଲେ ବସତି ସ୍ଥାପନ । ୧୨୪
ଦିନୁଦିନୁ ନଗ୍ରେ ସମୃଦ୍ଧି ବଢ଼ିଲା ପ୍ରଜାଏ ହୋଇଲେ ସୁସ୍ଥ
ଖାଣ୍ଡବ ପ୍ରଶସ୍ତି ପ୍ରଘଟ ହୁଅନ୍ତେ କୁରୁପତି ବିଚଳିତ । ୧୨୫
ଯେଉଁ ଦିନ ଅନ୍ଧ ସମାଧାନ ନାମେ ବଣ୍ଟନ କଲେ ସମ୍ପଦ
ସେହି ଦିନଠାରୁ ବେନି ପକ୍ଷ ମଧ୍ୟେ ବଢ଼ିଲା ଗୃହ ବିବାଦ । ୧୨୬
ସେ ଦିନୁ ସମଗ୍ର ଆର୍ଯ୍ୟାବର୍ତ୍ତରେ ଶାନ୍ତି ହୋଇଗଲା ବିପନ୍ନ
ଗୋଟିଏ ରାଜ୍ୟରେ ଦୁଇ ରାଜଧାନୀ ଅଶାନ୍ତି ବୀଜ ବପନ । ୧୨୭
ଅନ୍ଧ ଧୃତରାଷ୍ଟ୍ର ଭାବିଣ ନ ଥିଲେ ଠାଙ୍ଗରା ଭୂଇଁ ଖାଣ୍ଡବ
ନିଷ୍ଠା କର୍ମଫଳେ ଶସ୍ୟ ଶ୍ୟାମଳାରେ ପରିପୂର୍ଣ୍ଣ ହୋଇଯିବ । ୧୨୮
ଖାଣ୍ଡବ ବନରେ ରାଜଧାନୀ କରି ପାଣ୍ଡବେ କଲେ ଶାସନ
ହସ୍ତିନା ରାଜ୍ୟରେ କୌରବେ ରହିଣ ପ୍ରଜା କରନ୍ତି ଶୋଷଣ ।୧୨୯
ଗୋଟିଏ ରାଜ୍ୟରେ ଦୁଇ ରାଜଧାନୀ ଧର୍ମ-ଅଧର୍ମ ଶାସନ
ପ୍ରଜା ହିତେ କାହିଁ ଶାସନ ଚାଲଇ କାହିଁ ବା ପ୍ରଜା ମାରଣ । ୧୩୦
ଦ୍ୱିବିଧ ଶାସନ ପ୍ରତିଷ୍ଠା ପଛରେ ବୃହତ ସ୍ୱାର୍ଥ ନିହିତ
ଅଧର୍ମ ରାଜତ୍ୱ ନ ଭୋଗିଲେ ଲୋକେ ନ ହେବେ ଧର୍ମେ ଆକୃଷ୍ଟ ।୧୩୧
ଅନ୍ୟାୟ ଶାସନ ନ ଥିଲେ ରାଜ୍ୟରେ ନ୍ୟାୟର ମହତ୍ତ୍ୱ ନାହିଁ
ଅନ୍ୟାୟ ବିଚାରେ ଦଣ୍ଡିତ ନ ହେଲେ ନ୍ୟାୟ ପ୍ରଶ୍ନ ଉଠେ ନାହିଁ ।୧୩୨
ଅନ୍ୟାୟ କବଳୁ ଆତ୍ମ ରକ୍ଷା ପାଇଁ ଐକ୍ୟ ବଦ୍ଧ ଧ୍ୟେୟ ଅଟେ
ଏଣୁ ହସ୍ତିନାରେ ଅନ୍ୟାୟ ଶାସନ ସ୍ଥାପିତ ହୋଇଛି କୂଟେ । ୧୩୩
ହସ୍ତିନା କଟକେ କୌରବ ଶାସନ ସାମୟିକ ଆବଶ୍ୟକ
ଏକ ସଙ୍ଗେ ଦୁଇ ଶାସନ ପାର୍ଥକ୍ୟ ବୁଝିବେ ରାଜ୍ୟର ଲୋକ । ୧୩୪
ତେବେ ସିନା ଧର୍ମ ପକ୍ଷେ ଜନ ମତ ଆପେ ଆପେ ସୃଷ୍ଟି ହେବ
ଧର୍ମର ପ୍ରଚାର ଅବା ବିଜ୍ଞାପନ ପ୍ରସାରେ ନ ଥାଏ ଲାଭ । ୧୩୫
ଜୀବନାନୁଭୂତ ଆତ୍ମାନୁଚରିତ ଧର୍ମ ପାଇଁ ଆବଶ୍ୟକ
ଆପେ ଆପେ ଧର୍ମ ପ୍ରତି ଜନମତ ଜାଗ୍ରତ କରନ୍ତି ଲୋକ । ୧୩୬

ଏହି କାରଣରୁ ଏ ଆର୍ଯ୍ୟାବର୍ତ୍ତରେ ଦୁଇ ରାଜ୍ୟ ହେଲ ସୃଷ୍ଟି
ଅଧର୍ମ ବିନାଶି ଧର୍ମ ସଂସ୍ଥାପନ କରିବେ ଧର୍ମ ଯୁଧିଷ୍ଠି । ୧୩୭
ଏହାହିଁ ହେଉଛି ଧର୍ମ ପ୍ରତିଷ୍ଠାର ଅଦ୍ଭୁତ ଯୋଜନାନ୍ତର୍ଗତ
ପାଣ୍ଡବେ ଏକତ୍ର ହୋଇଣ ରହିଲେ କାର୍ଯ୍ୟ ହେବ ସମ୍ପାଦିତ । ୧୩୮
ଏ ଭାରତ ବର୍ଷେ ଧର୍ମ ସଂସ୍ଥାପନେ ରାଷ୍ଟ୍ରୀୟ ଐକ୍ୟ ରକ୍ଷଣ
କରିବା ନିମନ୍ତେ ମାନବ ଶରୀରେ ଭଗବାନ ଅବତୀର୍ଣ୍ଣ । ୧୩୯
ପାଣ୍ଡବ ମାନଙ୍କ ପ୍ରତିଷ୍ଠାରେ ପ୍ରଭୁ ମନ ଇଚ୍ଛା ପୂରଣ ହେବ
ଏଣୁ ପାଣ୍ଡୁ ପୁତ୍ରେ ନିଶ୍ଚିନ୍ତେ ରହିଲେ ଧର୍ମ କାର୍ଯ୍ୟ କରି ହେବ । ୧୪୦
ଏହି କାରଣରୁ ଦ୍ୱାରକାଧିପତି ପାଣ୍ଡୁ ପୁତ୍ରଙ୍କୁ ମନାଇ
ଖାଣ୍ଡବପ୍ରସ୍ଥରେ ରଖାଇଲେ ଆଣି କୌରବ ଠାରୁ ଦୂରେଇ । ୧୪୧
ବିଶ୍ୱର ମଙ୍ଗଳ ସାଧାନ ନିମନ୍ତେ ପାଣ୍ଡୁ ପାଞ୍ଚ ପୁତ୍ରେ ଜାତ
ଅନ୍ୟାୟ, ଅସତ୍ୟ ବିରୁଦ୍ଧରେ ଯୁଦ୍ଧ କରିଣ ଉତ୍ସର୍ଗୀକୃତ । ୧୪୨
ସାଧାରଣ ଆତ୍ମା ସଂସାରରେ ଜାତ ଆପଣାର ହିତ ପାଇଁ
ମାତ୍ର ବୀରପୁତ୍ର ପରହିତେ ରତ ନିଜସ୍ୱାର୍ଥ ବଳି ଦେଇ । ୧୪୩
ସଭିଙ୍କ ମୁଖରେ ପୁତ୍ରଙ୍କ ପ୍ରଶଂସା ସର୍ବେ କହୁଛନ୍ତି ଧନ୍ୟ
ପାଣ୍ଡବ ମାନଙ୍କ ପ୍ରତିଷ୍ଠା ଦେଖିଣ ଇର୍ଷ୍ୟାନ୍ୱିତ ଦୁର୍ଯ୍ୟୋଧନ । ୧୪୪
ଚିତ୍ତରେ କପଟ ପାଣ୍ଡବଙ୍କୁ ମାରି ହୋଇବ ଅରାତି ଶୂନ୍ୟ
ପୁତ୍ରଙ୍କ କଥାରେ ଧୃତରାଷ୍ଟ୍ରଙ୍କର ଥାଏ ସମ୍ମତି ପ୍ରଚ୍ଛନ୍ନ । ୧୪୫
ମାତ୍ର ଏ ସଂସାରେ କି କରିବେ ଦୁଷ୍ଟେ ଯାହାଙ୍କୁ ସହାୟ ହରି
ଧାର୍ମିକଙ୍କୁ ଧର୍ମ ରକ୍ଷା କରିଥାଏ ଅଧର୍ମୀ ପଡ଼ଇ ମରି । ୧୪୬
ଧର୍ମ ବଳଠାରୁ ବଡ ବଳ ନାହିଁ ଧର୍ମରେ ଚଳଇ ମହୀ
ଦଇବ ସମ୍ପଦେ ଯା ଭଣ୍ଡାର ପୂର୍ଣ୍ଣ ଅନ୍ୟ ଧନ ଲୋଡ଼ା ନାହିଁ । ୧୪୭
ଧର୍ମେ ଥିଲ ଜନ ଧରଣୀ ଜିଣଇ ଧର୍ମର ଅଧୀନ ହରି
ଧାର୍ମିକଙ୍କୁ ସଦା ଚକ୍ର ଜଗି ଥାଏ ଅଧର୍ମୀ କି ପାରେ କରି ? ୧୪୮
ଧର୍ମରେ ସନ୍ତୁଷ୍ଟ କରନ୍ତି ଯୁଧିଷ୍ଠି ଅଧର୍ମ କାର୍ଯ୍ୟରେ ଶଙ୍କା
ଶ୍ରୀକୃଷ୍ଣ ଚରଣେ ଚିତ୍ତ ନିବେଶିଣ ଧର୍ମ ନନ୍ଦନ ନିଃଶଙ୍କ । ୧୪୯
ସାତଟି ନଗର ତୋଳାଇ ଯୁଧିଷ୍ଠି ରହିଲେ ନିଶ୍ଚିନ୍ତ ହୋଇ
ପାଞ୍ଚ ଭାଇ ଭାର୍ଯ୍ୟା, ମାତା ରଖାଇଲେ ଭିନ୍ନ ନଗରରେ ନେଇ । ୧୫୦

ଇଚ୍ଛାମୟୀ କୃଷ୍ଣା କିଛି କାଳ ଅନ୍ତେ ହୋଇବାରୁ ରଜୋବତୀ
ପାଞ୍ଚ ଭାଇ ବର୍ଷ ବନ୍ଟର କରିଲେ କପରି ଭୋଗିବେ ପତ୍ନୀ । ୧୫୧

ମାସକରେ ମାତ୍ର ପାଞ୍ଚ ଦିନି ଭୋଗ ପଣ କଲେ ପାଞ୍ଚ ଜଣ
ଅନ୍ୟ ଦିନେ କୃଷ୍ଣା ପୁରେ ଯିବା ମନା ଧର୍ମ ନିୟମ ପ୍ରମାଣ । ୧୫୨

ସତ୍ୟ କଲେ ପୁଣି ମାତା ପାଦ ଛୁଇଁ ନ କରିବେ ସତ୍ୟ ଭଗ୍ନ
ଜ୍ୟେଷ୍ଠ ଅନୁକ୍ରମେ ପତ୍ନୀ ଭୋଗ କଲେ ପାଞ୍ଚ ଜଣ ପାଣ୍ଡବନ । ୧୫୩

ଜଗତରେ ଯେତେ ନାରୀ ରହିଛନ୍ତି ଜଳରେ କରନ୍ତି ସ୍ନାନ
ମାତ୍ର ଯାଜ୍ଞସେନୀ ଯଜ୍ଞାନଳୁ ଜନ୍ମି କରନ୍ତି ଅନଳେ ସ୍ନାନ । ୧୫୪

ଏକର ଉଚ୍ଛିଷ୍ଟ ଆନେ ନ ଦିଅନ୍ତି ଦେହ କରନ୍ତି ଦହନ
ପୁଣି ନବତନୁ ଧାରଣ କରିଣ କରନ୍ତି ଅନ୍ୟକୁ ଦାନ । ୧୫୫

ଦ୍ରୁପଦ ଦୁହିତା କରି ପାଞ୍ଚ ପତି ସତୀଗଣେ ଅଗ୍ରଗଣ୍ୟ
ଯୋଗମାୟା ଯଜ୍ଞ ଅନଳୁ ଜନମି ଅନଳେ କରନ୍ତି ସ୍ନାନ । ୧୫୬

ପାଣ୍ଡବ ସୁକୀର୍ତ୍ତି ଶୁଣି ବିଶ୍ୱବାସୀ ହୋଇଗଲେ ବିସ୍ମୟଭୂତ
କର୍ଣ୍ଣେ ଯାହା ଶୁଣା ନ ଥିଲା ଜଗତେ ଦ୍ୱାପରେ ଦେଖିଲା ନେତ୍ର ।୧୫୭

ଖବର ଆସିଲା ଖାଣ୍ଡବ ପ୍ରସ୍ଥକୁ କାନନରେ ସତ୍ୟବତୀ
ଦୁଇପୁତ୍ର ବଧୂ ସଙ୍ଗେ ଦେହ ତ୍ୟାଗ କଲେ କୃଷ୍ଣ ପାଦ ଚିନ୍ତି । ୧୫୮

ଦୁଃସମ୍ବାଦ ପାଇ ବିହ୍ୱଳିତ ହୋଇ ବଳପିଲେ ଧର୍ମସୁତେ
ବିଧି ବିଧାନରେ ପ୍ରେତ କ୍ରିୟା କଲେ ପିଣ୍ଡ ଦେଇ ପାଣ୍ଡୁ ପୁଏ । ୧୫୯

ଏକଣ ଷାଠିଏ ପଦେ ଅଧ୍ୟା ଶେଷ ସୁଜନେ ନ ଦେନ ଦୋଷ
କୃଷ୍ଣ ଅଭିରାମ ସତ୍ୟ କଳ୍କ ରାମ ପାଦେ ପଡ଼େ ବୃନ୍ଦାବାସ । ୧୬୦

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ମଥୁରା-ଦ୍ୱାରକା ଲୀଳା
ଖଣ୍ଡେ ଖାଣ୍ଡବ ପ୍ରସ୍ଥରେ ଧର୍ମାଭିଷେକ ଓ ଯୁଧିଷ୍ଠିର ଦେବଙ୍କ ରାଜ୍ୟ
ଶାସନ ପ୍ରଣାଳୀ ବର୍ଣ୍ଣନେ ନାମ ଦ୍ୱାବିଂଶ ଅଧ୍ୟାୟ ସଂପୂର୍ଣ୍ଣଂ ।

ଶ୍ରୀକୃଷ୍ଣାର୍ପଣମସ୍ତୁ ।

**ବୋଲି —**

ଅଭିରାମ ଶ୍ୟାମ ନାମେ ଆଜ ପଡ଼ୁଛି ହରି
ଭକତେ ବସି କରନ୍ତି ନାନା ହାରି ଗୁହାରି ।

ସତ୍ୟ ନାରାୟଣ ସ୍ୱାମୀ ସଙ୍ଗ ଘଟରେ ପୂରି
ଖେଳ କରନ୍ତି ଦିନ ରାତି ମଧ୍ୟାହ୍ନ ଘୂରି ।

ଯେଉଁ ଭକ୍ତ ପାରଇ ତାଙ୍କୁ ହୃଦୟେ ଧରି
ତା ସଙ୍ଗେ ଖେଳ କରନ୍ତି ପୀରତି ଆଚରି ।

ଭକ୍ତ ପ୍ରାଣ ପ୍ରିୟ ସେତ ହୃଦୟ ବିହାରୀ
କଏ ବା ପାରିବ ତାଙ୍କୁ ବନ୍ଧେ ବଶ କରି ।

ଭକ୍ତ ସଙ୍ଗେ ଲୁଚକାଳି ଖେଳୁଛନ୍ତି ହରି
ଭକତ ଲୁଚିଲେ ହରି ପାରନ୍ତି ତ ଧରି ।

ହରି ଲୁଚିଗଲେ ଭକତ ପାରଇ କି ଧରି
ଏକ ବୃକ୍ଷେ ଦୁଇ ପକ୍ଷୀ କେ ବୁଝେଁ କାହାରି ।

—●—

# ତ୍ରୟୋବିଂଶ ଅଧ୍ୟାୟ

# ଅର୍ଜୁନଙ୍କ ବାରବର୍ଷ ବନ ଗମନ

( ରାଗ - କେଦାର )

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ କର ଆହେ ସୁଜ୍ଞଜନ
ପଦ ପଦକରେ ରସ ପୂରି ଅଛି ଝରଇ ଝର ଯେସନ
ନାରଦ ଋଷି, ମିଳିଲେ ଖାଣ୍ଡବ ପ୍ରସ୍ଥରେ ଆସି । ୧
ଦେଖି ଧର୍ମ ସୁତ ପାଦରେ ପ୍ରଣତ ଭାଇ ଭାର୍ଯ୍ୟାଙ୍କ ସହିତ
ଆଦର ସମ୍ମାନ ପାଇ ମହାମୁନ୍ୟ କହିଲେ ଶୁଣ ନୃନାଥ
ଜଗତେ ନାହିଁ, ଉପଜୀବ୍ୟ କରି ସୌଭ୍ରାତ ହାରି । ୨
ତୁମ୍ଭେ ପାଞ୍ଚ ଭାଇ ଗୋଟିଏ ନାରୀଙ୍କୁ ଯେଣୁ କରୁଅଛ ଭୋଗ
କଠୋର ନିୟମ ବନ୍ଧ ନ ହୋଇଲେ କାଳେ ଭୋଗିବ ଦୁର୍ଭାଗ୍ୟ
ଏହା ବିଚାରି, ସୂଚାଇ ଦେଉଛି ହେ ଦଣ୍ଡଧାରୀ । ୩
ଅବଶ୍ୟ ସୁନ୍ଦରୀ ନାରୀ ଚନ୍ଦ୍ର ଲଭ ହେଲେ ସୌଭାଗ୍ୟ ବିଷୟ
ଅନେକ ସମୟେ ସର୍ବନାଶର ଏ କାରଣ ହେ ଧର୍ମରାୟ
ଆମ୍ଭ ବିଚାରେ, କଠୋର ନିୟମ ପାଳ ନୃବରେ । ୪
ନିୟମାନୁସାରେ ଯେତେବେଳେ କୃଷ୍ଣା କୌଣସି ସ୍ୱାମୀଙ୍କ ମେଳେ
ଯଦି ରହିଥିବେ ସେ ଗୃହରେ ଆନ ଭ୍ରାତା ନ ପଶିବ ବଳେ
ଯଦି ପଶିବ, ବାରବର୍ଷ ବନବାସ କରିବ । ୫
ଯାହାଙ୍କର ପାଳି ଥିବ ଯେଉଁ ଦିନ ଆପଣା ସଙ୍କେତ ଥୋଇ
ପାଞ୍ଚାଳୀଙ୍କ ପୂରେ ପ୍ରବେଶ କରିବେ ଦେଖି ଅନ୍ୟ ଯିବ ନାହିଁ
ମାତା ଚରଣ, ଛୁଇଁ ଶପଥ କଲେ ପାଞ୍ଚ ଜଣ । ୬
ଜ୍ୟେଷ୍ଠ ଅନୁକ୍ରମେ କୃଷ୍ଣା ଭୋଗ କଲେ ପାଳି କରି ପାଞ୍ଚଭାଇ
କହୁଁ କହୁଁ ତେର ବର୍ଷ ବିତିଗଲା ଖାଣ୍ଡବପ୍ରସ୍ଥରେ ରହି
ବହ୍ନି ଚିନ୍ତଣ, ଖାଣ୍ଡବେ ମିଳିଲେ ହବ୍ୟବାହନ । ୭
ସେ କାଳେ ପାଞ୍ଚାଳୀ ନିବରେ ଯୁଧିଷ୍ଠି କରୁଥିଲେ ସହବାସ
ସେ ସ୍ଥାନକୁ ଯିବା ମନା ହୋଇଥିଲା ଗଲେ ସତ୍ୟଭଙ୍ଗ ଦୋଷ
ସୁଯୋଗ ଦେଖି, ପାର୍ଥଙ୍କୁ କହିଲେ ପାର୍ଥକୁ ଡାକି । ୮

" ଯୁଧିଷ୍ଠି ଦେବଙ୍କ ପାଖେ କାର୍ଯ୍ୟ ଅଛି ବୋଲିଅ ତାଙ୍କୁ ବହନ
ତତକ୍ଷଣେ ଦର୍ଶନ ନ ଦେଲେ ରାଜନ କରିବ ପୁର ଦହନ
ହବ୍ୟ ବାହନ, ବଚନେ ବିବ୍ରତ କଲେ ଅର୍ଜୁନ । ୯
ପୁରେ ପ୍ରବେଶିଲେ ସତ୍ୟ ଭଗ୍ନ ଦୋଷେ ବାରବର୍ଷ ବନବାସ
ନ ଗଲେ ସେଠାକୁ ବହ୍ନିଙ୍କ କୋପରେ ନଗର ହୋଇବ ଧ୍ୱଂସ
ଧର୍ମ ସଙ୍କଟ, ପଡ଼ିଲ ଜାଣି ହୋଇଲେ ଉତ୍କଟ । ୧୦
ଯାଏଁ ପଛେ ବନ ନ ପୋଡ଼ୁ ଭବନ ଏହା ଭାବ ପାର୍ଥଙ୍କର
ଦ୍ରୌପଦୀଙ୍କ ପୁରେ ପ୍ରବେଶ ହୋଇଲେ ଡାକିବାକୁ ଯୁଧିଷ୍ଠିର
ଅର୍ଜିଲେ ଦୋଷ, ପ୍ରସ୍ତୁତ ଯିବାକୁ ସେ ବନବାସ । ୧୧
ସୋଦର ବିଚ୍ଛେଦ ଦୁଃସହ ବିଚାରି ଧର୍ମରାଜ ଯୁଧିଷ୍ଠିର
କୃଷ୍ଣଙ୍କୁ ସ୍ମରଣ କରିଲେ ଅନ୍ତରେ ମିଳିଲେ ଆସି ଶ୍ରୀଧର
ବୋଇଲେ ଗିର, ଆହେ ଧର୍ମରାଜ ଧଇର୍ଯ୍ୟ ଧର । ୧୨
ସତ୍ୟ ଧର୍ମ ପାଳି ବନବାସେ ଯିବା ପାର୍ଥଙ୍କ ପକ୍ଷେ ଉଚିତ
ସତ୍ୟାଗ୍ରହୀ ହୋଇ ସତ୍ୟ ଭଗ୍ନ କଲେ ଅସତ୍ୟ ହେବ ନୃନାଥ
ଆମ୍ଭର ମତ, ବନବାସେ ଯିବା ହେବ ଉଚିତ । ୧୩
ପାର୍ଥ ମୁଖ୍ୟ ଗୃହୀ କହିଲେ ବୁଝାଇ ବିଶାଳ ଭାରତ ବର୍ଷେ
ବିଭିନ୍ନ ଜାତିର ବର୍ଣ୍ଣର ମନୁଷ୍ୟ କରୁଛନ୍ତି ବସବାସ
ବିଭିନ୍ନ କ୍ଷେତ୍ରେ, ଏକତା ଅଛି ବିଭିନ୍ନତା ସତ୍ତ୍ୱେ । ୧୪
ଜାତୀୟତାବୋଧ ରାଷ୍ଟ୍ରୀୟ ସଂହତି ଅଖଣ୍ଡ ପ୍ରେମ ମମତ୍ୱ
ଭରି ରହିଅଛି ଭାରତ ଭୂଇଁରେ ଅସୀମ ଶ୍ରଦ୍ଧା ଭ୍ରାତୃତ୍ୱ
ଏକକ ଧର୍ମ, ଆତ୍ମମାର୍ଗିକା ବେଦମନ୍ତ୍ର ସ୍ୱନ । ୧୫
ଆର୍ଯ୍ୟ, ଆରଣ୍ୟକ ଦୁଇଗୋଟି ଗୋଷ୍ଠୀ ଗ୍ରାମ ଅରଣ୍ୟରେ ବାସ
ଆରଣ୍ୟମାନେ ଅଗ୍ରଜ ଅଟନ୍ତି ସୃଷ୍ଟିର ଆଦ୍ୟ ମଣିଷ
ଭୂମି ସନ୍ତାନ, ସେମାନଙ୍କୁ ବନେ କରିବ ମାନ୍ୟ ।୧୬
ଏ ଦେଶର ଜଳ ବାୟୁ,, ପରିବେଶ ସମ୍ବନ୍ଧେ ନିର୍ଭୁଲ ଜ୍ଞାନ
ସେମାନଙ୍କଠାରେ ସଞ୍ଚିତ ଥିବାରୁ ରହିଛି ତାଙ୍କ ପ୍ରାଧାନ୍ୟ
ତ୍ରେତା ଯୁଗରେ,, ଖ୍ୟାତି ଲଭିଛନ୍ତି ଲଙ୍କା ଯୁଦ୍ଧରେ । ୧୭

ଜାମ୍ବବ ସୁଷେଣ ବୀର ଅଗ୍ରଗଣ୍ୟ ବନୌଷଧି ଜ୍ଞାନବନ୍ତେ
ବୀର ଲକ୍ଷ୍ମଣଙ୍କ ଜୀବନ ରକ୍ଷିଲେ ଶକତି ଭେଦିବା କାଳେ
ଯୁଦ୍ଧ ପ୍ରାଙ୍ଗଣେ, ମରି ବଞ୍ଚିଥିଲେ ବାନର ଗଣେ । ୧୮

ନଳନୀଳ ବେନି ବୀରଙ୍କ ବୁଦ୍ଧିରେ ସେତୁ ବନ୍ଧ ନିରମିତ
ଶୈଳସମ ଜଳେ ଭସିଲା ପଥର ଏହା ବଡ଼ ଆଚମ୍ବିତ
ଯୁଦ୍ଧେ ବାନର, ନିଧନ କରିଲେ ଲଙ୍କା-ଅସୁର । ୧୯

ବନବାସୀ ସଙ୍ଗେ ସଖ୍ୟଭାବ କଲେ ବଢିବ ଧର୍ମଙ୍କ ଶକ୍ତି
ଏଣୁ ବନବାସ କାଳେ ହୋ ଅର୍ଜୁନ ଆପଣାର ହିତ ଚିନ୍ତି
କନ୍ୟା ଗ୍ରହଣେ, ଲିପ୍ତ ହେବ ସାମାଜିକ ବନ୍ଧନେ । ୨୦

ଭାରତୀୟ ଧର୍ମ ସଂସ୍କୃତି ରକ୍ଷକ ଅଟନ୍ତି ଅରଣ୍ୟ ବାସୀ
ଭାରତ ମାତାର ଉନ୍ନତି ସାଧନେ ସେମାନଙ୍କ ଦାନ ବେଶୀ
ତାହାଙ୍କ ହିତ, ସାଧନେ ଚିନ୍ତା ରାଜଧର୍ମୋଚିତ । ୨୧

ଧର୍ମରାଜ ଦୂତ ଭାବେ ତୁମ୍ଭେ ବନେ ସାଧନ କରିବ କାର୍ଯ୍ୟ
ଧର୍ମରାଷ୍ଟ୍ର ପ୍ରତି ଆସକ୍ତ ଜନ୍ମିଲେ ସୁଖୀ ହେବେ ଧର୍ମରାଜ
ଲକ୍ଷ ସାଧନେ, ବନବାସେ ଚଳ ସତ୍ୟ ବଚନେ । ୨୨

ନିଷ୍ଠା କଥା କହି ବୁଝାନ୍ତେ ଶ୍ରୀକୃଷ୍ଣ ଶାନ୍ତ ହେଲେ ଧର୍ମଜ୍ଞଶ
ପ୍ରଭୁ ପରାମର୍ଶ ପାଇ ପାର୍ଥ ବୀର ଚଳିଗଲେ ବନଦେଶ
କିରାତ ବେଶେ, ବୁଲିଲେ କାନନେ କୃଷ୍ଣ ଆଦେଶେ । ୨୩

ହର ଉଦ୍ୟାନରେ ମିଳିଲେ ଅର୍ଜୁନ ବନ ଶୋଭା ଦେଖି ପ୍ରୀତ
ଶିବ ପାର୍ବତୀଙ୍କ ଦର୍ଶନ ପାଇଣ କଲେ ଶତ ପ୍ରଣିପାତ
ଉମାଶଙ୍କର, ଆନନ୍ଦ ହୋଇ ଯାଚି ଦେଲେ ବର । ୨୪

ଅର୍ଜୁନଙ୍କୁ ଧର୍ମପୁତ୍ର କରି ଦେବୀ ଦେଲେ ସବ୍ୟସାଚୀ ନାମ
ଅକ୍ଷୟ ତୂଣୀର ପାଶୁପତ ଶର ପିନାକ ଧନୁ ପ୍ରଦାନ
କଲ୍ୟାଣ କରି, ଚଳିଲେ ବନେ ଶଙ୍କର ଶଙ୍କରୀ । ୨୫

ସୁବଳୟା ଗିରି ଶିଖର ଦେଶରେ ଅର୍ଜୁନ କରିଲେ ବାସ
ଗୃହି ବର୍ଷ ଷଡ଼ମାସ ତେର ଦିନ ଭୋଗ କଲ ବନବାସ
ବିପ୍ର ବେଶରେ, ମିଳିଲେ ହବ୍ୟବାହନ ସେଠାରେ । ୨୬

ଲୁଦୁ ବୃଦୁ ବ୍ୟାଧି ରୋଗରେ ଆକ୍ରାନ୍ତ ଭୋଜନେ ନ ଥାଏ ମନ
ଶ୍ୱେତରଜା ଯଜ୍ଞେ ବହୁ ଘୃତ ପାନ କରି ଏ ରୋଗ ଅର୍ଜନ
ଖାଣ୍ଡବ ବନ, ଭୋଜନରେ ବ୍ୟାଧି ହେବ ହରଣ । ୨୭
ଏହା କହି ଅଗ୍ନିଦେବ ବାଣ ଆଣି ପାର୍ଥଙ୍କୁ ପ୍ରଦାନ କଲେ
ବୋଇଲେ ଏ ଶରେ ଖାଣ୍ଡବ ଦହନ କର ଆମ୍ଭ ଶକ୍ତି ବଳେ
ବନ ଔଷଧି, ଖାଇଲେ ବିନାଶ ହୋଇବ ବ୍ୟାଧି । ୨୮
ସକୃଷ୍ଟେ କହିଲେ ଅର୍ଜ୍ଜୁନଙ୍କୁ ଅଗ୍ନି ସମ୍ପୂର୍ଣ୍ଣ ବନ ଦହନ
ହେଲେ ଯାଇଁ ମୋର ଉଦର ପୂରଣେ ବ୍ୟାଧି ହେବ ବିନାଶନ
ତାହାଁକ ଧ୍ୟାନ, ଦେଇ କର ବୀର ଶର ସନ୍ଧାନ । ୨୯
ଶୁଣ ବସ୍ତୁବାକ୍ୟ ଏ ବଣ ପୋଡ଼ିରୁ ଜଣକେ ରହିଲେ ବର୍ତ୍ତି
ସ୍ଥାୟୀ ଶତ୍ରୁ ହୋଇ ସାଧନ କରିବ ଭୂମିର ଦୁର୍ଭୁଦ୍ଧି କ୍ଷତି
ତାହାଁକ ଦୃଷ୍ଟି, ରକ୍ଷ କାର୍ଯ୍ୟ କର ହେ କୃଷ୍ଣାପତି । ୩୦
ଅଗ୍ନି ପରାମର୍ଶ ପାଇ ପାର୍ଥ ବୀର ପେଷି ଦେଲେ ଅଗ୍ନିଶର
ଚୂରି ହରି ଅଗ୍ନି ବନଗ୍ରାସ କରି ତକ୍ଷଣେ କଲା ଦହନ
କାନନ ଧ୍ୱଂସ, ପାଂଶୁରେ ପରିପୂର୍ଣ୍ଣ ବନ ପ୍ରଦେଶ । ୩୧
ବନୌଷଧି ଖାଇ ଅଗ୍ନିଙ୍କର ବ୍ୟାଧି ହୋଇଗଲା ଉପସମ
କଲ୍ୟାଣ କରିଣ ସ୍ୱପୁରେ ଚଳିଲେ ଆନନ୍ଦେ ହବ୍ୟ ବାହନ
ଦେବାସ୍ତ୍ର ମାନ, ତୂଣୀରେ ରଖିଲେ ବୀର ଅର୍ଜ୍ଜୁନ । ୩୨
ଶୋଷକ, ତାରକି, ଚନ୍ଦ୍ରଚୂଡ଼ ପକ୍ଷୀ, ବିଷ୍ଣୁପ୍ରସାଦ ଚଢ଼େଇ
ଶାରଙ୍ଗ ପକ୍ଷୀର ଚୂରି ତନୟଙ୍କୁ ଶୂନ୍ୟରେ ଦେଲେ ଉଡ଼ାଇ
ମୟଦୈତ୍ୟ, ମନ୍ଦାର, ତରିଟ, ବକୁଳ, ଓସ୍ତ । ୩୩
ଏ ତେର ପଦାର୍ଥ ରଖିଲେ ଅର୍ଜ୍ଜୁନ ଆଉ ସବୁ ଭସ୍ମୀଭୂତ
ଶିଳ୍ପଶାସ୍ତ୍ର ବିଶାରଦ ମୟଦୈତ୍ୟ ଅର୍ଜ୍ଜୁନ ଚରଣାଶ୍ରିତ
ହୋଇ ରହିଲା, ଦେବଦତ୍ତ ଶଙ୍ଖ ପ୍ରଦାନ କଲା । ୩୪
ଖାଣ୍ଡବ କାନନ ଦହନ ସମ୍ବାଦ ପାଇ ଦେବ ମଘବାନ
ବନ ମହୌଷଧି ପୋଡ଼ି ପାଂଶୁ ହେବା ଦେଖି ସେ ଦୁଃଖିତ ମନ
ହୀଦଶଗଣ, ଅବସାଦ ମନେ କଲେ କ୍ରନ୍ଦନ । ୩୫

ଦେବ, ଦେବପତି ଦୁଃଖ ଦେଖି ପାର୍ଥ କଲେ ଅଗ୍ନି ନିର୍ବାପନ
ତତ୍‌ପରେ ଅମୃତ ଶର ପ୍ରହାରଣ ସୃଷ୍ଟି କଲେ ନବଘନ
ଦେଖି ବୀରତ୍ୱ, ସ୍ନେହେ କୋଳ କଲେ ଶ୍ରଦ୍ଧାରେ ତାତ । ୩୬

ଦିବ୍ୟ ଅସ୍ତ୍ରମାନ ଅର୍ଜ୍ଜୁନଙ୍କୁ ଦେଇ ଚାଲିଗଲେ ଦେବଗଣ
ଦେବ ଅସ୍ତ୍ରଶସ୍ତ୍ର ଲାଭ କରି ପାର୍ଥ ହେଲେ ବୀର ଅଗ୍ରଗଣ୍ୟ
ବନ ଭ୍ରମଣେ, ଚାଲିଲେ ଅର୍ଜ୍ଜୁନ ଅନ୍ୟ କାନନେ । ୩୭

ପୃଷ୍ଠରେ ଝୁଲୁଛି ଅକ୍ଷୟ ତୂଣୀର ଗାଣ୍ଡିବ ବାମ କରରେ
ଦକ୍ଷିଣ ହସ୍ତରେ ପାଶୁପତଶର ପିନାକ ଧନୁ କନ୍ଧରେ
କିରାତ ବେଶ, ଧରି ବୁଲୁଛନ୍ତି ବନ ପ୍ରଦେଶ । ୩୮

ଭ୍ରମୁ ଭ୍ରମୁ ଯାଇଁ ମିଳିଲେ ଅର୍ଜ୍ଜୁନ ମଣିପୁର ନାମେ ରାଜ୍ୟ
ଚିତ୍ରାଙ୍କୁର ନାମେ ଅରଣ୍ୟାଧିପତି କରନ୍ତି ସେଠାରେ ରାଜ୍ୟ
ହିଙ୍ଗୁଳା ରାଣୀ, ଚିତ୍ରାଙ୍ଗଦା ନାମରେ ରାଜ ନନ୍ଦିନୀ । ୩୯

ଅର୍ଜ୍ଜୁନଙ୍କୁ ପତି ବରଣ କରିଣ କଟାଇଲେ କିଛି ଦିନ
ପିତୃ ଗୃହେ କନ୍ୟା ଛାଡ଼ି ଦେଇ ପାର୍ଥ ଚାଲିଲେ ଘୋର କାନନ
କବି ମାନସ, ବନ ଶୋଭା ଦେଖି ମନ ଉଲ୍ଲାସ । ୪୦

ଛନ୍ଦମୟ ଗୀତ କଣ୍ଠରୁ ଝରିଲା କାନନ ପ୍ରତିଧ୍ୱନିତ
ଖଗ, ମୃଗ ବ୍ୟାଘ୍ର ସଙ୍ଗୀତ ଶ୍ରବଣେ ହେଲେ ସର୍ବେ ପ୍ରମୋଦିତ
ସ୍ଥିର ନୟନେ, ଅନାଇ ରହିଲେ କବି ଅର୍ଜ୍ଜୁନେ ! ୪୧

ନିକୁଞ୍ଜ କାନନେ ନାନା ବୃକ୍ଷ ଗଣେ ପରସ୍ପର ଲାଗାଲାଗି
ବିଭିନ୍ନ ଜାତିର ବର୍ଣ୍ଣର ପାଦପେ ହୋଇ ପ୍ରୀତି ଅନୁରାଗୀ
ଲତା ଗହଳେ, ମସ୍ତକ ମଣ୍ଡିତ ବୃକ୍ଷ ସକଳେ । ୪୨

ପଶୁପକ୍ଷୀ ଗଣେ କ୍ରୀଡ଼ା କରୁଛନ୍ତି ଉଚ୍ଚାରି ମଧୁର ଧ୍ୱନି
କାକଳି କୂଜନେ କାନନ କମ୍ପିତ କିଷଲୟ ମର୍ମବାଣୀ
କୁସୁମ ବେଣୀ, ମଣ୍ଡି ହୋଇଛନ୍ତି ବିଟପ ଶ୍ରେଣୀ । ୪୩

ବିଚାରିଲେ ପାର୍ଥ ବୀର ବୋଲି ମୋତେ ଲୋକେ କରୁଥାନ୍ତି ମାନ୍ୟ
ପଶୁ ପକ୍ଷୀ ନେବେ ଶିକାରି ମୁଁ ଅଟେ ଦେଖି କରେ ଧନୁର୍ବାଣ
ପ୍ରାଣ ନିଧନ, ମୋ ବେଉଷା ବୋଲି କରନ୍ତି ଜ୍ଞାନ । ୪୪

ପଶୁ ସମାଜରେ ଶାସକ ଶାସିତ ନୁହଁନ୍ତି ତ କେଉଁ ପ୍ରାଣୀ
ଏକ ପଶୁ ଆନ ପଶୁର ଦାସତ୍ୱ କରିବା କର୍ଣ୍ଣେ ନ ଶୁଣି
ସର୍ବେ ସ୍ୱାଧୀନ, ସରଳ, ସ୍ୱାଚ୍ଛନ୍ଦ, ସୁଖୀ ଜୀବନ । ୪୫

ସେମାନେ ମଣିଷ ନିର୍ମିତ ନଗର ପ୍ରାଚୀର ମଧ୍ୟରେ ବନ୍ଦୀ
ନ ହୋଇ ପରନ୍ତୁ ନିଜ ନିଜ ମଧ୍ୟେ ରହିଛନ୍ତି ପ୍ରେମେ ବାନ୍ଧି
ସ୍ୱାଧୀନ ପ୍ରାଣୀ, କୂଜନ କରନ୍ତି ଟେକ ରାଗିଣୀ । ୪୬

ମଣିଷ ଠାରୁ ସେ ଅଧିକ ଶୃଙ୍ଖଳ ଜୀବନ କଟାଉଛନ୍ତି
ସମୟାନୁବର୍ତ୍ତୀ ହୋଇ ଋତୁକ୍ରୀଡ଼ା ସମ୍ପାଦନ କରିଥାନ୍ତି
ମୁକ୍ତ ପ୍ରାଙ୍ଗଣେ, ବିଚରଣ କରନ୍ତି ଅନୁକ୍ଷଣେ । ୪୭

ବନଫଳମୂଳ ଆହାର ତାଙ୍କର ପାନୀୟ ଝରଣା ଜଳ
ଅତି ଶୃଙ୍ଖଳିତ ଜୀବନ ଯାପନ ନୁହଁନ୍ତି ସେ ବିଶୃଙ୍ଖଳ
ଦେଖି ଏ ଦୃଶ୍ୟ, ଭାବେ ବିହ୍ୱଳିତ କୋଇନ୍ତା ଶିଷ୍ୟ । ୪୮

ମାତ୍ର ମନୁଷ୍ୟର ପ୍ରକୃତି ବିଚିତ୍ର ତା ସ୍ୱାର୍ଥ ସାଧନ ପାଇଁ
ପଶୁଠାରୁ ମଧ୍ୟ ନିର୍ମମ ହୁଅଇ ଦୟା ଧର୍ମକୁ ହରାଇ
ସ୍ୱାର୍ଥ ସାଧନ, ପାଇଁ କରେ ପର ପ୍ରାଣ ନିଧନ । ୪୯

ଅଭିନବ ବନ ଶୋଭା ଦେଖି ପାର୍ଥ ମିଳିଲେ ନାଗ ମଣ୍ଡଳ
ନାଗ ରାଜ କନ୍ୟା ଉଲୁପି ସଙ୍ଗରେ ସମ୍ବନ୍ଧ ହେଲା ମଙ୍ଗଳ
ତା ଠାରୁ ଶିକ୍ଷା, ଗୋଟିକା ଅଞ୍ଜନ ମନ୍ତ୍ରର ଦୀକ୍ଷା । ୫୦

ନାଗ ରାଜ୍ୟେ ପାର୍ଥ କିଛି ଦିନ ରହି ସେଠାରୁ ବିଦାୟ ନେଇ
କଳିଙ୍ଗ କୁମାରୀ ଆର୍ଯ୍ୟାଙ୍କୁ ବିବାହ କଲେ ପ୍ରୀତି ଭାବ ବହି
ଗନ୍ଧର୍ବ ବାଳା, ହାରାମଣି ଦେଲା ବରଣ ମାଳା । ୫୧

ବନବାସ କାଳେ କୃଷ୍ଣ ପରାମର୍ଶେ ବହୁ ବିଭା ହେଲେ ପାର୍ଥ
ବନ୍ଧୁତା ଛଳରେ ସାମରିକ ଶକ୍ତି ସଂଗ୍ରହେ ହେଲେ ସାମର୍ଥ
ଶକ୍ତି ବର୍ଦ୍ଧନ, ସୁଦୃଢ଼ ହେଲା ଧର୍ମ ସିଂହାସନ । ୫୨

ନିଜେ ହୁଏ ସ୍ଥଳ ବନ୍ଧୁ ହୁଏ ବଳ ଭାଇ ବନ୍ଧୁ ଯାହା ପକ୍ଷ
ହୋଇ ରହିଥିଲେ କି କରିବେ ଶତ୍ରୁ ବିନାଶ ହେବେ ପ୍ରତ୍ୟକ୍ଷ
ତପଦନ୍ତେ ଶୁଣ, ଗିରି ଶିଖରେ ବିଜୟୀ ଅର୍ଜୁନ । ୫୩

ଶତ୍ରାଜିତ ମାରି ସ୍ୟମନ୍ତକ ମଣି ଦୁଷ୍ଟେ କରନ୍ତେ ହରଣ
ଶ୍ୱଶୁରଙ୍କ ମୃତ୍ୟୁ ସମ୍ବାଦ ପାଇଣ କ୍ରୋଧାନ୍ୱିତ ହୋଇ କୃଷ୍ଣ
ଶତ ଧନୁକୁ, ଗୋଡାଇଲେ ପ୍ରାଣେ ମାରି ଦେବାକୁ । ୫୪

ପ୍ରାଣ ବିକଳରେ ଶତ ଧନୁ ଧାଇଁ ପାର୍ଥରେ ପଶି ଶରଣ
ବିନୟେ ବୋଲଇ ରକ୍ଷା କର ସ୍ୱାମୀ ଆହେ ଶରଣ ରକ୍ଷଣ
ଅଭୟ ଦେଇ, ପୁଚ୍ଛିଲେ କେ ଶତ୍ରୁ କହ ବୁଝାଇ ? ୫୫

ଶତଧନୁ ବୋଲେ କୃଷ୍ଣ କୋପକରି ଗୋଡ଼ାଇ ଅଛନ୍ତି ମୋତେ
ମୁଁ ନିର୍ଦୋଷ ପ୍ରାଣୀ ମୋତେ ମାରିବାକୁ ଧାଇଁଛନ୍ତି ଧନୁହସ୍ତେ
ଶୁଣି ଅର୍ଜ୍ଜୁନ, ହୃଦରେ ବିରୋଧ ହେବ କେସନ ? ୫୬

ତଥାପି ଆଶ୍ରିତ ଲୋକର ଜୀବନ ରକ୍ଷା କରିବା ଧରମ
ବନ୍ଧୁଭାବ ଯାଉ ଧର୍ମ ରହୁ ଥାଉ ପାଳିବ ସତ୍ୟ ବଚନ
କୃଷ୍ଣେ ଅପ୍ରୀତ, ହେଉ ପଛେ ନାହିଁ ତାହାଙ୍କ ଭୀତ ? ୫୭

ସ୍ୱଧର୍ମେ ଥାଇଣ ତେଜିଲେ ଜୀବନ ରହିବ ଅକ୍ଷୟ କୀର୍ତ୍ତି
ଶରଣାଗତର ଜୀବନ ରଖିବା କ୍ଷତ୍ରିୟର ଧର୍ମ ବୃତ୍ତି
ଏମନ୍ତ ଚିନ୍ତି, ଦୃଢ଼ରେ ବସିଲେ ପାଞ୍ଚାଳୀପତି । ୫୮

ଶତଧନୁ ଖୋଜ ମିଳିଲେ ଶ୍ରୀକୃଷ୍ଣ ହେଲ ବେନି ବୀରେ ରଣ
ଅର୍ଜ୍ଜୁନଙ୍କ ଠାରୁ ଯୁଦ୍ଧରେ ହାରିଲେ ଦେବକୀ ଦେବୀ ନନ୍ଦନ
ଅସ୍ତ୍ର ତେଜିଣ, ପରାଜୟ ସ୍ୱୀକାର କଲେ କୃଷ୍ଣ । ୫୯

କହିଲେ ଶ୍ରୀହରି ମୁହିଁ ଗଲି ହାରି ଆଜିକେ ଜଣିବ ତୋତେ
ପୃଥ୍ୱୀ ଜିଣିବାକୁ ଅର୍ଜ୍ଜିଛୁ କ୍ଷମତା ଶରଣ ରଖ ହେ ମୋତେ
ଅନ୍ୟଥା ଯେବେ, ହାରିଥାନ୍ତି ପ୍ରାଣ ତେଜନ୍ତି ତେବେ । ୬୦

ଆହେ ମହାବୀର ମାଗଇଚ୍ଛାବର ସତ୍ୟ କରିବ ପ୍ରଦାନ
କର ଯୋଡ଼ି ପାର୍ଥ କହିଲେ ଅଚ୍ୟୁତ ରଖ ଶତଧନୁ ପ୍ରାଣ
ପାଦେ ଆଶ୍ରିତ, ଆଶ୍ରିତକୁ ରକ୍ଷା କର ହେ ନାଥ । ୬୧

ଶ୍ରୀହରି କହିଲେ ଦୋଷ କ୍ଷମା କଲି ତୋହର ବଚନ ମାନି
ଅଭୟ ପ୍ରଦାନ କରି ଅର୍ଜ୍ଜୁନକୁ କହିଲେ ସାରଙ୍ଗ ପାଣି
ଚାଲ ସଙ୍ଗର, ପାଦ ପରଶେ ପବିତ୍ର ମୋ ପୁର । ୬୨

ପାର୍ଥ ବୋଲୁଛନ୍ତି ଆଉ ସାତମାସ ବାକି ଅଛି ବନ ବାସ
ବନବାସ ଶେଷେ ସାକ୍ଷାତ କରିବ ସତ୍ୟ କହେ ପୀତବାସ
କାନନେ ଶାନ୍ତି, ତୁମ୍ଭର ଦସ୍ୟୁରୁ ନାହିଁ ବିପତ୍ତି । ୬୩

ଗୋବିନ୍ଦ କହିଲେ ତୋତେ ମୋ ଶପଥ ବନବାସ ଶେଷକରି
ଦ୍ୱାରକା ଆସିବା ପାଇଁ ଅନୁରୋଧ କରି ମୁଁ ଯାଉଛି ଫେରି
ଚଳିଲେ କୃଷ୍ଣ, କାନନେ ରହିଲେ ସଖା ଅର୍ଜୁନ । ୬୩

ଦ୍ୱାରକା ନଗରେ ମିଳିଲେ ଶ୍ରୀକୃଷ୍ଣ ପୁଚ୍ଛାକଲେ ହଳଧର
ପଳାଇବା ପ୍ରାଣୀ ପଛେ ଗୋଡ଼ାଇଲ ଏହାକି ନ୍ୟାୟ ଶ୍ରୀଧର
ତସ୍କର ଚୋର, ଗୌରବ ନଷ୍ଟ ନୁହେଁ କି ବିଚାର ? ୬୫

ଗୋଡ଼ାଇଲ ବୀରେ ଧରି ନ ପାରିଣ ନଥିଲେ ଫେରିଲୁ ଘର ?
ଗୋବିନ୍ଦ କହିଲେ କି କହିବ ପ୍ରଭୁ ରଖିଲ କୁନ୍ତୀ କୁମର
ତାସଙ୍ଗେ ରଣ, କରି ହାରିଗଲି ମୁଁ ଅକାରଣ । ୬୬

ବୋଲୁଛନ୍ତି ରାମ ଜାଣିଲି ନିଶ୍ଚୟ ବୀର ପଣେ ଶ୍ରେଷ୍ଠ ପାର୍ଥ
ତୋ ପରି ବୀରକୁ ଜିଣିବାକୁ କ୍ଷମ କଥା ବଡ ଆଚମ୍ବିତ
କହିଲେ କୃଷ୍ଣ, ଯୁଦ୍ଧେ ହାରିଣ କଲି ସନ୍ଧିପଣ । ୬୭

ପାର୍ଥ ସଙ୍ଗେ ମିତ୍ର ଭାବ ରହିଥିଲେ ବଢ଼ିବ ଆମ୍ଭ ସମ୍ମାନ
ହାରି ଯିବେ ଯୁଦ୍ଧେ ଦେବ-ଦୈତ୍ୟ-ନର ଆମ୍ଭସଙ୍ଗେ କଲେରଣ
ଯାଦବ ଶକ୍ତି, ସୁରକ୍ଷିତ ଏବେ ହେ ହଳପତି । ୬୮

ରାମ ବୋଲୁଛନ୍ତି ଜାଣି ଜାଣି ଯୁଦ୍ଧେ ପାର୍ଥଠୁ ହାରିଲୁ ତୁମ୍ଭ
ପାର୍ଥ ଗୁଣ ଗାଇ ହସାହସି ହୋଇ ମର୍ଜ୍ଜା କଲେ ଦୁଇଭାଇ
ଅଧ୍ୟାୟ ଶେଷ, ଅଣସ୍ତୋରିରେ କଲି ବୁଲି ଦାସ । ୬୯

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ମଥୁରା-ଦ୍ୱାରକା
ଲୀଳାଖଣ୍ଡେ ଅର୍ଜୁନଙ୍କ ବାରବର୍ଷ ବନବାସ ଗମନ ଆଖ୍ୟାନେ ନାମ
ତ୍ରୟୋବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।

ଶ୍ରୀ କୃଷ୍ଣାର୍ପଣମସ୍ତୁ ।

**ବୋଲି -**

ହେ ପଙ୍କଜ ମୁଖ !
ଶାନ୍ତ ଆନନ୍ଦ ଆଶ୍ରମେ ମୋତେ ରଖ ।
ନ ବାଧିବ ଯହିଁ ରୋଗ-ଶୋକ-ଦୁଃଖ । ଘୋଷା
ନିତ ପ୍ରତି ଦେଖୁଥିବ ପଦ୍ମମୁଖ
ଦୂର ହୋଇ ଯାଉଥିବ ସବୁ ଦୁଃଖ
ଗୁଞ୍ଜୁଥିବ ମକରନ୍ଦ ସଦା ମୁଖ । ୧
ସ୍ମିତହାସ୍ୟ ଦେଖି ଦୂର ହେବ ଦୁଃଖ
କମନୀୟ କାନ୍ତି କବା ଦେବା ଲକ୍ଷ
ହୃଦପଟ୍ଟରେ ଅଙ୍କା ଚିତ୍ର ଆଲେଖ୍ୟ । ୨
ହେ ପଙ୍କଜ ମୁଖ
ଶାନ୍ତ ଆନନ୍ଦ ଆଶ୍ରମେ ମୋତେ ରଖ ।
ଯହିଁ ନ ବାଧିବ ରୋଗ-ଶୋକ-ଦୁଃଖ ।

—●—

# ଚତୁର୍ବିଂଶ ଅଧ୍ୟାୟ

## ସୁଭଦ୍ରା ପରିଣୟ

( ରାଗ - ବଙ୍ଗଳାଶ୍ରୀ )

ଏଥୁ ଅନ୍ତେ ଶୁଣ ଆହେ ସୁଜ୍ଞଜନେ କୃଷ୍ଣ ଚରିତ ମାନସ
ମଣିଭଦ୍ରା ଗିରି ଶିଖର ଦେଶରେ ପାର୍ଥ ଶତଧନୁ ବାସ । ୧

ରୈବତ ପର୍ବତେ ବସନ୍ତ ଉତ୍ସବ ପାଳନ କାଳେ ଯାଦବେ
ଗୋସିଂହ ଅସୁର ପହଞ୍ଚି ସେଠାରେ ଗୋଳ ଆରମ୍ଭିଲା ଗର୍ବେ । ୨

ରାମକୃଷ୍ଣ ଦୁଇ ଭାଇଙ୍କି ପରସ୍ତ କରି ଗୋସିଂହ ସମରେ
କୃଷ୍ଣ ପ୍ରିୟା ସତ୍ୟ ଭାମାଙ୍କୁ ରଥରେ ବସାଇ ଚଳିଲା ଖରେ । ୩

ମଣିଭଦ୍ରା ଗିରି ଶିଖର ଦେଶରେ ଶତଧନୁ ପାର୍ଥ ବୀର
ବସି ଗପସପ ହେଉଥିବା କାଳେ ଶୂନ୍ୟେ ଗମଇ ଅସୁର । ୪

ରଥର ଉପରେ ଥାଇ ସତ୍ୟଭାମା ଡାକଲେ ରଖ ଅର୍ଜୁନ
ରଥେ ବସାଇଣ ଗୋସିଂହ ଅସୁର ବଳେ କରୁଛି ହରଣ । ୫

ସତ୍ୟଭାମା କଣ୍ଠ ଧ୍ୱନି ଶୁଣି ପାର୍ଥ ପେଶି ଦେଲେ ତୀକ୍ଷ୍ଣଶର
ଅସୁରକୁ ମାରି ଅସୁର କବଳୁ ଦେବୀଙ୍କୁ କଲେ ଉଦ୍ଧାର । ୬

ସତ୍ୟକେତୁ ରଥେ ବସାଇ ଦେବୀଙ୍କୁ ଚଳିଗଲେ ବେନି ବୀର
ରୈବତ ପର୍ବତେ ମିଳିଣ ଖୋଜିଲେ ହଳଧର, ଚକ୍ରଧର । ୭

ଅସୁର ଭୟରେ ଗିରି ଗହ୍ୱରରେ ଲୁଚିଥିଲେ ଦୁଇଭାଇ
ଅର୍ଜୁନଙ୍କୁ ଦେଖି ବାହାର ହୋଇଲେ ପ୍ରଣମିଲେ ତନ ଯାଇଁ । ୮

ଗୋସିଂହ ନିଧନ ସମ୍ବାଦକୁ ପାଇ ଶାନ୍ତ ହେଲେ ରାମକୃଷ୍ଣ
ଅର୍ଜୁନକୁ କୋଳ କରି କାମପାଳ କଲେ ସ୍ନେହେ ଆଲିଙ୍ଗନ । ୯

ସମାଦର କରି ସ୍ୟନ୍ଦନେ ବସାଇ ଘେନିଗଲେ ପାର୍ଥବୀର
ଦଣ୍ଡକ ମଧ୍ୟରେ ପ୍ରବେଶ ହୋଇଲେ ଯାଇଁ ଦ୍ୱାରକା ନଗର । ୧୦

କପଟ ବେଶକୁ ବଦଳାଇ କୃଷ୍ଣ କରାଇଲେ ବେଶନବ
ସଖା ଅର୍ଜୁନକୁ କୋଳରେ ବସାଇ ପାଳନ କଲେ ଉତ୍ସବ । ୧୧

କୋଇନ୍ତା ଭ୍ରୂମର ଦିବ୍ୟକଳେବର ବିଲୋକ ସୁଭଦ୍ରା ଦେବୀ
କାମେ ଜର ଜର ହୋଇ ରମାବର କଳପି ବସିଲ ଛବି । ୧୨
ପାର୍ଥ ବେନି ନେତ୍ର ଚନ୍ଦ୍ର ସୂର୍ଯ୍ୟ ପ୍ରାପ୍ୟ ପ୍ରକାଶଇ ଦିବ୍ୟ ଜ୍ୟୋତି
ତ୍ରିକୂଟ ତ୍ରିବେଣୀ ତୀରେ ନେତ୍ରଥୋଇ ଦେଖୁଥାଏ ଛନ୍ଦାମୂର୍ତ୍ତି । ୧୩
ବେନି କର୍ଣ୍ଣ ଶୋଭା ଉପମା କି ଦେବା ମୂର୍ତ୍ତିମନ୍ତ ଶ୍ରୁତି ସ୍ମୃତି
ସଦା କୃଷ୍ଣ ନାମ ଶ୍ରବଣେ ନିଯୁକ୍ତ ଧୀର ଶାନ୍ତ ଚିତ୍ତ ବୃତ୍ତି । ୧୪
ନାସା ପୁଟେ ଯହିଁ ଶ୍ରବଣ କରଇ ଜୀବ-ବ୍ରହ୍ମ ବୀଣା ନାଦ
ଭ୍ରମର ଗୁମ୍ଫାରେ ଗୁଞ୍ଜନ ରଟଇ ହଂସ, ସୋଽହଂ ବେନି ଶବ୍ଦ । ୧୫
ହଂସ ଓ ହଂସୁଳୀ ଖେଳ କରୁଛନ୍ତି ଉଲଟ ପାଲଟ ଗତି
ହୃଦ କମଳରେ ଛନ୍ଦାପାଦ ହୋଇ କିବା ବନ୍ଧା ପଡ଼ିଛନ୍ତି ? ୧୬
ରସନାକୁ ଯହିଁ ରସିକା ବିଶ୍ୱରେ ଏହାର ମହିମା ଧନ୍ୟ
ସଦା କୃଷ୍ଣ ନାମ ରଟନ କରୁଛି କରି ମକରନ୍ଦ ପାନ । ୧୭
ଖେଚରି ମୁଦ୍ରାରେ ଓଲଟି ରହିଛି ଉଲଟ ସମ୍ପୂର ଶିରେ
ଛିନ୍ନ ନାଳ ଭେଦି ବହେ ସୁଧାନଦୀ ଦିବାନିଶି ପାନ କରେ । ୧୮
କଣ୍ଠରୁ ନିଶୃତ ବ୍ରହ୍ମ ବୀଣାସ୍ୱନ ଶ୍ରବଣେ ବିଦଗ୍ଧମନ
ଭାବଇ ସୁକେଶୀ ପାଦ ତଳେ ବସି ଶୁଣନ୍ତା ସର୍ବଦା ସ୍ୱନ । ୧୯
ବିଶାଳ ବର୍ତ୍ତୁଳ ବାହୁକୁ ବିଲୋକ ଭାବେ ବଳୟୁଆର ଭୁଜ
ଏ ଭୁଜ ବଳୟ ତଳରେ ଆଶ୍ରୟ କରି ଅଛନ୍ତି ଐଶ୍ୱର୍ଯ୍ୟ । ୨୦
ଏ ବାହୁ ବନ୍ଧନେ ଆବଦ୍ଧ ହେଲେ କି କରି ପାରେ ମଦନ
କରର ଆଙ୍ଗୁଳି କିବା ଚମ୍ପା କଳି କନ୍ଦର୍ପର ପଞ୍ଚବାଣ । ୨୧
ତହିଁ ତୀକ୍ଷ୍ଣ ନଖ ନୃସିଂହ ବିଶିଖ ବିଦାରଇ ମାର ବକ୍ଷ
ମନ ଭେଦିବାର ଧରିଛନ୍ତି କର ରସିକା ହୃଦୟ ଲକ୍ଷ୍ୟ । ୨୨
ବକ୍ଷଦେଶେ ଯହିଁ ଭଦ୍ରା ବର୍ଣ୍ଣଇ ସୁବିସ୍ତାରିତ ପରିଧି
ବିଶାଳ ସାଗର ସମାନ ବିସ୍ତୃତ ଉଦୟାସ୍ତ ଦିଗ ଭେଦି । ୨୩
ଫୁଟିଲ କମଳ ପ୍ରାପ୍ତ ହୃଦ ପଦ୍ମ ଜୀବବ୍ରହ୍ମ ଦୁଇ ମେଳ
ଜୀବ ସ୍ୱରୂପ ଛନ୍ଦା ଚରଣରେ ବନ୍ଧା ନିତ୍ୟ ରାହାସ ମଣ୍ଡଳ । ୨୪
ଜଠରକୁ ଯହିଁ ମନେ ବର୍ଣ୍ଣଇ ସାଗର ସମ ଗଭୀର
ଜୀର୍ଣ୍ଣ ହୋଇଯାଏ ଭକ୍ଷ ବସ୍ତୁମାନ ଷଡରସ ନିରନ୍ତର । ୨୫

ଏ ଗର୍ଭ ପୂରଣ କରିବା କାରଣ ପରସନ୍ତି ଅନ୍ନହସ୍ତେ
ଭୋଜନ ସମୟେ ବ୍ୟଜନ କରନ୍ତି ପାଶେ ବସି ହୃଷ୍ଟ ଚିତ୍ତେ । ୨୬

ଦେଖି ଜାନୁ ଶୋଭା ଭାବେ ନବ ଯୁବା ଅର୍ଜୁନ ବୃକ୍ଷ ପରିସେ
ବିଶାଳ, ବୃଶାଳ, ବର୍ତ୍ତୁଳ, ସରଳ ସୁନ୍ଦର ଶରୀର ବହେ । ୨୭

ଦେଖି ପାଦାଙ୍ଗୁଳି ଭାବେ ନବବାଳ କିବା ରକ୍ତ ପଦ୍ମ କଳି
ଅଳି ପ୍ରାପ୍ତ ଅଳି କରେ କୃତାଞ୍ଜଳି ପୁଚ୍ଛେ ଆଶ୍ରା ନେଇ ବାଳୀ ।୨୮

ସୁଭଦ୍ରା ହୃଦୟେ ଅର୍ଜୁନଙ୍କ ପ୍ରତି ଜାଗରିତ ପ୍ରେମ ଭାବ
ଏ ଭାବ ଉଦୟ ହୋଇଲେ ହୃଦୟେ ଆଧ୍ମିକ ପ୍ରୀତି ଲଭ । ୨୯

ଭଦ୍ରାଙ୍କ ନିମନ୍ତେ ଅର୍ଜୁନଙ୍କୁ ବର ବରିଛନ୍ତି ବାସୁଦେବ
ମାତ୍ର ଦୁର୍ଯ୍ୟୋଧନେ ବରଣ କରିଣ ଆଣିଛନ୍ତି ବଳଦେବ । ୩୦

କୃଷ୍ଣ ପରାମର୍ଶେ ଭଦ୍ରାଙ୍କୁ ଅର୍ଜୁନ ବଳେ କରିଲେ ହରଣ
ଅପମାନ ପାଇ ମାମା ଦୁର୍ଯ୍ୟୋଧନ କଲେ ତହୁଁ ପଳାୟନ । ୩୧

କ୍ରୋଧେ ବଳରାମ ପାର୍ଥ ସଙ୍ଗେ ଯୁଦ୍ଧ କରି ହେଲେ ପରାଜିତ
ଯୋଗ୍ୟ ବର ବରି ଅର୍ଜୁନଙ୍କୁ କନ୍ୟା ବିଭା ଦେଲେ ହଳହସ୍ତ । ୩୨

ସୁଭଦ୍ରା ନିମନ୍ତେ କୁରୁ ପାଣ୍ଡବଙ୍କ ମଧ୍ୟରେ ହେଲା ଅପ୍ରୀତି
କୃଷ୍ଣା ଭଦ୍ରା ବେନି ନାରୀଙ୍କ ନେତ୍ରରେ ନ୍ୟୂନତର କୁରୁପତି । ୩୪

କୃଷ୍ଣା ସ୍ୱୟମ୍ବର କାଳେ ପାଞ୍ଚାଳରେ ଯୁଦ୍ଧ କରି ପରାଜିତ
ଭଦ୍ରା ବିଭାକାଳେ ଦ୍ୱାରକା ନଗରୁ ଫେରିଲେ ହୋଇ ଲଜ୍ଜିତ । ୩୫

ଆଡ଼ମ୍ବର ସହକାରେ ବିଭା କାର୍ଯ୍ୟ ହୋଇଗଲା ସମାହିତ
ବରକନ୍ୟା ଘେନି ଖାଣ୍ଡବ ପ୍ରସ୍ଥକୁ ଫେରିଲେ ଧର୍ମଙ୍କ ସୁତ । ୩୬

ଭଦ୍ରାଙ୍କ ସହିତ ବିହାର କରିଲେ ସୁଖେ ଧନଞ୍ଜୟ ବୀର
ଖାଣ୍ଡବ ପ୍ରସ୍ଥରେ କାଳ କଟାଇଲେ ଶାନ୍ତିରେ କୁନ୍ତୀ କୁମର । ୩୭

ଗୁପ୍ତ ବନବାସ ଶେଷେ ପାଣ୍ଡୁ ଶିଷ୍ୟ ଯାଜ୍ଞସେନୀ ହେଲେ ପ୍ରାପ୍ତ
ଏବେ ବାର ବର୍ଷ ବନବାସ ଶେଷେ ଭଦ୍ରା ବିଭା ହେଲେ ପାର୍ଥ । ୩୮

ଜ୍ୟେଷ୍ଠ ବଧୂ କୃଷ୍ଣା ସହିତ ଭଦ୍ରାଙ୍କ ବଢ଼ିଲା ଭାବ ପୀରତି
ଭଦ୍ରା ଯାଜ୍ଞସେନୀ ପାର୍ଥ ବେନି ନାରୀ ରୂପବତୀ, ଗୁଣବତୀ । ୩୯

ଭଦ୍ରା ରୂପଶୋଭା କି ଅବା ବର୍ଣ୍ଣିବା ଉପମା ନ ମିଳେ କାହିଁ
ସୌନ୍ଦର୍ଯ୍ୟ ସାଗର କୃଷ୍ଣ ଚନ୍ଦ୍ରଙ୍କର ଭଗିନୀ ଅଟନ୍ତି ସେହି । ୪୦
ଭାଇ ରୂପ ପରି ଭଉଣୀର ରୂପ ଉପମା ଓ ଉପମେୟ
ଆଉ ଯେତେ ବସ୍ତୁ ସୁନ୍ଦର ଜଗତେ ନୁହନ୍ତି ତ ତୁଳନୀୟ । ୪୧
ଉଷାର ଅରୁଣ ବର୍ଣ୍ଣର ସହିତ ନବନୀତକୁ ମିଶାଇ
ଫେଣ୍ଟି ଦେଲେ ଯେଉଁ ବର୍ଣ୍ଣ ଜାତ ହୁଏ ତେସନେ ଭଦ୍ରା ଦିଶଇ । ୪୨

ଅଧରରେ ସ୍ମିତ ହାସ୍ୟ ରେଖା ଫୁଟେ ବଚନ ନିର୍ଝର ସ୍ୱନ
କୋକିଳ କଣ୍ଠକୁ ଜିଣି କଣ୍ଠଧ୍ୱନି ହରି ନିଏ ମନପ୍ରାଣ । ୪୩
ଦର୍ଶକ ମନକୁ ସହଜେ ଭୁଲାଇ ନେଇ ପାରେ ନାରୀ ରତ୍ନ
ଚଳନ୍ତି ଲତିକା ପ୍ରାୟ ଅଙ୍ଗ ଶୋଭା ତୁଳନେ କିବା ବିଷର୍ଣ୍ଣ । ୪୪
ଗୋଉର ଅଙ୍ଗରେ ତମାଳ ବରଣ ଘନ ନୀଳ କେଶ ଗୁଚ୍ଛ
ତନୁ ବଲ୍ଲରୀକୁ ଆବୋରି ରଖିଛି ବୀଚମାଳା କରି ତୁଚ୍ଛ । ୪୫
କମଳ ପାଖୁଡ଼ା ସମ କର ତଳ ପାଦ ତଳ ରକ୍ତ ବର୍ଣ୍ଣ
ବିମ୍ବ ଫଳ ପରି ରକ୍ତିମ ଅଧର ଚକ୍ଷୁ ଗାଢ଼ ନୀଳ ବର୍ଣ୍ଣ । ୪୬
ମୁଖ ଅରବିନ୍ଦ ନେତ୍ର ଅରବିନ୍ଦ ପାଦ ପାଣି ଅରବିନ୍ଦ
ଅରବିନ୍ଦ ଗୁଚ୍ଛ ଏକତ୍ର ଥିବାରୁ ଉପମା ପ୍ରତି ପ୍ରମାଦ । ୪୭
ଏତେ ଶୋଭାମୟୀ ହେଲେ ହେଁ ସୁଭଦ୍ରା କୃଷ୍ଣା ସଙ୍ଗେ ନୁହେଁ ସମ
ମାନବୀୟ ସଦ୍‌ଗୁଣ ସମନ୍ୱୟେ ଯାଜ୍ଞସେନୀ ଅନୁପମ । ୪୮
ଜ୍ଞାନ, ବିଦ୍ୟା, ବୁଦ୍ଧି, ଧୈର୍ଯ୍ୟ, ଧୀଶ୍ରୀ, ଶକ୍ତି, ବିଜ୍ଞତା, ସାହସିକତା
ସତୀ, ପତିବ୍ରତା, କ୍ଷମା, ଦୟାଶୀଳା, ସୁଶ୍ରୀ ସହନ ଶୀଳତା । ୪୯
ଏସବୁ ଗୁଣରେ କୃଷ୍ଣାଙ୍କ ସହିତ କେଉଁ ନାରୀ ନୁହେଁ ସରି
ରୂପ ସହ ପ୍ରଜ୍ଞା ବ୍ୟକ୍ତିତ୍ୱ ମିଶ୍ରଣେ ଅନନ୍ୟତମାୟୁ ନାରୀ । ୫୦
ଘନ କୃଷ୍ଣ ବର୍ଣ୍ଣ କୃଷ୍ଣା ଅଙ୍ଗ ଶୋଭା କୃଷ୍ଣ ରୂପ ବର୍ଣ୍ଣ ସମ
କୃଷ୍ଣ ସଙ୍ଗେ କୃଷ୍ଣା କୃଷ୍ଣା ସଙ୍ଗେ କୃଷ୍ଣ ହୋଇ ପାରନ୍ତି ତୁଳନ । ୫୧
ସକଳ ଶୋଭାର ସାଗର ଶ୍ରୀକୃଷ୍ଣ ଅନୁପମେୟ ଶରୀର
କୃଷ୍ଣ ସଙ୍ଗେ କୃଷ୍ଣା ତୁଳନା କରିଲେ ଅତୁଳନୀୟାଳଙ୍କାର । ୫୨
ସୁନୀଳ ତମାଳ ନୀଳ ମେଘ ମାଳ ସମ କୃଷ୍ଣା ରୂପ ବର୍ଣ୍ଣ
ନୀଳ କଇଁ ପରି ନୀଳ ନେତ୍ର ଦୁଇ ଦିଶେ ଗାଢ଼ ନୀଳ ବର୍ଣ୍ଣ । ୫୩

କମଳ କୁମୁଦ ଉଭୟ କୁସୁମ କୃଷ୍ଣା ଅଙ୍ଗେ ସମାବେଶ
ଏଣୁ କୃଷ୍ଣା ସଙ୍ଗେ ସମାନ ନୁହଁନ୍ତି ହେଲେ ଭଦ୍ରା ନାରୀ ଈଶ । ୫୪
ଆକାଶ ତ ନୀଳ ପରବତ ନୀଳ ସାଗର ସଲିଳ ନୀଳ
ନୀଳ ବର୍ଣ୍ଣ ଦର୍ପଣ ସରସୀ ସଲିଳ ସୁନୀଳ ମୟୂର ଚୂଳ । ୫୫
ଏ ସବୁ ନୀଳକୁ ମନ୍ଥନ କରିଲେ ଜାତ ହୁଏ ଘନ ନୀଳ
ସେହି ଘନନୀଳ ବର୍ଣ୍ଣ ନୀଳମଣି ଶରୀର ଶୋଭା ସୁନୀଳ । ୫୬
ବିଶ୍ୱ ବ୍ରହ୍ମାଣ୍ଡର ସୁନ୍ଦର ପୁରୁଷ ଗଣରେ ଶ୍ରେଷ୍ଠ ଶ୍ରୀକୃଷ୍ଣ
ତାଙ୍କ ଠାରୁ କୃଷ୍ଣା ମହିମା ଗଣରେ ଅଧିକ ଗୁଣେ ଚିକ୍କଣ । ୫୭
ନୀଳ ଆକାଶର ଅନନ୍ତ ମହିମା ହେଲେ ହେଁ ଶ୍ରୀକୃଷ୍ଣ ଚନ୍ଦ୍ର
ରୂପେ ଗୁଣେ କୃଷ୍ଣା ସେ ନୀଳାକାଶର ଅଟନ୍ତି ପୂର୍ଣ୍ଣିମା ଚନ୍ଦ୍ର । ୫୮
ସରସୀର ନୀଳ ଜଳ ହେଲେ କୃଷ୍ଣ କୃଷ୍ଣା ନୀଳ ସେବାଳମ
କେହି କାହାରିକୁ ଊଣା ବା ଅଧିକ ନୁହନ୍ତି ବର୍ଣ୍ଣରେ ଜାଣ । ୫୯
ଜଣେ ଜଣକର ଶୋଭାକୁ ବଢ଼ାଏ ଉପମା ଓ ଉପମେୟ
କୃଷ୍ଣ ଛାଡ଼ି କୃଷ୍ଣା କୃଷ୍ଣା ଛାଡ଼ି କୃଷ୍ଣ କଳ୍ପନା ଅତି ଦୁରୂହ । ୬୦
କୃଷ୍ଣ ଆଉ କୃଷ୍ଣା ଏ ଦୁଇ ନାମରେ ପ୍ରତିଷ୍ଠ ସ୍ୱର୍ଗୀୟ ପ୍ରେମ
କୃଷ୍ଣ ପ୍ରେମେ କୃଷ୍ଣା କୃଷ୍ଣା ପ୍ରେମେ କୃଷ୍ଣ ପ୍ଲାବିତ ଅନ୍ତର ଧାମ । ୬୧
କୃଷ୍ଣା ହୃଦ କାରାଗାରେ କୃଷ୍ଣ ଚନ୍ଦ୍ର ବନ୍ଦୀଛନ୍ତି ଚିରଦିନ
ଦ୍ୱିତିକୃଷ୍ଣ ହୃଦେ କୃଷ୍ଣା ବନ୍ଦୀଛନ୍ତି କୃଷ୍ଣ ଅର୍ଜ୍ଜୁନ ଅଭିନ୍ନ । ୬୨
ଦ୍ୱିତି କୃଷ୍ଣ ମଧ୍ୟେ କୃଷ୍ଣଙ୍କୁ ପ୍ରତ୍ୟହ କୃଷ୍ଣା କରନ୍ତି ଦର୍ଶନ
କୃଷ୍ଣ ଦ୍ୱିତି କୃଷ୍ଣ କୃଷ୍ଣାଙ୍କ ନେତ୍ରରେ ଦିଶନ୍ତି ରୂପ ସମାନ । ୬୩
ଅର୍ଜ୍ଜୁନଙ୍କ ପ୍ରାଣ ଅଟନ୍ତି ଶ୍ରୀକୃଷ୍ଣ ଶ୍ରୀକୃଷ୍ଣ ପ୍ରାଣ ଅର୍ଜ୍ଜୁନ
ଅର୍ଜ୍ଜୁନ ପ୍ରାପ୍ତିରେ କୃଷ୍ଣ ପ୍ରାପ୍ତି ହୁଏ କୃଷ୍ଣାର୍ଜ୍ଜୁନ ଆତ୍ମା ପ୍ରାଣ । ୬୪
ପାର୍ଥଙ୍କ ସକଳ ପ୍ରାପ୍ତି ଅପ୍ରାପ୍ତିରେ ଜୟ ପରାଜୟେ କୃଷ୍ଣ
ଯେହେତୁ ଋଗିଦାସୀ କୃଷ୍ଣା ସେହିପରି ଶ୍ରୀକୃଷ୍ଣ ପ୍ରେମେ ନିମଗ୍ନ । ୬୫
କୃଷ୍ଣେ ସମର୍ପଣ ନ କରି ଅର୍ଜ୍ଜୁନ କରନ୍ତି ନାହିଁ ଗ୍ରହଣ
ପାର୍ଥଙ୍କ ପ୍ରଦତ୍ତ ପଦାର୍ଥକୁ କୃଷ୍ଣ କରନ୍ତି ସ୍ନେହେ ଭୋଜନ । ୬୬
ପାର୍ଥ ପ୍ରାଣ ପ୍ରିୟା ଅଟନ୍ତି ଯେ କୃଷ୍ଣା ନୁହନ୍ତି କି ସମର୍ପିତ
କୃଷ୍ଣେ ସମର୍ପିତ ହୋଇବାରୁ କୃଷ୍ଣା କୃଷ୍ଣ କୃଷ୍ଣା ଏକମତ । ୬୭

ଦ୍ୱିତ କୃଷ୍ଣଙ୍କର ପ୍ରିୟା ହେଲେ କୃଷ୍ଣା କୃଷ୍ଣ ଚନ୍ଦ୍ରଙ୍କ ପ୍ରେୟସୀ
ଅନ୍ତର ସତ୍ତାରେ କୃଷ୍ଣ ଦ୍ୱିତ-କୃଷ୍ଣ ସଙ୍ଗେ କୃଷ୍ଣା ଅଛୁ ମିଶି । ୬୮
କୃଷ୍ଣାଙ୍କ ହୃଦୟେ କୃଷ୍ଣ ଅଧିଷ୍ଠିତ ଦେହାତୀତ ଶକ୍ତ ସମ୍ପର୍କ
ଶାଶ୍ୱତ ପ୍ରେମରେ ଘର ପୂର୍ଣ୍ଣ ହୃଦେ କୃଷ୍ଣ ଦ୍ୱିତ କୃଷ୍ଣ ଏକ । ୬୯
ଏହି ନିୟମରେ ନୀଳମଣିଙ୍କର ନୀଳୋତ୍ପଳ ପାଦତଳେ
ନୀଳ ଇନ୍ଦୀବର ତୁଲ୍ୟ କୃଷ୍ଣା ଦେବୀ ଶରଣାଗତ ହୋଇଲେ । ୭୦
କୃଷ୍ଣ ଅନୁଗତା ହୋଇବାରୁ କୃଷ୍ଣା କୃଷ୍ଣ ଭଗ୍ନୀ ଭଦ୍ରା ପ୍ରତି
କନିଷ୍ଠା ଭଗିନୀ ପ୍ରାୟ ସ୍ନେହ ଶ୍ରଦ୍ଧା କଲେ କୃଷ୍ଣା ଶିରମଣି । ୭୧
ଚିତ୍ରାଙ୍ଗଦା, ଆର୍ଯ୍ୟା, ଉଲୁପି, ସୁଭଦ୍ରା, ହାରମଣି ପଞ୍ଚ ନାରୀ
କୃଷ୍ଣା ସଙ୍ଗେ କେହି ତୁଳନ ନୁହନ୍ତି ହରନ୍ତି ନନ୍ଦନ କରି । ୭୨
ପଞ୍ଚ କଟକର ରାଜ ରାଜେଶ୍ୱରୀ ବହ୍ନି କନ୍ୟା ଯାଜ୍ଞସେନୀ
ସଉତୁଣୀ ଗଣେ ଶ୍ରଦ୍ଧା କରୁଥାନ୍ତି ବରିଷ୍ଠ କନିଷ୍ଠା ଭଗ୍ନୀ । ୭୩

ଖାଣ୍ଡବ ପ୍ରସ୍ଥରେ ରହିଲେ ପାଣ୍ଡବେ ହିନୁ ହିନ ବୃଦ୍ଧି ଖ୍ୟାତି
ଯଦୁ ଯାତ ବଂଶ ସପକ୍ଷେ ରହିଲେ ବଢ଼ିଲା ଅସୀମ ଶକ୍ତି । ୭୪
ଶୂଳଧାରୀ, ବଜ୍ରଧାରୀ, ଚକ୍ରଧାରୀ ହଳଧାରୀ ସହିତରେ
ଗାଣ୍ଡିବ ଧାରୀଙ୍କ ଠାରୁ ହାରିଗଲେ ଅଜେୟ ବୀର ମର୍ତ୍ତ୍ୟରେ । ୭୫
ପୂର୍ବରେ କଳିଙ୍ଗ ପଶ୍ଚିମେ ଦ୍ୱାରକା ଉତ୍ତରରେ ମଣିପୁର
ବିରାଟ, ଦ୍ରୁପଦ, ସଙ୍ଗେ ନାଗବଂଶ ବନ୍ଧୁ ହେଲେ ପାର୍ଥଙ୍କର । ୭୬
ଶବର, ବାହ୍ଲିକ, ଝଲ୍ଲିକ, ଭୂମିଜ ବନଗିରି ବାସୀ ଜନ
କିରାତ ଅର୍ଜୁନ ସପକ୍ଷେ ରହିଲେ କରି ବନ୍ଧୁ ମିତ୍ରପଣ । ୭୭
ବାହୁବଳ, ବନ୍ଧୁ ବଳ, ଧର୍ମବଳ ମିଶି ଏହି ବଳତ୍ରୟ
ଭରତେ ପାଣ୍ଡବେ ଉଦିତ ହୋଇଲେ ଅରିଷ୍ଟ କରିଣ ଜୟ । ୭୮

ହିନୁହିନ ଶତ୍ରୁ ବଳବୃଦ୍ଧି ଦେଖି ଦୁର୍ଯ୍ୟୋଧନ ବିଷାଦିତ
ଶକୁନି କହିଲା ବିବ୍ରତ ନ ହୁଅ ବଳଠାରୁ ବୁଦ୍ଧି ଶ୍ରେଷ୍ଠ । ୭୯
ବୁଦ୍ଧିର ବଳରେ ସିଂହକୁ ଶୃଗାଳ ପକାଇଲା ନେଇ ଖାତେ
ମୋ ବୁଦ୍ଧି ବଳରେ ଚାଲିଲେ ନୃପତି ପରାଭବ ନାହିଁ ତୋତେ । ୮୦
କୌଶଳ କରିଣ ପାଣ୍ଡବଙ୍କ ଶିରୀ କରିବା ହୋ କରଗତ
ମନ୍ତ୍ରୀ ପରାମର୍ଶ ପାଇ କୁରୁପତି ହୋଇଲେ ମନେ ଆଶ୍ୱସ୍ତ । ୮୧

ବୟାଅଶୀ ପଦେ ଅଧ୍ୟାୟ ସଂପୂର୍ଣ୍ଣ ଗୀତେ ଭଣେ ବୃନ୍ଦାବନ
ପଦପଦ କରେ ରସ ପୂର ଅଛି କୃଷ୍ଣ ଚରିତ ମାନସ । ୮୨
ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ମଥୁରା-ଦ୍ୱାରକା
ଲୀଳା ଖଣ୍ଡେ ସୁଭଦ୍ରା ପରିଣୟ ବର୍ଣ୍ଣନେ
ନାମ ଚତୁର୍ବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

**ବୋଲି —**

ଠାକୁରେ କି ଗାଇବି ଲୀଳା ତୁମର
ଶରୀର ଲୁଗ୍ରଇ ଥିଲେ କୃଷ୍ଣା ପାଇଁ
ଭକ୍ତ ସଙ୍ଗେ ଖେଳଧରି ଶରୀର ॥ ଘୋଷା ॥

ହରକ ଜୟନ୍ତୀ ଉତ୍ସବେ ଆଶ୍ରମେ
ଯାଇଥିଲି ଶ୍ରଦ୍ଧା ବହି ମନର
ଆନନ୍ଦ ଆଶ୍ରମେ ଆନନ୍ଦ ଉଲ୍ଲାସେ
ଦେଖିବାକୁ ମହୋତ୍ସବ ତୁମର । ୧

ଆଜ୍ଞା ଅଛି ଏକ ବର୍ଷିରୁ ଅଧିକ
ଆଶ୍ରମେ ନ ହେବ ଡେରା ମୋହର
ମନ ମଧ୍ୟେ ଡର ରହୁଥାଏ ମୋର
କପରି ଦେଖିବି ଉତ୍ସବ ତୋର । ୨

ଜନ୍ମୋତ୍ସବ ଦିନ ସୁଖେ ବିତିଗଲା
ଅଭିରାମ ନାମ ଭଜନେ ମୋର
ପଙ୍କତେ ନ ବସି ପରସାଦ କିଣି
କରିଲି ଏଣ୍ଡୁରି ପିଠା ଆହାର । ୩

ଦ୍ୱିତୀୟ ଦିବସ ଦ୍ୱିତୀୟ ପ୍ରହର
ନଶା ଗରଜେ ଅତି ଭୟଙ୍କର
ଆଜ୍ଞା ହେଲା ମୋତେ ଆଶ୍ରମ ଛାଡ଼ିଣ
ପଳାଇ ଯିବାକୁ ଘରକୁ ମୋର । ୪

ବିଳମ୍ବ ନ କରି ଚଣ୍ଡିଗିକୁ ଧରି
ଚାଲିଲି ଏକାକୀ ଲୁଣା ବନ୍ଧର
କୃଷ୍ଣ ପ୍ରତିପଦ ରାତି ଭୟଙ୍କର
ଚାରିକୂଡ଼ି କରେ ଘନ ଅନ୍ଧକାର । ୫

ମାଘମାସ ରାତି ଦାନ୍ତଭଙ୍ଗା ଶୀତ
ଥରଇ ସର୍ବାଙ୍ଗ ଜାଡ଼ରେ ମୋର
ନିସ୍ତବ୍ଧ ରଜନୀ ସୁସୁପ୍ତ ଅବନୀ
ପେଚକ କରଇ କର୍କଶ ସ୍ୱର । ୬

ଗ୍ରାମ ଖଣ୍ଡେ ଦୂରେ ଲୁଣାନଦୀ ତୀରେ
ରହିଛି ବିଶାଳ ବୃକ୍ଷେକ ବର
ଗଛ ଛାଇ ସଙ୍ଗେ ଅନ୍ଧକାର ମିଶି
ପରିବେଶ ଅଧିକ ଅନ୍ଧକାର । ୭

ଅନ୍ଧାର ମଧ୍ୟରେ ନିରେଖି ଦେଖିଲି
ଦଣ୍ଡାୟମାନ ଅସ୍ପଷ୍ଟ ଶରୀର
ମୋତେ ଦେଖି କରି ସ୍ମିତହାସ୍ୟ କରି
ପୁଚ୍ଛିଲେ ବଚନ ଧୀର ମଧୁର । ୮

" ରାତି ଅଧଟାରେ କେଉଁ ଆଜ୍ଞେ ଯାଅ
ସାଥିରେ ନାହାନ୍ତି ଜଣେ ତୁମର
ଡେଲଙ୍ଗ ଯିବ କି ଆସ ମୋ ସାଥିରେ
ଖୋଜୁଥିଲି ଜଣେ ସାଥି ମୋହର । ୯

ଚାଲ ସାଙ୍ଗ ହୋଇ ଯିବା ଆମ୍ଭେ ଦୁଇ
ବାଟ ଚାଲି କ୍ଳାନ୍ତି ହୋଇବ ଦୂର
ଆଗ ଚାଲ ତୁମେ ପଛେ ଯିବି ମୁହିଁ
ଅନୁସରି ପାଦ ଗତି ତୁମର " । ୧୦

ମୁଁ କହିଲି ଆଗେ ଚାଲନ୍ତୁ ଆପଣ
ତୁମ୍ଭ ପଛେ ହେବ ଗତି ମୋହର
ବାରଣ କରିଣ କହିଲେ ଆପଣ
"ନ ଲଙ୍ଘ କହିବା କଥାଟା ମୋର" । ୧୧

ଆଜ୍ଞା ଅନୁସାରେ ଯାତ୍ରାରମ୍ଭ ହେଲା
ମିଳାଲେ ହେଲଙ୍ଗ ରେଳ ଷ୍ଟେସନ
କହିଲ ଏଥର ବିଦାୟ ନେଉଛୁ
ରାତ ପାହି ହେଲା ସକାଳ ଭୋର । ୧୨

ଏକାକୀ ଜଙ୍ଗଲେ ଆସିବ ଭାବଣ
ଆସିଥିଲ ପଛେ ଗୋଡ଼ାଇ ଚୋର
ଭକ୍ତ ପୃଷ୍ଠ ଭାଗ ରକ୍ଷା ମୋ ଦାୟିତ୍ୱ
ମୁଁ ଯେଣୁ ଭକ୍ତର କଣା ନୌକର । ୧୩

ଚିହ୍ନି ପାରିଲୁ କି ଦେଖ ମୋ ରୂପକୁ
ଅଭିରାମ ନାମ ଗୋଟି ମୋହର
ଅଭିରାମ ଭକ୍ତ ଭବେ ଖେଳ ହୋଇ
ଦିଅଇ ସ୍ୱରୂପ ଦର୍ଶନ ମୋର । ୧୪

ଅଭିରାମ ଶ୍ୟାମ ରୂପ ଅନୁପମ
ଦେଖିଲା ନୟନ ପଥେ ମୋହର
ବେନି କର ଯୋଡ଼ି ପ୍ରଣାମ କରିଲି
ନମୋ ନମସ୍ତେ ଅଭୁଲ ଠାକୁର । ୧୨

—●—

# ପଞ୍ଚବିଂଶ ଅଧ୍ୟାୟ

## ହରି ହରି ଅର୍ଜ୍ଜୁନ ସାକ୍ଷାତ

( ରାଗ - ବଙ୍ଗଳାଶ୍ରୀ )

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ କର ଆହେ ସୁଜ୍ଞଜନ
ପଦ ପଦକରେ ରସ ପୂରି ଅଛି ରସିକେ କର ହୋ ପାନ । ୧

ସୁଭଦ୍ରା ବିବାହ ଅନ୍ତେ କେଉଁ ପରି ଅଛନ୍ତି ପାଣ୍ଡୁ ତନୟ
ଅପମାନ ପାଇ ଫେରି ଦୁର୍ଯ୍ୟୋଧନ ପୁଣି କରେ କି ଉପାୟ ? ୨

ପୁତୁରାଙ୍କ ପ୍ରତି ଜ୍ୟେଷ୍ଠ ପିତାଙ୍କର କପଟ ରହିଛି ପ୍ରୀତି
ଏହି ସବୁ କଥା ବୁଝି ଆସିବାକୁ ଉଦ୍ଧବଙ୍କୁ ଶିଘ୍ରପତି । ୩

ନନ୍ଦିଘୋଷରଥ ଦେଇ ପଠାଇଲେ ସହସା ଖାଣ୍ଡବପ୍ରସ୍ଥେ
ଫୁଲପିତା ପାଇଁ ଭଉଣୀ ଭଣେଇ ଡ଼ାକ ଆଣିବାକୁ ସାଥେ । ୪

ଖାଣ୍ଡବ ପ୍ରସ୍ଥରେ ମିଳଲେ ଉଦ୍ଧବ କୁନ୍ତୀ କଲେ ବହୁ ସ୍ନେହ
ହସାବେ ଉଦ୍ଧବ ପୁତୁରା ତାଙ୍କର ଦେବଭାଗଙ୍କ ତନୟ । ୫

ଶୂରସେନଙ୍କର ଦୁଇଗୋଟି ପୁଅ ବସୁଦେବ, ଦେବଭାଗ
ବଡ଼ ବସୁଦେବ ସାନ ଦେବଭାଗ ପରସ୍ପରେ ଅନୁରାଗ । ୬

ବସୁଦେବ ସୁତ କୃଷ୍ଣ, ବଳରାମ ଦେବଭାଗଙ୍କ ଉଦ୍ଧବ
କକା ପୁଅ ଭାଇ ଉଦ୍ଧବଙ୍କୁ ଦେଖି କୁନ୍ତୀ କଲେ ସ୍ନେହଭାବ । ୭

ପୁତୁରାଙ୍କୁ କୋଳେ ବସାଇ ସସ୍ନେହେ ମୁଖରେ ଦେଲେ ଚୁମ୍ବନ
ପଣତ କାନରେ ଅଙ୍ଗ ପୋଛି ଦେଇ ଭୁଞ୍ଜାଇଲେ କ୍ଷୀର ଅନ୍ନ । ୮

କୃଷ୍ଣଙ୍କର ପ୍ରିୟ ସୋଦର, ମଇତ ବିଶ୍ୱସ୍ତ ଓ ଅନୁଗତ
ଥିବାରୁ ଉଦ୍ଧବେ ବିଶ୍ୱାସ କରିଣ ପଠାଇଥିଲେ ଅଚ୍ୟୁତ । ୯

ମାମୁଁ ପୁଅ ଭାଇ ଉଦ୍ଧବଙ୍କୁ ଚାଇ କୁନ୍ତୀ ପୃଛେ କଲେ ସ୍ନେହ
ଉଦ୍ଧବ କହିଲେ ସମ୍ବାଦ ନେବାକୁ ପେଷିଛନ୍ତି ଦେବରାୟ । ୧୦

ଫୁଲପିତା ପାଇଁ ଭଉଣୀ ଭଣେଇ ନେବାକୁ ସଙ୍ଗତେ ମୋର
ନନ୍ଦିଘୋଷ ରଥ ପଠାଇ ଅଛନ୍ତି ଦ୍ୱାରକାର ଅଧୀଶ୍ୱର । ୧୧

ପଚାରି ବୁଝିଲେ କେମନ୍ତ ଖବର କପଟି ରଖିଛୁ ଅଛି
ପ୍ରମାଦ ପଡ଼ିଲା ପରି ଜଣାଯାଏ ମୁଖ ମଣ୍ଡଳରେ ଖେଦ । ୧୨
ମନ୍ତ୍ରୀ ସହଦେବ କହିଲେ ହେ ଶୁଣ ଆମ୍ଭର କୌରବ ଭ୍ରାତା
ଆମକୁ ସର୍ବଦା ହେୟ ମଣୁଛନ୍ତି ନ କହନ୍ତି ପ୍ରିୟ କଥା । ୧୩
ସେମାନେ ଭାବନ୍ତି ଅମ୍ଭେମାନେ ସଦା ସେମାନଙ୍କ ପ୍ରତିଦ୍ୱନ୍ଦୀ
ସୁଭଦ୍ରା ବିବାହ ଦିନୁ କଉରବେ ଅଧିକନ୍ତୁ ପ୍ରତିବାଦୀ । ୧୪
କୃଷ୍ଣା ସ୍ୱୟମ୍ବର କାଳରୁ ଶତ୍ରୁତା ଆମ୍ଭ ସଙ୍ଗେ କରୁଛନ୍ତି
ଯେତେ ଉପକାର କଲେ ତାହାଙ୍କର ନୁହନ୍ତି ସେମାନେ ଶାନ୍ତ । ୧୫
ତାଙ୍କର ଧାରଣା ଆମ୍ଭେମାନେ ସଦା ସେମାନଙ୍କ ପ୍ରତିବାଧା
ଆମ୍ଭ ଯୋଗୁ ବାରମ୍ବାର ସେହି ମାନେ ହରାଉଛନ୍ତି ସମୃଦ୍ଧି । ୧୬
ଖାଣ୍ଡବ ପ୍ରସ୍ଥକୁ ସମୃଦ୍ଧ କରିଛୁ ବଢ଼ିଛି ବଂଶର ମାନ
ଆମ ସାମରିକ ଶକ୍ତି ଅପ୍ରମିତ କରିଛୁ ଶତ୍ରୁ ସାଧନ । ୧୭
ଧର୍ମ ନ୍ୟାୟେ ଆମ୍ଭେ ପ୍ରଜାଙ୍କୁ ପାଳୁଛୁ ସୁରକ୍ଷିତ ଧନଜନ
ଜ୍ୟେଷ୍ଠ ଭ୍ରାତା ଯୁଧିଷ୍ଠିରେ ରାଜ୍ୟବାସୀ କରନ୍ତି ଶ୍ରଦ୍ଧା ସମ୍ମାନ । ୧୮
ବହୁ ଯୁଦ୍ଧେ ଆମ୍ଭେ ବିଜୟୀ ହୋଇଛୁ ତେଣୁ ଇର୍ଷ୍ୟା ପରାୟଣ
ଆମ୍ଭଙ୍କୁ ନିଧନ କରିବାକୁ ଦୁଷ୍ଟେ ଷଡ଼ଯନ୍ତ୍ରରେ ନିମଗ୍ନ । ୧୯
ଭୀମଙ୍କୁ ଗୋପନେ ଡ଼କାଇ ନେଇଣ ଖାଦ୍ୟ ସଙ୍ଗେ ଦେଲେ ବିଷ
ଧର୍ମ ବଳେ ଭୀମ ନ ମରି ବଞ୍ଚିଲେ ଥିବାରୁ ତାଙ୍କ ଆୟୁଷ । ୨୦
ଭୀମ ସେମାନଙ୍କ ମନୋଦେଶ୍ୟମାନ ପଣ୍ଡ କରି ଦେଉଛନ୍ତି
ଏଣୁ ତାଙ୍କ ପ୍ରତି ସଦା ବୈରଭାବ କରୁଛନ୍ତି କୁରୁପତି । ୨୧
ବାଳକ କାଳରୁ ଝିମିଟି ଖେଳରୁ ଭାଇଭାଇ ମଧ୍ୟେ ଗୋଳ
ସମାଧାନ କରି ନ ପାରିଲେ ତାତ ପୁତ୍ର ସ୍ନେହେ ହୋଇ ଭୋଳ । ୨୨
ପାଶରୁ ଅନ୍ତର କରାଇ ଆମ୍ଭଙ୍କୁ ପେଷିଲେ ଖାଣ୍ଡବପ୍ରସ୍ଥ
ରାଜପୁତ୍ର ହୋଇ ରାଜପ୍ରାସାଦର ସୁଖରୁ ହେଲୁ ବଞ୍ଚିତ । ୨୩
କୂଟେ ଜତୁ ଗୃହେ ରଖାଇ ଆମ୍ଭଙ୍କୁ ଭାବିଲେ କରିବେ ହତ
ଦାହ୍ୟ ପଦାର୍ଥରେ ଗୃହ ନିର୍ମାଣିଲେ ଜଗାଇଲେ ବିପ୍ର ଦୁଷ୍ଟ । ୨୪
ଖଲ୍ଲତାତ ଯୋଗୁଁ ଜୀବନ ରହିଲା ଷଡଯନ୍ତ୍ରୁ ଗଲୁ ବର୍ତ୍ତି
ତିନି ବର୍ଷ କାଳ ବନରେ ବୁଲିଲୁ କଲୁ ପୁଣି ଭିକ୍ଷା ବୃତ୍ତି । ୨୫

କେତେ ବେଳେ କେଉଁ ଷଡଯନ୍ତ୍ର କରି ଯେନବେ ଆତ୍ମ ଜୀବନ
ତାହା ତାଙ୍କୁ ଜଣା ମାତ୍ର ଆମ୍ଭେ ସଦା କୃଷ୍ଣର ଆଶ୍ରିତ ଜନ । ୨୬
କୃଷ୍ଣ କୃପା ଥିଲେ କି କରି ପାରିବେ ଅନ୍ଧର ଶତ ତନୟ
ଏ ବିଶ୍ୱାସ ରଖି ଜୀବନ ଧରିଛୁ ମରଣକୁ ନାହିଁ ଭୟ । ୨୭
ଖାଣ୍ଡବ ପ୍ରସ୍ଥର ସମୃଦ୍ଧି ବୃଦ୍ଧିରେ ସେହିମାନେ ଈର୍ଷ୍ୟାନ୍ୱିତ
ଧର୍ମ ରାଜନଙ୍କ ନ୍ୟାୟ ଶାସନକୁ ଦେଖି ପ୍ରଜାଏ ଆକୃଷ୍ଟ । ୨୮
ପ୍ରତିଦିନ କିଛି କିଛି ପ୍ରଜାମାନେ ହସ୍ତିନାପୁର ତେଜିଣ
ଖାଣ୍ଡବ ପ୍ରସ୍ଥକୁ ପଳାଇ ଆସିଣ କରୁଛନ୍ତି ଅବସ୍ଥାନ । ୨୯
ସେଥି ପାଇଁ ତାଙ୍କ ମନେ ଶଙ୍କାଭାବ ହେଉଅଛି ଜାଗରିତ
ପ୍ରଜା ଆନ୍ଦୋଳନ କାଳେ ହୋଇ ପାରେ ଭାଙ୍ଗିବାକୁ ରାଜଛତ୍ର । ୩୦
ଏଣୁ ଷଡ଼ ଯନ୍ତ୍ରେ ଲିପ୍ତ ରହିଛନ୍ତି ଆମ୍ଭଙ୍କୁ ଦେବାକୁ ଶାସ୍ତି
ଫିଟାଇ କହିଲି ହେ ଭ୍ରାତା ଉଦ୍ଧବ କହ ଯା ଦ୍ୱାରକା ପତି । ୩୧
ପାଣ୍ଡବମାନଙ୍କ ଭଲମନ୍ଦ ବାର୍ତ୍ତା ଘେନି ଚଳିଲେ ଉଦ୍ଧବ
ଭଦ୍ରା ପାର୍ଥ ସଙ୍ଗେ ଦ୍ୱାରକାରେ ମିଳି ଜଣାଇଲେ ବାର୍ତ୍ତା ସବ । ୩୨
ଉଦ୍ଧବ କହିଲେ କୃଷ୍ଣ ବାସୁଦେବ ଚରଣାଶ୍ରିତ ହୋଇଣ
କୁନ୍ତୀ ପୁତ୍ରେ କାଳ କାଟୁଛନ୍ତି ପ୍ରଭୁ କରିତାଙ୍କୁ ପରିତ୍ରାଣ । ୩୩
ସେମାନଙ୍କ ପ୍ରତି ଧୃତରାଷ୍ଟ୍ର ମନେ ନ ଥାଏ ଟିକିଏ ଶ୍ରଦ୍ଧା
ତଥାପି ଧର୍ମଙ୍କୁ ନ ଛାଡ଼ନ୍ତି ପୁତ୍ରେ ଆସୁଯେତେ ବିଘ୍ନବାଧା । ୩୪
ଭ୍ରାତା ଉଦ୍ଧବଙ୍କ କଥା ଶୁଣି ପ୍ରଭୁ ନୟନ ଲୋତକ ପୂର୍ଣ୍ଣ
ଧର୍ମରେ କିଷଣ ଅବଶ୍ୟ ପଡିଇ ଉଦ୍ଧବେ କହିଲେ କୃଷ୍ଣ । ୩୫
ଠିକଣା ସମୟେ ଶାସ୍ତିକୁ ପାଇବେ ଧରମ ଦ୍ରୋହୀ ପାଷାଣ୍ଡ
ସେ ପର୍ଯ୍ୟନ୍ତ ପୁତ୍ରେ ଅବଶ୍ୟ ଭୋଗିବେ ଦୁଷ୍ଟ ମାନଙ୍କଠୁ ଦଣ୍ଡ । ୩୬
ଶ୍ରୀକୃଷ୍ଣଙ୍କ ଠାରୁ ବିଦାୟ ଘେନିଣ ଗୃହେ ଚଳିଲେ ଉଦ୍ଧବ
ଗମ୍ଭୀର ମାନସେ ଚିନ୍ତା କଲେ ବସି କାର୍ଯ୍ୟ ପନ୍ଥା ବାସୁଦେବ । ୩୭
ଆଦର ପାଇଣ ଦ୍ୱାରକା ନଗରେ ରହିଲେ ଭଦ୍ରା ଅର୍ଜୁନ
ଏକଦା ଦେବକୀ ଦେବୀଙ୍କ ପାଶରେ ମିଳିଲେ ନାରଦ ମୁନ୍ୟ । ୩୮
ମୁନିଙ୍କର ପାଦ ପୂଜା କରି ମାତା ପୁଚ୍ଛିଲେ ଧୀର ବଚନ
ହେ ନାରଦ ମୁନି ଦିଅ ଏହି ବର " ପୁତ୍ର ହେଉ ସଦା କୃଷ୍ଣ" ୩୯

ଏ ଜନ୍ମେ ମୋହର ତନୟ ହେଲେ ହେଁ ସ୍ତନ୍ୟ ପାନରୁ ବଞ୍ଚିତ
ଏ କଥା ସ୍ମରଣ କରି ମୋ ମାତୃତ୍ୱ ଦୁଃଖରେ କ୍ରନ୍ଦନ ରତ । ୪୦
ଯୁଗେ ଯୁଗେ ମୋର ତନୟ ହୋଇବେ କରିବ କୋଳେ ଧାରଣ
କ୍ଷୀର ପାନ ଦେଇ ସନ୍ତୋଷ କରିବ କାମନା ହୋଇବ ପୂର୍ଣ୍ଣ । ୪୧
ନାରଦ କହିଲେ ଶୁଣ ଗୋ ଜନନୀ ଶ୍ରୀହରି ଜନ୍ମ ରହସ୍ୟ
ପୁତ୍ର ରୂପେ ତାଙ୍କୁ ପାଇବାକୁ ହେଲେ ବାଞ୍ଛିତ ବାତ୍ସଲ୍ୟ ରସ । ୪୨
ଯେଉଁ ସମୟରେ ଧର୍ମ ଅବକ୍ଷୟ ହୁଏ ଭରତ ଭୂଇଁରେ
ସେହି ସମୟରେ ବ୍ରହ୍ମ ଅବତାର ହୁଅନ୍ତି ସଗୁଣାକାରେ । ୪୩
ଈଶ୍ୱରାବତାର ନିର୍ଦ୍ଦିଷ୍ଟ ସମୟ ଥିବାର ପ୍ରମାଣ ନାହିଁ
ସମୟାନୁସାରେ ଘଟଣା ପ୍ରବାହେ ଅବତାର ଥାଏ ହୋଇ । ୪୪
ଦୁର୍ଜ୍ଜନ ଦଳନ ସଜ୍ଜନ ପାଳନ ସଙ୍ଗେ ଧର୍ମ ସଂସ୍ଥାପନ
କରିବା ନିମନ୍ତେ ମାନବ ଶରୀରେ ଜନମନ୍ତି ଭଗବାନ । ୪୫
ଏହି ତିନିକର୍ମ ସମ୍ପାଦନ ପାଇଁ ମର୍ତ୍ତ୍ୟପୁରେ ଅବତୀର୍ଣ୍ଣ
ମନୁଷ୍ୟ ମଧ୍ୟରେ ଆସୁରୀ ପ୍ରବୃତ୍ତି ବିନାଶନ୍ତି ନାରାୟଣ । ୪୬
ଚାରି ଯୁଗ ମଧ୍ୟେ କୌଣସି ଯୁଗର ନିର୍ଦ୍ଦିଷ୍ଟ ସମୟାନ୍ତରେ
ବିଷ୍ଣୁ ଅବତାର ହୋଇବା ଦୃଷ୍ଟାନ୍ତ ନାହିଁ ଶାସ୍ତ୍ର ପୁରାଣରେ । ୪୭
ଧର୍ମ ସଂସ୍ଥାପନ ସଜ୍ଜନ ପାଳନ ଆବଶ୍ୟକତାନୁସାରେ
ଯେକୌଣସି ଯୁଗେ ଯେକୌଣସି କାଳେ ଆର୍ବିଭାବ ହୋଇପାରେ ।୪୮
ବିଷ୍ଣୁଙ୍କର ମୁଖ୍ୟ ଦଶ ଅବତାର ମଧ୍ୟୁ ଚାରି ଅବତାର
ମତ୍ସ୍ୟ ଓ କଚ୍ଛପ ବରାହ ନୃସିଂହ ଜଳଚର ସ୍ଥଳଚର । ୪୯
ମତ୍ସ୍ୟ ଅବତାରେ ଶଙ୍ଖାସୁର ମାରି କଲେ ବେଦ ଉଦ୍ଧାରଣ
ସମୁଦ୍ର ମନ୍ଥନ କାଳେ କୂର୍ମ ରୂପେ ମନ୍ଦର କଲେ ଧାରଣ । ୫୦
ମୋହିନୀ ରୂପରେ ଅସୁରେ ଭୁଲାଇ ଅମୃତ କଲେ ହରଣ
ଦେବତାଙ୍କୁ ସୁଧା ଖାଇବାକୁ ଦେଇ ଅସୁରେ କଲେ ବାରଣ । ୫୧
ବରାହାବତାରେ ହିରଣାକ୍ଷ୍ୟ ମାରି ପୃଥିବୀ ଉଦ୍ଧାର କଲେ
ନୃସିଂହ ରୂପରେ ଖମ୍ବୁ ଜାତ ହୋଇ ହିରଣ୍ୟକୁ ବିଦାରିଲେ । ୫୨
ପଞ୍ଚମାବତାରୁ ଦଶ ଅବତାର ଏହି ଷଷ୍ଠ ଅବତାର
ମାନବ ରୂପରେ ଜନନୀ ଜଠରୁ ଜନମିଲେ ଶିରୀଧର । ୫୩

ଅଦିତି ଜନନୀ କଶ୍ୟପ ଜନକ ଶ୍ରୀବାମନ ବିଷ୍ଣୁ ଜାତ
କୂଟେ ଖର୍ବକାୟ ରୂପେ ପାତାଳକୁ ଚପି ଦେଲେ ବଳି ଦୈତ୍ୟ । ୫୪
ପିତାଯମଦଗ୍ନି ରେଣୁକା ଜନନୀ ଗର୍ଭୁଜାତ ପର୍ଶୁରାମ
ଏକ ବିଂଶବାର ନିକ୍ଷତ୍ରି କରିଲେ ଭୂରିକୁଳ ଧରାଧାମ । ୫୫
ବିପ୍ରଙ୍କ ଉପରେ କ୍ଷତ୍ରିୟ ଦମନ ପ୍ରତିଶୋଧ ନେବା ପାଇଁ
ସହସ୍ରାର୍ଜ୍ଜୁନଙ୍କୁ ବିନାଶ କରିଲେ ଶିବ-ବିଷ୍ଣୁ ଶକ୍ତି ପାଇ । ୫୬
ପିତା ଦଶରଥ କୌଶଲ୍ୟା ମାତ ଶ୍ରୀରାମ ନାମେ ସମ୍ଭୂତ
ମହାଧନୁର୍ଦ୍ଧର ରୂପକୁ ଧରିଣ ବିନାଶିଲେ ଲଙ୍କନାଥ । ୫୭
ଏ ଦ୍ୱାପର ଯୁଗେ ତୁମରି ଗର୍ଭରୁ ରାମକୃଷ୍ଣ ବେନି ଜାତ
ହୋଇ ଗୋପପୁରେ ଗୋପନେ ରକ୍ଷଣ କଂସଙ୍କୁ କଲେ ନିହତ । ୫୮
ମଣିଷ ଭିତରେ ଆସୁରୀ ପ୍ରବୃତ୍ତି ହୋଇଛି ପ୍ରବଳତର
ତାହାର ବିନାଶ କରିବା ନିମନ୍ତେ ମହାବିଷ୍ଣୁ ଅବତାର । ୫୯
ମହାବଳବାନ ହୋଇ ନରାସୁରେ ଗ୍ରାସିଲେ ପୂର୍ଣ୍ଣ ଭାରତ
ଭାରତ ସମରେ କୌରବ ସହିତ ଲକ୍ଷେ ରାଜା ହେବେ ହତ । ୬୦
ସର୍ବ ଶକ୍ତିବାନ ପୂର୍ଣ୍ଣ ପରଂବ୍ରହ୍ମ କୃଷ୍ଣ ରୂପକୁ ଧରିଣ
ଅନୁଗ୍ରହ କରି ମର୍ତ୍ତ୍ୟେ ଅବତରି ଦିବ୍ୟ ଲୀଳା ପ୍ରଦର୍ଶନ । ୬୧
ସଗୁଣ ବ୍ରହ୍ମଙ୍କ ଦର୍ଶନ, ଶ୍ରବଣ ସ୍ପର୍ଶ, ସାନିଧ୍ୟ ପାଇଣ
ଆନନ୍ଦରେ ଭକ୍ତେ ସଗୁଣ ଲୀଳାର ଗୁଣ କରନ୍ତି କୀର୍ତ୍ତନ । ୬୨
ମହା ମାନବୀୟ ଲୀଳା ପ୍ରଦର୍ଶନ କରୁଛନ୍ତି ଭଗବାନ
ପ୍ରାକୃତିକ ଉପାଦାନେ ତାଙ୍କ ଦେହ ହୋଇ ନ ଥାଏ ଗଠନ । ୬୩
ସେ ଶରୀର ଦିବ୍ୟ ଚିନ୍ମୟ ଶାଶ୍ୱତ ଜ୍ୟୋତିର୍ମୟ ଓ ବିଶୁଦ୍ଧ
ଗୁଣ କର୍ମ ହେତୁ ନୁହନ୍ତି ଜନମ ନୁହନ୍ତି ମାୟା ଆବଦ୍ଧ । ୬୪
ଏମନ୍ତ ଯେ ପ୍ରଭୁ ଗର୍ଭେ ଠାବ ଦେଇ ଧନ୍ୟ ହୋଇ ଗଲି ମାତ
ଜନ୍ମେ ଜନ୍ମେ ତାଙ୍କୁ କୋଳେ ଧରିବାକୁ ତୁମେ ଏକା ସାମରଥ । ୬୫
ମାତ୍ର ସେ ସର୍ବଦା ନୁହନ୍ତି କାହାର ଭାବରେ ସେ ବଶୀଭୂତ
ଭକ୍ତିରେ ଯେ ତାଙ୍କୁ ବନ୍ଧନ କରିଲା ହେଲେ ତାର କୋଳାଗତ । ୬୬
ସର୍ବଦା ବୈକୁଣ୍ଠ ପୁରେ ନ ରହନ୍ତି ନ ବସନ୍ତି ଯୋଗୀ ହୃଦେ
ଯେଉଁଠାରେ ଭକ୍ତ ତହିଁ ଭଗବାନ ବାସ କରିଥାନ୍ତି ହାଦେ । ୬୭

ଏଣୁ ଭକ୍ତ କରି ପ୍ରଭୁଙ୍କୁ ଜନନୀ ସେ ହେବେ ତୁମ୍ଭର ସୁତ
ବାତ୍ସଲ୍ୟ ଭକ୍ତିରେ ଧରି ତାଙ୍କୁ କୋଳେ ସ୍ତନ୍ୟପାନ ଦେବ ମାତ । ୬୮
ଯୁଗେ ଯୁଗେ ଯେଉଁ ପରି ଜଗନ୍ନାଥ ହୋଇବେ ତୁମ୍ଭର ସୁତ
ଇହଜନ୍ମେ ଦେବୀ କରି ସେ ଉପାୟ ପାଳନେ କାମାକ୍ଷୀ ବ୍ରତ । ୬୯
ପୂର୍ବ ଜନମରେ ହରଗୌରୀ ପୂଜା ବାଲୁକା ଲିଙ୍ଗ ସ୍ଥାପିଣ
କରି ଗଙ୍ଗା କୂଳେ ପୁତ୍ର ରୂପେ ପ୍ରାପ୍ତ ହେଲ କୃଷ୍ଣ ନାରାୟଣ । ୭୦
ଏ ଜନ୍ମେ କାମାକ୍ଷୀ ବ୍ରତ ପାଳନରେ କାମନା ହୋଇବ ପୂର୍ଣ୍ଣ
ପରମ ବ୍ରହ୍ମଙ୍କୁ ପୁତ୍ର ରୂପେ ପାଇ କରାଇବ କ୍ଷୀର ପାନ । ୭୧
ସ୍ୱର୍ଣ୍ଣେ ନିର୍ମାଣ କରି ଗୋ ଜନନୀ କାମାକ୍ଷୀ ଦେବୀ ବିଗ୍ରହ
ସୁଗନ୍ଧିକା ପୁଷ୍ପେ ପୂଜା ଆରାଧନା କରିବ ବହିଣ ସ୍ନେହ । ୭୨
ବିଷ୍ଣୁ ଜନନୀଙ୍କୁ ବ୍ରତର ବିଧାନ ବତାଇ ଦେଇ ନାରଦ
ବୀଣା ବଜାଇଣ ଶୂନ୍ୟ ପଥେ ଗଲେ ଶୁଭେ କୃଷ୍ଣ କୃଷ୍ଣ ଶବ୍ଦ । ୭୩
ପୁତ୍ରଙ୍କ ଆଗରେ ସସ୍ନେହେ ଜନନୀ ଇଚ୍ଛା କରନ୍ତେ ପ୍ରକାଶ
ପ୍ରମାଦ ପଡ଼ିଲି ଜାଣି ଯଦୁନାଥ ଚିନ୍ତିତ ହେଲେ ବିଶେଷ । ୭୪
ମାତ୍ର ଜନନୀଙ୍କ ଇଚ୍ଛା ବିରୁଦ୍ଧରେ ଯିବାକୁ ନ ଥିଲି ଶକ୍ତି
ମନ କଥା ମନେ ରଖି ମଧୁହାରୀ ବସି ବିଚାର କରନ୍ତି । ୭୫
ସୁଗନ୍ଧିକା ପୁଷ୍ପ ପାଇବା କଠିନ ହନୁର ସଞ୍ଚିତ ଧନ
ସେ ପୁଷ୍ପେ କେବଳ ଶ୍ରୀରାମଙ୍କ ପୂଜା କରେ ହନୁ ପ୍ରତିଦିନ । ୭୬
ସେଠାରୁ କୁସୁମ ସଂଗ୍ରହ କରିବା ଅତ୍ୟନ୍ତ କଠିନ କଥା
ମାତ୍ର ପୁଷ୍ପ ଆଣି ନ ଦେଲେ ଜନନୀ ମନରେ ପାଇବେ ବ୍ୟଥା । ୭୭
ଜନନୀଙ୍କ ମନେ ବ୍ୟଥା ନ ଦେବାକୁ ପୁଷ୍ପ ପାଇଁ ଯଦୁନାଥ
ପଠାନ୍ତେ ଅର୍ଜୁନ ଦଣ୍ଡକ ମଧ୍ୟରେ ଚଳିଲେ ବାହିଣ ରଥ । ୭୮
ବେଲକ, ମଳୟ, ବଜ୍ର ଓ ଅନନ୍ତ ନାମେ ଚାରି ଗୋଟି ଗିରି
ଘେରି ରହି ଅଛି ସେ ପୁଷ୍କରିଣୀକୁ ବିଶାଳ ଗିରି-ପାଚେରୀ । ୭୯
ଅତି ସୁଗଭୀର ଅଟେ ସରୋବର ସୁବିସ୍ତୃତ ଆୟତନ
ନୀଳ ଜଳ ରାଶି ପୁଷ୍ପେ ପରିପୂର୍ଣ୍ଣ ଦିଶୁଛି ସୁନୀଳ ବର୍ଣ୍ଣ । ୮୦
ସରୋବରରେ ପୁଷ୍ପ ଶୋଭା ଦେଖି ପାର୍ଥ କରି ହୃଦ ଉଲ୍ଲସିତ
ସୁଗନ୍ଧିକା ପୁଷ୍ପ ତୋଳିବାକୁ ସରେ ପ୍ରବେଶିଲେ କୁନ୍ତୀସୁତ । ୮୧

ତଡ଼ାଗ ରକ୍ଷକ ବାନର ବାହିନୀ ଘେରି ଗଲେ ଶତପୁର
ଶର ପ୍ରହାରନ୍ତେ ପାର୍ଥ ଧନୁର୍ଧରି ପଳାଇଲେ ପାଇ ଡର । ୮୨
ହନୁମାନ ପାଶେ ଜଣାଇଲେ ବାର୍ତ୍ତା ଶୁଣି ହଜେ ମହାବୀର
ବେନଙ୍କ ମଧ୍ୟରେ ଘଡ଼ଏ ସମର ହନୁ ଜାଣିଲ ଏ ବୀର । ୮୩
ବାନରକୁ ଡ଼ାକି କହିଲେ ଅର୍ଜୁନ ଛାଡ଼ ଦିଅ ପଥ ମୋର
ସୁଗନ୍ଧିକା ପୁଷ୍ପ ପାଇଁ ପେଷିଛନ୍ତି ଦ୍ୱାରକାପୁର ଠାକୁର । ୮୪
ପ୍ରଭୁ କାର୍ଯ୍ୟେ ବାଧା ଦେଲେ ପ୍ରାଣ ଯିବ କହୁଅଛୁ କପିବର
ଆଜ୍ଞାଅଛି ମୋତେ ନେବ ସୁଗନ୍ଧିକା ସିଦ୍ଧାନ୍ତ ବଚନ ମୋର । ୮୫
ବାନର ବୋଲଇ ଏ ପୁଷ୍ପରେ ପୂଜା କରେ ରାମ ନାରାୟଣ
ରାମଛଡା ପ୍ରଭୁ ଆଉ କେ ଅଛନ୍ତି ଶୁଣି ନାହିଁ ମୋର କର୍ଣ୍ଣ । ୮୬
ଦଶରଥ ସୁତ କୌଶଲ୍ୟା କୁମର ନବ ଦୁର୍ବାଦଳ ଶ୍ୟାମ
ସଚରାଚର ଏ ଜଗତ ଭଜଇ ଅବିରାମ ରାମନାମ । ୮୭
ସେହି ରାମଙ୍କର ପୂଜାରେ ଲାଗଇ ଏହି ସୁଗନ୍ଧିକା ଫୁଲ
ଏ ଫୁଲ ନେବାକୁ କଏ ସାମରଥ ଅଛି ଏ ମର୍ତ୍ତ୍ୟ ମଣ୍ଡଳ ? ୮୮
ଏହା କହି ହନୁ ବିସ୍ତାରିଲ କାୟା ଦେଖି ଭୟ କଲେ ପାର୍ଥ
ହୃଦ ମଧ୍ୟେ କୃଷ୍ଣ ସ୍ମରଣ କରିଲେ ଜାଣିଲେ ଦ୍ୱାରକା ନାଥ । ୮୯
ନବ ଦୁର୍ବାଦଳ ରାମରୂପ ଧରି ହନୁକୁ ଦେଲେ ଦର୍ଶନ
ଚରଣେ ପଡ଼ିଲ ଭକ୍ତ ହନୁମାନ ପ୍ରଭୁକଲେ ଆଲିଙ୍ଗନ । ୯୦
ବାନରକୁ କୋଳ କରିଣ ପୁଚ୍ଛିଲେ କିମ୍ପା ପାର୍ଥ ସଙ୍ଗେ କଳି
ସେ ପରା ତୋହର କନିଷ୍ଠ ସୋଦର କୁନ୍ତୀ ଦେବୀଙ୍କ ସଂଖାଳି । ୯୧
ପାର୍ଥଙ୍କୁ କହିଲେ ଜ୍ୟେଷ୍ଠ ଭ୍ରାତା ପାଦେ ପ୍ରଣାମ କର ଅର୍ଜ୍ଜୁନ
ଅଞ୍ଜନା ତନୟ ପବନ ସୁତ ସେ ତୁମ୍ଭର ଅତ୍ୟନ୍ତ ମାନ୍ୟ । ୯୨
ପରିଚୟ ପାଇ ପାଦେ ପ୍ରଣମିଲେ ଶାନ୍ତ ହେଲେ ବାୟୁସୁତ
ଶ୍ରୀହରି କହିଲେ ଏ ଦ୍ୱାପରେ ବୀର ମୋର ସଖା, ବନ୍ଧୁ, ମିତ୍ର । ୯୩
ଏହା ବୋଲେ ମୁହିଁ ହରଣ କରିବି ଅବନୀର ମହାଭାର
ଏହା କହି ପ୍ରଭୁ ମିଳାଇଁଣ ଦେଲେ ହାତ ଧରି ଦୁଇବୀର । ୯୪
ରାମ ରୂପ ଛାଡ଼ି ସ୍ୱରୂପ ଧାରଣ କଲେ ଭଗବାନ କୃଷ୍ଣ
ରାମଭକ୍ତ, କୃଷ୍ଣ ଭକ୍ତ ଦୁଇ ଜଣ କଲେ ଚରଣ ବନ୍ଦନ । ୯୫

ହରି କଲେ ହରି ସ୍ୱରୂପ ଦର୍ଶନ ପାର୍ଥ ଦେଖିଲେ ଶ୍ରୀରାମ
ଯେହି ରାମ ସେହି ଅଟନ୍ତି ଶ୍ରୀକୃଷ୍ଣ ହରେ-ରାମ-କୃଷ୍ଣ-ଶ୍ୟାମ । ୯୬
ଅର୍ଜୁନ କହିଲେ ହେ ଜ୍ୟେଷ୍ଠ ସୋଦର ନ ଧରିବ ମୋର ଦୋଷ
ଶ୍ରୀହରି ଜନନୀ ବ୍ରତ ପୂର୍ଣ୍ଣ ପାଇଁ ଦିଅ ସୁଗନ୍ଧିକା ପୁଷ୍ପ । ୯୭
ଏ ପୁଷ୍ପେ ଜନନୀ କାମାକ୍ଷୀ ପୂଜନେ ପ୍ରଭୁଙ୍କୁ ପାଇବେ ପୁତ୍ର
ପ୍ରଭୁ ପିତା ଜାତ ହୋଇଲେ ପୃଥ୍ୱୀରେ ଦର୍ଶନ କରିବା ନେତ୍ର । ୯୮
ପାର୍ଥ ନିବେଦନ ଶୁଣି ହନୁମାନ କହିଲେ ନିଅ ହେ ବୀର
ଆଜ୍ଞା ପାଇ ପାର୍ଥ ସୁଗନ୍ଧିକା ପୁଷ୍ପ ନେଇ ଦେଲେ ମାତା କର । ୯୯
ଏକ ଶତ ପଦେ ଅଧ୍ୟାୟ ସମ୍ପୂର୍ଣ୍ଣ ସୁଜନେ ନ ଘେନ ଦୋଷ
ଗୁରୁ ଅଭିରାମ କୃପାରୁ ମାନସ ଗୀତ ଗାଏ ବୃନ୍ଦ ଦାସ । ୧୦୦
ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ମଥୁରା-ଦ୍ୱାରକା
ଲୀଳା ଖଣ୍ଡେ ହରିହର ଅର୍ଜୁନ ମିଳନ ଓ ଦେବକୀ ଦେବୀଙ୍କ
କାମାକ୍ଷୀ ବ୍ରତ ପାଳନେ ନାମ ପଞ୍ଚବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।

ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

—●—

**ବୋଲି —**

ଏ ପିଣ୍ଡ ରହିବ ବୋଲି ପରତେ ନାହିଁ ମନକୁ
ଜଗତ ଭଗତେ ଆସ ଲୋଡ଼ିଯିବା ପରମକୁ । ୧
ସାଧୁଜନ, ସୁଜ୍ଞଜନ ତାରିବେ ଭକ୍ତ ଜନକୁ
ପ୍ରାଣ ପ୍ରୟାଣ ସମୟେ ବଢ଼ାଇ ପାଦ ପଦ୍ମକୁ । ୨
ହରେ-ରାମ-କୃଷ୍ଣ-ଶ୍ୟାମ -ଶ୍ରୀଚୈତନ୍ୟାଭିରାମକୁ
ଅନାଦି ପରମବ୍ରହ୍ମ ପଦ୍ମପଲାଶ ନେତ୍ରକୁ । ୩
ପଦ୍ମ ପତ୍ର ଜଳ ପ୍ରାୟ ଟଳ ଟଳ ପରାଣକୁ
ଅଜପା ସୂତ୍ରରେ ଧରି ତରିଯା ଭବବାରିକୁ । ୪
ଆଗରୁ ବାନ୍ଧିଲେ ବନ୍ଧ ନ ଥିବ ଭୟ ଯମକୁ
ଭ୍ରମର ଗୁମ୍ଫାରେ ଆଣ୍ଟେ ଭରି ପ୍ରାଣ ପବନକୁ । ୫
ବୋଲେ ବୃନ୍ଦ ଦାସ ଧ୍ୟାନ ଧରି ପ୍ରଭୁ ପୟରକୁ
ପାରି କରି ଦେବେ ସ୍ୱାମୀ ଏ ଭବ ପରିବାରକୁ । ୬

# ଷଡ଼ବିଂଶ ଅଧ୍ୟାୟ

## ଚନ୍ଦ୍ରାବତୀ ହରଣ

### ( ରାଗ — କୃଷ୍ଣ କଳାହୁଡ଼ )

ଏଥୁ ଅନ୍ତେ ଶୁଣ କୃଷ୍ଣ ଚରିତ ମାନସ
ପଦ ପଦ କରେ ପୂର୍ଣ୍ଣ କୃଷ୍ଣ ପ୍ରେମ ରସ । ୧
କୌରବ କୁଳ ତିଳକ ମାନଚକ୍ରବର୍ତ୍ତୀ
ଚନ୍ଦ୍ରାବତୀ ନାମେ କନ୍ୟା ରୂପ ଗୁଣବତୀ । ୨
ଭରସି ରାଜାଏ ତାଙ୍କୁ କନ୍ୟା ନ ମାଗନ୍ତି
ମନମଧ୍ୟେ ରହିଥାଏ ତାଙ୍କ ପ୍ରତି ଭୀତି । ୩
ବିବାହ ବୟସ ଯହୁଁ ହୋଇଲା କନ୍ୟାର
ମନ୍ତ୍ରୀଙ୍କୁ କହିଲେ ବେଗେ କର ସ୍ୱୟମ୍ବର । ୪
ଯାଦବଙ୍କୁ ଛାଡ଼ି ବର ସକଳ ରାଜନ
ଅପମାନ ପ୍ରତିଶୋଧ ଚିନ୍ତି ଦୁର୍ଯ୍ୟୋଧନ । ୫
ତୁଳାମାସ କୃଷ୍ଣ ପକ୍ଷ ଦ୍ୱିତୀୟା ତିଥିରେ
ସ୍ୱୟମ୍ବର ଆୟୋଜନ ହେଲା ହସ୍ତିନାରେ । ୬
ରହସ୍ୟ ଦେଖିବା ପାଇଁ ମିଳିଲେ ନାରଦ
ଭେଟି କରି କୁରୁପତି ପୁଚ୍ଛିଲେ ସମ୍ବାଦ । ୭
ନୃପତି କହିଲେ ଶୁଣ ହେ ନାରଦ ମୁନୀ
କନ୍ୟା ସ୍ୱୟମ୍ବର ପାଇଁ କଲେ ଆୟୋଜନ । ୮
ବରଣ କରନ୍ତୁ ଆର୍ଯ୍ୟାବର୍ତ୍ତ ନୃପଗଣ
ଇଚ୍ଛାବର ବରିବ ମୋ କନ୍ୟା ରତନ । ୯
ନାରଦ ପୁଚ୍ଛିଲେ ଯଦି ତା' ଇଚ୍ଛା ଭ୍ରମର
ବରଣ ନ କଲ କିମ୍ପା କୃଷ୍ଣଙ୍କ କୁମର ? ୧୦
ସେମାନେ ଅତ୍ୟନ୍ତ ରୂପେ ମଦନ କେତନ
କନ୍ୟା ଉପଯୋଗୀ ବର ଶୌର୍ଯ୍ୟ ବୀର୍ଯ୍ୟବାନ । ୧୧
ଶୁଣି ଉପହାସ କଲେ ଶ୍ରୀମାନ ଗୋବନ୍ଦ
ଏ ଅମିତ କଥା କିମ୍ପା କହୁଛ ନାରଦ ? ୧୨

ରାଜପୁତ୍ର ନୁହଁନ୍ତି ସେ ସାମନ୍ତ ସନ୍ତାନ
ଶୁଦ୍ଧ ସୋମ ବଂଶୀ ମୁହିଁ କ୍ଷତ୍ରୀୟ ପ୍ରଧାନ । ୧୩
ତାହାଙ୍କୁ କପରି ମୁହିଁ କରିବି ବରଣ
ଯାଦବେ ଦୁହିତା ଦେଲେ ନଷ୍ଟ କୁଳମାନ । ୧୪
ଲଜ୍ଜା ପାଇଲେ ନାରଦ ରାଜା କଥା ଶୁଣି
ତକ୍ଷଣେ ତେଜିଲେ ସ୍ଥାନ କୃଷ୍ଣ ନିନ୍ଦା ଶୁଣି । ୧୫
ପ୍ରବେଶ ହୋଇଲେ ମୁନି ପାଣ୍ଡବ ଶିବିରେ
ପ୍ରଣମିଲେ ଯୁଧିଷ୍ଠିର ମୁନିଙ୍କ ପୟରେ । ୧୬
ଆଦର ପାଇଣ ମୁନି ବସିଲେ ପାଶରେ
ବୋଲୁଛନ୍ତି ଯୁଧିଷ୍ଠିର ମନର ଦୁଃଖରେ । ୧୭

କି କହିବି ହେ ମହର୍ଷି ଈଶ୍ୱର ଦେଖିବ
ଆମ୍ଭଙ୍କୁ ନ ପୁଚ୍ଛି କରେ କନ୍ୟା ସ୍ୱୟମ୍ବର । ୧୮
ଆମ୍ଭ ବନ୍ଧୁ ବୋଲି ରାମକୃଷ୍ଣ ନ ବରିଲା
କୃଷ୍ଣଙ୍କୁ ଅମର୍ଯ୍ୟାଦା କରି ଅନ୍ୟାୟ କରିଲା । ୧୯
ରାମକୃଷ୍ଣ ଦୁଇଭାଇ ଯେଉଁଠି ନ ଥିବେ
ଅର୍ଘ୍ୟ ନ ଘେନନ୍ତି ତହିଁ ବ୍ରହ୍ମା-ବିଷ୍ଣୁ-ଶିବେ । ୨୦

ନାରଦ କହିଲେ ଶୁଣ ଆହେ ଯୁଧିଷ୍ଠିର
ମୋ ବଚନରେ ଅକାରଣ ହେଲା ସ୍ୱୟମ୍ବର । ୨୧
ଚିନ୍ତା ଅଛି ରାମ କୃଷ୍ଣେ ଦେବେ ଅପମାନ
ମାତ୍ର ସେ ଅପମାନିତ ହୋଇବ ରାଜନ । ୨୨
ଏହା କହି ମୁନିବର ସେଠାରୁ ଚଳିଲେ
ଚନ୍ଦ୍ରାବତୀ ପୁରେ ଯାଇଁ ପ୍ରବେଶ ହୋଇଲେ । ୨୩

ମୁନି ଦେଖି କାନ୍ଦ କରି କହେ ଚନ୍ଦ୍ରାବତୀ
ସ୍ୱୟମ୍ବରେ ଆସିଛନ୍ତି ଲକ୍ଷେ ନରପତି । ୨୪
ମାତ୍ର କାହାପ୍ରତି ମୋର ନ ବଳଇ ଚିତ୍ତ
କୃଷ୍ଣ ସୁତ ଶାମ୍ବଠାରେ ସମର୍ପିଛି ଚିତ୍ତ । ୨୫
ମାତ୍ର ଅଭିମାନ କରି ଜନକ ମୋହର
ବରଣ କରି ନାହିଁନ୍ତି ଯାଦବ କୁମର । ୨୬

ଅନୁରୋଧ ରଖ ମୁହିଁ ଭେଟାଅ ନନ୍ଦନ
ନୋହିଲେ ତେଜିବ ପ୍ରାଣ ସତ୍ୟ ମୋ ବଚନ । ୨୭

ଆଶ୍ୱାସନା ଦେଇ ମୁନି ଦ୍ୱାରକା ଚଳିଲେ
ଚନ୍ଦ୍ରାବତୀ ମନ କଥା ଶାମ୍ବେ ଜଣାଇଲେ । ୨୮

ଶୁଣି ଆନନ୍ଦ ଜାମ୍ବବତୀଙ୍କ ନନ୍ଦନ
ନାରଦ ସଙ୍ଗେ ଚଳିଲେ ପାଦୁକା ମନ୍ତ୍ରେଣ । ୨୯
ମେଢ଼ ମଧ୍ୟେ ଭେଟାଇଲେ ନେଇ ଚନ୍ଦ୍ରାବତୀ
କୁମାର କୁମାରୀ ମଧ୍ୟେ ବଢ଼ିଲା ପୀରତି । ୩୦
ଉଭୟ ଭେଟାଇ ମୁନି ହେଲେ ଅନ୍ତର୍ଦ୍ଧାନ
କ୍ରମେ କ୍ରମେ ଆସି ହେଲା ବର୍ଷ ଅବସାନ । ୩୧
ପ୍ରଚୁର ହୋଇଲା କଥା ପ୍ରାଚୀରକୁ ଡେଇଁ
ଯେ ଶୁଣିଲା ସେ ହସିଲା ମୁଖେ ଲୁଗା ଦେଇ । ୩୨
ଉପସ୍ଥିତ ନୃପ ଗଣେ ପାଇଲେ ଏ ତଥ୍ୟ
ଅଭିମାନୀ ଦୁର୍ଯ୍ୟୋଧନ ସଭାରେ ଲଜ୍ଜିତ । ୩୩
ମାରମାର ଧର ଧର ଶୁଣାଗଲା ଧ୍ୱନି
ମେଢ଼କୁ ଘେରି ରହିଲେ କୌରବ ସଇନ । ୩୪
ଏକାକି ସମର କରେ ଶ୍ରୀକୃଷ୍ଣ ନନ୍ଦନ
ଦୂରରୁ ଦେଖନ୍ତି ଯୁଦ୍ଧ ପାଣ୍ଡୁଙ୍କ ନନ୍ଦନ । ୩୫
ସହଦେବ ମନ୍ତ୍ରୀ ବୋଲେ ଏ ଶାମ୍ବ କୁମର
ଯୁଧିଷ୍ଠିର ଆଜ୍ଞା ଦେଲେ ପୁଣି ରକ୍ଷା କର । ୩୬
ଆଜ୍ଞା ପାଇ ଚଳିଗଲେ ବୀର ଭୀମସେନ
ବେନି ପକ୍ଷ ମଧ୍ୟେ ହେଲା ଭୟଙ୍କର ରଣ । ୩୭
ଦେଖି ନାରଦ ଧାଇଁଲେ ଦ୍ୱାରାବତୀ ପୁର
ସମ୍ବାଦ ପାଇ ଆସିଲେ ହରି ହଳଧର । ୩୮
ପଞ୍ଚବଂଶ ଯୋଜନ ଯେ ହସ୍ତିନାର ସ୍ଥଳୀ
ଲଙ୍ଗଳ ମୁନରେ ସ୍ୱମ ଉଠାଇଲେ ଟେକି । ୩୯
ଜୀବନ ଭୟରେ ସର୍ବେ ଉଚ୍ଚେ ଦେଲେ ଡାକ
ଆହେ ଦେବ କାମପାଳ ହସ୍ତିନାକୁ ରଖ । ୪୦

ଗଳାରେ କୁଠାର ଦନ୍ତେ ତୃଣ ଭରଣ
ମାମା ଦୁର୍ଯ୍ୟୋଧନ ପାଦେ ପଶିଲେ ଶରଣ । ୪୧

ଶାମ୍ବ ଚନ୍ଦ୍ରାବତୀ ବେଗୀ ସଙ୍ଗତରେ ଘେନ
ଭେଟାଇଲେ ଯୁଧିଷ୍ଠିର ନେଇ ହଳପାଣି । ୪୨

ଧର୍ମଙ୍କ ପ୍ରାର୍ଥନା ଶୁଣି ରାମ ଶାନ୍ତ ହେଲେ
ବନ୍ଧ କରି ହସ୍ତିନାକୁ ନେଇ ବସାଇଲେ । ୪୩

ଶତଭ୍ରାତା, ବନ୍ଧୁବର୍ଗ ଘେନ ଦୁର୍ଯ୍ୟୋଧନ
କନ୍ୟାଦାନ କରି ପାଦେ ପଶିଲେ ଶରଣ । ୪୪

ପୁତ୍ର ପୁତ୍ରବଧୂ ଘେନ ହରି ହଳଧାରୀ
ଉତ୍ସବ ପାଳନ କଲେ ଦ୍ୱାରବତୀପୁରି । ୪୫

ଛୟାଳିଶ ପଦେ ହେଲା ଅଧ୍ୟାୟ ସମ୍ପୂର୍ଣ୍ଣ
ନ ଧରିବ ବୃନ୍ଦାବନ ଦୋଷ ସୁଜ୍ଞଜନ । ୪୬

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ଚନ୍ଦ୍ରାବତୀ ହରଣ
ଆଖ୍ୟାନେ ନାମ ଷଡ଼ବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।

ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

**ବୋଲି—**

ସୁଜ୍ଞଜନେ କର ସୁଚିତ୍ତେ ଶ୍ୟାମଲୀଳା ଶ୍ରବଣ
ଅଭିନ୍ନ ସୁନ୍ଦର ଠାକୁର ଲୀଳା ଚରିତମାନ । ୧

ଆନନ୍ଦ ଆଶ୍ରମେ କରନ୍ତି ନାନା ଲୀଳା ରଚନ
କେ ବୁଝିବ ଲୀଳା ରହସ୍ୟ ନାନା ରହସ୍ୟେ ପୂର୍ଣ୍ଣ ।୨

ରଇଦାସ ନାମେ ଭକତ ବୃଦ୍ଧ ସେ ଘୀନ ହୀନ
କୁଟୁମ୍ବରେ ପଞ୍ଚଭ୍ୟକତ ଦୁଃଖେ କାଟଇ ଦିନ ।୩

ବାଡ଼ଫଳ ଆତ ଗୋଟିଏ ଶ୍ରଦ୍ଧା ଭକ୍ତିରେ ଘେନିଣ
ଠାକୁରଙ୍କୁ ଦେବା ନିମନ୍ତେ ଚଳିଗଲା ବହନ । ୪

ମିଳନ୍ତି ଆଶ୍ରମେ ଯାଇଁଣ    ଥର ଥର ତ ଭ ଣ
ଶତ ପ୍ରଣିପାତ କରିଲ    ପଦ୍ମ ପାଦେ ପଡ଼ିଣ । ୫
ଦାମି ନାମି ଭକ୍ତଗଣଙ୍କୁ    କୁର୍ସିରେ ବସାଇଣ
ଗପସପ କରୁ ଅଛନ୍ତି    ସାଙ୍ଗ ସାଥୀ ସମାନ । ୬
ରଇଦାସେ ଆଜ୍ଞା ହୋଇଲ    କର ଭୂମି ଆସନ
ତଳରେ ବସିଣ ବସ୍ତ୍ରର    କରନ୍ତି ଦାସେ ମନ । ୭
ନିର୍ଦ୍ଧନ ଲୋକର ନାହିଁତ    କେଉଁଠାରେ ସମ୍ମାନ
ସର୍ବସ୍ୱ ନିନ୍ଦିତ ଜୀବନ    ଧରି କି ପ୍ରୟୋଜନ ? ୮
ଏହା ଚିନ୍ତା କରି ନିର୍ଜ୍ଜନ    ସ୍ଥାନେ କଲ ଆସନ
ପତନଙ୍କୁ ଦୃଢ ହୃଦୟେ    କଲ ଦୃଢ଼େ ଧାରଣ ।୯
ରଜନୀ ପ୍ରଥମ ପ୍ରହରେ    ହେଲା ପୂଜା ଅର୍ଚ୍ଚନ
ପୂଜାଦ୍ରବ୍ୟେ ଆଉ ନ ଦେଖି    ବିଷର୍ଣ୍ଣ ନାରାୟଣ । ୧୧
ଠାକୁରଙ୍କ ଦୁଃଖ ଦେଖିଣ    କୃଷ୍ଣାମାତା ଉଦ୍‌ବେଗ
ପୁଚ୍ଛିଲେ କେ ଭକ୍ତ ଆଣିଛ    ଆଉ ଦିଅ ବହନ ।୧୨
ନ ମିଳିଲା ଆଉ ଅଥବା    ଆଉ ଲୋକ ସନ୍ଧାନ
ଆଉ ଆଣିଥିବା ଲୋକକୁ    ଖୋଜି ଗଲେ ଆପଣ ।୧୩
ଦେଖିଲେ ପୋଖରୀ ହୁଡାରେ    ଲଟାତଳେ ବସିଣ
ଠାକୁରଙ୍କୁ ଧ୍ୟାନ କରିଣ    ବସିଅଛି ମଜନ । ୧୪
ଭାବଗ୍ରାହୀ ଭାବେ କରିଲେ    ଭାବ ଫଳ ଗ୍ରହଣ
ସୁଧାଛଣା ଜଣା ବାଣୀରେ    ବୋଲୁଛନ୍ତି ବଚନ । ୧୫
ତଳେ ବସିବାକୁ କହିଲ    ବୋଲି ତୋ ଅଭିମାନ
ରହସ୍ୟ ଫିଟାଇ କହୁଛି    ତାହା କର ଶ୍ରବଣ । ୧୬
ନାମିଦାମି ଭକ୍ତ ସେମାନେ    ଲୋଡ଼ନ୍ତି ଉଚ୍ଚାସନ
ଇଚ୍ଛାମୟୁ ଭକ୍ତ ଇଚ୍ଛାକୁ    ସଦା କରନ୍ତି ପୂର୍ଣ୍ଣ । ୧୭
ଭାବସୂତ୍ରେ ମୋତେ ହୃଦୟେ    ଦେଇଛନ୍ତି ଆସନ
ମାତ୍ର ମୋ ହୃଦୟ କନ୍ଦରେ    ସଦା ତୋହର ସ୍ଥାନ ।୧୮
ଆସଆସ ରଇଦାସ ହୋ    ବସ କୋଳରେ ଧନ
ଧନ୍ୟ ହେବ କୋଳ ମୋହର    ତୁଷ୍ଟ କଲେ ଆସନ । ୧୯

ମନ ଭୁଲି କଥା କହିଣ     କଲେ ଚିତ୍ତ ହରଣ
ବସାଇଲେ କୋଳେ ଭକ୍ତକୁ     ଶ୍ରୀସତ୍ୟ ନାରାୟଣ । ୨୦

ଠାକୁରଙ୍କୁ ଖୋଜି ମିଳିଲେ     ତହିଁ ସନ୍ନ୍ୟାସି ଗଣ
ଦେଖିଲେ ଭକ୍ତକୁ କୋଳରେ     ଧରିଛନ୍ତି ଆପଣ । ୨୧

ତଳେ ବସାଇବା ରହସ୍ୟ     ବୁଝି ପାରିଲେ ଜନ
ଲୀଳାମୟ ପଦ୍ମ ପୟର     କର ସୁଜନେ ଧ୍ୟାନ । ୨୨

ଭାବ ବିନୋଦିଆ ଠାକୁର     ଭକ୍ତ ଭାବେ ବନ୍ଧନ
ଭାବକୁ ନିକଟ ଅଭାବେ     ମିଳେ ନାହିଁ ଦର୍ଶନ । ୨୩

ବୋଲେ ବୃନ୍ଦାବନ ସୁଜନେ     ଭଜ ଶ୍ରୀ ଅଭିରାମ
ଭକତ ବତ୍ସଳ ଠାକୁର     ପାଦେ ଶତ ପ୍ରଣାମ । ୨୪

# ସପ୍ତବିଂଶ ଅଧ୍ୟାୟ

## ରାଜସୂୟ ଯଜ୍ଞ ପ୍ରସ୍ତାବ

( ରାଗ — ଯମକ )

ଧୀର ଚିତ୍ତେ ଘେନ କୃଷ୍ଣ ଚରିତ ମାନସ
ଶ୍ରବଣେ ବୃଜିନ ମାନ ହୋଇବ ବିନାଶ । ୧

ଖାଣ୍ଡବ ପ୍ରସ୍ଥରେ ରାଜା ହୋଇ ଯୁଧିଷ୍ଠିର
ନ୍ୟାୟରେ ପାଳିଲେ ପ୍ରଜା ପଚିଶ ବତ୍ସର । ୨

ଶତ ମୁଖେ ପ୍ରଶଂସନ୍ତି ରାଜ୍ୟ ଜନ ପ୍ରଜା
ରାଜଚକ୍ରବର୍ତ୍ତୀ ଯୋଗ୍ୟ ଯୁଧିଷ୍ଠିର ରାଜା । ୩

ଲୋକ ମାନଙ୍କର କଥାଶୁଣି ଯୁଧିଷ୍ଠିର
ପୁଚ୍ଛିଲେ କୃଷ୍ଣଙ୍କୁ ଦିନେ ହୋଇଣ ଗମ୍ଭୀର । ୪

ରାଜଚକ୍ରବର୍ତ୍ତୀ ହେବା ପାଇଁ ରାଜସୂୟ-
ଯଜ୍ଞ କରିବାକୁ କହୁଛନ୍ତି ପ୍ରଜା ଚୟ । ୫

ଏ ବିଷୟେ ଉପଯୁକ୍ତ ପରାମର୍ଶ ପାଇଁ
ଆପଣଙ୍କ ମତାମତ ପଚାରୁଛୁ ଅଛଇ ? ୬

ବାନ୍ଧବ ବିଚାରି ମନେ ସ୍ନେହ ପ୍ରଣୋଦିତ
ହୋଇ ପରାମର୍ଶ ଦେବ ନାହିଁ ଯଦୁନାଥ । ୭

ଚାଟୁ ବାକ୍ୟ କହି ମନ ତୋଷିବାର ପାଇଁ
ତୋଷାମଦ ପୂର୍ଣ୍ଣ ବାକ୍ୟ ପ୍ରକାଶିବ ନାହିଁ । ୮

ତୁମ୍ଭର ବଚନ ସତ୍ୟ ନିଷ୍ଠା ଆଧାରିତ
ସୁଚିନ୍ତିତ ଉପଦେଶ ଦେଇ କର ଶାନ୍ତ । ୯

ଜ୍ୟେଷ୍ଠ ଭ୍ରାତା କଥା ଶୁଣି କହିଲେ ଶ୍ରୀକୃଷ୍ଣ
ପ୍ରଜାମାନେ କହୁଛନ୍ତି ଉଚିତ ବଚନ । ୧୦

ରାଜସୂୟ ଯଜ୍ଞ ପ୍ରଭୁ କରିବା ଉଚିତ
ଏ ଯଜ୍ଞ କଲେ ବର୍ଦ୍ଧିତ ହୋଇବ ମହତ୍ତ୍ୱ । ୧୧

ରାଜସୂୟ ଯଜ୍ଞ କର୍ତ୍ତା ରାଜ ଚକ୍ରବର୍ତ୍ତୀ
ଏ ଯଜ୍ଞେ ମିଳଇ ଦେବ ଅକ୍ଷୟ କୀରତ୍ତି । ୧୨
ଆପଣଙ୍କ ପରି ସର୍ବଗୁଣ ପରିପୂର୍ଣ୍ଣ
ରାଜାପକ୍ଷେ ରାଜସୂୟ ଯଜ୍ଞ ଅନୁଷ୍ଠାନ । ୧୩
ସମ୍ପାଦନ କରିବାଟା ଏକାନ୍ତ ଉଚିତ
ଯାଗ କାର୍ଯ୍ୟେ ଚିତ୍ତ ବୃତ୍ତି ଦିଅ ନରନାଥ । ୧୪
ମାତ୍ର ଏ କାର୍ଯ୍ୟ କରିବା ନୁହଇଁ ସହଜ
ଯେତେ କାଳ ବଞ୍ଚିଥିବ ଜରାସନ୍ଧ ରାଜ । ୧୫
କି କହିବ ଧର୍ମରାଜ ଜରା ପରାକ୍ରମ
ରାଜଚକ୍ରବର୍ତ୍ତୀ ପାଇଁ କରୁଛି ଉଦ୍ୟମ । ୧୬
ଭାରତର ଶତାଧିକ ପ୍ରତାପୀ ନୃପତି
କରାୟତ୍ତ କରି ରଖିଅଛି ମନମତି । ୧୭
ଯେତେ ଦିନ ଯାଏଁ ଜରାସନ୍ଧ ବଞ୍ଚିଥିବ
ରାଜସୂୟ ଯଜ୍ଞ ତୁମ୍ଭେ କରି ନ ପାରିବ । ୧୮
ତାହାର ଭୟରେ ଆମ୍ଭେ ମଥୁରା ତେଜିଣ
ଦ୍ୱାରକା ପୁରେ ରହିଲୁ ବସତି କରିଣ । ୧୯
ଯୁଧିଷ୍ଠି ପୁଚ୍ଛିଲେ ଯେବେ ତୁମ୍ଭେ ଭୟଭୀତ
ଜରାବଧ ବରିବାକୁ ଆଉକେ ସାମର୍ଥ୍ୟ ? ୨୦
ଆତ୍ମବଳେ ଜରାସନ୍ଧ ଜିଣିବା ଅକ୍ଷମ
ଏଣୁ ଯାଗ କରିବାକୁ ନୋହୁ ଆମ୍ଭେକ୍ଷମ । ୨୧

ଜ୍ୟେଷ୍ଠ ଭ୍ରାତାଙ୍କ ମୁଖରୁ ହତାଶାର ବାଣୀ
ଶୁଣିଦର୍ପେ ବୋଲୁଛନ୍ତି ପାର୍ଥ ବୀରମଣି । ୨୨
ଉଦ୍ୟାର୍ତ୍ତି, ଆଳସ୍ୟ ପରାୟଣ ବ୍ୟକ୍ତିମାନେ
ବଜସ୍ୱୀ ହୁଅନ୍ତି ନାହିଁ କାର୍ଯ୍ୟେ କଦାଚନେ । ୨୩

ଅଥଚ ଦୁର୍ବଳ ବ୍ୟକ୍ତିମାନେ ଉପଯୁକ୍ତ
ବୁଦ୍ଧିବଳେ କରିଥାନ୍ତି ବଳବାନେ ହତ । ୨୪
ଜରାସନ୍ଧ ହୋଇପାରେ ବୀର ଅଗ୍ରଗଣ୍ୟ
କୌଶଳେ ଜିଣିବା ତାକୁ ନୁହଇ କଠିନ । ୨୫

ଉଦ୍‌ଯୋଗ ନ କରି ଘରେ ବସିଲେ ମଉନ
କାର୍ଯ୍ୟ ସିଦ୍ଧି ହେବ ନାହିଁ ହେ ଧର୍ମ ରାଜନ । ୨୬
ଯୁଧିଷ୍ଠିର ମୁଖ ଚାହିଁ କୃଷ୍ଣ ଭଗବାନ
କହନ୍ତି ଶାସ୍ତ୍ର ପୁରାଣ ଦୃଷ୍ଟାନ୍ତ ଦେଇଣ । ୨୭
କେବଳ ପ୍ରଜା ପାଳନ ଗୁଣେ ଭଗୀରଥ
କେବଳ ତପ ବଳେ କାର୍ତ୍ତିବୀର୍ଯ୍ୟ ନୃନାଥ । ୨୮
କେବଳ ବାହୁ ବଳରେ ନୃପତି ଭରତ
କେବଳ ଅର୍ଥ ବଳରେ ରାଜନ ମରୁତ । ୨୯
ସମଗ୍ର ପୃଥିବୀ ଜିଣି ହେଲେ ଅଧୀଶ୍ୱର
ଏ ସମସ୍ତ ଗୁଣ ତୁମ୍ଭଠାରେ ଭରପୂର । ୩୦
ଥିବା ବେଳେ ଆପଣାକୁ ମଣୁଛ ଦୁର୍ବଳ
ଏହିପରି ଅସହାୟ କମ୍ପାଇ ଭୂପାଳ ? ୩୧
ଏ କାଳେ ମିଳିଲେ ଆସି ନାରଦ ମହର୍ଷି
ପ୍ରଣାମ କଲେ ସକଳେ ଆସନ ଉପେକ୍ଷି । ୩୨
ସମ୍ମାନ ପାଇଣ ମୁନି ସେବିଣ ଆସନ
କାରଣ ପୁଚ୍ଛିଲେ କୃଷ୍ଣ କମ୍ପା ଆଗମନ ? ୩୩
ଚନ୍ଦ୍ରକୂଟ କରି ମୁନି କହିଲେ ହେ ଶୁଣ
ସଞ୍ଜିବନୀ ପୁରୁ ଆମ୍ଭେ କଲୁ ଆଗମନ । ୩୪
ସେଠାରେ ଦେଖିଲୁ ଆମ୍ଭେ ପାଣ୍ଡୁ ନରପତି
ଯମରାଜ ସିଂହାସନ ତଳେ ଠିଆଛନ୍ତି । ୩୫
ବସ ବୋଲି ନ ବୋଲନ୍ତି ତାଙ୍କୁ ଜନୁହଣ
ବ୍ରହ୍ମହତ୍ୟା ପାପ ଯୋଗୁଁ ଭୋଗନ୍ତି କଷଣ । ୩୬

ଯୁଧିଷ୍ଠିର ବୋଲୁଛନ୍ତି ଆହେ ଦାମୋଦର
ନାରଦଙ୍କ କଥା ଶୁଣି ଚିତ୍ତ ମୋ ଅସ୍ଥିର । ୩୭

ଆମ୍ଭ ପଞ୍ଚ ପୁତ୍ର ଥାଉଁ ପିତାଙ୍କୁ ଏ ଶାସ୍ତି
ଉପାୟ କରନ୍ତୁ ଯେହ୍ନେ ପାଇବେ ସେ ମୁକ୍ତି ! ୩୯

ଋଷିଙ୍କ ବଦନ ଚାହିଁ ପୁଚ୍ଛିଲେ ଶ୍ରୀହରି
ବ୍ରହ୍ମହତ୍ୟା ପାପୁ ମୁକ୍ତ ପାଇବେ କପରି ? ୩୯

ନାରଦ କହିଲେ ଶୁଣ ତାହା ପ୍ରତିକାର
ରାଜସୂୟ ଯଜ୍ଞ ଫଳେ ହୋଇବେ ଉଦ୍ଧାର । ୪୦

ନାରଦଙ୍କ କଥା ଶୁଣି ପୁଚ୍ଛିଲେ ଅଚ୍ୟୁତ
ବ୍ୟକ୍ତ କର ରାଜସୂୟ ବିଧାନ କେମନ୍ତ ? ୪୧
ନାରଦ କହିଲେ ଶୁଣ ରାଜସୂୟ ରୀତି
ବରଣ ହୋଇ ଆସିବେ ଲକ୍ଷେକ ନୃପତି । ୪୨
ସବୁ ରାଜାଏ ଆସିବେ ଘେନି ଅଙ୍ଗବଳ
ଚତୁର୍ଦ୍ଦଶ ପୁର ଲୋକେ କରିବେ ଭୂପାଳ । ୪୩
ଷୋଡ଼ଶ ଦିବସ ଯାଏଁ ହେବ ଘୃତାହୂତି
ଅନୁକ୍ଷଣେ ଅନ୍ନଦାନ ଦେବେ ନରପତି । ୪୪
ଏକ ଜଣ ଯେବେ ଯଜ୍ଞେ ନ ପାଇବେ ଅନ୍ନ
ରାଜସୂୟ ଯାଗ ଫଳ ହେବ ଅକାରଣ । ୪୫
ଷୋଡ଼ଶ ଦିବସ ଯାଏଁ ଧନରତ୍ନ ଦାନ
ଯେ ଯାହା ମାଗିବ ତାହା କରିବେ ପ୍ରଦାନ । ୪୬
ଅନ୍ନ ଦାନ, ରତ୍ନ ଦାନ ସଙ୍ଗେ ଘୃତ ଦାନ
ଏହି ତିନି ଗୋଟି ଦାନ ଅଟଇ ପ୍ରଧାନ । ୪୭
ଦାନ ଦେବାରେ ରାଜନ ନ ହେବେ କୃପଣ
ରାଜସୂୟ ଯଜ୍ଞର ଯେ ଏମନ୍ତ ବିଧାନ । ୪୮
ଶୁଣି ରାଜା ଯୁଧିଷ୍ଠିର ପୁଚ୍ଛିଲେ ଶ୍ରୀହରି
ଏତେ ବିଧାନକୁ ଶକ୍ତି ନାହିଁତ ମୋହରି ? ୪୯
ଧନାଢ୍ୟ ପଣକୁ ମୁହିଁ ନୁହଇଁ ରାଜନ
ଷୋଡଶ ଦିବସ ଦାନ ଦେବି ଅନୁକ୍ଷଣ । ୫୦
ଏତେ ଧନ କେଉଁଠାରୁ ହୋଇବ ପ୍ରାପତ
ଲକ୍ଷେ ରାଜା ବରି ଯଜ୍ଞ କରିବି ସନ୍ତତ ! ୫୧
ସାନ୍ତ୍ୱନା ଦେଇ କହିଲେ କୃଷ୍ଣ ଭଗବାନ
ଧର୍ମ ବଳେ ଧର୍ମ କାର୍ଯ୍ୟ ହେବ ସମ୍ପାଦନ । ୫୨
ନାରଦ ମୁନି କହିଲେ ହେ ଧର୍ମ ରାଜନ
ଧର୍ମର ସହାୟ ସଦା ଭଗବାନ କୃଷ୍ଣ । ୫୩

ବିଶ୍ୱପତି ଭୃତ୍ୟ ପଣେ ଯାହାଙ୍କୁ ଖଟନ୍ତି
ରାଜସୂୟ ଯାଗ କାର୍ଯ୍ୟେ କସ ତାଙ୍କ ଭୀତି । ୫୪
ନାରଦ କଥାରେ ଏକମତ ଗୃହ ଭ୍ରାତ
କୁନ୍ତୀ, କୃଷ୍ଣା, ଭଦ୍ରା ଅନ୍ୟ ବିଶ୍ୱସ୍ତ ସମସ୍ତ । ୫୫
କେବଳ, ଧର୍ମ ରାଜନ ନୁହନ୍ତି ସମ୍ମତ
କାରଣ ସେ ବୁଝିଛନ୍ତି ରାଜସୂୟ ଅର୍ଥ । ୫୬
ଅନାୟସେ କରିବାକୁ ହେବ ରକ୍ତପାତ
ଧର୍ମ କାର୍ଯ୍ୟେ ରକ୍ତପାତେ ହୃଦୟ ଅଶାନ୍ତ । ୫୭
ସାମ୍ରାଜ୍ୟ ବିସ୍ତାର ଅବା ଏକଛତ୍ରବାଦ
ବିସ୍ତାର କାଳେ ଆନକୁ ଦେବାକୁ ପ୍ରମାଦ । ୫୮
ଏଣୁ ଯୁଧିଷ୍ଠିର କରୁଛନ୍ତି ପ୍ରତିବାଦ
ପ୍ରତିଷ୍ଠା ପାଇଁ ଅର୍ଜିବା କର୍ମା ମନେ ଖେଦ । ୫୯
ଶ୍ରୀକୃଷ୍ଣ କହିଲେ ଏହା ନୁହେଁ ଯାଗ ରୀତ
ପରନ୍ତୁ ଏହାର ଅର୍ଥ ଧର୍ମକୁ ସ୍ୱୀକୃତ । ୬୦
ରାଜର୍ଷି ଯାଗେ ଏ ତତ୍ତ୍ୱ ହେବ ପ୍ରତିଷ୍ଠିତ
ଅହିଂସା-ଶାନ୍ତି-ମୈତ୍ରୀ-ଅଖଣ୍ଡ ଭ୍ରାତୃତ୍ୱ । ୬୧
ଦୃଢ କଣ୍ଠେ କହୁଛନ୍ତି ଦେବକୀ ନନ୍ଦନ
ଶୁଣ ମହାରାଜ ଧର୍ମ ଶାସନ ବିଧାନ । ୬୨
ଧର୍ମର ରକ୍ଷକ ସଦା ନରପତି ଗଣ
ଧର୍ମଦ୍ରୋହୀ ହେଲେ ନୃପେ ହୋଇବେ ନିଧନ । ୬୩
ଅବିଚାର କଲେ କ୍ଷତ୍ରି ନ ପାରଇଁ ସହି
କ୍ଷତ୍ରି କୁଳେ ଜାତ ହୋଇ କ୍ଷତ୍ରିୟ ନାଶଇଁ । ୬୪
କ୍ଷତ୍ରିୟ ନିଧନ ଅଟେ ଯୁଗ ଧର୍ମ ମୋର
କ୍ଷତ୍ରିୟ ନିଧନେ ହେବ ଭାରତ ସମର । ୬୫
ବିନା ସମରରେ କେବେ ନ ଆସଇ ଶାନ୍ତି
ଯୁଦ୍ଧ ଯଜ୍ଞ କରିବାକୁ ଆମ୍ଭର ଉତ୍ପତ୍ତି । ୬୬
ଅଧର୍ମ ବିନାଶି ଧର୍ମ କରିବା ସ୍ଥାପନ
ଏଣୁ ରାଜସୂୟ ଯାଗ ଅଛି ପ୍ରୟୋଜନ । ୬୭

ଏହି ଯାଗ ଧର୍ମ ରକ୍ଷାକାଙ୍କ୍ଷୀ ନରପତି
ଧର୍ମ ସମର୍ଥକ ରୂପେ ଲଭିବେ ସ୍ୱୀକୃତି । ୬୮
ପୃଥିବୀ ପୃଷ୍ଠରେ ଧର୍ମ ଧ୍ୱଜା ଉଡ଼ାଇବ
ଧର୍ମାଧୀନ ହୋଇ ଧର୍ମ ରାଜ୍ୟକୁ ସ୍ଥାପିବ । ୬୯
ଧର୍ମଠାରୁ ରାଜନୀତି ନୁହଇ ଅଭିନ୍ନ
ରାଜବିଦ୍ୟା ରାଜଗୁହ୍ୟତମ ଯୋଗ ଜାଣ । ୭୦
ରାଜାନୁଗତ ଧରମ ବୃଦ୍ଧି ଧର୍ମଗଣ
ରାଜଧର୍ମ ଗୋଟି ପ୍ରଜା କରନ୍ତି ପାଳନ । ୭୧
ଧର୍ମର ରକ୍ଷକ ଯେବେ ନ ହେବେ ନୃପତି
ଆଉକେ ପାଳିବେ ଧର୍ମ ଏହି ବସୁମତୀ ? ୭୨
ରାଜାଏ କରନ୍ତି ରାଜ୍ୟେ ଧର୍ମର ପାଳନ
ଧର୍ମ ରକ୍ଷା ପାଇଁ ଯାଗ ଅଛି ପ୍ରୟୋଜନ । ୭୩
କୃଷ୍ଣଙ୍କ ଯୁକ୍ତିରେ ଧର୍ମ ହୋଇଲେ ମଉନ
ନାରଦ କହିଲେ ଶୁଣ ହେ ଧର୍ମ ରାଜନ । ୭୪
ଶୃଣ ସପ୍ତ ଊଣା ଲକ୍ଷେ ନୃପତି ମହୀରେ
ସେମାନଙ୍କୁ ଜିଣି ଯାଗ କର ନୃପବରେ । ୭୫
ଛସ୍ଥାନବେ ସପ୍ତ ରଜା ସଂଖ୍ୟାରେ ହୋଇଲେ
ଏଥିରେ କି ଯାଗ ହେବ ଯୁଧିଷ୍ଠି ପୁଚ୍ଛିଲେ ? ୭୬
ନାରଦ କହିଲେ ଲକ୍ଷ ଏକ ଊଣା ହେଲେ
ନ ହେବ ରାଜସୂୟ ଯାଗ ଆହେ ମହୀପାଳେ । ୭୭
ସୁବର୍ଣ୍ଣରେ ଶୃଣ ସପ୍ତ ନୃପତି ନିର୍ମାଣ
କରି ବିଧାନରେ ଯାଗ କର ନରରାଣ । ୭୭
ଯୁଧିଷ୍ଠି କହିଲେ ଯାହା କହିଲ ମହର୍ଷି
ମୋ ଦ୍ୱାରା ସମ୍ଭବ ନୁହେଁ ଏ ଯାଗ ରାଜର୍ଷି । ୭୮
ଦ୍ୱାପର ଯୁଗ ମନୁଷ୍ୟ ଉଚ୍ଚ ସାତ ହାତ
ଏତେ ପରିମାଣ ସ୍ୱର୍ଣ୍ଣ କାହୁଁ ହେବ ପ୍ରାପ୍ତ । ୭୯
ନାରଦ କହିଲେ ଖାଲି ନୃପତି ଗଢ଼ିଲେ
ନ ହୋଇବ ରାଜସୂୟ ଯଜ୍ଞ ମହୀପାଳେ । ୮୦

ସୁବର୍ଣ୍ଣେ ସହସ୍ର ରଥ ଓ ସହସ୍ର ରଥୀ
ରୁଶ ସସ୍ର ଅଶ୍ୱାରୋହୀ ଅର୍ବୁଦେ ପଦାତି । ୮୧
ଛତ୍ର ବାଦ୍ୟ ଆଦି ସବ ସୁବର୍ଣ୍ଣେ ନିର୍ମାଣ
ଏକଜଣ ରାଜା ପାଇଁ ଏତେ ଆୟୋଜନ । ୮୨
ମୁନି କଥା ଶୁଣି ଧର୍ମ ହୋଇଲେ ନିରାଶ
କହିଲେ ନ ହେବ ଯାଗ ମୋହର ବିଶ୍ୱାସ । ୮୩
ନାରଦ କହିଲେ ଧର୍ମ ଶୋଚନା ନ କର
ଲକ୍ଷେ ସ୍ୱର୍ଣ୍ଣ ରାଜା ଗଢି ପାରନ୍ତି ଶ୍ରୀଧର । ୮୪
ଶ୍ରୀକୃଷ୍ଣ କହିଲେ ସ୍ୱର୍ଣ୍ଣ କାହିଁ ପରିରୁଛ
ସ୍ୱର୍ଣ୍ଣପ୍ରସୂ ଏ ଭାରତ 'ଆପଣ ଜାଣିଛ । ୮୫

ଏ ପୃଥ୍ୱୀରେ ରହିଛନ୍ତି ବହୁ ନରନାଥ
ସେମାନଙ୍କ ଭଣ୍ଡାରରେ ଅଛି ବହୁ ବିତ୍ତ । ୮୬
ଯୁଦ୍ଧରେ ଜିଣିଲେ ତାଙ୍କୁ ପାଇବା ସେ ଧନ
ଧନ ଆଣି ଧର୍ମକାର୍ଯ୍ୟ କରିବା ସୁଜନ । ୮୭
ରାଜାମାନେ ନ ଆସିଲେ ଯାଗ ନ ହୋଇବ
ପ୍ରଥମେ ସାଧିବା ରାଜା ଆମ୍ଭର କର୍ତ୍ତବ୍ୟ । ୮୮
ଏଥିକୁ କି ଅସମର୍ଥ ଯୁଧିଷ୍ଠିର ଧ୍ୟେୟ
ବିଚାରି କହନ୍ତୁ ମୁନି ତହିଁର ଉପାୟ ? ୮୯
କୃଷ୍ଣ କହି କହୁଛନ୍ତି କୁନ୍ତୀଙ୍କ କୁମର
ଶୁଣ ରାଜା କହୁଅଛି ମଗଧ ଖବର । ୯୦
ମଗଧ ରାଜନ ମହାବୀର ଜରାସନ୍ଧ
କରୁଅଛି ବିଧାନରେ ଯଜ୍ଞ ରାଜମେଧ । ୯୧
ଦିଗ୍ ବିଜୟ କାଳେ ଯେଉଁ ନରପତି ଗଣ
ପ୍ରଣାମ ନ କଲେ ମାନ୍ୟେ ଦୁଷ୍ଟର ଚରଣ । ୯୨
ବଳାତ୍କାରେ ସେମାନଙ୍କୁ ବନ୍ଧନ କରିଣ
ବନ୍ଦୀ ଘରେ ରଖି ଦେଇ ଅଛଇ କଷଣ । ୯୩
ଆଜ ରାତେ ସମ୍ପାଦିତ ହେବ ପୂର୍ଣ୍ଣାହୁତି
ବଳି ଦେବ ରାଜା ଗଣେ ଭାବଛି ଦୁର୍ମତି । ୯୪

ଦ୍ୱାରକାଧୀଶଙ୍କ କୃପା ଭିକ୍ଷା କରିଛନ୍ତି
ମରଣ ଦାଉରୁ ଉଦ୍ଧାର ଆଣ ନରପତି । ୯୫
ଅନୁଗତ ହୋଇ ନୃପେ ରହିବେ ନୃନାଥ
ଧର୍ମ ନୃପତିଙ୍କ ଯଶ ହେବ ଉଦ୍‌ଘୋଷିତ । ୯୬
ସେମାନେ ଅଟନ୍ତି ସର୍ବେ ଧାର୍ମିକ ନୃପତି
ଧର୍ମରେ ଥିବାରୁ ତାଙ୍କୁ ପଡ଼ିଲା ବିପତ୍ତି । ୯୭
ଧର୍ମର ରକ୍ଷକ ତୁମ୍ଭେ ଧର୍ମ ଅବତାର
ଧର୍ମ ମାର୍ଗେ ଧର୍ମାଶ୍ରିତେ ପରିତ୍ରାଣ କର । ୯୮
ଜରାସନ୍ଧ ମାରି ନୃପେ ଆଣ ମୁକୁଳାଇ
ଏକ ଠାବେ ବନ୍ଦୀଛନ୍ତି ଶତ ନରସାଇଁ । ୯୯
ଜରାସନ୍ଧ ପାଶେ ଅଛି ବହୁ ଧନ ରତ୍ନ
ତାହାଙ୍କୁ ନିଧନ କଲେ ମିଳିବ ସେ ଧନ । ୧୦୦
ବେଗେ ମଗଧକୁ ପେଷ ଭୀମ କୃଷ୍ଣାର୍ଜୁନ
ମାତ୍ର ଯୁଧିଷ୍ଠିର କଲେ କଥାର ବାରଣ । ୧୦୧
କହିଲେ ଏ ତିନିଙ୍କି ମୁଁ ଛାଡ଼ି ନ ପାରିବି
ଆତ୍ମୀୟ ହରାଇ ଆତ୍ମହରା ମୁଁ ହୋଇବି । ୧୦୨
ଜରାସନ୍ଧ ବଧ କେବେ ସହଜ ନୁହଇ
ସେ କାର୍ଯ୍ୟେ ଆଗେଇ ଗଲେ ବିପଦ ଅଛଇ ।୧୦୩
ଜ୍ୟେଷ୍ଠ ଭ୍ରାତାଙ୍କ ବଚନ ଶୁଣି ବୀର ପାର୍ଥ
କହୁଛନ୍ତି ମହାରାଜ ଶୁଣ ମୋର ମତ । ୧୦୪
ଉଚ୍ଚକୁଳ ଜାତ ଲୋକ ଠାରୁ ବଳବାନ
ଉତ୍ସାହଶୀଳ ଯେ ବ୍ୟକ୍ତି ଲଭଇ ସମ୍ମାନ । ୧୦୫
ଅନ୍ୟେ ଭୟ କରି ଆମ୍ଭେ ଦୁର୍ବଳ, ନିର୍ବୀର୍ଯ୍ୟ
ହେଲେ ନିନ୍ଦା, ଉପହାସ ମାତ୍ର ହେବା ଧାର୍ଯ୍ୟ ।୧୦୬
କ୍ଷତ୍ରିୟ କୁଳରେ ଆମ୍ଭେ ହୋଇଅଛେ ଜାତ
ବଳବାନ ଶତ୍ରୁ ଜୟ କରିବା ଉଚିତ । ୧୦୭
ଶତ୍ରୁ ଜୟ କଲେ ସିନା ମିଳିବ ଐଶ୍ୱର୍ଯ୍ୟ
ଏଥିକୁ ବିଚାର କର ଆହେ ଧର୍ମରାଜ । ୧୦୮

ନକୁଳ କହିଲେ ଆମ୍ଭେ ଯୁଦ୍ଧଠୁ ଦୂରେଇ
ରହିଲେ ମଧ୍ୟ ଅମର ହୋଇବା ତ ନାହିଁ । ୧୦୯

ଏହା ଯେବେ ସତ୍ୟ ତେବେ ମୃତ୍ୟୁ ଭୟ କରି
ସାଧୁ ଉଦ୍ୟମୁ ନିବୃତ୍ତ ରହିବା କପରି ? ୧୧୦

କହୁଛନ୍ତି ବାସୁଦେବ ଧର୍ମକାର୍ଯ୍ୟ ପାଇଁ
ଜରାସନ୍ଧ ନ ମାରଣ ଛାଡ଼ି ଦେଲେ ଭାଇ । ୧୧୧

ଗୋମନ୍ତ ଯୁଦ୍ଧରେ ହଳୀ ତାକୁ ମାରୁଥିଲେ
ବାସବଙ୍କ ଅନୁରୋଧେ ରାମ ଛାଡ଼ି ଦେଲେ । ୧୧୨

ଭୀମସେନ ହସ୍ତେ ଅଛି ତାହାର ମରଣ
ନିଯୁକ୍ତ ବିଧାନ ଏହା କେ କରିବ ଆନ ? ୧୧୩

ଭୀମସେନ ହସ୍ତେ ଜରାସନ୍ଧ କରାଇଲେ ନାଶ
ଲୋକମୁଖେ ବାୟୁସୁତ ପାଇବେ ପୌରୁଷ । ୧୧୪

ଜରାସନ୍ଧ ନ ମରିଲେ ନ ହୋଇବ ଯାଗ
କୌଶଳେ ମାରିବା ଜରା ଆହେ ମହାଭାଗ । ୧୧୫

ହେଲେ ମଧ୍ୟ ଜରାସନ୍ଧ ପରାକ୍ରମଶାଳୀ
ବହୁ ଅକ୍ଷୌହିଣୀ ସୈନ୍ୟ ଥିଲେ ମହାବଳୀ । ୧୧୬

କିନ୍ତୁ ସୈନ୍ୟ ଗହଣରେ ନ ଥିବା କାଳରେ
ଆକ୍ରମଣ କଲେ ଆମ୍ଭେ ଜିଣିବା ସମରେ । ୧୧୭

କୃଷ୍ଣଙ୍କ ମୁଖରୁ ଶୁଣି କୃତାର୍ଥ ବଚନ
କହିଲେ ଅବଶ୍ୟ କାର୍ଯ୍ୟ ହୋଇବ ସାଧନ । ୧୧୮

ମାତ୍ର ରାଜଚକ୍ରବର୍ତ୍ତୀ ବୋଲାଇବା ପାଇଁ
ଯୋଗ୍ୟତା ମୋ ନାହିଁ ବୋଲି ମନେ ବିଚାରଇ ।୧୧୯

ଧର୍ମଙ୍କର ଅନାସକ୍ତ ମନ୍ତବ୍ୟକୁ ଶୁଣି
ଉପହାସ କରି ଉଚ୍ଚେ କହନ୍ତି ପାବନି । ୧୨୦

ଉଚ୍ଚ ଅଭିଳାଷ ଅଟେ ଷଡ଼ିପୁର ଗୁଣ
ନିଜ ଶକ୍ତି ପ୍ରତି ଅଜ୍ଞଥିବା ଲୋକ ହୀନ । ୧୨୧

ନିଜ କର୍ମେ ଉଦାସୀନ ରହିବା ଅନ୍ୟାୟ
ଆଳସ୍ୟ ତେଜଣ ରାଜକର୍ମ କରଣୀୟ । ୧୨୨

ଆକାଂକ୍ଷା, ପ୍ରେରଣା, ଅଭୀପ୍ସା, ପ୍ରୋତ୍ସାହନ
କରିଥାଏ ଇଚ୍ଛାମତେ ନୃପେ ଫଳଦାନ । ୧୨୩
ମୋହର ଶରୀରେ ଅଛି ବହୁ ପରାକ୍ରମ
ଧନୁର୍ବିଦ୍ୟାରେ ଅର୍ଜୁନ ଅଟେ ପାରଙ୍ଗମ । ୧୨୪

କୃଷ୍ଣଙ୍କ ପ୍ରଖର ବୁଦ୍ଧି ଅଲୌକିକ ଶକ୍ତି
ପରାହତ କେ କରିବ ଏକାଧେ ଏ ଶକ୍ତି ? ୧୨୫
ବାହୁବଳ, ଧନୁବଳ, ସଙ୍ଗେ ବୁଦ୍ଧିବଳ
ତାହା ସଙ୍ଗେ ମିଶିଅଛି ତୁମ୍ଭ ଧର୍ମବଳ । ୧୨୬
ଏହି ଗୁଣ ବଳେ କାର୍ଯ୍ୟ ହୋଇବ ସଫଳ
ଘୁର ଜରାସନ୍ଧ କେତେ ତାର ଅବା ବଳ ? ୧୨୭
ପରାକ୍ରମୀ ହୋଇ ଯାର ଉଦ୍ୟମୁ ବିରତ
ହୋଇ ବଞ୍ଚିବା କ୍ଷତ୍ରିୟ ପକ୍ଷେ ଅନୁଚିତ । ୧୨୮
ଶକ୍ତିବାନ୍ ହୋଇ ଯେବେ ରହେ ଉଦାସୀନ

ସେ ଜୀବନେ ବଞ୍ଚିବାର କିସ ପ୍ରୟୋଜନ ? ୧୨୯
ଯଶକୀର୍ତ୍ତି ଅରଜିବା କ୍ଷତ୍ରିୟ ପୌରୁଷ
ତହିଁରୁ ବିରତ ହେଲେ ମିଳେ ଅପଯଶ । ୧୩୦

ଜରାସନ୍ଧ ଠାରୁ ଆମ୍ଭ ଶକ୍ତି ଅକଳନ
ଆମ୍ଭ ଯୋଗ୍ୟତାକୁ କମ୍ପା ମଣୁଛ ନନ୍ଦନ । ୧୩୧
ଶ୍ରୀକୃଷ୍ଣ କହିଲେ ଏ ଉଚିତ ପରାମର୍ଶ
କୁରୁକୁଳ ମହାମଲ୍ଲମଣିଙ୍କର ଭାଷ୍ୟ । ୧୩୨
ଉପଯୁକ୍ତ ଶକ୍ତି ସହିତ ଉପକରଣ
ପ୍ରୟୋଗ କରିଲେ ଶତ୍ରୁ ହୋଇବ ନିଧନ । ୧୩୩

କ୍ଷତ୍ରିୟ ଧର୍ମରେ ଯେଉଁ ମତ ନିର୍ଦ୍ଦେଶିତ
ଯଥାର୍ଥ କହି ଅଛନ୍ତି ପବନଙ୍କ ସୁତ । ୧୩୪
କୃଷ୍ଣ - ଭୀମାର୍ଜୁନ କଥା ଶୁଣି ଯୁଧିଷ୍ଠିର
ମନ୍ତ୍ରୀଙ୍କର ପରାମର୍ଶ ଲୋଡ଼ିଲେ ସତ୍ୱର । ୧୩୫
ବୋଲୁଛନ୍ତି ମନ୍ତ୍ରୀବର ଶୁଣ ଧର୍ମରାଣ
ଜରାସନ୍ଧ ମୃତ୍ୟୁଭେଦ ନିଗୂଢ ବିଧାନ । ୧୩୬

ବୃହଦ୍ରଥ ରଜାଙ୍କର ଦୁଇଗୋଟି ରାଣୀ
ସୁମତୀ ଓ ସୁରୁମତୀ ପୁତ୍ର ହୀନା ବେନି । ୧୩୭
ଚଣ୍ଡ କୌଶିକ ଋଷିଙ୍କ ପାଦସେବା କରି
ଆମ୍ବ ଏକ ପାଇଲେକ ଭାଗ୍ୟେ ଦଣ୍ଡଧାରୀ । ୧୩୮
ପୁତ୍ରଲାଭ କରିବାକୁ ଋଷି ଆମ୍ବଦେଲେ
ସେ ଆମ୍ବ ଘେନିଣ ରଜା ପୁରେ ଚଳିଗଲେ । ୧୩୯
ଉଭୟ ରାଣୀଙ୍କୁ ସେଣୁ ଭଲ ପାଉଥିଲେ
ବେନି ଫାଳ କରି ଆମ୍ବ ବେନିଏ ଭକ୍ଷିଲେ । ୧୪୦
ଏକ ଦିନେ ବେନି ରାଣୀ ଗର୍ଭବତୀ ହେଲେ
ଏକ ସମୟରେ ବେନି ପ୍ରସବ କରିଲେ । ୧୪୧
ବେନିରାଣୀ ବେନି ଫାଳ ଖାଇବାରୁ ଫଳ
ଏକ ଶିଶୁ ଜାତ ହେଲା ହୋଇବେନିଫାଳ । ୧୪୨
ଗୋଟିକ ଯାକ ଆମ୍ବକୁ ଖାଇଥିଲେ ଜଣେ
ମହାବଳ ହୋଇ ପୁତ୍ର ଜନ୍ମନ୍ତା ଭୁବନେ । ୧୪୩
ଦୁଇଫାଳ ହୋଇ ଶିଶୁ ହୋଇବାରୁ ଜାତ
ମୃତଭାବ ଶ୍ମଶାନରେ ଫିଙ୍ଗିଲେ ଭୂରିତ । ୧୪୪
ଅର୍ଦ୍ଧରାତ୍ରେ ମଶାଣିରେ ଜରା ଅସୁରୁଣୀ
ଗିଳିଦେଲା ବେନିଫାଳ ମଶାଣିରୁ ତୋଳି । ୧୪୫
ଅସୁରୀ ଉଦରେ ବେନି ଫାଳ ହେଲା ଯୋଡ଼
ବଳବନ୍ତ ବପୁ ବଢ଼ି ବୁଲେ ବାଟ ଲୋଡ଼ । ୧୪୬
ଜରାପୁରେ ସନ୍ଧିକରି ହୋଇବାରୁ ଜାତ
ଜରାସନ୍ଧ ନାମେ ସୁତ ହେଲା ବାଞ୍ଛିତ । ୧୪୭
ଶ୍ମଶାନୁ ଗୋଟେଇ ନେଇ ପାଳିଲେ କୁମର
ଚଣ୍ଡ କଉଶିକ ଋଷି ଦେଇଛନ୍ତି ବର । ୧୪୮
ଐରାବତ ସିଂହର ବଳ ବହଇ ଶରୀର
ବେନି ଫାଳ କଲେ ମୃତ୍ୟୁ ହୋଇବ ତାହାର ।୧୪୯
ତେଣୁ ଜରାସନ୍ଧ କାହାକୁ ନକରେ ଭୟ
ବୀରଗଣେ ମହାବୀର ସମରେ ଅଜେୟ । ୧୫୦

ସମ୍ମୁଖ ସମରରେ ଜରା କେ ନ ପାରିବ ମାରି
କପଟରେ ମରାଇବେ ତାଙ୍କୁ ଚକ୍ରଧାରୀ । ୧୫୧

ରାଜମେଧ ଯଜ୍ଞସ୍ଥଳେ ପୂର୍ଣ୍ଣାହୁତି କାଳେ
ବିପ୍ରବେଶେ ଯାଇ ଯୁଦ୍ଧ ମାଗିବେ କୌଶଳେ । ୧୫୨
ଅହୋବଳ ଦ୍ୱାରା ଜରା ଜିଣି ହେବ ନାହିଁ
ଏକକ ସମରେ ତାଙ୍କୁ ମାରିବା ଯୋଗାଇ ।୧୫୩

କ୍ଷାତ୍ରଧର୍ମ ମତେ କ୍ଷତ୍ରି କରିଲେ ଆହ୍ୱାନ
ତାଙ୍କୁ ସେହି ଯୁଦ୍ଧ କ୍ଷଣୀ କରଇ ପ୍ରଦାନ । ୧୫୪
କ୍ଷତ୍ରିୟ ଧର୍ମରେ ଏହି ମାତ୍ର ପ୍ରଚଳନ
ଏହି ନିୟମେ କୌଶଳ କରି ନିର୍ଦ୍ଧାରଣ । ୧୫୫
ଜରା ଭୀମସେନ ମଧ୍ୟେ କରାଇଲେ ରଣ
ବେନି ଫାଳ କରି ଭୀମ କରିବେ ନିଧନ । ୧୫୬
ଜରାସନ୍ଧ ପ୍ରତିରକ୍ଷା ବ୍ୟବସ୍ଥା ଯେମନ୍ତ
ଶୁଣ ତାହା କହୁ ଅଛି ଆହେ ନରନଥ । ୧୫୭
ସିଂହଦ୍ୱାରେ ଜଗିଅଛି ଜରାର କୁମର
ବହୁ ଅକ୍ଷୌହିଣୀ ବଳ ସଙ୍ଗରେ ତାହାର । ୧୫୮
ତାହାକୁ ଜିଣିବା ଯୁଦ୍ଧେ ଅତ୍ୟନ୍ତ ଅସାଧ୍ୟ
ପ୍ରଥମ ଦ୍ୱାରରୁ ଶତ୍ରୁ କରଇସେ ବଧ । ୧୫୯

ଦ୍ୱିତୀୟ ଦ୍ୱାରରେ ଭେରୀ ଗୋଟିଏ ଅଛଇ
ଶତ୍ରୁ ଉପଗତ ହେଲେ ଶବଦ କରଇ । ୧୬୦
ଶତ୍ରୁ ଆଗମନ ବାର୍ତ୍ତା ପାଇ ଜରାସନ୍ଧ
ଅସ୍ତ୍ରଧରି ଦ୍ୱାର ଦେଶେ ଶତ୍ରୁକରେ ବଧ । ୧୬୧

ତୃତୀୟ ଦ୍ୱାରେ ସିମିଳି ବୃକ୍ଷେକ ରହିଛି
ସେ ବୃକ୍ଷରେ ଫୁଲଫଳ ଡାଳ ନାହିଁ କିଛି । ୧୬୨

ଶତ୍ରୁ ଆସି ଉପଗତ ହୋଇଗଲେ ଦ୍ୱାରେ
ଅଦ୍ଭୁତେ ଫୁଟଇ ଫୁଲ ସେ ତରୁ ଡାଳରେ । ୧୬୩
ଜରାସନ୍ଧ ଜାଣିପାରି ଶତ୍ରୁ ଆଗମନ
ଶସ୍ତ୍ରଧରି ଶତ୍ରୁ ବଧ କରେ ତତ୍କ୍ଷଣ । ୧୬୪

ଚତୁର୍ଥ ଦ୍ୱାରରେ ଗଧ ଗୋଟିଏ ଅଛଇ
ଶତ୍ରୁ ଉପଗତ ହେଲେ ଜଣରେ ରାବଇ ।୧୬୫
ଗର୍ଦ୍ଧବର ଧ୍ୱନି ଶୁଣି ଶତ୍ରୁ ଆଗମନ
ଜାଣି ଜରାସନ୍ଧ କରେ ଶତ୍ରୁକୁ ନିଧନ ।୧୬୬
ଏ ବିଧିରେ ଗଡ଼ରକ୍ଷା କରେ ଜରାସନ୍ଧ
ଦ୍ୱାର ଦେଖୁ ଶତ୍ରୁଗଣେ କରିଥାଏ ବଧ ।୧୬୭
ତେଣୁ ସହଜରେ ଶତ୍ରୁ ପଶି ନ ପାରଇ
ଅଜେୟ ମଗଧ ରାଜା ଏ ଭାରତ ଭୂଇଁ ।୧୬୮
ମନ୍ତ୍ରୀର ମୁଖରୁ ଭେଦ ପାଇଣ ଶ୍ରୀକୃଷ୍ଣ
ଭୀମ ପାର୍ଥ ଘେନ ସଙ୍ଗେ ଚଳିଲେ ବହନ ।୧୬୯
" କଲ୍ୟାଣ କରି କହ[illegible]ଲ କୁନ୍ତୀଙ୍କ କୁମର
ବିଜୟୀ ମଣ୍ଡିତ ହୋଇ ଫେର ଚକ୍ରଧର " ୧୭୦
ଏକଶହ ଏକସ୍ତରି ପଦେ ଅଧ୍ୟା ଶେଷ
ସୁଜନେ ଶୁଣ ମାନସ ବୋଲେ ବୃନ୍ଦାସ ।୧୭୧

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଃନେ
ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ରାଜସୂୟ ଯଜ୍ଞ
ପ୍ରସ୍ତାବେ ନାମ ସପ୍ତବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

**ବୋଲି —**

ବାଇ ମନରେ ! ନେହେ ଅନାଇଦିଅ
ଦାରୁବ୍ରହ୍ମ ରୂପେ ଦେଖ ବସିଛି ଦିଅଁ ॥ ଘୋଷା ॥
ଭାବ ବିନୋଦିଆ ଭ କ ତ ଭୋଳିଆ
ଭକ୍ତଭାବେ ଦେଖ ବହିଛି ଦେହ,
ଶ୍ରୀମୁଖରେ କଳା ବୋଲି ହୋଇଅଛି
ଚକା ଆଖି କୁମ୍ଭାର ଚକ ପ୍ରାୟ ।୧

ରାଜା ପୁଅ ପରି ବେଶ ହୋଇଅଛୁ
ହଟିଆ ନାଗର ଏତ ନନ୍ଦଆ ପୁଅ
ଭକ୍ତ ସଙ୍ଗେ ଖେଳେ ଲୁଚକାଳି ଖେଳ
ଗ୍ରାବ ବନୋଦଆ ଏତ ଭକତ ପ୍ରିୟ । ୨

ହେ କରୁଣା ସିନ୍ଧୁ ଭକ୍ତ ପ୍ରାଣବନ୍ଧୁ
କରୁଣା ବନ୍ଦୁରୁ ମୋତେ ଜାଣିଚେ ଦଅ
ଭଜଇ ବ ପି ନ ବ ପି ନ ବା ସ ରେ
ହେ ବପିନ ମାଳୀ କର ହୃଦେ ବଜୟ । ୩

# ଅଷ୍ଟବିଂଶ ଅଧ୍ୟାୟ

## ଜରାସନ୍ଧ ବଧ

( ରାଗ — ଆଶାବରୀ )

ଶ୍ରୀକୃଷ୍ଣ ଚରିତ ମାନସ କର ଶ୍ରବଣ
ଦୁର୍ଜନ ବିନାଶକାରୀ ଶ୍ରୀହରି କୀର୍ତ୍ତନ । ୧
ବ୍ରାହ୍ମଣ ବେଶରେ ତିନିଜଣ ଚାଲିଗଲେ
ମଗଧ ରାଜଭବନେ ଯାଇଁଣ ମିଳିଲେ । ୨
ସହଦେବ ମନ୍ତ୍ରୀ କଥା ମନେ ପକାଇଣ
ସିଂହଦ୍ୱାର ପଥ ଦେଇ ନ କଲେ ଗମନ । ୩
ଉତ୍ତର ଦ୍ୱାର ନିକଟେ ଚୈତ୍ୟ ଶୃଙ୍ଗ ଦେଇ
ପ୍ରାସାଦେ ପ୍ରବେଶ କଲେ ବଳାତ୍କାରେ ଯାଇ । ୪
ରାଜାଙ୍କ ଉଦ୍ଦେଶ୍ୟେ ଯାଉଥିବା ପୁଷ୍ପହାର
ମାଳାକାର ଠାରୁ ଛେନି ଗଲେ ତିନିବୀର । ୫
ମାଳା ଚନ୍ଦନରେ କଣ୍ଠ ମଣ୍ଡନ କରିଣ
ଭେଟିଲେ ଜରାସନ୍ଧକୁ ମଣ୍ଡପ ଯାଇଁଣ । ୬
କରନ୍ତେ ଯଜ୍ଞ ଶାଳକୁ ତିନି ଆଗମନ
ଯଜ୍ଞସ୍ଥଳୁ ଉଠି ଜରା ପୁଚ୍ଛିଲେ ବଚନ । ୭
ସ୍ନାତକ ଓ ବ୍ରହ୍ମଚାରୀ ବୈଷ୍ଣବ ବ୍ରାହ୍ମଣ
ସଭାକୁ ଗମନ କାଳେ ମାଳା ଓ ଚନ୍ଦନ । ୮
ଧାରଣ କରିଣ ଯିବା ଅଛଇ ବିଧାନ
ଅନ୍ୟ ସମୟରେ ଚଢା ହୋଇଛି ବାରଣ । ୯
ମାତ୍ର ଆପଣମାନଙ୍କ ଲଲାଟେ ଚନ୍ଦନ
କଣ୍ଠେ ପୁଷ୍ପହାର ଦେଖି ସନ୍ଦେହ ମୋ ମନ ? ୧୦
ପରିଧାନ ବସ୍ତ୍ର ମଧ୍ୟ ଅଟେ ରକ୍ତବର୍ଣ୍ଣ
ପୁଣି ରକ୍ତବର୍ଣ୍ଣ ପୁଷ୍ପ କଣ୍ଠେ ଶୋଭାବନ । ୧୧

ରକତ ଚନ୍ଦନ ତୁମ୍ଭ କପାଳେ ଲେପନ
ଭୁଜରେ ପରିଲକ୍ଷିତ ହେଉଛି ଜ୍ୟାଚିହ୍ନ । ୧୨
ଶରୀର ଗଠନ ତଥା ତେଜ କ୍ଷତ୍ରି ପରି
ବ୍ରାହ୍ମଣର ପରିଚୟ ଦେଉଛ କପଟି ? ୧୩
ତା ଛଡ଼ା ରାଜପ୍ରାସାଦ ମଧ୍ୟକୁ ପ୍ରବେଶ
କରିବା ପାଇଁ ଅଛି ପ୍ରଶସ୍ତ ଦ୍ୱାର ଦେଶ । ୧୪
ପ୍ରବେଶ ପଥ ଦେଇଣ ପ୍ରବେଶ ନ କରି
ପ୍ରାସାଦର ବହୁ ଚୈତ୍ୟ ଖମ୍ବ ଭଗ୍ନ କରି । ୧୫
ଭିତରେ ପ୍ରବେଶ କଲ ଯେଣୁ ତୁମ୍ଭେମାନେ
ବ୍ରାହ୍ମଣ ବୋଲି ସନ୍ଦେହ ଆସେ ମୋର ମନେ । ୧୬
ବ୍ରାହ୍ମଣଙ୍କ ଶକ୍ତି ବାକ୍ୟ ଦ୍ୱାରା ପ୍ରକାଶିତ
ମାତ୍ର ଆପଣଙ୍କ କ୍ଷେତ୍ରେ ଦେଖେ ବିପରୀତ । ୧୭
ଶାରୀରିକ ଶକ୍ତି ଦ୍ୱାରା ନିଜର ଶକତି
ପ୍ରକାଶ କରିବା ଦ୍ୱାରା ମନେ ଜାଗେ ଭ୍ରାନ୍ତି । ୧୮
ନିଜର ଜାତି ବିରୁଦ୍ଧ କାର୍ଯ୍ୟ କରିଅଛ
ମନେ ହୁଏ ଛଦ୍ମ ବେଶେ ପ୍ରାସାଦେ ପଶିଛ ? ୧୯
ଏଣୁ ତୁମ୍ଭ ସମ୍ପର୍କରେ ମୋ ମନେ ସନ୍ଦେହ
ଯୁଗପତ୍ ଜାଗିବାରୁ ହେଉଛି ବିସ୍ମୟ । ୨୦
ତୁମ୍ଭ ଆକୃତି, ପ୍ରକୃତି, ଆଚାର, ବେଭାର
ଚାଲି ଚଳନୁ ପ୍ରତ୍ୟୟ କ୍ଷତ୍ରିୟ କୁମର । ୨୧
କି ଉଦ୍ଦେଶ୍ୟ ଯାଗଶାଳେ କଲ ଆଗମନ
ବିଳମ୍ବ ନ କରି ପ୍ରକାଶ କର କାରଣ ? ୨୨
କହୁଛନ୍ତି କୃଷ୍ଣ ଶୁଣ ମଗଧ ରାଜନ
ଆମ୍ଭଠାରେ ସ୍ନାତକଙ୍କ ଲକ୍ଷଣ ଦେଖିଣ । ୨୩
ମନ ମଧ୍ୟେ ଭାବିଅଛ ଆମ୍ଭେ ତ ବ୍ରାହ୍ମଣ
ତାହା ଯେବେ ସତ୍ୟ ଭ୍ରମେ ପଡ଼ିଛ ରାଜନ । ୨୪
କାରଣ ସ୍ନାତକ ବ୍ରତ କେବଳ ବ୍ରାହ୍ମଣ
ମଧ୍ୟରେ ସୀମିତ ନୁହେଁ ହେ ମଗଧ ରାଣ । ୨୫

କ୍ଷତ୍ରିୟ ଓ ବୈଶ୍ୟମାନେ ମଧ୍ୟ ଏହି ବ୍ରତ
ଗ୍ରହଣ କରି ଥାଆନ୍ତି ଆହେ ନରନାଥ । ୨୬
ବାକ୍ ପଟୁତାରେ କ୍ଷତ୍ରି ଆଗ୍ରହୀ ନ ହୋଇ
ବଳ ଓ ସଂଯମ ଗୁଣେ ବଳବାନ ସେହି । ୨୭
ପୁଷ୍ପ ମାଳ କଥା ତୁମେ ପଚାରିଲ ଯାହା
ଶ୍ରୀମାନ୍ ଲକ୍ଷଣ ବୋଲି ଜାଣିର ହେ ତାହା । ୨୮
ଏ ସବୁ କାରଣ ଯୋଗୁଁ ଜାଣ ଆମ୍ଭେମାନେ
ବାକ୍ ସଂଯମତା ପାଳନ କରୁ ଅନୁକ୍ଷଣେ । ୨୯
ଆପଣ ଯଦ୍ୟପି ଆମ୍ଭ ବାହୁବଳ ସହ
ପରିଚିତ ହେବା ପାଇଁ ପ୍ରକାଶ ଆଗ୍ରହ । ୩୦
ଅଚିରେ ତୁମ୍ଭ ଉଦ୍ଦେଶ୍ୟ ହୋଇବ ପୂରଣ
ସେଥିପାଇଁ ଏ ସ୍ଥାନକୁ ଆମ୍ଭ ଆଗମନ । ୩୧
ହେ ରାଜା ! ପ୍ରବେଶ ପଥେ ଗୃହର ଭିତରେ
ପ୍ରବେଶ କରିବା କଥା ମିତ୍ରଙ୍କ ପକ୍ଷରେ । ୩୨
ମାତ୍ର ଶତ୍ରୁମାନେ ଭିନ୍ନ ପଥରେ ପ୍ରବେଶ
କରିଥାନ୍ତି କ୍ଷାତ୍ରଧର୍ମ ମତେ ନୃପକ୍ଳେଶ । ୩୩
ଏଣୁ ଆମ୍ଭେ ସେହି କାର୍ଯ୍ୟ ସାଧନ ନିମନ୍ତେ
ପ୍ରବେଶ ନ କଲୁ ପ୍ରାସାଦ ପ୍ରବେଶ ପଥେ । ୩୪
ଚୈତ ସ୍ତମ୍ଭ ଭଗ୍ନ କରି ସେ ପଥେ ପ୍ରବେଶ
ଏ କାରଣୁ କରି ଅଛୁ ଆହେ ମଗଧେଶ । ୩୫
ବିସ୍ମିତ ହୋଇ ପୁଚ୍ଛିଲେ ଜରାସନ୍ଧ ବୀର
ଆପଣଙ୍କ ସଙ୍ଗେ ଶତ୍ରୁତା ନାହିଁତ ମୋର ? ୩୬

ଶ୍ରୀକୃଷ୍ଣ କହିଲେ ଶୁଣ ରାଜା ଜରାସନ୍ଧ
କ୍ଷତ୍ରିୟ ମାନଙ୍କ ପ୍ରତି କମ୍ପା କର କ୍ରୋଧ ? ୩୭
ନିରପରାଧ ନୃପତିଗଣେ ବନ୍ଦୀ କରି
ଅଯଥାରେ ରଖିଅଛ କମ୍ପା ଦଣ୍ଡଧାରୀ । ୩୮
ବନ୍ଦୀ ନୃପଙ୍କ ପ୍ରତି ହିଂସାଭାବ ପୋଷଣ
କି କାରଣେ କରୁ ଅଛ ମଗଧ ରାଜନ ? ୩୯

ଯଜ୍ଞ ବେଦୀରେ ନୃପଙ୍କୁ ବଳି ଦେବା ପାଇଁ
ବନ୍ଧନ କରି ରଖିବା ଅନ୍ୟାୟ ଅଟଇ । ୪୦
ତୁମ୍ଭପରି ଧର୍ମଦ୍ରୋହୀ ପାପ ମୂଢ ଜନ
ଦଣ୍ଡ ଦେବା ପାଇଁ ଜାଣ ଆମ୍ଭ ଆଗମନ । ୪୧
ଜାଣିଛ ମନୁଷ୍ୟ ଭୋଗେ କୃତକର୍ମ ଫଳ
ତାହାହିଁ ଏଠାରେ ଆଜ ଭୋଗିବ ଭୂପାଳ । ୪୨
ଆପଣଙ୍କ ଦ୍ୱାରା ଅକଥନୀୟ ଭାବରେ
ପୀଡ଼ିତ କ୍ଷତ୍ରିୟ ଚୟ ଅସୀମ ଦୁଃଖରେ । ୪୩
ଅଭିଭୂତ ହୋଇ ତୁମ୍ଭ ନିଧନ ନିମନ୍ତେ
ଆମ୍ଭେମାନେ ଛଦ୍ମବେଶେ ଆସିଅଛୁ ଏଥେ । ୪୪
ଆପଣାକୁ ମହାବୀର ଭାବଛ ନୃରାଣ
ଗର୍ବ ଖର୍ବ କରିବାକୁ ଆମ୍ଭ ଆଗମନ । ୪୫
ବାହୁବଳ ତଥା ସୈନ୍ୟବଳେ ବଳୀୟାନ
ହୋଇ ଅନ୍ୟ ସମସ୍ତଙ୍କୁ କର ଆକ୍ରମଣ ।୪୬
ତୁମ୍ଭର ଏ ପ୍ରକାର ଦୁଷ୍ଟ ଆଚରଣ
ଅସହ୍ୟ ହେଲାରୁ ଆମ୍ଭେ କଲୁ ଆଗମନ । ୪୭
ବ୍ରାହ୍ମଣତ ନୋହୁ ଆମ୍ଭେ ଜାତରେ କ୍ଷତ୍ରିୟ
ବସୁଦେବ ସୁତ ମୁଁ ଏ ପାଣ୍ଡୁଙ୍କ ତନୟ । ୪୮
ଭୀମ ପାର୍ଥ ଦୁଇ ଭାଇ ବୀର ଅଗ୍ରଗଣ୍ୟ
ଆପଣଙ୍କୁ ଦେଉଅଛୁ ଯୁଦ୍ଧର ଆହ୍ୱାନ । ୪୯
ବନ୍ଦୀ କରି ରଖିଥିବା ନରପତି ଗଣ
ମୁକ୍ତ କରି ଦିଅ ଅବା କର ତୁମ୍ଭେ ରଣ । ୫୦
ଏ ଦୁଇ କଥାରୁ ଗୋଟେ କର ନରପତି
ନୋହିଲେ ଶରଣ ପଶ ଚରଣରେ ନେଇଟି । ୫୧
ଜରାସନ୍ଧ ବୋଲେ ଯାହା କହିଲୁ ରେ କୃଷ୍ଣ
ଯୁକ୍ତି ସମ୍ମତ ବୋଲି ନ ବିଚାରେ ମନ । ୫୨
ମୋହ ଦ୍ୱାରା କାରାରୁଦ୍ଧ ଯେଉଁ ନୃପଗଣ
ଯୁଦ୍ଧେ ଜିଣି ସେମାନଙ୍କୁ କରିଛି ବନ୍ଧନ । ୫୩

ତୁମ୍ଭର କଥାରେ ଅବା ଯୁଦ୍ଧ ଆହ୍ୱାନରେ
ଭୟଭୀତ ହୋଇ ତାଙ୍କୁ ଛାଡ଼ିଣ ନ ପାରେ । ୫୪
ତୁମ୍ଭମାନଙ୍କ ମିଳିତ ଶକ୍ତି ବଳୁଛରେ
ଏକାକି ଲଢ଼ିବା ପାଇଁ ବଳ ମୋ ଶରୀରେ । ୫୫
ଯଦ୍ୟପି ଜଣଙ୍କ ସଙ୍ଗେ କରିବାକୁ ରଣ
ଆହ୍ୱାନ ଦେଉଛ ମୋତେ କଲି ତା ଗ୍ରହଣ ।୫୬
ମାତ୍ର ମୋ ବିଚାର ଯାହା ଶୁଣ ଆରେ କୃଷ୍ଣ
ଜଣଙ୍କ ସଙ୍ଗେ ଲଢ଼ିଲେ ହେବ ଅପମାନ । ୫୭
ତିନିଜଣ ମିଶି କର ମୋହ ସଙ୍ଗେ ରଣ
ତେବେ ସିନା ବୁଝାଯିବ ତୁମ୍ଭ ବୀରପଣ ? ୫୮
କୃଷ୍ଣ କହିଲେ ଜଣକ ସଙ୍ଗେ ତିନି ଜଣ
ସଂଗ୍ରାମେ ପଶିଲେ ନିନ୍ଦା ହୋଇବ ରାଜନ । ୫୯
ତୁମ୍ଭେ ଯାହା ସଙ୍ଗେ ଯୁଦ୍ଧ କରିବାକୁ ଚାହିଁ
ତାହାଙ୍କୁ ଆହ୍ୱାନ ଦେଲେ ଯୁଝିବ ନିଶ୍ଚୟ । ୬୦
ଅଟ୍ଟହାସ୍ୟ କରି କହେ ମଗଧ ରାଜନ
ତୁମ୍ଭ ସଙ୍ଗେ ନାହିଁ ମୋର କିଛି ପ୍ରୟୋଜନ ।୬୧
ସାମନ୍ତ ସନ୍ତାନ ତୁହି ନୃପତି ନନ୍ଦନ
ରାଜପୁତେ ରାଜପୁତ କରିଥାଏ ରଣ । ୬୨
ପୁଣି ମୋହ ଦ୍ୱାରା ତୁମ୍ଭେ ସମ୍ମୁଖ ସମରେ
ବହୁବାର ପରାଜିତ ହୋଇଛ ପୂର୍ବରେ । ୬୩
ପରାଜିତ ବ୍ୟକ୍ତି ସଙ୍ଗେ ପୁନଶ୍ଚ ସମର
କଲେ ନିନ୍ଦା ହେବ ମୋତେ ହେ ନନ୍ଦ କୁମର ।୬୪
ଏଣୁ ତୁମ୍ଭ ସଙ୍ଗେ ମୋର ନାହିଁ ପ୍ରୟୋଜନ
ମୋ ସଙ୍ଗେ ଯୁଝିବା ପାଇଁ ଦୁର୍ବଳ ଅର୍ଜୁନ । ୬୫
ବପୁରେ ଭୀମ ଶରୀରେ ଅଛି କିଛି ବଳ
ଜାଣିଅଛି ମଲ୍ଲ ଯୁଦ୍ଧ ପବନ ଦୁଲାଳ । ୬୬
ଅସ୍ତ୍ରଶସ୍ତ୍ର ଶୂନ୍ୟ ଦେଖି ତୁମ୍ଭେ ତିନି ଜଣ
ମଲ୍ଲ ଯୁଦ୍ଧ କରିବାକୁ ଦେଉଛି ଆହ୍ୱାନ । ୬୭

ଭୀମ ଦେହେ ବଳ ଥିଲେ କରୁ ସେ ସମର
ଆହ୍ୱାନ ପାଇ ମାରୁତ ଚାହିଁଲେ ଶ୍ରୀଧର । ୬୮
ସଙ୍କେତେ କହିଲେ କୃଷ୍ଣ ଯାଅ ଭୀମସେନ
ତୁମ୍ଭଠାରେ ଜରାସନ୍ଧ ବଳଅଛି ମନ । ୬୯
ଆଜ୍ଞା ପାଇ ଭୀମସେନ ସମରେ ପଶିଲେ
ବେନି ବୀର ମିଶି ଦ୍ୱନ୍ଦ୍ୱ ଯୁଦ୍ଧ ଆରମ୍ଭିଲେ । ୭୦
ଦୁଇ ମହାମଲ୍ଲ ମଧ୍ୟେ ଯାଏଁ ଲାଗିଲା ସମର
ହାରଜିତ ନ ହୋଇଲା ସମ ବେନି ବୀର । ୭୧
କୃଷ୍ଣଙ୍କୁ ଚାହିଁଲେ ଭୀମ ପରାମର୍ଶ ପାଇଁ
ଆପଣା ଚିରିଲା ବସ୍ତ୍ର ଧରି ଯଦୁ ସାଇଁ । ୭୨
ଦୁଇଫାଳ କରିତାକୁ ଦ୍ୱି ଦିଗେ ଫିଙ୍ଗିଲେ
ଏହା ଦେଖି ଭୀମସେନ ଭେଦ ପାଇଗଲେ । ୭୩
ଦୁଇଫାଳ କରି ଜରାସନ୍ଧ ଚିରି ଦେଲେ
ବେନି ଦିଗେ ବେନି ଫାଳ ଶୂନ୍ୟକୁ ଫିଙ୍ଗିଲେ । ୭୪
ଗଣ୍ଡଭଇରବ ବେନି ଫାଳ ଘେନି ଗଲା
ଗଛଡାଳେ ବସି ବେନି ଫାଳକୁ ଭୁଞ୍ଜିଲା । ୭୫
ଜରାସନ୍ଧ ମରିବାରୁ ପୃଥ୍ୱୀ ହେଲା ଶାନ୍ତ
ତାହା ପୁତ୍ର ସହଦେବେ କଲେ ନରନାଥ । ୭୬
ରାଜ ଅଭିଷେକ କାଳେ ଆଜ୍ଞା ଦେଲେ କୃଷ୍ଣ
କାରାଗାରୁ ମୁକ୍ତ କର ବନ୍ଦୀ ନରଗଣ । ୭୭
ଆଜ୍ଞା ପାଇ ସହଦେବ ବନ୍ଦୀ ମୁକ୍ତ କଲେ
ମୁକ୍ତ ପାଇ ନୃପଗଣେ ଚରଣେ ପଡ଼ିଲେ । ୭୮
ରାଜାଙ୍କ ବିନୟ ଭାବ ଦେଖି ନାରାୟଣ
ଅଭୟ ପ୍ରଦାନ କଲେ କର ପ୍ରସାରଣ । ୭୯
ଆକଟ କରି କହିଲେ ଶୁଣ ନୃପବର
ହେଜୁ କରି ଘେନ ଥାଅ ବଚନ ଆମ୍ଭର । ୮୦
ସମ୍ପଦ ବେଳେ ଉନ୍ମତ୍ତ ଗର୍ବୀ ନ ହୋଇବ
ପ୍ରଜାମାନଙ୍କୁ ଅନ୍ୟାୟେ କଷଣ ନ ଦେବ । ୮୧

ଧର୍ମ ପଥେ ରହି ରାଜ୍ୟ କରିବ ଶାସନ
ସେବା ଧର୍ମ ଗୋଟି କରି ଥିବ ଗଣ୍ଠି ଧନ । ୮୨
ଧର୍ମାଧୀନ ହୋଇ ଭୋଗ କର ରାଜ୍ୟ ଭତ୍ର
ଅନ୍ୟାୟ କରିଲେ ନଷ୍ଟେ ହୋଇବ ନପାତ୍ର । ୮୩
ସତ୍ୟ କଲେ ନୃପ ଗଣେ ପଦ୍ମ ପାଦ ଛୁଇଁ
ନୃପଙ୍କୁ ଶୁଣି କହିଲେ ଦ୍ୱାରକା ଗୋସାଇଁ । ୮୪
ଭୂମ୍ପମାନଙ୍କର ମୁକ୍ତିଦାତା ଭୀମସେନ
ତାହାଙ୍କ ଚରଣ ତଳେ ପଶ ହୋ ଶରଣ । ୮୫
ଜରାସନ୍ଧ ମାରି କଲେ ସେ ଭୂମ୍ପଙ୍କୁ ମୁକ୍ତ
ସେ ଭୂମ୍ପ ପ୍ରଭୁ ଅଟନ୍ତି କର ତାଙ୍କୁ ଶାନ୍ତ । ୮୬
ଆଜ୍ଞା ପାଇ ନୃପଗଣେ ଭୀମଙ୍କୁ ପୂଜିଲେ
ବସନ, ଭୂଷଣ, ରତ୍ନ ଉପହାର ଦେଲେ । ୮୭
ନୃପଗଣେ ଶୁଣି ଆଜ୍ଞା ଦେଲେ ଭୀମସେନ
ସହଦେବ ପାଦେ ଖଟ ସବୁ ନୃପ ଗଣ । ୮୮
ବାଳକ ସ୍ୱବଶ ଯେବେ କରିବ ଅବଜ୍ଞା
ଜୀବନେ ବଧ କରିବ ନିବାର ପ୍ରତିଜ୍ଞା । ୮୯
ଆଜ୍ଞା ପାଇ ନୃପ ଗଣେ ଆସ୍ଥାନେ ଖଟିଲେ
ତ୍ରାହି ତ୍ରାହି କହି ସର୍ବେ ଚରଣେ ପଡିଲେ । ୯୦
ଶ୍ରୀକରେ ଅକ୍ଷତ ଗୁବାକ ଶ୍ରୀଫଳ ଦେଇ
ଯାଗକୁ ବରଣ କଲେ ପାର୍ଥ ନୃପ ଶ୍ରେଣୀ । ୯୧
କହିଲେ ରାଜସୂ ଯାଗ କରୁଛନ୍ତି ଧର୍ମ
ଆଜ୍ଞାକୁ ନ ମେଣ୍ଟି ସର୍ବେ କରିବ ଗମନ । ୯୨
ରାଜାଏ କହିଲେ ଯାଗେ ହେବୁ ଉପସ୍ଥିତ
ବିଧାନେ କରିବ ଆମ୍ଭଙ୍କୁ ପଠାଇ ଦୂତ । ୯୩
ତୁମ୍ଭ ଯୋଗୁଁ ରକ୍ଷା ହେଲା ଆମ୍ଭର ଜୀବନ
କିଙ୍କର ହୋଇ ରହିଲୁ ପାଳିବୁ ବଚନ । ୯୪
ମଗଧ ବିଜୟ କରି ଚଳିଲେ ତ୍ୱରିତ
ଧର୍ମଙ୍କ ଚରଣେ ତିନ ହୋଇଲେ ପ୍ରଣତ । ୯୫

ମଗଧରୁ ଆଣିଥିଲେ ଯେତେ ଧନରତ୍ନ
ଗୃହ ସତ୍ର ସୃଷ୍ଟି ନୃପ କରିଲେ ନିର୍ମାଣ । ୯୬
ଜରାସନ୍ଧ ମରିବାରୁ ଯଜ୍ଞ ଅନୁଷ୍ଠାନ
ବହୁଗୁଣେ ହୋଇଗଲା ସରଳ, ସୁଗମ । ୯୭
ତଦନ୍ତରେ ପାଣ୍ଡୁ ପୁତ୍ରେ ଦିଗ୍ ବିଜୟ କରି
ବଶୀଭୂତ କଲେ ଦର୍ପେ ପୃଥ୍ୱୀ ଦଣ୍ଡଧାରୀ । ୯୮
ଏକାଧିପତ୍ୟ ବିସ୍ତାର କଲେ ଧର୍ମସୁତ
ରାଜଚକ୍ରବର୍ତ୍ତୀ ହେବା ପାଇଁ ପଥମୁକ୍ତ । ୯୯
ରାଜସୂୟ ଯଜ୍ଞ ପାଇଁ ସୁସ୍ଥ ପରିବେଶ
ସୃଷ୍ଟି ହେଲା ବୋଲି ଜାଣି ଧର୍ମରାଜ ତୋଷ ।୧୦୦
ପାଣ୍ଡବ ପ୍ରଶଂସା ଶୁଣି ମାମା ଦୁର୍ଯ୍ୟୋଧନ
ପଚାରିଲା ମାମୁଁ କହ କେମନ୍ତ କାରଣ ? ୧୦୧
ଯେଉଁ ଜରାସନ୍ଧ ଠାରୁ ହାରିଥିଲେ କୃଷ୍ଣ
ତାହାକୁ କପରି ବଧ କଲା ଭୀମସେନ ? ୧୦୨
ଏଥୁ ଜଣାଯାଏ ଭୀମ ମହାବଳବାନ
ମଲ୍ଲଯୁଦ୍ଧେ ତାହା ସଙ୍ଗେ କେ ନୁହେଁ ସମାନ ।୧୦୩
ମନ୍ତ୍ରଣା ମୁଣିକୁ ଫେଇ କହେ ମନ୍ତ୍ରୀବର
ଷୋଳ ଦିନ ଉପବାସ ଥିଲା ଜରା ସାର । ୧୦୪
ଧର୍ମ କାର୍ଯ୍ୟରେ ନିଯୁକ୍ତ ଥିବାରୁ ରାଜନ
ଅସ୍ତ୍ରଶସ୍ତ୍ର କିଛି ନାହିଁ ସ୍ୱ କରେ ଧାରଣ । ୧୦୫
ଜରାସନ୍ଧ ଥିଲେ ମଧ୍ୟ ପାପୀ, ଅତ୍ୟାଚାରୀ
ସମ୍ମୁଖ ସମରେ ତାକୁ ନ ପାରିଲେ ମାରି । ୧୦୬
କୂଟ କରି କୃଷ୍ଣଚନ୍ଦ୍ର କରାଇଲେ ହତ
ଏଥିରେ ଭୀମସେନର କିସ ବା ଗାରିମା ? ୧୦୭
ଦେବତା ବ୍ରାହ୍ମଣ ପ୍ରତି ଅସୀମ ଭକତି
ଥିବାରୁ ଜରାସନ୍ଧ ତ ଲଭିଲା ଏ ଗତି । ୧୦୮
ଛଦ୍ମ ବ୍ରାହ୍ମଣ ବେଶରେ ତିନି ଚାଲିଗଲେ
ବସ୍ତ୍ରଭିବ ଜରାସନ୍ଧ ପାଦ୍ୟ ଅର୍ଘ୍ୟ ଦେଲେ । ୧୦୯

ବିଶ୍ୱାସ ଘାତକ କୃଷ୍ଣ ଛଳବୁଦ୍ଧି କରି
ଭୀମ ହାତେ ଜରାସନ୍ଧ ପକାଇଲା ମାରି । ୧୧୦
କୃଷ୍ଣଙ୍କର ବୁଦ୍ଧି ସଙ୍ଗେ ଭୀମଙ୍କର ଶକ୍ତି
ମିଶିବାରୁ ଜରାସନ୍ଧ ପ୍ରାଣେ ବିନଶ୍ୟନ୍ତି । ୧୧୧
ଏସବୁ ଅଟେ କୃଷ୍ଣଙ୍କର ତୀକ୍ଷ୍ଣ ବୁଦ୍ଧି ଖେଳ
ବନ୍ଦୀଶାଳୁ ଉଦ୍ଧାରିଲେ ଅନେକ ଭୂପାଳ । ୧୧୨
ତଦ୍ୱାରା ସେମାନେ ହୋଇ ରହିଲେ ବିଶ୍ୱସ୍ତ
ଯୋଗାଇଲେ ସ୍ୱର୍ଣ୍ଣ ପୂର୍ଣ୍ଣ ସହସ୍ରେକ ରଥ । ୧୧୩
କୃତଜ୍ଞ ହୋଇ ରହିଲେ ସବୁ ଦିନ ପାଇଁ
କୃଷ୍ଣଙ୍କର କୂଟନୀତି କେ ବୁଝି ପାରଇ ? ୧୧୪
ଜରାସନ୍ଧ ବଧ କରି ରାଜ୍ୟ ସିଂହାସନ
ଜରାସନ୍ଧ ପୁତ୍ର କରେ କରିଲେ ଅର୍ପଣ । ୧୧୫
ତଦ୍ୱାରା ମଗଧ ରାଜ୍ୟ ହେଲା ଅଧୀନସ୍ଥ
ମିତ୍ର ରାଜ୍ୟ ପଣେ ଧର୍ମ ଶାସନ ଆଶ୍ରିତ । ୧୧୬
ଜ ରା ସ ନ୍ଧ ମରିବାରୁ ରାଜଚକ୍ରବର୍ତ୍ତୀ
ହେବାପାଇଁ ଯୁଧିଷ୍ଠିରଙ୍କୁ ମିଳିଗଲା ଶକ୍ତି । ୧୧୭
ମନ୍ତ୍ରୀକଥା ଶୁଣି ରାଜା ମନରେ ଅଶାନ୍ତ
ପ୍ରକାଶ ନ କରି ତାହା ରଖିଲା ଗୁପତ । ୧୧୮
ଦୁଷ୍ଟବୁଦ୍ଧି ଦ୍ୱାରା ଦୁଷ୍ଟ ସର୍ବଦା ଚଳିତ
ବିବେକଭ୍ରଂଶ ହେବାରୁ ବିନଷ୍ଟ ବ୍ୟକ୍ତିତ୍ୱ । ୧୧୯
ସୁଜନେ ଶ୍ରବଣ କର ସଙ୍ଗୀତ ମାନସ
ପଦ ପଦ କରେ ଝରେ କୃଷ୍ଣ ପ୍ରେମରସ । ୧୨୦
ଏକଶତ ଏକବିଂଶ ପଦେ ଅଧ୍ୟା ଶେଷ
ଗୀତରେ ଭଣିଲା ମୂଢ଼ମତି ବୁଲ୍‌ଦାସ । ୧୨୧

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ଜରାସନ୍ଧ ବଧ
ଉପାଖ୍ୟାନେ ନାମ ଅଷ୍ଟବିଂଶ ଅଧ୍ୟାୟ ସମାପ୍ତଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

ବୋଲି—

ଦୀନବନ୍ଧୁ ହେ ! ବନ୍ଧୁ ତୁମ୍ଭେ ମୋହର
ଦୀନ ଦୁଃଖୀ ପାଇଁ କାନ୍ଦୁ ଥାଅ ସାଇଁ
ନୟନୁ ଗଡାଇ ନିରନ୍ତେ ନୀର ॥ ଘୋଷା ॥

କି ନ କଲ ବନ୍ଧୁ ମାହାତ୍ମ୍ୟ ବନ୍ଧୁ
ବନ୍ଧୁ ପାଇଁ ବହିଲ ଘୋଡାଘର
ଦାମୋଦର ବିପ୍ର ଦୁଃଖ ଦୂର କଲ
ଭରି ଦେଲ ନେଇ ଘରେ ଭଣ୍ଡାର । ୧

ଦେଖୁଛି ଜଗତେ ବନ୍ଧୁ ଛନ୍ତି ଯେତେ
କେହିତ ନ କାନ୍ଦେ ଦୁଃଖେ କାହାର
ତୁମ ପରି ବନ୍ଧୁ କିଏ ସେ ହେବକି
ଭାର ବୋହି ନେବ ଭକତ ଘର ? ୨

ମାଗି ନାହିଁ ତୋତେ ଯାଚି ଦେଲୁ ମୋତେ
ଅସରନ୍ତି ଧନରତ୍ନ ଭଣ୍ଡାର
ଧନେ ପ୍ରୟୋଜନ ନାହିଁ ନାରାୟଣ
କାମନା କେବଳ ପଦ୍ମ ପୟର । ୩

ଘୋଷି ତୋର ନାମ ଯାଉ ଏ ଜୀବନ
ଏତିକ ପ୍ରାର୍ଥନା ତୋ ଠାରେ ମୋର
ବୋଇଲେ ବୃନ୍ଦାବନ ହେ କମଳାକାନ୍ତ
ଶରଣ ପଶିଲି ଚରଣେ ତୋର ।୪

—●—

# ଊନବିଂଶ ଅଧ୍ୟାୟ
# ରାଜସୂୟ ଯାଗ ଯୋଗାଡ଼
# ଓ ରାଜାମାନଙ୍କୁ ନିମନ୍ତ୍ରଣ

( ରାଗ - ବଙ୍ଗଳାଶ୍ରୀ )

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ
କର ଆହେ ସୁଜ୍ଞଜନ !
ମଗଧରୁ ଆଣି- ଥିବା ଧନରତ୍ନ
ଧର୍ମଙ୍କୁ କଲ ପ୍ରଦାନ । ୧

ଗରୁଡ଼ ଆରୋହି ଦ୍ୱାରକା ନ୍ୟାଇଁ
ବ୍ୟାସଙ୍କ ଆଶ୍ରମ ପଥେ
ଯାଉଁଯାଉଁ ମାର୍ଗେ ନାରଦ ସେନଙ୍କୁ
ଭେଟ କଲେ ଯଦୁନାଥେ । ୨

ପ୍ରଭୁଙ୍କ ଦର୍ଶନ ପାଇ ବନପନ୍ତ
ଚରଣେ କଲେ ବନ୍ଦନ
କୋଳ କରି ତାଙ୍କୁ କହିଲେ ଶ୍ରୀହରି
ଶୁଣ ହେ ନାରଦ ସେନ ! ୩

ଯୁଧିଷ୍ଠିର ଦେବ ରାଜସୂୟ ଯାଗ
କରିବେ ଷୋଡ଼ଶ ଦିନ
ଯାଗ କାର୍ଯ୍ୟ ଲୋଡ଼ା ଯେତେ କାଠବାଂଶ
ଯୋଗାଇ ଦେବେ ସ୍ୱଜନ । ୪

ଲକ୍ଷେ ରାଜାଙ୍କର ବାସଗୃହ ପାଇଁ
କାମସାର କାଠମାନ
ଶାଳ, ପିଆଶାଳ, କୁରୁମ ଗମ୍ଭାରି
ଧଳା, ଧମଣା, ଚନ୍ଦନ । ୫

ଏକ ଲକ୍ଷ ନାବ ନିର୍ମାଣ କରିଣ
ଯୋଗାଇବ ଯାଗ କାର୍ଯ୍ୟେ
କରାତସେନଙ୍କ ଶିରେ ଶାଢ଼ି ବାନ୍ଧି
ଚଳିଲେ କଳିଙ୍ଗ ରାଜ୍ୟେ । ୬

ସୁବଳ ନାମରେ କଳିଙ୍ଗ ନରପତି
ଶାଢ଼ି ବାନ୍ଧି ତାହା ଶିରେ
କହିଲେ ରାଜର୍ଷି ଯାଗ କରୁଛନ୍ତି
ଧର୍ମରାଜ ଯୁଧିଷ୍ଠିରେ । ୭

କୃଷ୍ଣାଜିନ, ବ୍ୟାଘ୍ରା- ମ୍ବର ଆଦି ଯେତେ
ଯୋଗାଇ ଦେବ ରାଜନ
କଳିଙ୍ଗ ନରପତି ଆନନ୍ଦିତ ହୋଇ
ସମ୍ମତି କଲେ ପ୍ରଦାନ । ୮

ମହ୍ଲାର ଦେଶର ମାର୍ଚ୍ଚି କୋହ୍ଲଙ୍କର
ରାଜାନାମ କୁରୁପତି
ତାଙ୍କୁ ଟାଟ ଶାଢ଼ି ଶ୍ରୀହସ୍ତରେ ଦେଇ
ଆଜ୍ଞା ଦେଲେ ଶିଖିପତି । ୯

ପୁରୁଷାନୁକ୍ରମେ ଏ ବନେ ପ୍ରଦେଶେ
ତୁମ୍ଭେ ଅଛ ନରରାଣ
ତ୍ରେତୟା ଯୁଗରୁ ତଣ୍ଡୁଳ ରହିଛୁ
ଶତ ଗୋଟି କୋଟି ପୂର୍ଣ୍ଣ । ୧୦

ଦେବ ଭୋଗ୍ୟ ସେହି ତଣ୍ଡୁଳ ଅଟଇ
ବିଧାତା ଦ୍ୱାରା ସଞ୍ଚିତ
ଯୁଧିଷ୍ଠିର ରାଜ- ସୂୟ ଯଜ୍ଞ କାଳେ
ହେବା ପାଇଁ ନିୟୋଜିତ । ୧୧

ଅନାଦି, ଅପର୍ଣ୍ଣା ପରଷିବେ ଅନ୍ନ
ଭୁଞ୍ଜିବେ ତ୍ରିପୁର ବାସୀ
ନାବରେ ପୂରାଇ ତଣ୍ଡୁଳ ପେଷିବ
ତୋଷ ହେବେ ବିଶ୍ୱବାସୀ । ୧୨

ଶୁଣିଣ ସମ୍ମତ ହେଲେ ନରନାଥ
ଅତି ହରଷିତ ମନେ
କହିଲେ ଜୀବନ- ଧନ୍ୟ ହୋଇଗଲା
ଧର୍ମ କାର୍ଯ୍ୟ ସମ୍ପାଦନେ । ୧୩

ସେଠାରୁ ବଦାୟ ହେନ ଦେବରାୟ
ଚଳିଗଲେ ଶୂନ୍ୟ ପଥେ
ମୁହୂର୍ତ୍ତକ ମଧ୍ୟେ ମିଳିଲେ ଯାଇଁଣ
ମଧୁବନେ ଯଦୁନାଥେ । ୧୪

ଦ୍ୱାଦଶ ଯୋଜନେ ବ୍ୟାପ୍ତ ସେ ବନ
ଫୁଲଫଳେ ପରିପୂର୍ଣ୍ଣ
ଅମୃତ ସମାନ ନାନା ସ୍ୱାଦୁ ଫଳ
ବୃକ୍ଷଡାଳେ ଶୋଭାବନ । ୧୫

ମଧୁବନ ରାଜା ଶ୍ରୀକୃଷ୍ଣଙ୍କୁ ଦେଖି
ଚରଣେ କଲେ ବନ୍ଦନ
ଶ୍ରୀ ହସ୍ତରେ ଶାନ୍ତି ଦେଇ ଯଦୁନାଥ
କହିଲେ ବଚନ ହେନ । ୧୬

ରା ଜ ସୂ ୟ ଯଜ୍ଞ କ ରୁ ଛ ନ୍ତି ଧର୍ମ
ଲୋଡ଼ା ଯେତେ ଫୁଲଫଳ
କନ୍ଦା, କନ୍ଦମୂଳ ନାବରେ ପୂରାଇ
ଯୋଗାଇବ ଯାଗଶାଳ । ୧୭

ଏକ ଲକ୍ଷ ମାଝୀ ନିଯୁକ୍ତ କରିବ
ନାବ ବାହି ନେବା ପାଇଁ
ସଦ୍ୟ ଫୁଲ ଫଳ ଯୋଗାଇବ ନିତି
ଅନ୍ୟଥା କରିବ ନାହିଁ । ୧୮

ପ୍ରଭୁ ଆଜ୍ଞା ଶିରେ ଧରି ବନପତି
ବୋଇଲେ ହୋଇଲି ଧନ୍ୟ
ସୁଭାଗ୍ୟ ମୋହର ଉଦିତ ହୋଇବ
ସମ୍ପାଦିଲେ ଯାଗ କର୍ମ । ୧୯

ସେଠାରୁ ଚଳିଲେ      ଖଗ ପୃଷ୍ଠେ ବସି
ଶୂନ୍ୟ ମାର୍ଗେ ଚକ୍ରଧର
ମନୋହର ବନ      ରଜାଙ୍କର ନାମ
ଅଟଇ ଭୁବନେଶ୍ୱର । ୨୦

ତାଙ୍କ ବନେ ପୂର୍ଣ୍ଣ      ଅଗୁର ଚନ୍ଦନ
ସୁଗନ୍ଧିତ ଦ୍ରବ୍ୟମାନ
ରଜାଙ୍କୁ ଡ଼କାଇ      ବୋଇଲେ ଗୋସାଇଁ
ଶୁଣ ଆହେ ନରସ୍ୱଣ । ୨୧

ଧର୍ମ ଯୁଧିଷ୍ଠିର      ଆଜ୍ଞା ଦେଇଛନ୍ତି
ରାଜସୂୟ ଯଜ୍ଞ ପାଇଁ
ସୁଗନ୍ଧିତ ଦ୍ରବ୍ୟ      ମାନ ଯୋଗାଇବ
ରଜାଙ୍କ ଯୋଗାଡ଼ ତହିଁ । ୨୨

ଷୋଳ ଦିବସକୁ      ଲୋଡ଼ା ଯେତେ ଦ୍ରବ୍ୟ
ନିତି ଯୋଗାଇବ ସାଇଁ
ସୁଗନ୍ଧ ବନର      ନୃପତି ବୋଇଲେ
ଅଙ୍ଗୀକାର କଲି ମୁହିଁ । ୨୩

ସେଠାବରୁ ଚଳି      ଯାଇ ବନମାଳୀ
ମିଳିଲେ ଅର୍ବୁଦାଚଳେ
ଭୂଇଁଆ ରଜାଙ୍କୁ      ଆଜ୍ଞା ଦେଲେ ପ୍ରଭୁ
ରାଜସୂୟ ଯଜ୍ଞ କାଳେ । ୨୪

ନୃପତିଙ୍କ ଖନ୍ଦା      ନିମନ୍ତେ ରାଜନ
ଯୋଗାଇବ ବନ୍ୟ ମାଂସ
ପଶୁ, ପକ୍ଷୀ, ଗଣ୍ଡା,      ଗସ୍ତୁଳ, ହରିଣ
କୁଠାଘି, କପୋତ, ହଂସ । ୨୫

ଅର୍ବୁଦାଚଳରୁ      ଚଳି ଯାଇ କୃଷ୍ଣ
ମିଳିଲେ ସେରେଣ୍ଡାଞ୍ଚଳେ
ମୁଣ୍ଡା ନରପତି      ଭକ୍ତି ଧରନ୍ତି
ନିବିଡ଼ ବନ ଅଞ୍ଚଳେ । ୨୬

ରାଜାଙ୍କୁ ଡ଼କାଇ   ଆଜ୍ଞା ଦେଲେ ପ୍ରଭୁ
ରାଜସୂୟ ଯଜ୍ଞ ପାଇଁ
ଯୋଗାଇବ ତୁମ୍ଭେ   ଯାଗ ଦ୍ରବ୍ୟମାନ
ଝୁଣା, ମଧୁ ଆଦି ନେଇ । ୨୭

ଲକ୍ଷେ ନୃପତିଙ୍କ   ବ୍ୟଜନ ନିମନ୍ତେ
ମୟୂର ପୁଚ୍ଛ ବ୍ୟଜନ
ମୃଗ ଓ ଗୟଳ   ସିଂହେ ବେଷ୍ଟ କରି
ଯୋଗାଇବ ନରଗଣ । ୨୮

ଷୋଡ଼ଶ ଦିବସ   ହୋମ ଯଜ୍ଞ ପାଇଁ
ଲୋଡ଼ା ଯେତେକ ସମିଧ
ଯୋଗାଇବ ତାହା   ଆଦେ ବନନାଢ
ଯାଗ କାର୍ଯ୍ୟ ହେବ ସାଧ୍ୟ । ୨୯

ଜୁଆଙ୍ଗ ପତିଙ୍କୁ   ଡାକି ଆଜ୍ଞା ଦେଲେ
ଯୋଗାଇବ ହାତୀ ଦାନ୍ତ
ରାଜାଙ୍କ ଆସ୍ଥାନ   ନିର୍ମିତ ହୋଇବ
ଯୋହଲା ମାଳ ଖଚିତ । ୩୦

ବିଭିନ୍ନ ଜାତିର   ବର୍ଣ୍ଣିଲ ପଥର
ଯୋଗାଇବ ନରପତି
ରାଜାଙ୍କ ଆସ୍ଥାନ   ମଣ୍ଡିଣି ହୋଇବ
ପ୍ରକାଶିବ ଦିବ୍ୟଜ୍ୟୋତି । ୩୧

ବ୍ୟବହାର ପାଇଁ   ପଟିଆ, ମସିଣା
ବାଉଁଶେ ଗଢ଼ା ପାନଆଁ
ଏସବୁ ପଦାର୍ଥ   ଯୋଗାଇବ ତୁମ୍ଭେ
ତୋଷ ହେବେ ଧର୍ମ ନାହା । ୩୨

ବାଥୁଡ଼ି ଓ ଗଣ୍ଡ   ନୃପଙ୍କୁ ଡ଼କାଇ
ଆଜ୍ଞା ଦେଲେ ଯଦୁନାଥ
ଯୋଗାଇବ ଯେତେ   ପଦ୍ମ ଦାନ୍ତ କାଠି
ଫଳ ଚକୁଡ଼ି ସହିତ । ୩୩

ଧର୍ମ ଆଜ୍ଞା ମତେ        ସକଳ ପଦାର୍ଥ
ଯୋଗାଇ ଦେବା ନିମନ୍ତେ
ସମ୍ମତି  ପ୍ରଦାନ        କଲେ ଦଳପତି
ଶୁଣି ତୋଷ ଯଦୁନାଥେ । ୩୪
ଆଗେ ଆରଣ୍ୟକ        ମାନଙ୍କ ସାହାର୍ଯ୍ୟ
ଭିକ୍ଷା କଲେ ଯଦୁପତି
ଯେଣୁ ଆର୍ଯ୍ୟବର୍ତ୍ତେ        ଆରଣ୍ୟକ ମାନେ
ଅଟନ୍ତି ଅରଣ୍ୟ ପତି । ୩୫
ଅରଣ୍ୟ ପଦାର୍ଥ        ବିନା ଯାଗ କାର୍ଯ୍ୟ
ହେବ ନାହିଁ ସମ୍ପାଦିତ
ଅରଣ୍ୟ ଗର୍ଭରେ        ପୂରି ରହିଅଛି
ପଞ୍ଚାନୁ ସାଙ୍ଗିକ ବସ୍ତୁ । ୩୬
ଗୋପାଳ ପତିଙ୍କୁ        ଆଜ୍ଞା ଦେଲେ ପ୍ରଭୁ
ଗୋରସ ପଦାର୍ଥ ମାନ
ଷୋଡ଼ଶ ଦିବସ        ଯାଏଁ ଯୋଗାଇବ
ତୋଷ ହେବେ ଧର୍ମ ସ୍ୱଣ । ୩୭
କୃଷକ ନୃପତି        ପୁରେ ବିଜେ କରି
କହିଲେ ଦେବକୀ ସୁତ
ରାଜସୂୟ ଯଜ୍ଞ        କରୁଛନ୍ତି ଧର୍ମ
ଯୁଧିଷ୍ଠିର ନରନାଥ । ୩୮
ଷୋଡ଼ଶ ଦିବସ        ଯାଏଁ ଯାଗ ହେବ
ଭୁଞ୍ଜିବେ ଜୀବଜଗତ
ଯାଗ ପାଇଁ ପନ-        ପରିବା ଯେତେକ
ଯୋଗାଇ ଦେବ ସମସ୍ତ । ୩୯
ସବୁଜ ପରିବା        ଖଡ଼ା, ଆଳୁ, ସାରୁ
କଦଳୀ କଖାରୁ ଶାଗ
ପିଠିଆ, ବଇଦ        ପିଠିରେ ଭରିଣ
ଯୋଗାଇବ ମହାଭାଗ । ୪୦

ମର୍ତ୍ତ୍ୟର ଯୋଗାଡ଼ ଯାଣ ଯଦୁ ନାଥ
ମିଳିଲେ ଅମର ପୁରେ
କୁବେରଙ୍କୁ ଡ଼ାକ ଆଜ୍ଞା ଦେଲେ ପ୍ରଭୁ
ଖଟିବାକୁ ଯାଗ ଶାଳେ । ୪୧

ନନ୍ଦନ କାନନୁ ସ୍ୱର୍ଗୀୟ ଯୋଗାଡ଼
ଗନ୍ଧର୍ବେ ଯୋଗାଇ ଦେଲେ
ସ୍ୱର୍ଗୀୟ ସମ୍ପଦ ଯୋଗାଡ କରଣ
ବ୍ୟାସ ଆଶ୍ରମେ ମିଳିଲେ । ୪୨

ରାଜ ସୂୟ ଯଜ୍ଞ ଭୂମି ନିର୍ବାଚନ
ବିଷୟେ ପୁଚ୍ଛନ୍ତେ କୃଷ୍ଣ
କୁରୁକ୍ଷେତ୍ର ଯଜ୍ଞ ଭୂମି ଅଟେ ବୋଲି
ବ୍ୟକ୍ତ କଲେ ତପୋଧନ । ୪୩

ପୃଥିବୀ ପୃଷ୍ଠରେ ସେ ଭୂମି ଖଣ୍ଡକୁ
ବାଛିଥିଲେ ପର୍ଶୁରାମ
କ୍ଷତ୍ରିୟ ରକ୍ତରେ ପିତୃପୁରୁଷଙ୍କୁ
କରିଥିଲେ ତରପଣ । ୪୪

ପ୍ରତି ଇଞ୍ଚ ଭୂମି ଶୋଣିତରେ ସିକ୍ତ
ମେଦ ମଜ୍ଜାରେ ପୂରିତ
ମହା ପୁଣ୍ୟ ଭୂମି ଏ ଭାରତ ଖଣ୍ଡେ
ସର୍ବ ପାପ ବିମୋଚନ । ୪୫

ଯୁଦ୍ଧ-ଯଜ୍ଞ ଭୂମି ଅଟେ ଏହି ସ୍ଥାନ
ହୋମ-ଯଜ୍ଞେ ଶ୍ରେଷ୍ଠ ସ୍ଥାନ
ଗଙ୍ଗା-ଯମୁନାର ତଟ ମଧ୍ୟ ସ୍ଥାନେ
କର ମଣ୍ଡପ ନିର୍ମାଣ । ୪୬

ଧର୍ମ-ଯୁଦ୍ଧ-କ୍ଷେତ୍ର ଅଟେ କୁରୁ କ୍ଷେତ୍ର
ସନ୍ଧ୍ୟାକାଳେ ବାୟୁଗଣ
ଗାଜାଏ ଏଠାରେ କଟା ହୋଇ ଥାନ୍ତି
ତଳ ତଳ ପରମାଣ । ୪୮

ଅସ୍ଥି-ଚର୍ମ-ମାଂସ    ମାଟିରେ ମିଶିଣ
ରକ୍ତ ଅଛୁ ଯଦୁପତି
ଗତ ଓ ଅଗତ    ଏକତ୍ର ଏଠାରେ
ପଞ୍ଚ ଭୂ ପ୍ରାପ୍ତି ହୁଅନ୍ତି । ୪୯

ମହା ଯଜ୍ଞ ଭୂଇଁ    ମହା ରଣ ଭୂଇଁ
ପୃଥ୍ୱୀରେ ଅନ୍ୟତ୍ର ନାହିଁ
ଏହି ସ୍ଥାନେ ଯାଗ    କରଅ ଶ୍ରୀପତି
ମହା ପୁଣ୍ୟ ଭୂମି ଏହି । ୫୦

ବ୍ୟାସ ଦେବ ମୁଖୁ    ନିଷ୍ଠା କଥା ଶୁଣି
ବାସୁଦେବ ଶିଘ୍ର କୃଷ୍ଣ
ବିଶ୍ୱ କର୍ମା ଡାକି    ଆଜ୍ଞା ଦେଲେ ବେଗେ
ମଣ୍ଡପ କର ନିର୍ମାଣ । ୫୧

ଏକ ଲକ୍ଷ ନୃପ    ସଭାରେ ବସିବେ
ଦେବ-ଦୈତ୍ୟ-ନାଗ-ନର
ଗନ୍ଧର୍ବ-ଚାରଣ    ଯକ୍ଷ କିନ୍ନରାଦି
ବ୍ରହ୍ମା-ବିଷ୍ଣୁ-ମହେଶ୍ୱର । ୫୨

ଦ୍ୱାଦଶ ଯୋଜନ    ମଣ୍ଡପାୟତନ
ଶୁଦ୍ଧ ସ୍ୱର୍ଣ୍ଣେ ନିର୍ମାଣ
ସଭା ଗୃହେ ଥିବ    ଲକ୍ଷେ ସ୍ୱର୍ଣ୍ଣ ଖମ୍ବ
ଖଚିତ ବିଭିନ୍ନ ରତ୍ନ । ୫୩

ଯେଉଁ ରାଜା ଯେଉଁ    ଖମ୍ବର ପାଖରେ
ଆସନ କରିବେ ଯାଇଁ
ସେ ଖମ୍ବେ ସେ ରାଜା    ଚିହ୍ନ [illegible] ଆଙ୍କି
ରଖିବ ଚିହ୍ନଟ ପାଇଁ । ୫୪

ଖମ୍ବ ମୂଲ୍ୟ ସଙ୍ଗେ    ସେ ରାଜା ଭଣ୍ଡାର
ଭୂଲନେ ହୋଇବ ନ୍ୟୂନ
ସୁବର୍ଣ୍ଣ ବେଦିକରେ    ରାଜାଙ୍କ ଆସନ
ଖଞ୍ଜାଥିବ ଅଷ୍ଟ ରତ୍ନ । ୫୫

ଧର୍ମ ନୃପତିଙ୍କ ବସିବାର ସ୍ଥାନ
ଉଚ୍ଚହେବ ପାଞ୍ଚ ତାଳ
ସ୍ଫଟିକ ପାବଚ୍ଛ ଶ୍ରେଣୀ ରହିଥିବ
ତରୁଣ-ସ୍ୱଚ୍ଛ-ଧବଳ । ୫୬
ପ୍ରଭୁ ଅଜ୍ଞା ପାଇ ବିଶ୍ୱ କର୍ମା ତହିଁ
ମଣ୍ଡପ କଲେ ନିର୍ମାଣ
ମୟ ଦୈତ୍ୟ ଡ଼ାକି ଆଜ୍ଞା ଦେଲ ପ୍ରଭୁ
ଗଢ଼ ଧର୍ମ ସିଂହାସନ । ୫୭
ଆସୁରୀ ବିଦ୍ୟାରେ ଅବାଡ଼ରେ ଚିହ୍ନ-
ମାନ ହୋଇବ ଅଙ୍କନ
ଜଳ ଓ ସ୍ଫଟିକ ବାରଣ ନ ଯିବ
ଦିଶୁଥିବ ସମ ବର୍ଣ୍ଣ । ୫୮
ଜଳ ପ୍ରାପ୍ତ ସ୍ଥଳ ସ୍ଥଳ ପ୍ରାପ୍ତ ଜଳ
ହୋଇବ ପ୍ରଜ୍ୱଳ୍ୟମାନ
ଶୂନ୍ୟେ ସ୍ତମ୍ଭ ଲାଗି ଓହଳ ଥିବ ସେ
ହୋଇଣ ଦୋଳାୟମାନ । ୫୯
ଶତ୍ରୁ ଖଳ କଣ୍ଟ- କ ସେ ସିଂହାସନ
ଶୂନ୍ୟରେ ପାବଚ୍ଛ ତେର
ଧର୍ମର ଆଶ୍ରିତ ନୃପେ ଦୃଶ୍ୟମାନ
ଅଦୃଶ୍ୟ ଦୁଷ୍ଟ ନୃବର । ୫୯
ରାଜସୂୟ ଯାଗେ ଦୁଷ୍ଟ ନୃପତିଙ୍କୁ
ଚିହ୍ନଟ କରିବା ପାଇଁ
ଚନ୍ଦ କୂଟ ବୁଦ୍ଧି କରି ଚନ୍ଦ୍ରଧାରୀ
ନିର୍ମାଣିଲେ ଯଜ୍ଞ ଭୂଇଁ । ୬୧
କର ଯୋଡ଼ି କହୁ ଅଛନ୍ତି ଶ୍ରୀହରି
ଧର୍ମରାଜଙ୍କୁ ବୁଝାଇ
ଏ ସ୍ଥାପ୍ୟ ମଣ୍ଡପେ ବସିବେ ସମ୍ଭବେ
ଏକ ଲକ୍ଷ ନର ଥାଇଁ । ୬୨

ମୟ ନିର୍ମିତ    ସଭାରେ ବସିବେ
କୃଷ୍ଣଙ୍କ ସଙ୍ଗେ ଆପଣ
ତଳେ ଥାଇ ନୃପେ    ଦର୍ଶନ କରିବେ
ଶିରରେ ଲଗାଇ ଚରଣ । ୭୩

ମାୟା ସିଂହାସନ    ମୟ ନିର୍ମିତ
ଅରାତି-ଖଳ-କଣ୍ଟକ
ଆସୁରୀ ବିଦ୍ୟାରେ    ନିର୍ମିତ ହୋଇଛି
ଦେଖି ଦର୍ଶକେ ଆବାକ । ୭୪

ଜଳ ଓ ସ୍ଫଟିକ    ସମାନ ଦିଶଇ
ସମାନ ରୂପ ବରନ
ଆପଣଙ୍କ ଶତ୍ରୁ    ମିଛ ଚିହ୍ନିବାକୁ
କୂଟେ ହୋଇଛି ନିର୍ମାଣ । ୭୫

ଭୂମିକୁ ଯେ ନୃପ    ହେବ ଅମାନତ
ଛେଦିବ ତାହାର ଶିର
ସେହି କାରଣରୁ    ଏ ମାୟା ମଣ୍ଡପ
ଢ଼ଆରିଛି ଦୈତ୍ୟବର । ୭୬

ପାଞ୍ଚ ଦିନେ କାର୍ଯ୍ୟ    ସମ୍ପୂର୍ଣ୍ଣ ହୋଇଲା
ପଞ୍ଚ କଣ୍ଟକ ଘରଜା
କହିଲେ ଏଥର    ରାଜ ଚକ୍ରବର୍ତ୍ତୀ
ହୋଇବେ ଯୁଧିଷ୍ଠି ରାଜା । ୭୭

କୂଟ କପଟିଆ    ନାଗର ନାଟୁଆ
ଜାଣିଅଛି ବହୁ ଛନ୍ଦ
କୂଟମତ କରି    ଦୁଷ୍ଟଙ୍କୁ ନାଶିବ
କୁଟୁମ୍ବେ କରଇ ବଧ । ୭୮

ଯାଗର ଯୋଗାଡ଼    ସମ୍ପୂର୍ଣ୍ଣ କରଣ
ଧର୍ମ ରାଜ ଯୁଧିଷ୍ଠିର
ଚାରି ଦିଗେ ଚାରି    ଭ୍ରାତାଙ୍କୁ ପେଷିଲେ
ବରିବାକୁ ନୃପବର । ୭୯

ପୂର୍ବଦିଗେ ଗଲେ ମନ୍ତ୍ରୀ ସହଦେବ
ଦକ୍ଷିଣ ଦିଗେ ନକୁଳ
ଉତ୍ତରେ ଅର୍ଜୁନ ପଶ୍ଚିମକୁ ଭୀମ
ଚଳିଲେ ବୀର ଭୂପାଳ । ୭୦

ସର୍ବେ ଗଲେ ଯହିଁରେ ମଧୁର ବଚନ
ବଳ ଆଉ ବ୍ୟକ୍ତିତ୍ୱରେ
ସ୍ନେହ, ଶ୍ରଦ୍ଧା, ଭୟ ସର୍ବେ ସାହା ଲୋଡ଼ା
ଦେଖାଇ ବରଣ କଲେ । ୭୧

ଗୃହ ବଗୁ ଗୃହ ଉଣା ଲକ୍ଷେ ରଜା
ଗୃହ ଦ୍ୱାରେ ଉପସ୍ଥିତ
ସୈନ୍ୟ ସାମନ୍ତଙ୍କ ଗର୍ଜନ ତର୍ଜନେ
ରାଜଦାଣ୍ଡ ମୁଖରିତ । ୭୨

ପାତ୍ର ଓ ଅମାତ୍ୟ ସୈନ୍ୟ ସେନାପତି
ଗଣନେ ଅକଳନ
ରଥ, ରଥୀ, ଅଶ୍ୱ, ହସ୍ତୀ, ପଦାତିକ
କେ କରି ପାରେ କଳନ । ୭୩

ମହା ଆଡମ୍ବରେ ରାଜସୂୟ ଯାଗ
ହେବା ଜାଣି ଧୃତରାଷ୍ଟ୍ର
ଆପଣାକୁ ନସ୍ଟ ଅସହାୟ ମନେ
କରି ହେଲେ ସନ୍ତାପିତ । ୭୪

ସଭା ମୁଖ ରହି ବୋଲୁଛନ୍ତି ଅନ୍ଧ
ଯାଗେ ବିରୋଧ ନ କର
ପୂର୍ଣ୍ଣ ପ୍ରାଣେ ଆମ୍ଭେ ସମର୍ଥନ ଦେବା
ସତ୍ୟ ଧର୍ମ ଅନୁସର । ୭୫

ଦେଖ ଆମ୍ଭେମାନେ କୁଚକ୍ରର ଜାଲ
ଯେତେ ବୁଣି ଯାଉଛନ୍ତି
ନପୁଂତ ସେ ଜାଲ ଛିନ୍ନ ଭିନ୍ନ କରି
ଛିଣ୍ଡାଇ ଦେଉ ଅଛନ୍ତି । ୭୬

ସେମାନଙ୍କ କ୍ଷତ ହେବା ପରିବର୍ତ୍ତେ
ହେଉଛି ଖ୍ୟାତି ବର୍ଦ୍ଧନ
ଜରାସନ୍ଧ ସଙ୍ଗେ ଭଗଦତ୍ତ ଙ୍କର
ଗରବ କରିଲେ ଚୂର୍ଣ୍ଣ । ୭୭
ଦୃଢ଼ ଭାଇ ଦୃଢ଼ ଦିଗ ଜୟ କରି
ଆଣିଲେ ନୃପଙ୍କୁ ବରି
ବର୍ତ୍ତମାନ ପାଣ୍ଡୁ ପୁତ୍ର ସମକକ୍ଷ
ଜଣେ ନାହାଁନ୍ତି ମର୍ତ୍ତ୍ୟପୁରୀ । ୭୮
ଧୃତରାଷ୍ଟ୍ର କଥା ଶୁଣି ସଭାଜନେ
ହୋଇଗଲେ ସ୍ତମ୍ଭୀଭୂତ
ପିତାଙ୍କ ମୁଖରେ ଶତ୍ରୁର ପ୍ରଶଂସା
ଶୁଣି ପୁତ୍ର ମର୍ମାହତ । ୭୯
ଏମନ୍ତ ସମୟେ ଅମାତ୍ୟ ବିଦୁର
ପ୍ରବେଶ ସଭା ସ୍ଥଳରେ
ପ୍ରକାଶ କରିଲେ ଆହେ ମହାରାଜା
ସମାଚାର ଶୁଣ ଧୀରେ । ୮୦
ବାର୍ତ୍ତା ଦେଇଛନ୍ତି କାଲି ଯୁଧିଷ୍ଠିର
ପହଞ୍ଚିବେ ପୂର୍ବାହ୍ଣରେ
ଆଉ ଏକ ବାର୍ତ୍ତା ଶୁଣ ମହାରାଜା
ପ୍ରକାଶ କରେ ସଭାରେ । ୮୧
ବହୁ ରାଜା ମହା- ରାଜା ଆପଣଙ୍କ
ପାଖକୁ ଅଭିନନ୍ଦନ
ପଠାଇ ଅଛନ୍ତି କାରଣ ହସ୍ତିନା
ରାଜ୍ୟେ ହୁଏ ଯାଗ କର୍ମ । ୮୨
ରାଜସୂୟ ଯାଗ ଅନୁଷ୍ଠିତ ହେବା
ମହାନ ଐତିହାସିକ
ଉପଲବ୍ଧି କରି ସ୍ୱାଗତ ବାରତା
ପଠାଇଛନ୍ତି ଅନେକ । ୮୩

ବାର୍ତ୍ତା ଦେଇ ମହା- ମାତ୍ୟ ଚଳିଗଲେ
ମହାରାଜା କଲେ ପ୍ରଶ୍ନ
କାଲି ତେବେ ଯୁଧି- ଷ୍ଠିର ଆସୁଛନ୍ତି
କରିବାକୁ ନିମନ୍ତ୍ରଣ । ୮୪

ସମ୍ମତି ଜଣାଇ ମୂଖ୍ୟ ସେନାପତି
କହିଲେ ଧର୍ମ ରାଜନ
କୃଷ୍ଣ ପରାମର୍ଶେ ସ୍ୱୟଂ ଆସୁଛନ୍ତି
ଦେବା ପାଇଁ ନିମନ୍ତ୍ରଣ । ୮୫

କାରଣ ଅଧିକ ଘନିଷ୍ୟାରେ ନେକଙ୍କ
ସହିତ ସମ୍ପର୍କ ରକ୍ଷା
ବ୍ୟକ୍ତିଗତ ଭାବେ ବୃଦ୍ଧି କରିବାକୁ
କୃଷ୍ଣ ଦେଇଛନ୍ତି ଶିକ୍ଷା । ୮୬

ଗୁପ୍ତଚର ଯାହା ସମ୍ବାଦ ଦେଇଛି
ପ୍ରକାଶ କରିଲି ସଖି
ତୁହାର ରାଜାଙ୍କ ସଙ୍ଗେ ବ୍ୟକ୍ତିଗତ
ସମ୍ପର୍କ ହୋଇବ ବୃଦ୍ଧି । ୮୭

ବନ୍ଦସ୍ଥ ଭାବରେ ଯାହା ଲଭ ହୁଏ
ଅସିହାର ଅସମ୍ଭବ
ଏମନ୍ତ ସତର୍କ ପରାମର୍ଶ ଦେଇ
ପେଶିଛନ୍ତି ବାସୁଦେବ । ୮୮

ଛଳ କରି ଧୂତ- ରାଷ୍ଟ୍ର ବୋଲୁଛନ୍ତି
ତେବେ ତ ଭଲ ହୋଇଲା
ସେମାନଙ୍କୁ ପ୍ରତି- ଷ୍ଠିତ କରି ଦେଲେ
କୂଟ କରି ନନ୍ଦବଳା । ୮୯

ମୂଖ୍ୟ ସେନାପତି ପାଖକୁ ଡକାଇ
ଆଦେଶିଲେ ନରନାଥ
ଯୁଧିଷ୍ଠି ଦେବଙ୍କ ସ୍ୱାଗତ ନିମନ୍ତେ
ଯୋଗାଡ଼ କର ସମସ୍ତ । ୯୦

ରାଜସୂୟ ଯଜ୍ଞେ ଯୋଗ ଦେବା ପାଇଁ
ସକଳେ ହୁଅ ପ୍ରସ୍ତୁତ
ଆଦେଶାନୁକ୍ରମେ ମୁଖ୍ୟ ସେନାପତି
ସଜାଇଲେ ରଥୀ ରଥ । ୯୧

ପରଦିନ ଧର୍ମ- ରାଜ ଯୁଧିଷ୍ଠିର
ମନ୍ତ୍ରୀମାଟ୍ୟଙ୍କ ସହିତ
ନିମନ୍ତ୍ରଣ କରି- ବାକୁ ହସ୍ତିନାରେ
ଆସି ହେଲେ ଉପସ୍ଥିତ । ୯୨

ପିତା ଧୃତରାଷ୍ଟ୍ର ଜନନୀ ଗାନ୍ଧାରୀ
ପିତାମହ ଭୀଷ୍ମଦେବ
ବିଦୁର, ସଞ୍ଜୟ, ଭୂରିଶ୍ରବା, ଦ୍ରୋଣ,
କୃପ ଆଦି ଗୁରୁଦେବ ।୯୩

ଚରଣ ଛୁଇଁଣ ପ୍ରଣତି କରିଲେ
ସମ୍ଭ୍ରମେ ଧର୍ମ ରାଜନ
ସମ ବୟସ୍କଙ୍କୁ କୋଳାଗ୍ରତ କଲେ
କନିଷ୍ଠଙ୍କ ଶିରାଘ୍ରାଣ । ୯୪

ସେମାନଙ୍କୁ ଧର୍ମ ଆଶୀର୍ବାଦ କଲେ
ହୋଇ ଅତି ହୃଷ୍ଟ ଚିତ୍ତ
କର୍ଣ୍ଣଙ୍କୁ ଦେଖିବା ମାତ୍ରେ ଯୁଧିଷ୍ଠିରଙ୍କ
ହୃଦ ପଦ୍ମ ପ୍ରସ୍ଫୁଟିତ । ୯୫

ଯୁଧିଷ୍ଠି କହିଲେ ବଡ଼ ଭଲ ହେଲା
ଏଠାରେ ପାଇଲି ଭେଟ
ଆପଣ ନିଶ୍ଚୟ ଯାଗେ ଯୋଗ ଦେବେ
ରହିଲା ଆମ୍ଭ ଶପଥ । ୯୬

ପାବନ କର୍ଣ୍ଣଙ୍କୁ କୁଣ୍ଢେଇ ପକାଇ
କହିଲେ ହେ ମିତ୍ରବର
ତୁମ୍ଭର କବଚ ଦେହେ ଲାଗିଥାଏ
ଯେସନେ ସୁଶ୍ରୀକ୍ଷ୍ଣ ଖର । ୯୭

ଏହି କାରଣରୁ ଆମେ ଦୁଇଜଣ
ହେବାରେ ନିକଟତର
ବାଧା ଦେଉଅଛୁ ଆହେ ମିତ୍ରବର
ଏଥକୁ ବିଚାର କର । ୯୮

ଉତ୍ତରିଲେ କର୍ଣ୍ଣ ତେବେ କଣ ତାହା
ଖୋଲି ଫିଟି ଦେବି ମୁହିଁ ?
ମାରୁତି କହିଲେ ସେପରି କଥା ମୁଁ
ମୁଖେ ଧରି ନ ପାରଇ । ୯୯

ଭୀମସେନ କଥା ଶୁଣି ଯୁଧିଷ୍ଠିର
କହିଲେ ବାୟୁ ତନୟ
କବଚ କାହାକୁ ବାଧା ଦିଏ ନାହିଁ
ବାଧା ଦିଅଇ ହୃଦୟ । ୧୦୦

ତୁମ୍ଭର ହୃଦୟ ଉନ୍ମୁକ୍ତ ରଖିଲେ
ମିଳନେ ନ ହେବ ବାଧା
ଧର୍ମ ଯୁଧିଷ୍ଠିର କଥା ଶୁଣି ସର୍ବେ
ଅନ୍ତରେ କରିଲେ ଶ୍ରଦ୍ଧା । ୧୦୧

ହସ୍ତିନା ବାସୀଙ୍କୁ ନିମନ୍ତ୍ରଣ ଦେଇ
ଫେରିଲେ ଧର୍ମ ନରେଶ
ଏକଶତ ଦୁଇ ପଦରେ ଅଧ୍ୟାୟ
ଶେଷ କଲି କୁଳି ଦାସ । ୧୦୨

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକାଲୀଳା ଖଣ୍ଡେ ରାଜସୂୟ ଯାଗ ଯୋଗାଡ଼
ଓ ରାଜାଙ୍କୁ ନିମନ୍ତ୍ରଣ ବର୍ଣ୍ଣନେ
ନାମ ଊନବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

ବୋଲି-

ଅନାଥର ନାଥ ଆହେ କୃଷ୍ଣାକାନ୍ତ
ଅନନ୍ତ ଗୁମ୍ଫାରେ କରିଛ ବାସ
ଅଜପା ସୂତ୍ରରେ ଆସନ କରିଛ
ଘେରି ରହିଛନ୍ତି ଭକ୍ତ ଅଶେଷ । ୧

ଅଣାକାରୁ ଆସି ଆକାର ହୋଇଲ
ଅଭିରାମ ନାମେ ରୂପ ପ୍ରକାଶ
ଦ୍ୱିଭୁଜ ମୂରଲି- ଧରସୁନ୍ଦର ହେ
ମୁଖରେ ଅମିୟ ଆନନ୍ଦ ହାସ୍ୟ । ୨

ଅଇଁଲା ତୁଳସୀ ମାଳତୀ ଏତନ
କୁସୁମରେ ମଣ୍ଡିତ କଣ୍ଠ ଦେଶ
ହେ ଶ୍ୟାମ ସୁନ୍ଦର ! ଶ୍ୟାମଳ ଶରୀର
ଶରୀରରେ ଶୋଭା ଶୁକ୍ଳବାସ । ୩

କେୟୁର କଙ୍କଣ ବଳୟ ବାହୁରେ
ସୁବର୍ଣ୍ଣ କଟାଉ ଚରଣ ଦେଶ
ହୀରକ ମୁଦ୍ରିକା ଶୋଭା ପାଉଅଛି
ଅଷ୍ଟ ଅଇଶ୍ୱର୍ଯ୍ୟ ମଣ୍ଡିତ ବେଶ । ୪

—●—

# ତ୍ରିଂଶ ଅଧ୍ୟାୟ

## ଯାଗର ଦାୟିତ୍ୱ ବଣ୍ଟନ

( ରାଗ - ବଙ୍ଗଳାଶ୍ରୀ )

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ
କର ଆହେ ସୁଜ୍ଞଜନ
ପଦ ପଦ କରେ ରସ ପୂରି ଅଛି
ଝରୁଛି ନିର୍ଝର ସମ । ୧

ନିମନ୍ତ୍ରଣ ପାଇ କୃଷ୍ଣ ବଳରାମ
ସଙ୍ଗେ ଘେନି ଯଦୁବୀର
ଉଗ୍ରସେନ ବସୁ- ଦେବାଦି ଆସିଲେ
ପୂଜାକଲେ ଯୁଧିଷ୍ଠିର । ୨

ପୂର୍ବରେ ପ୍ରଦ୍ୟୁମ୍ନ ପଶ୍ଚିମରେ ଶାମ୍ବ
ଉତ୍ତରେ ସାତ୍ୟକି ବୀର
ଦକ୍ଷିଣରେ ଗଦ ବୀରଙ୍କୁ ରଖାଇ
ଦୃଢେ ନିବେଧିଲେ ଦ୍ୱାର । ୩

ଏଥୁ ଅନନ୍ତରେ ଶୁଣ ସୁଜ୍ଞଜନେ
କୌତୁକ କରନ୍ତି ହରି
ଧର୍ମଙ୍କୁ କହିଲେ ପ୍ରତିହାରୀ ପଣେ
ଶାଢ଼ିଦିଅ ଦଣ୍ଡଧାରୀ । ୪

ଦେଖା କରାଇବି ସମୀପେ ନୃପଙ୍କୁ
ପୁଣି ସେମାନଙ୍କୁ ନେଇ
ଯଥା ଆସନରେ ବସାଇବି ସ୍ୱାମୀ
ଗୌରବ କରଣ ମୁହିଁ । ୫

ଶ୍ରୀକୃଷ୍ଣଙ୍କ କଥା ଶୁଣି ଯୁଧିଷ୍ଠିର
କହିଲେ ନ ହେଉ ଯାଗ
ଏପରି ଅବିଧି କରିବ କେମନ୍ତେ
କହୁଅଛ ମହାଭାଗ ? ୬

ଅନନ୍ତ ସୃଷ୍ଟିର ତୁମ୍ଭେ ଅଧିକାରୀ
ସକଳେ ତୁମ୍ଭ ଚାକର
ମୋହର ମୁଖରେ ପତିହାରୀ ବୋଲି
ଡାକ ନ ପାରେ ଶ୍ରୀଧର । ୭
ରାଜଚକ୍ରବର୍ତ୍ତୀ ହେବା ଲୋଡ଼ା ନାହିଁ
ରାଜା ପଣେ ବନ ଯାଉ
ଇଷ୍ଟ ଦେବତାଙ୍କୁ ଭୃତ୍ୟ ପଣେ ଡାକ
ନ ପାରିବ ମହାବାହୁ । ୮
ଧର୍ମ କଥା ଶୁଣି ଚକ୍ରକୂଟ କର
ବହିଲେ କମଳା ସାଇଁ
ପୃଥିବୀର ନୃପେ ନିମନ୍ତ୍ରିତ ହୋଇ
ଆସିଛନ୍ତି ଧର୍ମ ସାଇଁ । ୯
ମୁଁ ଯେବେ ତୁମ୍ଭର ପାଦେ ନ ଖଟିବି
ସେମାନେ ଖଟିବେ ନାହିଁ
କୃତ୍ରିମତ କଥା କହୁ ଅଛୁ ସ୍ୱାମୀ
ତୁମ୍ଭର ମଙ୍ଗଳ ପାଇଁ । ୧୦
କହୁଛନ୍ତି ବ୍ୟାସ ଶୁଣ ଧର୍ମଶ୍ରେଷ
ଶାସ୍ତ୍ର ପୁରାଣେ ଲିଖିତ
ଯହିଁ ଥାଏ ଧର୍ମ ତହିଁ ଭଗବାନ
ଖଟିଥାନ୍ତି ହୋଇ ଭୃତ୍ୟ । ୧୧
ପ୍ରଭୁ ହୋଇ ମଧ୍ୟ ଧର୍ମ ଅଧୀନରେ
କରିଥାନ୍ତି ଭୃତ୍ୟପଣ
ପ୍ରଭୁଠାରୁ ଧର୍ମ ଅଧିକ ଉଚ୍ଚରେ
ସର୍ବେ ଧର୍ମର ଅଧୀନ । ୧୨
ବ୍ୟାସଙ୍କ ବଚନ ମାନି ଧର୍ମ ନୃପ
ସ୍ୱହସ୍ତରେ ଶାଢି ଦେଲେ
ତଳ ହସ୍ତେ ପ୍ରଭୁ ସେ ଶାଢି ଘେନିଣ
ଆପଣା ଶିରେ ବାନ୍ଧିଲେ । ୧୩

ସୁନା ଯୋଡ଼ ବେତ ଧଇଲେ ଶ୍ରୀହସ୍ତେ
ସେ ଅନନ୍ତ ବ୍ରତଧାରୀ
ହୋଇ ରାଜସୂୟ ଯାଗରେ ଖଟିଲେ
ଆଦ୍ୟେ ଭୃତ୍ୟପଣ କରି । ୧୪

ଶ୍ରୀକୃଷ୍ଣ କହିଲେ ଦ୍ରୋଣ ଗୁରୁ ବରି
ପ୍ରଥମରେ ଶାଢ଼ି ଦିଅ
କ୍ଷତ୍ରିୟ ଅନ୍ନରେ ବିପ୍ର ଅଧିକାରୀ
ହୋଇ ରହନ୍ତୁ ନିଶ୍ଚୟ । ୧୫

ସେ ଅଟନ୍ତି ଭୂମ୍ୟ ପୂଜ୍ୟ ଗୁରୁଦେବ
ଆଦ୍ୟରେ କରନ୍ତୁ ପୂଜା
ଶ୍ରୀହରି ଆଦେଶେ ଦ୍ରୋଣେ ଶାଢ଼ି ଦେଇ
ମାନ୍ୟ କଲେ ଧର୍ମ ରାଜା । ୧୬
କହିଲେ ଆପଣ ନମସ୍ୟ ଆମ୍ଭର
ବ୍ରାହ୍ମଣ କୁଳରେ ମୁଖ୍ୟ
ଯଜ୍ଞ ଅନ୍ନ ପାକ ଶାଳରେ ଆପଣ
ହୋଇ ରହିଲେ ପରୀକ୍ଷ । ୧୭
ସଙ୍ଗେ କୃପାଚାର୍ଯ୍ୟ ପୁତ୍ର ଅଶ୍ୱତ୍ଥାମା
ଶାଢ଼ି ବାନ୍ଧି ଛତ୍ର ଶାଳେ
ପରିଚ୍ଛା କାର୍ଯ୍ୟରେ ନିଯୁକ୍ତ ହୋଇଲେ
ଏକ ଲକ୍ଷ ବିପ୍ର ଭୁଲେ । ୧୮
ଦ୍ରୋଣ ମୁଖ ଚାହିଁ କହିଲେ ଶ୍ରୀକୃଷ୍ଣ
ପାକ ଶାଳ ବିଧିମାନ
ଗୋଭକ୍ଷ୍ୟ, ଶୋଭକ୍ଷ୍ୟ, ନଳ ବିଧି ମତେ
ପାକ ହୋଇବ ରନ୍ଧନ । ୧୯
ଦୋହରି ପ୍ରସନ୍ନେ ସୂତଙ୍କୁ ଯୋଗାଡ଼
ମାନ ହୋଇବ ପ୍ରସ୍ତୁତ
ସୁଧା ରସ ପ୍ରାପ୍ୟ ସୁମିଷ୍ଟ ହୋଇବ
ଭୋଜନେ ସକଳେ ତୃପ୍ତ । ୨୦

ଏହା କହି କୃଷ୍ଣ     ଦ୍ୱାଦଶ ଅଗ୍ନିଙ୍କୁ
ଅନ୍ତରେ କଲେ ସ୍ମରଣ
ଦ୍ୱିଜ ରୂପ ଧରି     ବିଜେ ହେଲେ ଅଗ୍ନି
ଅମୃତ ଭାଣ୍ଡ ଘେନଣ । ୨୧

ମନେ ସୁମରଣା     କଲେ ହିଙ୍ଗୁଳାଙ୍କୁ
ବିଜେ ହେଲେ ମାହେଶ୍ୱରୀ
କୈବଲ୍ୟର ଥାଳ     କରେ ଧରିଛନ୍ତି
ପ୍ରଣମିଲେ ପ୍ରତିହାରୀ । ୨୨

ଶ୍ରୀକୃଷ୍ଣ କହିଲେ     ତୁମ୍ଭର ପ୍ରସାଦେ
ପକ୍ୱାନ୍ନ ହେବ ପ୍ରସ୍ତୁତ
ପ୍ରସନ୍ନ ହୋଇଣ     ଚଳିଲେ ହିଙ୍ଗୁଳା
ପାକ ଶାଳକୁ ତ୍ୱରିତ । ୨୩

ଶ୍ରୀହରି ଆଦେଶେ     ଭୁଞ୍ଜାଇବା କାର୍ଯ୍ୟ
ଲାଗି ଦେଲେ ଭୀଷ୍ମ ଘରେ
ଛତ୍ରଶାଳେ ଭୀଷ୍ମ     ପରିଚ୍ଛା ହୋଇଣ
ଖଟିଲେ ଧର୍ମ ସେବାରେ । ୨୪

ନାତିକୁ ଯେସନ     ଭୁଞ୍ଜାଆନ୍ତି ଅଜା
କୋଳେ ବସାଇ ସସ୍ନେହେ
ସେହି ରୂପେ ପିତା-     ମହ ଭୀଷ୍ମଦେବ
ଭୁଞ୍ଜାଇବେ ପ୍ରାଣୀ ଚୟେ । ୨୫

ଚଉଦ ଭୁବନେ     ଯେତେ ଜୀବଜନ୍ତୁ
ନିମନ୍ତ୍ରିତ ଯାଗ ଶାଳେ
ଷୋଡଶ ଦିବସ     ଭୋଜନ କରିବେ
ପେଟ ପୂରି ଅବହେଳେ । ୨୬

ଜଣେ ଯେବେ ତହିଁ     ଅଭୁକ୍ତ ରହିବ
ଧର୍ମ ଫଳ ନାଶ ଯିବ
ଏଣୁ ଭୁଞ୍ଜାଇବା     କାର୍ଯ୍ୟଟି ମହାନ
ଜାଣିଥିଲେ ଭୀଷ୍ମଦେବ । ୨୭

ଶିରେ ଶାଢ଼ି ବାନ୍ଧି      ପିତାମହ ଭୀଷ୍ମ
ଚଳଗଲେ ଛତ୍ରଶାଳେ
ଭୂରିଶ୍ରବା, ସୋମ-      ଦତ୍ତ ଓ ବାହ୍ଲିକ
ସହଯୋଗୀ ଜନ ମେଳେ । ୨୮

ସଙ୍ଗେ ଅଶୀ ଖଣ୍ଡ      ବଳିଷ୍ଠ ଯୁବକ
ଅନ୍ନ ପରଷିବା ପାଇଁ
ଦିବସ ରଜନୀ      କାର୍ଯ୍ୟେ ଲାଗିଥାନ୍ତି
ଦଣ୍ଡେ ବିଶ୍ରାମ ନ ଥାଇ । ୨୯

ରାଷ୍ଟ୍ର ଧର୍ମ ସେବା      କାର୍ଯ୍ୟ କରିବାକୁ
ଖଟନ୍ତି ଯୁବକ ଗଣ
କର ଓ ଚରଣ      ସଦା କର୍ମରତ
କ୍ଲାନ୍ତି, ଆଳସ୍ୟ ତେଜଣ । ୩୦

ଶିର ଦେଶେ ରଙ୍ଗ      ପଟି ବନ୍ଧା ଅଛି
ହୃଦୟରେ ରାଷ୍ଟ୍ରପ୍ରୀତି
ରାଷ୍ଟ୍ର ହିତ କାର୍ଯ୍ୟ      ସମ୍ପାଦନ ପାଇଁ
ଖଟିଥାନ୍ତି ଦିନରାତି । ୩୧

ମୁଖେ ଜପୁଥାନ୍ତି      ସଦା କୃଷ୍ଣ ନାମ
ହାତେ କରୁଥାନ୍ତି କାମ
ଜଣ ଜଣ କରି      ଚରଚ୍ଚ କରନ୍ତି
ଆତ୍ମୀୟ ସ୍ୱଜନ ସମ । ୩୨

ଶ୍ରୀକୃଷ୍ଣ କହିଲେ      ଭଣ୍ଡାର ରକ୍ଷକ
ହେବେ ରଜା ଦୁର୍ଯ୍ୟୋଧନ
ଧନ ଭଣ୍ଡାରର      ଅଧିକାରୀ ହୋଇ
ମନଇଚ୍ଛା କରୁ ଦାନ । ୩୩

ଧର୍ମ ଭୂଇଁ ଛୁଇଁ      କର୍ଣ୍ଣେ କର ଦେଇ
କହିଲେ ହୋଇବ ବିଘ୍ନ
ଯଦିଓ ସୋଦର      ଅଟେ ସେ ମୋହର
ଛନ୍ଦ କପଟରେ ପୂର୍ଣ୍ଣ । ୩୪

ଦେଖି ନ ପାରନ୍ତି ସମ୍ପଦ ଆମ୍ଭର
ଅପଚୟ କରିଦେବ
ଭଣ୍ଡାର ଉଜାଡ଼ ଦେଲେ ସେ ଆମ୍ଭର
ଧନରେ ନିଅଣ୍ଟ ହେବ । ୩୫
ଯାଗ କାର୍ଯ୍ୟେ ଧନ ନିଅଣ୍ଟ ହୋଇଲେ
ନାନା ବିଘ୍ନ ଉପୁଜିବ
ଏଥିକୁ ବିଚାର କର ବାସୁଦେବ
ବ୍ୟକ୍ତ କଲି ମନୋଭାବ । ୩୬
ହୋଗ୍ୟରୁଣୀ ଭାର୍ଯ୍ୟା ଆଶାହୀନ ବ୍ୟକ୍ତି
ସୁହୃଦ ବିହୀନ ମିତ୍ର
ଅବିଶ୍ୱାସୀ ଭ୍ରାତା ଶ୍ରଦ୍ଧା ହୀନ ମାତା
ଦୁର୍ଦ୍ଦାନ୍ତ ବିଶ୍ୱାସୀ ପାତ୍ର ।୩୭
ଧର୍ମ ନୃପତିଙ୍କ ମିଷ୍ଟ ବାକ୍ୟ ଶୁଣି
ସସ୍ମିତେ କହିଲେ କୃଷ୍ଣ
ସ୍ୱାମୀ ଭଣ୍ଡାରିଆ ହୋଇ ଦୁର୍ଯ୍ୟୋଧନ
ଦାନ କରୁ ଯେତେ ଧନ । ୩୮
ତହିଁକି ନୃପତି ଶୋଚନା ନ କର
ସେ ପନ୍ନଗ ନାରାୟଣ
ଶଙ୍ଖନିଧି, ପଦ୍ମ- ନିଧି ତା କରରେ
ଧନ ନ ହୋଇବ ଶୂନ୍ୟ । ୩୯
ଗୁଣେ ଦାନ ଦେଲେ ପାଞ୍ଚ ଗୁଣ ଆସି
ଭଣ୍ଡାରେ ହୋଇବ ପୂର୍ଣ୍ଣ
କୁବେରକୁ ଆଜ୍ଞା ଦେଇଅଛୁ ପ୍ରଭୁ
ଯୋଗାଇ ଦେବେ ସେ ଧନ । ୪୦
କୃଷ୍ଣ କଥା ଶୁଣି ପାଣ୍ଡୁ ପାଞ୍ଚପୁତ୍ରେ
ହୋଇଗଲେ ସ୍ତମ୍ଭୀଭୂତ
ଦୁର୍ଯ୍ୟୋଧନେ ଶାଢ଼ି ଦେବାକୁ ଡାକିଲେ
ସତ୍ତରେ ଧର୍ମଙ୍କ ସୁତ । ୪୧

ମନ୍ତ୍ରୀଙ୍କ ମୁଖକୁ ଶୁଣି ଦୁର୍ଯ୍ୟୋଧନ
ପଚ୍ଛରେ କହ ମାତୁଳ
ଏ ପଞ୍ଚ କଟକେ ଅଧିପତି ମୁହିଁ
ଖଟିଛନ୍ତି ମହୀପାଳ ? ୪୨

ମୋ ଅନ୍ନେ ପାଳିତ ଧର୍ମ ଯୁଧିଷ୍ଠିର
ଦତ୍ତରେ ମୋର ଆଶ୍ରିତ
ଆଶ୍ରିତ ଜନର ହସ୍ତରୁ କପର
ହୋଇବ ଅନୁଗୃହୀତ ? ୪୩

ମନ୍ତ୍ରଣା ଶୁଣିକ ଫେଇ ମନ୍ତ୍ରୀବର
କହିଲ କପଟ କରି
ପ୍ରତିବାଦୀ ପ୍ରତି ପ୍ରତିହିଂସା ଛାଡ଼ି
ପ୍ରୀତି କର ଦଣ୍ଡଧାରି । ୪୪

ସବୁ ଅସମ୍ଭବ ସମ୍ଭବ ହୋଇଲା
ଜରାସନ୍ଧ ନାଶ ଯାନ୍ତେ
ରାଜଚକ୍ରବର୍ତ୍ତୀ ରୂପେ ବହୁ ଖ୍ୟାତି
ଅରଜିଲେ ପାଣ୍ଡୁ ସୁତେ । ୪୫

ଦେଖ ଜଗତରେ ପରମ ଇଷ୍ଟ ଯେ
କୃଷ୍ଣ ଖଟିଛନ୍ତି ପାଦେ
ସ୍ୱର୍ଗୀୟ ସମ୍ପଦ ଯେବେ ଇନ୍ଦ୍ର ବଳେ
ଯାଗଶାଳେ ଅପ୍ରମାଦେ । ୪୬

ପୂଜ୍ୟ ଥିଲ ପ୍ରାଣୀ ପାଦରେ ଖଟନ୍ତି
ଶୂନ୍ୟରୁ ଆସି ଦୈବତେ
ତୁମ୍ଭେ କମ୍ପା ମନେ ଶୋଚନା କରୁଛ
ହସ୍ତିନାର ନରନାଥେ ? ୪୭

ରାଗ-ହିଂସା-ଦ୍ୱେଷ ଈର୍ଷ୍ୟା ଅହଙ୍କାର
ଛାଡ଼ି ଖଟ ଯୁଧିଷ୍ଠିର
ତାଙ୍କର ଅର୍ଜିତ ଧନ ସମ୍ପଦରେ
ଭାଇ ଭାଗ ଅଛି ତୋର । ୪୮

ଭାଇରେ ଭାଇରେ  ଅଭାବ ନ ହୋଇ
ସଦ୍‌ଭାବ କରି ଯାଇ
ଧର୍ମର ବିରୋଧୀ  ହେଲେ ଏବେବେଳେ
ସର୍ବନାଶ ହେବ କହି । ୪୯

ସର୍ବଜନ ମାନ୍ୟ  ଅଟନ୍ତି ଯେ କୃଷ୍ଣ
ସେ କରିଲେ ଭୃତ୍ୟ ପଣ
ବ୍ରାହ୍ମଣ ମାନଙ୍କ  ପାଦ ଧୋଇ ଦେଇ
ବସାଅନ୍ତି କରି ମାନ୍ୟ । ୫୦
ଜରାସନ୍ଧ ମାରି  କ୍ଷତ୍ରିୟ ମାନଙ୍କ
ସଙ୍ଗେ କଲେ ମିତ୍ରପଣ
ଏବେ ବ୍ରାହ୍ମଣଙ୍କୁ  ସମ୍ମାନ ଦେଖାଇ
ଧୌତ କଲେ ଚରଣ । ୫୧
ଏ ଆର୍ଯ୍ୟାବର୍ତ୍ତରେ  ତାଙ୍କ ପାଇଁ ଆଉ
କରିବାକୁ ନାହିଁ କିଛି
ଧର୍ମର କାମରେ  ସବୁ ସେ କରନ୍ତି
ବଡ଼ସାନକୁ ନ ବାଛି । ୫୨
କ୍ଷତ୍ରିୟ ମାନଙ୍କୁ  ଶକ୍ତି ଦ୍ୱାରା ତଥା
ବ୍ରାହ୍ମଣଙ୍କୁ ସେବା ଶ୍ରଦ୍ଧା
ଦ୍ୱାରା ପ୍ରଭାବିତ  କରି ଯାଇଥାଏ
ଏ କଥାରେ ନାହିଁ ଦ୍ୱିଧା । ୫୩
ମନ୍ତ୍ରୀ ବୋଲେ ଶୁଣ  ଆହେ କୁରୁପତି
ଯୁଧିଷ୍ଠିର ନାମରେ କୃଷ୍ଣ
ରାଜସୂୟ ଯାଗ  କରୁ ଛନ୍ତି ବୋଲି
ଦୃଢ଼କରି ମନେ ଘେନ । ୫୪
କୂଟ କପଟରେ  ମନାଇ କହନ୍ତେ
ଦୁର୍ଯ୍ୟୋଧନ ହେଲା ଭୁଲ
ଶକୁନି କହିଲା  ବିଳମ୍ବ ନ କରି
ଶାନ୍ତି ଘେନ ନୃପମଣି । ୫୫

ଘରେ ସେ କହିଲେ    ଦୁଇ ଘର ଦେବୁ
ଭଣ୍ଡାର ତା ପରି ଯିବ
ଦାତା ପଣେ ତୋର    ସୁଖ୍ୟାତି ବଢ଼ିବ
ଧନ ତୋର ବ୍ୟୟ ହେବ । ୫୬
ପର ଧନେ ତୁବ    ଦାନିକ ବୋଲାଇ
ଅର୍ଜିବୁ ଅକ୍ଷୟ କୀର୍ତ୍ତି
ଧନେ ମାନେ ଯଶେ    ସମାନ ନୋହିବେ
ପାଣ୍ଡବ ପାଞ୍ଚ ମୂରତି । ୫୭
ସ୍ୱଜନ୍ମ ଏ ଯାଗ    ନଷ୍ଟେ ଜାଣି ଥାଅ
କାର୍ଯ୍ୟତଃ ହେବ ସଫଳ
ଶକୁନ କଥାକୁ    ସତ୍ୟ ମଣି ରାଜା
ନେଲା ଶାଢ଼ି କରତଳ । ୫୮
ଦୁର୍ଯ୍ୟୋଧନେ ଶାଢ଼ି    ଦେଇ ଧର୍ମ ସୁତ
ଊଆଶିଲେ କୁରୁନାଥ
ଏ ଭଣ୍ଡାରେ ଧନ    ରହି ଅଛି ଯେତେ
ସମର୍ପିଲି ତୁମ୍ଭ ହସ୍ତ । ୫୯
ଶ୍ରୀ ହରିଙ୍କ ଆଜ୍ଞା    ହେବ ଯେଉଁ ପରି
ଦାନ ଦେଇଥିବ ଧନ
ସେ ସ୍ୱଜନ ଯେତେ    ଦେଇଥିବ ତେତେ
କୁଣ୍ଠା ନ କର ରାଜନ । ୬୦
ମଥାରେ ଶିରପା    ବାନ୍ଧି କୁରୁପତି
ଭଣ୍ଡାରକୁ ଆବୋରିଲେ
ଧନ ଅପବ୍ୟୟ    କରିବାକୁ ସନ୍ଧି
କୂଟ ଆଚରଣ କଲେ । ୬୧
ଶକୁନକୁ ଡାକ    କହିଲେ ସୁଧର୍ଷି
ତୁମ୍ଭେ ଆମ୍ଭର ମାତୁଳ
ଅଶ୍ୱ ବିଦ୍ୟା ବିଶା-    ରଦଥିବା ହେତୁ
ଯାଗେ ହେଲ ବାଜି ପାଳ । ୬୨

ମାମୁଁ ମୂଳେ ଅଠା ନଟବ ଭଣଜାଙ୍କୁ
ଶ୍ରୀ ହସ୍ତରେ ଶାଢ଼ି ଦେଲେ
ଅଣ୍ଣ ଗଜଙ୍କର ପରୀକ୍ଷକ ରୂପେ
ଦାୟିତ୍ୱ ଅର୍ପଣ କଲେ । ୭୩

ଶ୍ରୀ କୃଷ୍ଣ କହିଲେ ଦୁଃଶାସନେ ଡ଼ାକ
ଶୃଂଖଳା ସୁରକ୍ଷା ପାଇଁ
ଶାଢ଼ି ଦିଅ ଦେବ ସହି ପାଳ ହେବ
ଏକାର୍ଯ୍ୟକୁ ଯୋଗ୍ୟ ସେହି । ୭୪

ଦେବ ଦୈତ୍ୟ-ନର ଗନ୍ଧର୍ବ-କନ୍ନର
ଗୃହଣାଦ ଏକ ମେଳ
ସହିକାଳେ କାହିଁ ଜାତ ହୋଇ ପାରେ
ଯଜ୍ଞ ସ୍ଥଳେ ଗୋଳ ମାଳ । ୭୫

ଦୁର୍ଜ୍ଜନ ସ୍ୱଭାବ ଧରେ ଦୁଃଶାସନ
ଦୁର୍ଜ୍ଜନଙ୍କ ପ୍ରତିରକ୍ଷା
ଭାର ଦେଲେ ତାକୁ ସହି କାଳେ ସେହି
କରିବ ଶୃଖଳା ରକ୍ଷା । ୭୬

ଆସିଛନ୍ତି କେତେ ଦୁଷ୍ଟ ନରପତି
ପରସ୍ପର ଦ୍ୱନ୍ଦ୍ୱବାଦୀ
ଦୁଃଶାସନ ଦର୍ପେ ସେ ଦୁଷ୍ଟ ରାଜନେ
ବଳେ ହୋଇ ଯିବେ ସାଧୁ । ୭୭

ଶ୍ରୀକୃଷ୍ଣ ବଚନେ ଦୁଃଶାସନେ ଡାକ
ଶାଢ଼ି ଦେଲେ ଯୁଧିଷ୍ଠିର
ଷର୍ଣ୍ଣୁବିମ ପ୍ରାପ୍ତ ସ୍ୱରୂପ ଦଶଇ
କୁରୁକୁଳ ମହାମଲ୍ଲ । ୭୮

ନଜ ଆତ୍ମ ଧର୍ମ ଜଜ୍ଞାସା କରିଲେ
କହ ଅହେ ବାସୁଦେବ
ଏମହା ଯାଗରେ ନରପତ୍ନି ରକ୍ଷା
ଦାୟିତ୍ୱ କାହାକୁ ଦେବ ? ୭୯

ଶ୍ରୀକୃଷ୍ଣ କହନ୍ତେ      ମଧ୍ୟମ ପାଣ୍ଡବେ
ଶାନ୍ତି ହଅ ଧର୍ମ ଗୁଣ
ଏ ମହା ଯାଗରେ      ନରପଶୁ ରକ୍ଷା
କାର୍ଯ୍ୟେ ସେ ଅଟେ ଭାଜନ । ୭୦
ସ୍ମିତ ହାସ୍ୟ କରି      କହିଲେ ଯୁଧିଷ୍ଠି
ବୁଝିଲ ନୃପଙ୍କୁ ରଗ
ଥିବାରୁ ଭୂମ୍ବର      ମନରେ ଏପରି
କହୁଅଛ ମହାଭାଗ । ୭୧
ସ୍ୱଭାବରେ ଭୀମ      ମହା ଦୁଷ୍ଟ ଅଟେ
ପ୍ରକୃତି ତାହାର ମନ୍ଦ
ଭଲ ମନ୍ଦ କଥା      ବିଚାର ନ କରି
ଉଠାଇ ହୁଅଇ ଦ୍ୱନ୍ଦ । ୭୨
କଳ୍ପିତ ଦୋଷକୁ      ବହୁ ଦଣ୍ଡ ହୁଏ
କି କରିବ ସମାର୍ଜନ
ଶରଣ ମାଗିଲେ      ମରଣ ହୁଅଇ
କାର୍ଯ୍ୟ ହେବ କାରଣ । ୭୩
ଶ୍ରୀକୃଷ୍ଣ କହିଲେ      ଏହି ମହାସଭା
ଆନରେ ନୁହେଁ [illegible]ବର୍ତ୍ତି
ନଧାର୍ଯ୍ୟ ବଚନେ      ଭୀମସେନେ ଶାନ୍ତି
ଡାକି ଦେଲେ ଧର୍ମପତି । ୭୪
ଦେଖ ହୋ ସୁଜନେ      ଚକ୍ରକୂଟ ବୁଦ୍ଧି
ପ୍ରକୃତି ଜାଣି ନଯୁକ୍ତ
ବାଛି ବାଛି ଦ୍ୟନ୍ତ      ଯାହାକୁ ଯେମନ୍ତ
ସୁହାଇବ କର୍ମ ପ୍ରୀତି । ୭୫
ସଭାଜନ ଅଭ୍ୟ-      ର୍ଥନା ଦାୟିତ୍ୱରେ
ସହଦେବ ମନ୍ତ୍ରୀ ବର
ଦ୍ରବ୍ୟ ସମ୍ପାଦନ      କାର୍ଯ୍ୟରେ ନିଯୁକ୍ତ
ଦେଲେ ନକୁଳ କୁମାର । ୭୬

ଗନ୍ଧ ପୁଷ୍ପ ଦେବା କାର୍ଯ୍ୟରେ ପାର୍ଥଙ୍କୁ
ଦାୟିତ୍ୱ କଲେ ପ୍ରଦାନ
ସମାଦର କରି ନୃପଙ୍କୁ ଆସନେ
ବସାଇ କରିବେ ମାନ୍ୟ । ୭୭

ପାଚକଗଣେ କୃଷ୍ଣା ନିଯୁକ୍ତ ରହିଲେ
ହୋଇ ଅନ୍ନ ପରଷୁଣୀ
କୃଷ୍ଣ ପତ୍ନୀ ମାନେ ପାକ ଯୋଗାଡ଼ିଲେ
ସାଙ୍ଗେ ଭାନୁମତୀ ରାଣୀ । ୭୮

ପାକ ପ୍ରସ୍ତୁତିରେ ରହିଲେ ସେମାନେ
ଅସରନ୍ତି ପାକଖଣ୍ଡ
ଯିଏ ଯେତେ ଖାଇ- ଥିଲେ ସରେ ନାହିଁ
ସବୁ ବେଳେ ପୂର୍ଣ୍ଣ ଖଣ୍ଡ । ୭୯

ସକଳ କାର୍ଯ୍ୟର ନିୟନ୍ତ୍ରକ ଭାବେ
ରହିଲେ କୋଇନ୍ତା ମାତ
ସଂଯୋଜକ ଭାବେ ରହିଲେ ବିଦୁର
ପୁତ୍ରଙ୍କର ଖୁଲ୍ଲତାତ । ୮୦

ଗାନ୍ଧାରୀ ଓ ଧୃତ- ରାଷ୍ଟ୍ର ସର୍ବମାନ୍ୟ
ଯାଗରେ ସର୍ବାଧିକାରୀ
ଆଉ ଯେତେ ଛନ୍ତି ଆତ୍ମୀୟ ସ୍ୱଜନ
ଖଟିଲେ ଧର୍ମାନୁସରି । ୮୧

ବ୍ରାହ୍ମଣ ମାନଙ୍କ ଭଲ ମନ୍ଦ ପାଇଁ
ରହିଲେ ଦ୍ରୋଣ ନନ୍ଦନ
ଯାଗର ବିଧାନ ତନଖି କାର୍ଯ୍ୟରେ
କୃପାଚାର୍ଯ୍ୟ ମହାମନ । ୮୨

ରାଜ କର୍ମଚାରୀ କାର୍ଯ୍ୟ ନିରୀକ୍ଷଣ
ଦାୟିତ୍ୱରେ ମହାମାତ୍ୟ
ମୁଖ୍ୟ ସେନାପତଙ୍କ ହାତେ ନ୍ୟସ୍ତ କଲେ
ଶାନ୍ତି ଶୃଙ୍ଖଳା ଦାୟିତ୍ୱ । ୮୩

କୌଣସି କ୍ଷେତ୍ରରେ ଶିଥିଳତା ନାହିଁ
ସକଳେ ଦାୟିତ୍ୱବାନ
ନିଜ ନିଜ କାର୍ଯ୍ୟ ସମ୍ପାଦନ ଢଙ୍ଗେ
ନବେଶିଲେ ପ୍ରାଣ ମନ ।୮୪

ଭୋଜନ ଶେଷରେ ଛତ୍ରଶାଳ ସଫା
କରିବାକୁ ଝାଡ଼ୁଦାର
କଣସୁ ନୃପଙ୍କ ଏକଶତ ଆଠ
ତନୟ ହେଲେ ହାଜର ।୮୫

ଶ୍ରୀକୃଷ୍ଣ କହିଲେ ଆହେ ଧର୍ମରାଜ
ଏମାନଙ୍କୁ ଦିଅ ଶାନ୍ତି
ବଶିଷ୍ଠ ଭୃତ୍ୟ ଏ ଠିଆ ହୋଇଛନ୍ତି
ସମ୍ମୁଖରେ କର ଯୋଡ଼ି ।୮୬

କୃପାଜଳ ଋଷି ଗାଈ, ଗୈର କରି
ହୋଇଛନ୍ତି ଶାପଗ୍ରସ୍ତ
ରାଜସୂୟ ଯାଗେ ସେବା କାର୍ଯ୍ୟ କରି
ହୋଇଯିବେ ଶାପମୁକ୍ତ ।୮୭

ଶ୍ରୀହସ୍ତରେ ଶାନ୍ତି ଦେଲେ ନୃପବର
ହୋଇଲେ ସେ ଝାଡ଼ୁଦାର
ସୁବର୍ଣ୍ଣ ପଂକ୍ତିରେ ଏକ ଏକ ଧରି
ଖରକଲେ ଛତ୍ର ଘର ।୮୮

କାଳଞ୍ଜନ ଆଉ କାଳ ଧ୍ୱଂସ ନାମେ
ସମନପୁର ଉତ୍ତରେ
ଅକସ୍ମାତ ଆସି ପ୍ରବେଶ କରିଲେ
ରାଜସୂୟ ଯଜ୍ଞ ଠାରେ ।୮୯

ଶ୍ରୀକୃଷ୍ଣ କହିଲେ ପୂର୍ବରୁ ଓ ପ୍ରବୀର
ଯଯାତିଙ୍କ ଦୁଇସୁତ
ପିତୃ ବଧ ଷଡ଼- ଯନ୍ତ୍ର କରି ପୂର୍ବେ
ଭୋଗୁ ଥିଲେ ନର୍କ କଷ୍ଟ ।୯୦

ରାଜସୂୟ ଯାଗେ ଧର୍ମ ସେବା କରି
ହୋଇବାକୁ ଶାପମୁକ୍ତ
ଯମଙ୍କ ଆଦେଶେ ଚାରି ଦୁଇ ଭାଇ
ଯାଗଶାଳେ ଉପସ୍ଥିତ । ୯୧

ପୂର୍ବ ବଂଶଧର ଜାଣି ଯୁଧିଷ୍ଠିର
ଚରଣ କଲେ ବନ୍ଦନ
ଯାଗରେ ତତ୍ପର କାର୍ଯ୍ୟରେ ନିଯୁକ୍ତ
କରାଇଲେ ଧର୍ମରାଣ । ୯୨

ଏଥୁ ଅନ୍ତେ ଶୁଣ ଅହେ ସୁଜ୍ଞଜନେ
ଛତ୍ର ଶାଳେ ଧର୍ମ ରାଜେ
ଆପଣେ ପହଞ୍ଚି ମଣାନ୍ତି ସେଠାରେ
ଠିଆ ରହି ଯଦୁରାଜେ । ୯୩

ଦେଖିଲେ ଯୁଧିଷ୍ଠି ଲାଗିଛୁ ଗହଳ
ବହୁ ସମ୍ଭାରେ ଭୁଞ୍ଜାନ୍ତି
ପଙ୍କ୍ତିର କୁଟିଲେ କେତେ ଯେ ଖାଇଲେ
କପର ବୁଝିବ ଶ୍ରୀପତି ? ୯୪

ଏକାଳେ ଶୁଭିଲା ଛତ୍ରଶାଳ ମଧ୍ୟ
ଘନଘନ ଶଙ୍ଖ ସ୍ୱନ
କୋଟିଏ ଭୁଞ୍ଜନ୍ତେ ଏକ ଶଙ୍ଖ ସ୍ୱରେ
ବାଡ଼କେ ଅନେକେ ସ୍ୱନ । ୯୫

ବୁଲି ଦେଖୁଛନ୍ତି ଧର୍ମ ନରପତି
ଛତ୍ର ଶାଳର ବ୍ୟବସ୍ଥା
କୃଷ୍ଣ ପତ୍ନୀ ସଙ୍ଗେ କୃଷ୍ଣା, ଭାନୁମତୀ
ଯୋଗାଡ଼ କରନ୍ତି ସଞ୍ଜା । ୯୬

ଏକ ଲକ୍ଷ ବିପ୍ର ରନ୍ଧନ କରନ୍ତି
ସୁଚକ୍ୟ ଅନ୍ନ ବ୍ୟଞ୍ଜନ
ଅଶୀ ଖର୍ବ ଶୂଦ୍ର ପରଷନ୍ତି ଅନ୍ନ
ଶ୍ରଦ୍ଧାରେ ଭୁଞ୍ଜାନ୍ତି ସ୍ୱୟଂ । ୯୭

ଭୋଜନ ଶେଷରେ ଉଚ୍ଛିଷ୍ଟ ପତ୍ରକୁ
ଗୋଟାଇ ନିଏ ପବନ
ଅଗ୍ନି ପୋଡ଼ି ଦେବା ପରେ ବର୍ଷା ହୋଇ
ପରିଷ୍କାର ହୁଏ ସ୍ଥାନ । ୯୮

ତାପରେ କଣ୍ୱ ଭ୍ରାତା ଦେଉଥାନ୍ତି
ଗୋବର ଚନ୍ଦନ ଛେରା
ଖରକ ଦନ୍ତ ସ୍ୱ କରରେ ଧରି
ଶତ ସୁବର୍ଣ୍ଣ ପଂହରା । ୯୯

ଏ ବ୍ୟବସ୍ଥା ଦେଖି କହିଲେ ଯୁଧିଷ୍ଠି
ବାୟୁ ଦେବ ମୋର ପିତା
ସେ ଯେବେ ଉଚ୍ଛିଷ୍ଟ ପତ୍ର ଉଠାଇଲେ
ଧିକ ଏ ଯାଗ ବ୍ୟବସ୍ଥା । ୧୦୦

ହେ ପୁରୁଷୋତ୍ତମ ! ଏ ଅଟେ ଅଧର୍ମ
ଯାଗ ଫଳ ନାଶ ଗଲା
ମନ୍ତ୍ରୀ ମୁଖ ଚାହିଁ ପୁଚ୍ଛିଲେ ଶ୍ରୀହରି
କ ବୁଦ୍ଧି କରିବା ଭଲ । ୧୦୧

ବୋଲେ ସହଦେବ ଆହେ ବାସୁଦେବ
ମେରୁ ଶୃଙ୍ଗ ନାମେ ଋଷି
ବଦ୍ରିକା ଆଶ୍ରମେ ଯୋଗ ସାଧୁଛନ୍ତି
ଅନଳ ନେତ୍ରରେ ବସି । ୧୦୨

ତାହାଙ୍କୁ ବରିଲେ ଉଦ୍ଦେଶ୍ୟ ପୂରଣ
ହୋଇବ ହେ ନାରାୟଣ
ମନ୍ତ୍ରୀ ପରାମର୍ଶେ ଋଷି ଡାକିବାକୁ
ପଠାଇଲେ ଭୀମସେନ । ୧୦୩

ଆଜ୍ଞା ପାଇ ବାୟୁ ସୁତ ଚଳିଗଲେ
ବଦ୍ରିକା ଆଶ୍ରମ ପଥେ
ଭୀମସେନ ବୁଦ୍ଧି କଳିବା ନିମନ୍ତେ
ପଛେ ଗଲେ ବାୟୁ ନାଥେ । ୧୦୪

ପବନ ପୁଚ୍ଛିଲେ ଯାଉ ଅଛୁ ପୁତ୍ର
ମେରୁଶୃଙ୍ଗ ଡାକିବାକୁ
କେମନ୍ତ ଆଣିବୁ ବରଣ କରଣ
ଅଗ୍ନି ନେତ୍ର ମନୁଷ୍ୟକୁ ? ୧୦୫

ନେତ୍ର ଖୋଲି ଯେଉଁ ଦିଗକୁ ଚାହିଁବ
ଭସ୍ମିଭୂତ ହୋଇଯିବ
ଏତେ ଦୁର୍ଯୋଗକୁ ତୋତେ ପେଷିଛନ୍ତି
କୂଟ କରି ଧର୍ମ ଦେବ । ୧୦୬

ସମ୍ମୁଖେ ପଡ଼ିଲେ ଦହନ ହୋଇବୁ
ସେଠାକୁ ନ ଯା ନନ୍ଦନ
ଭୀମସେନ ବୋଲେ ଭ୍ରାତାଙ୍କ ଆଦେଶ
କରି ନ ପାରେ ଲଂଘନ । ୧୦୭

ଧର୍ମର ଆଶ୍ରୟେ ବଞ୍ଚୁ ଚିରଦିନ
ମେଣ୍ଟିବାକୁ ନାହିଁ ବଳ
ଧର୍ମ କାର୍ଯ୍ୟ କରି ଜୀବନ ତେଜିଲେ
ପ୍ରାପ୍ତ ହେବ ପୁଣ୍ୟଫଳ । ୧୦୮

ଶ୍ରୀହରି ଆଶ୍ରୟେ ବଞ୍ଚୁ ଚିର ଦିନ
ତାଙ୍କ ଆଜ୍ଞା ବେଦସାର
ପ୍ରଭୁଙ୍କ ଆଦେଶ ପାଳନେ ଜୀବନ
ଗଲେ ଆନନ୍ଦ ଅପାର । ୧୦୯

ଶ୍ରୀକୃଷ୍ଣଙ୍କ ପ୍ରତି ଅଟଳ ବିଶ୍ୱାସ
ଜାଣି ପବନ ସୁଜନ
କହିଲେ ରେ ପୁତ୍ର ଋଷି ପୃଷ୍ଠ ଦେଶେ
ରହି କରିବୁ ବରଣ । ୧୧୦

ସମ୍ମୁଖ ଭାଗରେ ରହିଲେ ମରିବୁ
ଏ କଥା ମନରେ ଘେନ
ପିତା କଥା ମାନି ପୁତ୍ର ଭୀମସେନ
ଋଷିଙ୍କୁ କଲେ ବରଣ । ୧୧୧

ପ୍ରଭୁଙ୍କ ଆଦେଶ ପାଇ ମେରୁଶୃଙ୍ଗ
ଯାଗସ୍ଥଳେ ଚଳିଗଲେ
ବାରୁଣୀ ପର୍ବତ ଶିଖର ଦେଶରେ
ଯାଇଁ ଅବସ୍ଥାନ କଲେ । ୧୧୨

କୃଷ୍ଣଙ୍କ ସହିତ ରାଜା ଯୁଧିଷ୍ଠିର
ଚରଣ କଲେ ପୂଜନ
ବିନୟେ କହିଲେ କୃଷ୍ଣ ବାସୁଦେବ
ଅରିଷ୍ଟି କର ଖଣ୍ଡନ । ୧୧୩

ରାଜସୂୟ ଯାଗ କରୁଛନ୍ତି ଧର୍ମ
ଚତୁର୍ଦ୍ଦଶ ଭୁବନର
ଛପ୍ପନ କୋଟି ଜୀବ ଭୋଜନ କରନ୍ତି
ଅନୁବର୍ତ୍ତେ ଋଷିବର । ୧୧୪

ଧର୍ମ କାର୍ଯ୍ୟ ପାଇଁ ଡକାଇ ଆଣିଛୁ
ଘେନ ଆମ୍ଭ ନିବେଦନ
ବାରୁଣୀ ପର୍ବତେ ଧ୍ୟାନେ ବସିଥିବ
ଶେଷ ହୋଇଲେ ଭୋଜନ । ୧୧୫

ଶଙ୍ଖ ସ୍ୱନ ଶୁଣି ଅନଳ ନୟନେ
ଦହିବ ଉଚ୍ଛିଷ୍ଟ ପତ୍ର
ମେରୁଶୃଙ୍ଗ ଋଷି କୃଷ୍ଣ କଥା ଶୁଣି
ଆନନ୍ଦେ କଲେ ସମ୍ମତ । ୧୧୬

ପରହିତ କାର୍ଯ୍ୟ ଯେ ପ୍ରାଣୀ କରଇ
ତା ଜୀବନ ମହନୀୟ
ମଲେ ମଧ୍ୟ ସେହି ଜୀବିତ ରହଇ
କାଳକୁ କରଇ ଜୟ । ୧୧୭

ସାହାଯ୍ୟ ଦେବାକୁ ନାହିଁ ମୋର ଧନ
ସେବା ହାତ ଯୁଧିଷ୍ଠିର
ଉପକାର କର ଗାଇଲେ ଶ୍ରୀହରି
ଜୀବନ ହୋଇବ ସାର । ୧୧୮

ଏହା କହି ଋଷି ଯୋଗରେ ବସିଲେ
ବାରୁଣା ଗିରି ଶିଖରେ
ଋଷିଙ୍କୁ ଆଦର ଅଭ୍ୟର୍ଥନା କରି
ଫେରିଲେ ଧର୍ମ ଭୂପାଳେ । ୧୧୯
ବାର ପୂର୍ଣ୍ଣ ବ୍ୟାପୀ ଛତ୍ରଶାଳେ ବସି
ଭୋଜନ କରନ୍ତି ଜନେ
ଭୋଜନ ଶେଷରେ ଶଙ୍ଖ ଧ୍ୱନି ଶୁଣି
ଆଡ଼ ହୁଅନ୍ତି ତକ୍ଷଣେ । ୧୨୦
ଅନଳ ନେତ୍ରରେ ଅନାନ୍ତେ ତାପସ
ପୋଡ଼ଇ ଉଚ୍ଛିଷ୍ଟ ପତ୍ର
ଜଳ ବୃଷ୍ଟି ହୋଇ ଧୋଇ ଯାଏ ପାଂଶ
ଗୋବର ଦଅନ୍ତି ତତ୍ର । ୧୨୧
ତହିଁର ଉପରେ ସିଞ୍ଚନ୍ତି ଚନ୍ଦନ
ସୁଗନ୍ଧ ବାସ ଜମନ୍ତେ
ତହିଁ ପରେ ବସି ଭୋଜନ କରନ୍ତି
ଦେଖନ୍ତି ପ୍ରୀତ ଧର୍ମସୁତେ । ୧୨୨
ମୂଢ଼ ବୃନ୍ଦାବନ ଉଚ୍ଛିଷ୍ଟ ଗୃହଇ
କୈବଲ୍ୟ କଣିକା ଚିନ୍ତି
କୃଷ୍ଣ ଭକ୍ତ ଭୁକ୍ତ ସ୍ଖଳିତ ଅନ୍ନରେ
ହରିପ୍ରେମ ହେବ ପ୍ରାପ୍ତି । ୧୨୩
ଏକଶ ଚଉଦ ପଦରେ ଅଧ୍ୟାୟ
ଏଠାରେ ହୋଇଲା ଶେଷ
ଗୀତରେ ଭଣିଲା କବି ବୃନ୍ଦାବନ
ସୁଜନେ ନ ଦେନ ଦୋଷ । ୧୨୪

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ରାଜସୂୟ ଯାଗରେ
ଦାସୀଙ୍କୁ ବର୍ଣ୍ଣନ ଆଖ୍ୟାନେ ନାମ ବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

# ଏକବିଂଶ ଅଧ୍ୟାୟ

## ଅଗ୍ରପୂଜ୍ୟ ଉପାଖ୍ୟାନ

( ରାଗ - ବଙ୍ଗଳାଶ୍ରୀ )

ଶୁଣ ସୁଜ୍ଞ ଜନେ ଶ୍ରୀକୃଷ୍ଣ ଚରିତ ମାନସ ଅମିୟ ବାଣୀ
ରାଜସୂୟଯାଗ ମଣ୍ଡପେ ବସିଲେ ଏକଲକ୍ଷ ନୃପମଣି । ୧
ଦଇବୀ ସମ୍ପଦ ଯେଣୁ ଧର୍ମରାଜ ମୟ ଦାନବ ସଭାରେ
ସମ୍ମୁଖେ ବସିଲେ କୃଷ୍ଣା ଯେଣୁକୋଳେ ପଞ୍ଚ ଭ୍ରାତାଙ୍କ ମେଳରେ । ୨
ଧର୍ମ ନୃପତିଙ୍କ ଅଭିଷେକ ପାଇଁ ଲୋଡ଼ା ଯେତେକ ଭୂଷଣ
ସେ ସବୁ କୁବେର ଭଣ୍ଡାରରୁ ଆଣି କଲେ ଶ୍ରୀଅଙ୍ଗ ମଣ୍ଡନ । ୩
ଅମ୍ଲାନ ବସନ ଯେଣୁ ମନ୍ଦବାନ ବାନ୍ଧିଲେ ଧର୍ମଙ୍କ ଶିରେ
ଦିବ୍ୟ ଆଭରଣ ଆଣି ଶଚୀଦେବୀ ମଣ୍ଡିଲେ କୃଷ୍ଣା ଅଙ୍ଗରେ । ୪
ମୟ ବିନିର୍ମିତ ସିଂହାସନେ ଧର୍ମ ତେର ପାବଚ୍ଛେ ଆସୀନ
ଦ୍ୱାଦଶ ପାବଚ୍ଛେ ସହଦେବ ମନ୍ତ୍ରୀ ସମ୍ମୁଖେ ଦଣ୍ଡାୟମାନ । ୫
ହସ୍ତେ ଧରିଛନ୍ତି ତିନକାଳ ପୋଥି ବୋଲନ୍ତି ଗତ ଆଗତ
ବେନି କର ଯୋଡ଼ି ରାଜାଙ୍କୁ ଜଣାନ୍ତି ଭାରତ ଶାସନ ତନ୍ତ୍ର । ୬
ତା ତିନି ପାବଚ୍ଛ ତଳରେ ନକୁଳ ଉଭା ଦଣ୍ଡ ଛତ୍ର ଧରି
ତା ଚାରି ପାବଚ୍ଛ ତଳେ ପାର୍ଥ ଠିଆ ଗାଣ୍ଡୀବ ଧନୁ ଟଙ୍କାରି । ୭
ଦଶମ ପାବଚ୍ଛ ତଳେ କୃଷ୍ଣଚନ୍ଦ୍ର ସେ ଅନନ୍ତ ପଡ଼ିହାରୀ
ଉପରର ତିନି ପାବଚ୍ଛ ତଳରେ ଭେଟାଇବେ ଦଣ୍ଡଧାରୀ । ୮
ଆଜ୍ଞା କରି କୃଷ୍ଣ କହିଲେ ନୃପଙ୍କୁ କୋଟି ଜନ୍ମ ପାରି ହେବ
ଧର୍ମ ନୃପତିଙ୍କ ଚରଣରେ ଖଟ ଭକ୍ତିଭରେ ନୃପଦେବ । ୯
ଦେଖ ଭୃତ୍ୟ ପଣେ ଖଟେ ମୁଁ ଚରଣେ ଧର୍ମରାଜ ଇଷ୍ଟ ମୋର
ଶୁଣିଣ ସର୍ବ୍ବିତ ଲକ୍ଷେ ନରନାଥ ସମ୍ମତ ହେଲେ ସତ୍ୱର । ୧୦
କହିଲେ ଜନମ ସଫଳ ହୋଇଲା ଦେଖିଲୁ ଧର୍ମ ଯୁଧିଷ୍ଠି
କୁଳର ସଫଳ ହୋଇଲା ଆମ୍ଭର ରାଜସୂୟ ଯାଗେ ଖଟି । ୧୧
ନୟନ ପବିତ୍ର ହୋଇଲା ଆମ୍ଭର ନେତ୍ରେ ଦେଖି ଋଷିବୃନ୍ଦ
ସକଳ ମଙ୍ଗଳ ପ୍ରତ୍ୟକ୍ଷ ହେଲା ଦର୍ଶନ କରି ଗୋବିନ୍ଦ । ୧୨

ଠିଆ ହୋଇ ନୃପେ କୃତାଞ୍ଜଳି ପୂର୍ବେ କୃଷ୍ଣ କୃତ ପୁନଃ ପୁନଃ
ନୃପଗଣେ ଋଦ୍ଧି ଆଜ୍ଞାଦେଲେ ଧର୍ମ ବସ ଯା ନିଜ ଆସନ । ୧୩
ଆଜ୍ଞା ପାଇ ନୃପେ ବସିଲେ ସଭାରେ ହୋମଯଜ୍ଞ କାର୍ଯ୍ୟାରମ୍ଭ
କରିବା ସମୟେ ସଭାମୁଖ ଋଦ୍ଧି-ବୋଲୁଛନ୍ତି ବ୍ୟାସଦେବ । ୧୪
ଆଚାର୍ଯ୍ୟ, ଋତ୍ୱିକ, ସମ୍ବନ୍ଧ, ସ୍ନାତକ, ନରପତି, ପ୍ରିୟଜନ
ଏ ଷଡ଼ଜଣଙ୍କୁ ସମ୍ମାନ କରିବା ରାଜସୂୟ ଯାଗ ବିଧାନ । ୧୫
ଅନୁଗ୍ରହ କରି ଏମାନେ ଯାଗକୁ ଆସିଛନ୍ତି ଧର୍ମପାଇଁ
ସେମାନଙ୍କୁ ଆଦ୍ୟେ ସମ୍ମାନ କରନ୍ତୁ ଯଥୋଚିତ ମାନ୍ୟ ଦେଇ । ୧୬
ଏ ମହାସଭାରେ ସର୍ବଶ୍ରେଷ୍ଠ ଯିଏ ତାଙ୍କ ଉଦ୍ଦେଶ୍ୟେ ରାଜନ
ପ୍ରଥମରେ ଅର୍ଘ୍ୟ ପ୍ରଦାନ କରିବା ରାଜସୂୟର ବିଧାନ । ୧୭
ତାହାଚ ହୋଇବ ସମସ୍ତଙ୍କ ପାଇଁ ଯଥୋଚିତ ଅଭ୍ୟର୍ଥନା
ଶାସ୍ତ୍ରୋକ୍ତ ବିଧାନେ ସମ୍ମାନ ଜ୍ଞାପନ କର ଆହେ ମହାମନା । ୧୮
ସୁବର୍ଣ୍ଣ ଥାଳରେ ଲକ୍ଷେ ସ୍ୱର୍ଣ୍ଣ ଦୀପ ଜଳାଇ ଘୃତ ସଜ୍ଜିତା
ଶ୍ରେଷ୍ଠତମ ଜନେ ଅର୍ଘ୍ୟଦାନ ଦେବା ରାଜସୂୟ ଯାଗ ବ୍ୟବସ୍ଥା । ୧୯

ବ୍ୟାସ ପରାମର୍ଶେ ଧର୍ମ ନରପତି ଯୋଗାଡ଼ି ସକଳ ବସ୍ତୁ
ଭାବ ବିହ୍ୱଳିତ କଣ୍ଠରେ କହିଲେ ସଜ୍ଜନେ ଧୀରେ ଶୁଣନ୍ତୁ । ୨୦
ଏ ମହା ସଭାରେ ଲକ୍ଷେକ ନୃପତି ସଭା ମଧ୍ୟେ ବସିଅଛି
ବ୍ରହ୍ମା, ବିଷ୍ଣୁ, ରୁଦ୍ର, ଇନ୍ଦ୍ର, ଦିଗପାଳ, ଋଷି, ବିପ୍ର ପୂରି ଅଛି । ୨୧
ଚତୁର୍ଦ୍ଦଶ ଲୋକେ ବସ ଯେତେ ଜନ ବିଜେ କରିଅଛ ସର୍ବେ
ଧାର୍ମିକ, ବିବେକୀ, ଜ୍ଞାନୀ, ଗୁଣବନ୍ତ, ନାଗ-ନର-ଦୈତ୍ୟ-ଦେବେ । ୨୨
ଯାଗ ବିଧାନରେ କାହାକୁ ପ୍ରଥମେ କରିବି ଅର୍ଘ୍ୟ ପ୍ରଦାନ
ଭଦନ୍ତେ ଅକ୍ଷତ ଦେବ ସମସ୍ତଙ୍କୁ ଭାବି କହ ବିଜ୍ଞଜନ ? ୨୩
ଧର୍ମଙ୍କ ବଚନ ଶୁଣି ସର୍ବଜନ ବସିଲେ ହୋଇ ମଉନ
ଧର୍ମ ନୃପତିଙ୍କ କଥାଶୁଣି ଭୀଷ୍ମ ପୁଚ୍ଛିଲେ ହେ ଗୁରୁ ଦ୍ରୋଣ ? ୨୪
ବ୍ରହ୍ମ ବର୍ଣ୍ଣେ ଶ୍ରେଷ୍ଠ ଅଟନ୍ତି ଆପଣ ଭରଦ୍ୱାଜଙ୍କ ନନ୍ଦନ
ପର୍ଶୁରାମ ବିଦ୍ୟା ସାଧନ କରିଛ ଶସ୍ତ୍ରଶାସ୍ତ୍ରରେ ନିପୁଣ । ୨୫
ରାଜା ଯୁଧିଷ୍ଠିର ପଚାରିଲେ ଯାହା କହନ୍ତୁ ଭୂମି ଈଶ୍ୱର
ବିପ୍ରଙ୍କ ମୁଖରୁ ଯାହା ବାହାରିବ ପାଳିବେ ଧର୍ମ ନୃବର । ୨୬

ବୋଲୁଛନ୍ତି ଦ୍ରୋଣ ସଭାଜନେ ଶୁଣ ଶୁଣ ଲକ୍ଷେ ନରପତି
ମୋତେ ଯାହା ପୃଚ୍ଛା କଲେ ଭୀଷ୍ମଦେବ କହୁଅଛୁ ଭାବିଚିନ୍ତି । ୨୭
ମୂର୍ତ୍ତିମନ୍ତ ହୋଇ ବିଜେ ନାରାୟଣ ଦେଖୁଛ ସର୍ବେ ନୟନେ
ଯଜ୍ଞର କରନ୍ତ୍ର ଯଜ୍ଞ ପୁରୁଷ ସେ କରନ୍ତି ଯାଗ ବିଧାନେ । ୨୮
ଧର୍ମ-ଅର୍ଥ-କାମ- ମୋକ୍ଷ ପ୍ରଦାୟକ ଅଟନ୍ତି ଶ୍ରୀ ନାରାୟଣ
ସ୍ୱୟଂ ବିଷ୍ଣୁନାଥ ଯହିଁ ଉପସ୍ଥିତ କର ତାଙ୍କୁ ଅର୍ଘ୍ୟଦାନ । ୨୯
ଏ ସଭାରେ ସର୍ବମାନସ୍ୟ ଅଟନ୍ତି ପରମ ପୂଜ୍ୟ ଆମ୍ଭର
କେବଳ ଆମ୍ଭର ପୂଜ୍ୟ ସେ ନୁହନ୍ତି ପୂଜ୍ୟ ବିଶ୍ୱ ବ୍ରହ୍ମାଣ୍ଡର । ୩୦
ଗ୍ରହଗଣ ମଧ୍ୟେ ଗ୍ରହରାଜଙ୍କର ପ୍ରଭା ଯେହ୍ନେ ବିକଶିତ
ସେହିପରି ସଭା ଜନଙ୍କ ମଧ୍ୟରେ ବାସୁଦେବ ଉଦ୍ଭାସିତ । ୩୧
ସୂର୍ଯ୍ୟ ଆଲୋକରେ ଅନ୍ଧକାର ଯେହ୍ନେ ହୋଇଯାଏ ଦୂରୀଭୂତ
ଚତୁର୍ଦ୍ଦିଗ ଲୋକେ ପୁଲକିତ ହେଲେ ଆଲୋକିତ ଦଶଦିଗ । ୩୨
ବହୁକାଳ ଧରି ଆବଦ୍ଧ ସ୍ଥାନରେ ବାୟୁ ହୋଇ ସଞ୍ଚାଳିତ
ଦୂଷିତ ସ୍ଥାନକୁ ବିଶୁଦ୍ଧ କରିଣ ପରିବେଶ କରେ ସୁସ୍ଥ । ୩୩
ସେହିପରି ଭଗବାନ କୃଷ୍ଣଙ୍କର ଉପସ୍ଥିତିରେ ଆମ୍ଭର
ପବିତ୍ର ହୋଇଛୁ ରାଜସୂୟ ଯାଗଶାଳ ଗୋଟି ହେତୁକର । ୩୪
ସର୍ବ ପୂଜ୍ୟ ବିଷ୍ଣୁ ଯହିଁ ବିରାଜିତ କର ତାଙ୍କୁ ଅର୍ଘ୍ୟଦାନ
ଏ ରାଜ ସଭାରେ ବିଷ୍ଣୁ ପୂଜା କରି ଧନ୍ୟ ହୁଅ ଧର୍ମଗଣ । ୩୫
ତାଙ୍କ ଗୁଣାବଳୀ କହୁଅଛି ଗାଉଛୁ ଶୁଣ ସର୍ବ ସଭାଜନ
ଶ୍ରବଣେ ଶ୍ରୁତିକୁ ଆନନ୍ଦ ଦିଅଇ ଜିହ୍ୱାକୁ ମଧୁ ସମାନ । ୩୬
ଜନ୍ମ ହେବା ଦିନୁ ଯେ ସବୁ ଆଶ୍ଚର୍ଯ୍ୟ କାର୍ଯ୍ୟମାନ କରିଛନ୍ତି
ସେହିପରି ଆଜ କେଉଁଠାରେ କେହି କେବେ ତ କରି ନାହାନ୍ତି ।୩୭
ଏ ଦ୍ୱାପର ଯୁଗେ କୃଷ୍ଣ ସର୍ବଶ୍ରେଷ୍ଠ ପୁରୁଷ ରୂପେ କଥିତ
ବେଦଜ୍ଞ, ବିଦ୍ୱାନ, ଯୁଦ୍ଧ ବିଶାରଦ, ଶୂରବୀର, କ୍ଷତ୍ରି ସୁତ । ୩୮
ଦାନଶୀଳତା, ଦକ୍ଷତା, ଶାସ୍ତ୍ରଜ୍ଞାନ, ଶ୍ରୀ, ଶୌର୍ଯ୍ୟ, କୀର୍ତ୍ତି ବିନୟ
ଧୃତି, ତୁଷ୍ଟି, ପୁଷ୍ଟି, ବୁଦ୍ଧି, ଅଭିଜ୍ଞତା, ବିବେକ ଅତୁଳନୀୟ । ୩୯
କଂସ କାରାଗାରେ ଜନମ ହୋଇଣ ବାସ କଲେ ଗୋପପୁରେ
ଜନମ କାଳରୁ ଯନ୍ତ୍ରଣା ଭୋଗିଲେ ଜଗତ ଜନ ହିତରେ । ୪୦

ଶୈଶବେ ପୂତନା ଅଷ୍ଟମଲ୍ଲ ମାରି ଦୁଷ୍ଟଙ୍କୁ ସଂହାର କଲେ
ଗିରି ଗୋବର୍ଦ୍ଧନ ଧାରଣ କରିଣ ଇନ୍ଦ୍ର ଗର୍ବ ଚୂର୍ଣ୍ଣ କଲେ । ୪୧
କାଳୀୟ ଦଳନ କରି କାଳିନ୍ଦୀର ଜଳ କଲେ ବିଷମୁକ୍ତ
ଜଳକ୍ରୀଡ଼ା କରି ଗୋପ ଗୋପୀ ସଙ୍ଗେ ହେଲେ ପ୍ରଭୁ ଆହ୍ଲାଦିତ । ୪୨
ଗୋବତ୍ସ ହରଣେ ବ୍ରହ୍ମାଙ୍କ ମନରୁ ହରିଲେ ହୀନମନ୍ୟତା
ଘୃଣ୍ୟ ଜାତିଭେଦ ଭାବନା ବିନାଶି ସ୍ଥାପନ କଲେ ସାମ୍ୟତା । ୪୩
କୈଶୋରାବସ୍ଥାରେ କଂସ ବଧ କରି ମାତାମହ ଉଗ୍ରସେନ
ପିତା ବସୁଦେବ ଜନନୀ ଦେବକୀ ଦୁଃଖକୁ କଲେ ହରଣ । ୪୪
ଉଦ୍ଧାର କରିଲେ ମଧୁପୁରବାସୀ ଶାସନ ସଂସ୍କାର କରି
ମଥୁରା କଟକେ ଶାନ୍ତ ବିରାଜିଲା ଉଗ୍ରସେନ ଦଣ୍ଡଧାରୀ । ୪୫
ସାନ୍ଦୀପନି ବିପ୍ର ଗୃହେ ବିଦ୍ୟାଶିକ୍ଷା କଲେ ରାମ ନାରାୟଣ
ମାସକ ମଧ୍ୟରେ ସର୍ବ ବିଦ୍ୟା ସାଧି ବିଶ୍ୱେ ପ୍ରସିଦ୍ଧ ବିଦ୍ୱାନ । ୪୬
ଦକ୍ଷିଣାଛଳରେ ମୃତ ଗୁରୁ ପୁତ୍ର ଆଣି ଦେଲେ ଗୁରୁ କରେ
ମାତା ଦେବକୀର ମୃତ ଷଡ଼ ପୁତ୍ର ସମର୍ପିଲେ ନେଇ କୋଳେ । ୪୭
ମଥୁରା ନଗରେ ଉଗ୍ରସେନ ରାଜା ହୋଇବାରୁ କଂସ ସୁତେ
କୃଷ୍ଣରେ ଶତ୍ରୁତା କରି ନାଶ ଗଲେ ଅଷ୍ଟମଲ୍ଲ ସୁତ ସାଥେ । ୪୮
କନ୍ୟା ନାତି ଦୁଃଖେ ଜର୍ଜରିତ ଜରା ମଥୁରା ବାହିଲା ସୈନ୍ୟ
ମଧୁପୁର ହିତ ଚିନ୍ତି ରାମ କୃଷ୍ଣ ତା ସଙ୍ଗେ କରିଲେ ରଣ । ୪୯
ସପ୍ତଦଶ ବାର ହାରି ଜରାସନ୍ଧ ତଥାପି ବାହିଲା ସୈନ୍ୟ
ମଥୁରାର ହିତ ସାଧନେ ଦ୍ୱାରକା ପୁର କରିଲେ ନିର୍ମାଣ । ୫୦
କୌଶଳ କରିଣ ଭୀମସେନ ହାତେ ଜରାସନ୍ଧ ମରାଇଲେ
ମରଣ ମୁଖରୁ ନୃପଙ୍କୁ ଉଦ୍ଧାରି ଜୟବାନା ଉଡ଼ାଇଲେ । ୫୧
ଆପଣା ଜୀବନ ବିପନ୍ନ କରିଣ କରନ୍ତି ଜଗତ ହିତ
ପରମ ଦୟାଳୁ ପଣେ ଜଗତରେ ଯଶଖ୍ୟାତି ସୁବିଦିତ । ୫୨
ପର ଉପକାରୀ ଶରଣ ବତ୍ସଳ ପରିପୂର୍ଣ୍ଣ ସାମରଥ
ପୃଥିବୀରେ ଧର୍ମ ସ୍ଥାପନ ନିମନ୍ତେ ଜୀବନ ଉତ୍ସର୍ଗୀ କୃତ । ୫୩
ଜ୍ଞାନ, ଉଦାରତା, ଉଦ୍ଭୁତା, ନମ୍ରତା, କ୍ଷମା, ଦୃଢ଼ ମନୋବଳ,
ଶୌର୍ଯ୍ୟ, ବୀର୍ଯ୍ୟ, ତେଜ, ଦୟା, ଦୂରଦୃଷ୍ଟି, ଧୀର, ସମ୍ବେଦନଶୀଳ । ୫୪

ଏସବୁ ସୁଗୁଣ ଯାହାଠାରେ ପୂର୍ଣ୍ଣ ସେତ ପ୍ରଣମ୍ୟ, ନମସ୍ୟ
ଏପରି ପୁରୁଷ ଉତ୍ତମ ଶ୍ରୀକୃଷ୍ଣ ବସୁ ଦେବଙ୍କର ଶିଷ୍ୟ । ୫୫

ଧର୍ମ ପ୍ରତିଷ୍ଠାତା ରାଷ୍ଟ୍ରର ନିର୍ମାତା ଧର୍ମରାଜ୍ୟ ସଂସ୍ଥାପକ
ପତନ ଉନ୍ମୁଖୀ ସାମ୍ରାଜ୍ୟର ସେହି ବୋଲିଅଛନ୍ତି ଉଦ୍ଧାରକ । ୫୬
ଉଦାର ମତିର ପ୍ରବକ୍ତା ଅଟନ୍ତି ମାନବୋଚିତ ସ୍ୱଭାବ
ତାହାଙ୍କ ମୌଳିକ ଚରିତ୍ର ଆଦର୍ଶ କାର୍ଯ୍ୟରେ ପ୍ରଯନ୍ନଭାବ । ୫୭
ଲୋକ ମର୍ଯ୍ୟାଦାର ରକ୍ଷକ ଶ୍ରୀକୃଷ୍ଣ ସଂଯମୀ ଓ ତତ୍ତ୍ୱବେତ୍ତା
ଭାରତ ମାତାର ସୁଯୋଗ୍ୟ ସନ୍ତାନ ଧର୍ମ ରାଷ୍ଟ୍ରର ନିର୍ମାତା । ୫୮

ସନାତନ ଧର୍ମ ସଂସ୍ଥାପନ ପାଇଁ ଜନ୍ମିଲେ ଭାରତ ବର୍ଷେ
ରାଜନୀତି, କୂଟ ନୀତିରେ ନିପୁଣ ଆଧ୍ୟାତ୍ମିକ ଭାବାବେଶେ ।୫୯
ଏ ସବୁ କୃଷ୍ଣଙ୍କ ସହଜାତ ଗୁଣ ମନୁଷ୍ୟେ ଶ୍ରେଷ୍ଠ ମନୁଷ୍ୟ
ପ୍ରଭୁପାଦ ପୂଜା କର ଧର୍ମ ରାଜା ଏହା ମୋ ଅନ୍ତର ଭାଷ୍ୟ । ୬୦
ରାଜସୂୟ ଯାଗେ ଅଗ୍ରପୂଜ୍ୟ ସେହି ଆଦ୍ୟରେ ଅର୍ଘ୍ୟ ଅର୍ପଣ
କରିବା ନିମନ୍ତେ ଭାବ ବିହ୍ୱଳିତ କଣ୍ଠରେ କହିଲେ ଦ୍ରୋଣ । ୬୧
ବାଷ୍ପରୁଦ୍ଧ କଣ୍ଠେ କହୁଛନ୍ତି ଗୁରୁ ଧର୍ମ ରାଜ ଧନ୍ୟ ଧନ୍ୟ
ତୁମ୍ଭ ସମ ବିଷ୍ଣୁ ଭକ୍ତ ଏ ଦ୍ୱାପରେ ଦେଖି ନାହିଁ ମୋ ନୟନ । ୬୨
ତୁମ୍ଭ ଅନାବିଳ ଭାବେ ଭଗବାନ କରୁଛନ୍ତି ଭୃତ୍ୟ ପଣ
ନିଜେ ଖଟିଯାଗେ ଯୋଗାଡ଼ କରିଲେ ଯାବତୀୟ ଦ୍ରବ୍ୟମାନ । ୬୩
ସାକ୍ଷାତରେ ତୁମ୍ଭେ କୃଷ୍ଣ ପଞ୍ଚ ପ୍ରାଣ କୃଷ୍ଣେ ସମର୍ପିଛ ମନ
ତୁମ୍ଭ ଭକ୍ତି ଭାବେ ଭୋଳ ହୋଇ ପ୍ରଭୁ କଲେ ପ୍ରତିହାରି ପଣ । ୬୪

ପତ୍ନୀ, ପୁତ୍ର, ଭ୍ରାତା, ବନ୍ଧୁ ପରିବାର ସଭିଙ୍କୁ ସଙ୍ଗରେ ଧରି
ଖଟିଛନ୍ତି ସୁଖେ ଏ ମହା ଯାଗରେ ଧର୍ମ ଭାବ ଅନୁ ସରି । ୬୫
ଆପଣା ପୁତ୍ରଙ୍କୁ ଦ୍ୱାରପାଳ କରି ଜଗାଇଲେ ଦ୍ୱାର ଦେଶେ
ଅଷ୍ଟପାଟ ବଂଶୀ ପାକ ଯୋଗାଉଛନ୍ତି ବାସୁଦେବଙ୍କ ଆଦେଶ । ୬୬
ଦେବ-ଦୈତ୍ୟ-ନାଗ-ଗନ୍ଧର୍ବ- କିନ୍ନର ଖଟିଛନ୍ତି ଯାଗ ଶାଳେ
କାଳଞ୍ଜନ, କାଳ ଧ୍ୱଂସ ନାମେ ପ୍ରେତ ଉଗର କାର୍ଯ୍ୟକୁ କଲେ । ୬୭

କିସ ବଖାଣିବା କୃଷ୍ଣଙ୍କ ମହିମା ଭକ୍ତେ କଲେ ନୃପ ଦେବ
ପ୍ରଭୁହୋଇ ଭୃତ୍ୟ ପଣ ଆଚରିଲେ ବିଚିତ୍ର ଅଟେ ଏ ଭାବ । ୬୮

ବଡ଼ଲୋକ ହୋଇ ଶ୍ରେଷ୍ଠ ସେବା କଲେ ତାଙ୍କୁ ବୋଲଯାଏ ସେବା
ସେବକ ଗଣରେ ପରମ ସେବକ ବାସେ ତାଙ୍କୁ କଲେ ସେବା । ୬୯
ପରମ ସେବକ ହୋଇବାରୁ କୃଷ୍ଣ ଅଟନ୍ତି ସେ ସର୍ବମାନ୍ୟ
ତାଙ୍କୁ ଆଦ୍ୟେ ଅର୍ଘ ପ୍ରଦାନ କରିଣ ରଖ ସେବା ଧର୍ମ ମାନ୍ୟ । ୭୦
ଦ୍ରୋଣ କଥା ଶୁଣି ବ୍ୟାସ ମହାତ୍ମନ ବହୁତ ପ୍ରଶଂସା କଲେ
ଭକ୍ତ ରାଜାମାନେ ଜୟ ଗାନ କଲେ ଅଭକ୍ତେ ଅଡ଼ ବସିଲେ । ୭୧
ଦ୍ରୋଣଙ୍କ ମତକୁ ସମର୍ଥନ କରି କହୁଛନ୍ତି ଭୀଷ୍ମ ଦେବ
ତୁମ୍ଭେ ଯା କହିଲେ ସତ୍ୟ ନିରାଧାର ତାହାହିଁ ମୋ ଅନୁଭବ । ୭୨
ଶାସ୍ତ୍ରେ ସୁପଣ୍ଡିତ ଗୁଣେ ବିମଣ୍ଡିତ ରୂପରେ ଅନୁପମେୟ
ଯୋଦ୍ଧାଙ୍କ ମଧ୍ୟରେ ଅଭିଜ୍ଞ ଯୋଦ୍ଧା ସେ ଶସ୍ତ୍ରଧାରୀ ଗଣେ ଶ୍ରେୟ । ୭୩
ପ୍ରଭୁତ୍ୱ, ଐଶ୍ୱର୍ଯ୍ୟ, ଗୁଣ, ଅଧିକାରୀ ତେଣୁ ବୃଦ୍ଧତମ ବ୍ୟକ୍ତି
ଜ୍ଞାନ ବୃଦ୍ଧ, ବାଳ ବୃଦ୍ଧ ସେ ବୋଲନ୍ତି ବୟୋବୃଦ୍ଧେ ଅଗଣିତ । ୭୪
ଶାସ୍ତ୍ରରେ କଥିତ ଛ ବିଧ ଯୋଗ୍ୟତା ଶ୍ରୀକୃଷ୍ଣ ଶକ୍ତିର ଅଂଶ
ତାଙ୍କଠାରେ ପୂର୍ଣ୍ଣ ମାତ୍ରାରେ ଥିବାରୁ ସର୍ବମାନ୍ୟ ଓ ନମସ୍ୟ । ୭୫
ଅନାଦି, ଅନନ୍ତ, ଅବ୍ୟକ୍ତ, ଅଚ୍ୟୁତ, ଗୁଣାତୀତ, ନିର୍ଗୁଣ
ରୂପ, ରେଖ ଶୂନ୍ୟ ନିତ୍ୟ ନିରଞ୍ଜନ ଅରୂପ ଅଲେଖ ବ୍ରହ୍ମ । ୭୬
ଅରୂପ ହେଲେ ହେଁ ଭକତଙ୍କ ପାଇଁ ଧରନ୍ତି ସେ ରୂପବର୍ଣ୍ଣ
ରୂପରେ ଦର୍ଶନ ଦେଇ ଭଗବାନ କରନ୍ତି ଜଗତ ତ୍ରାଣ । ୭୭
ଅନ୍ତର୍ଯ୍ୟାମୀ ବାଞ୍ଛା କଳପତରୁ ସେ ନିଃଶବ୍ଦରୁ ଖସିଆସେ
ଆନନ୍ଦ, ଉଲ୍ଲାସ ସ୍ୱରୂପକୁ ଧରି ଭକତ ଭାବରେ ରସେ । ୭୮
ଧରାଧାମେ ଆସି ଅବତାର ହୋଇ ଉଶ୍ୱାସନ୍ତି ମହୀଶ୍ୱର
ମଯ୍ୟାମନୁଷ୍ୟର ରୂପେ ଦେଖାଯାନ୍ତି ନିର୍ମାୟୀ ଧ୍ୱଂସ ଦ୍ରବିର । ୭୯
ରୂପ ସଙ୍ଗେ ଆସି ରୂପରେ ଖେଳନ୍ତି ଧରନ୍ତି ସ୍ୱରୂପ ସେତ
ସଂକଳ୍ପ, ବିକଳ୍ପାତ୍ମକ ତାଙ୍କ ରୂପ ମାପ ସାଧ୍ୟ ଡିନହାତ । ୮୦
ସର୍ବଜୀବପରି ତାଙ୍କର ଶରୀର ତିନିଗୁଣ, ପଞ୍ଚଭୂତ
ଗୁଣାଶ୍ରିତା ହୋଇ ଗୁଣକୁ ଆସନ୍ତି ହୋଇ ଦିବ୍ୟ ବପୁବନ୍ତ । ୮୧
ନିର୍ଗୁଣରୁ ଯେଣୁ ଗୁଣବନ୍ତ ହେଲେ ଲୋକେ କରନ୍ତି ଦର୍ଶନ
ଅନନ୍ତ ଲୀଳାରୁ କିଛି ମାତ୍ର ଦେଖି ଜୀବନ ମନେ ଧନ୍ୟ । ୮୨

ହୃଦୟ ନିଧିସେ ନାୟକ ପ୍ରବର ମନୋହର ରୂପ ତାଙ୍କ
ସର୍ବ ଲକ୍ଷଣରେ ପରିପୂର୍ଣ୍ଣ ପୁଂସ ଶୁଭାଶୁଭ ପ୍ରଦାୟକ । ୮୩
ରୁଚିର, ତେଜସ୍ୱୀ, ବୀର, ବୀର୍ଯ୍ୟବାନ, ନବ ଦୂର୍ବାଦଳ ଶ୍ୟାମ
ନୟନ ରଞ୍ଜନ ମଦନ ମୋହନ କମନୀୟ ଅଭିରାମ । ୮୪
ସତ୍ୟବାଦୀ, ପ୍ରିୟମ୍ବଦ ସେ ବୋଲନ୍ତି ପଣ୍ଡିତ ପଣେ ଗରିଷ୍ଠ
ପ୍ରତିଭାନ୍ୱିତ ସେ ବିଚକ୍ଷଣ ବୁଦ୍ଧି ଯାବୃଦ୍ଧି ବ୍ରହ୍ମା ବନ୍ଦିତ । ୮୫
ରସିକ ରାଜସେ ରସିକେ ଜାଣନ୍ତି, ରସବନ୍ତ ରାଧାକାନ୍ତ
ଚତୁର ପଣରେ କେ ସରି ନୁହନ୍ତି ଚତୁରାନନ ବନ୍ଦିତ । ୮୬
ଦକ୍ଷ ଗଣେ ହାରେ ଦକ୍ଷପ୍ରଜାପତି କୃତଜ୍ଞ ସୁଦୃଢ଼ ବ୍ରତ
ଦେଶ କାଳ ପାତ୍ର ଅଭିଜ୍ଞ ଅଟନ୍ତି ଶାସ୍ତ୍ରଚକ୍ଷୁ, ସୂଚୀ ବନ୍ତ । ୮୭
ଜିତେନ୍ଦ୍ରିୟ ଶାନ୍ତ ଦାନ୍ତ ସେ ବୋଲନ୍ତି ଅନନ୍ତ ଗୁଣେ ଭୂଷିତ
ସମୁଦ୍ରରୁ କଏ ଲୁଣକୁ ବାଣ୍ଟିବ ଅଛି କାହା ସାମରଥ ? ୮୮
ଗାମ୍ଭୀର୍ଯ୍ୟ, ଧୈର୍ଯ୍ୟ ବାନ, କ୍ଷମାଶୀଳ, ଦୟାଶୀଳ, ଜ୍ଞାନବାନ୍
ବଦାନ୍ୟ, ଧାର୍ମିକ, ଶୂର ସେ ବୋଲନ୍ତି ବିଦ୍ୱାନ, ବିଜୟବାନ୍ । ୮୯
ଶରଣାଗତର ଆଶ୍ରୟଦାତା ସେ ଆର୍ତ୍ତ ଆତଙ୍କ ଭକ୍ଷଣ
ସୁହୃଦ, ମଇତ୍ର, ବନ୍ଧୁ, ପ୍ରିୟଜନ ଭକ୍ତଜନାନୁରଞ୍ଜନ । ୯୦
ସର୍ବାରାଧ୍ୟ, ସର୍ବଜନଙ୍କ ପୂଜିତ ସକଳ ଗୁଣ ମଣ୍ଡନ
କେ ଅଛି ଜଗତେ ନର ଦେହ ବହି କରିବ ଗୁଣ କୀର୍ତ୍ତନ ? ୯୧
ଶଙ୍ଖ, ଚକ୍ର ଦୁଇ ହସ୍ତରେ ଶୋଭିତ ଦୁର୍ଜ୍ଜନ ଦଳନ ମୂର୍ତ୍ତି
ନର ଅଙ୍ଗେ ନାରାୟଣ ଜାତ ହୋଇ ମର୍ତ୍ତ୍ୟ ଲୀଳା କରୁଛନ୍ତି । ୯୨
ଭୀଷ୍ମଙ୍କର ଭକ୍ତିପୂର୍ଣ୍ଣ କଥା ଶୁଣି ଲୋକେ କଲେ ଜୟଗାନ
ଜୟ ଯଦୁନାଥ ଯଶୋବନ୍ତୀ ସୁତ ଜୟ ହେ ଯଦୁନନ୍ଦନ । ୯୩
ଭୀଷ୍ମଦେବଙ୍କର ଭାବମୟ ଭାଷ୍ୟ ଶୁଣି କବିବର ବ୍ୟାସ
କୃଷ୍ଣପ୍ରେମ ରସେ ହୃଦୟ ପ୍ଲାବିତ ପ୍ରବାହିତ ପ୍ରେମୋଲ୍ଲାସ । ୯୪
ଭୀଷ୍ମଙ୍କ ସହିତ ଦ୍ରୋଣ, ବ୍ୟାସଦେବ ଲୋଡ଼ଗଲେ ଶିରୀକୃଷ୍ଣ
ଦେଖିଲେ ସଭାର ଅନ୍ତରାଳେ ରକ୍ଷା କରନ୍ତି ସେବକ ଗଣ । ୯୫
ବ୍ରାହ୍ମଣମାନଙ୍କ ସ୍ୱାଗତ ନିମନ୍ତେ ନିର୍ମିତ ପ୍ରବେଶ ଦ୍ୱାର
ତୋରଣ ନିକଟେ ଠିଆ ରହି ଭୃତ୍ୟ କରନ୍ତି ବିପ୍ରେ ଆଦର । ୯୬

ଯାଗେ ଆସିଥିବା ବିପ୍ର ପାଦ ଧୋଇ ପୋଛି ପବିତ୍ର କାନିରେ
ମିଷ୍ଟ କଥା କହି ଆସନେ ବସାଇ ଭୁଞ୍ଜାନ୍ତି ଭକତି ଭରେ । ୯୭
ଭୋଜନ ଶେଷରେ ଉଚ୍ଛିଷ୍ଟ ପତ୍ରକୁ ସ୍ୱହସ୍ତେ ଉଠାଇ ନେଇ
ସମାର୍ଜନୀ ଧରି ଉଚ୍ଛିଷ୍ଟ ସ୍ଥାନକୁ ଝାଡ଼ନ୍ତି ସଫାସାଇଁ । ୯୮
ସେବା କରିବାରେ ବହୁତ ଆନନ୍ଦ ବାସେ ତାଙ୍କୁ ସେବାକର୍ମ
ଏଣୁ ମନ ପ୍ରାଣ ଦେଇ ବିପ୍ରଙ୍କର ସେବା କରୁଛନ୍ତି କୃଷ୍ଣ । ୯୯
ଜରାସନ୍ଧ ମାରି କ୍ଷତ୍ରିୟଙ୍କୁ ବଶ କରିଛନ୍ତି ଯଦୁପତି
ଯାଗେ ବ୍ରାହ୍ମଣଙ୍କୁ ବଶୀଭୂତ କରି ଅର୍ଜିବେ ଅକ୍ଷୟ କୀର୍ତ୍ତି । ୧୦୦
ଶକ୍ତିଦ୍ୱାରା କ୍ଷତ୍ରି ଭକ୍ତିଦ୍ୱାରା ବିପ୍ର ହୋଇଗଲେ ବଶୀଭୂତ
ଏ ଆର୍ଯ୍ୟାବର୍ତ୍ତରେ କୃଷ୍ଣ ପକ୍ଷେ କିଛି ନ ରହିବ ଅପ୍ରାପତ । ୧୦୧
ଭାରତ ବାସୀଙ୍କ ସେବକ ଯୁଧିଷ୍ଠି ଯୁଧିଷ୍ଠି ସେବକ କୃଷ୍ଣ
ଧର୍ମ ସେବକର ସେବକ ଯେ ଜନ ଶ୍ରେଷ୍ଠ ସେବକେ ଗଣନ । ୧୦୨
ସେବା କର୍ମେ ବିନା ମାନବ ମହତ୍ତ୍ୱ ହୋଇଥାଏ ପ୍ରକଟିତ
ମହତ୍ତ୍ୱ ପ୍ରତିଷ୍ଠା ହୋଇଲେ ଲୋକରେ ଯଶଖ୍ୟାତି ବିବର୍ଦ୍ଧିତ । ୧୦୩
ବାସୁଦେବଙ୍କର ସେବାଭାବ ଦେଖି ସେମାନେ ହେଲେ ବିସ୍ମିତ
ହସିହସି କୃଷ୍ଣ କହିଲେ ଜଗତେ କେଉଁ କାମ ନୁହେଁ ଶ୍ରେଷ୍ଠ । ୧୦୪
ଶ୍ରେଷ୍ଠ କାମ କଲେ ବଡ଼ ନାମ ହୁଏ ଏ କଥା ସର୍ବ ସମ୍ମତ
ଶ୍ରେଷ୍ଠ କାମେ ମୋର ବହୁତ ଆନନ୍ଦ ଯହିଁ ଅହଂଭାବ ନଷ୍ଟ । ୧୦୫
ଗାଙ୍ଗେୟ ଭାବିଲେ କେଡ଼େ ମହତ ଏ ଶ୍ରେଷ୍ଠ ବଡ଼ ଭେଦ ନାହିଁ
ଏହାଙ୍କ ଦୃଷ୍ଟିରେ ସକଳେ ସମାନ ପ୍ରଭୁଭୃତ୍ୟ ଭାବ ନାହିଁ । ୧୦୬
ଭୃତ୍ୟ ପଣ କରି ଆମ୍ଭମାନଙ୍କର ଖୋଲି ଦେଇଛନ୍ତି ଆଖି
ଗର୍ବ ଅହଂକାର ଚୂର୍ଣ୍ଣ କରିବାକୁ ଜନ୍ମିଛନ୍ତି ପଦ୍ମଆଖି । ୧୦୭
ଭୀଷ୍ମ, ଦ୍ରୋଣ, ବ୍ୟାସ ଶ୍ରୀ ବାସୁ ଦେବଙ୍କୁ କରପଦ୍ମ ଯୋଡ଼ି ହୋଇ
ମାନ୍ୟ କରିଗୁରୁ ମଣ୍ଡପେ ଅଣାଇ ବସାଇଲେ ଶ୍ରଦ୍ଧାବହି । ୧୦୮
ସୁବର୍ଣ୍ଣ ଥାଳରେ ଲକ୍ଷେ ଘୃତ ଦୀପ ପ୍ରଜ୍ୱଳିତ କରି ମନ୍ତ୍ରୀ
ସମ୍ଭ୍ରାନ୍ତେ ପ୍ରଭୁଙ୍କ ଉପର ବନ୍ଦନା କଲେ ମୁଖେ ଗାଇ ସ୍ତୁତି । ୧୦୯
ପାଦାସନ, ଅର୍ଘ୍ୟ, ବସନ, ଭୂଷଣ ଧୂପ, ଦୀପ, ଗନ୍ଧ, ପୁଷ୍ପ
ନୈବେଦ୍ୟ, ଅର୍ପଣ, ଉଦକ ପ୍ରଦାନ, ଆଚମନ, ମୁଖବାସ । ୧୧୦

ସ୍ତୁମର ସ୍ତୁଜନ ସ୍ତୁତି ଗୀତ ଗାନ, ପୁଷ୍ପାଞ୍ଜଳୀ, ପ୍ରଣିପାତ
ଷୋଡ଼ଶୋପଚାରେ ପ୍ରଭୁ ପୂଜା କରି ଧର୍ମରାଜ କୃତ୍ୟକୃତ୍ୟ । ୧୧୧
ଅନେକ ସମ୍ପଦ ଦେଲେ ଧର୍ମରାଜ ଶ୍ରୀକରେ ଘେନଲେ କୃଷ୍ଣ
ଶଙ୍ଖ ଚକ୍ର-ଗଦା ପଦ୍ମ କର ହୋଇ ଉଭା ହେଲେ ନାରାୟଣ । ୧୧୨
ପ୍ରଭୁପାଦ ଧୌତ ଉଦକକୁ ଶିରେ ସିଞ୍ଚିଲେ ଧର୍ମ ନନ୍ଦନ
ଗର୍ଭଭିତରକୁ ଥୋକାଏ ଷେପିଲେ ଥୋକାଏ କରିଲେ ପାନ । ୧୧୩
ବିଷ୍ଣୁ ପାଦ ଧୌତ ଉଦକ ପାନରେ ବିନାଶ ହେଲା କଲୁଷ
ପୋମବଂଶ ପିତୃଗଣେ ମୋକ୍ଷ ହୋଇ ବସିଲେ ବୈକୁଣ୍ଠଦେଶ । ୧୧୪
ପ୍ରଭୁ ପାଦପୂଜା କରି ପାଣ୍ଡୁପୁତ୍ର ପଦ୍ମରେ ଶରଣ ଗଲେ
ନୟନଜଳ କଣ୍ଠ ଉର୍ଦ୍ଧ୍ୱ ବାହୁ ହୋଇ ଆତ୍ମ ନିବେଦନ କଲେ । ୧୧୫
ଏକତ୍ରିଂଶ ଷୋଳ ପଦରେ ଅଧ୍ୟାୟ ଏଠାରେ ହୋଇଲା ଶେଷ
ଗୀତରେ ଭଣିଲା ମୂଢ଼ ବୃନ୍ଦାବନ କୃଷ୍ଣ ଚରିତ ମାନସ । ୧୧୬

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା – ଦ୍ୱାରକା ଲୀଳା ଖଣ୍ଡେ ଅଗ୍ରପୂଜ୍ୟ ଉପାଖ୍ୟାନେ
ନାମ ଏକତ୍ରିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ । ଶ୍ରୀକୃଷ୍ଣାର୍ପଣମସ୍ତୁ ।

ବୋଲି –

ବାଇ ମନ ହୋ
ଅଭିରାମ ଶ୍ୟାମ ନାମକୁ ଭଜ ।
ଭ୍ରମର ଗୁମ୍ଫାରେ ଭଜନ ଲାଗିଛି ଅହର୍ନିଶି ନାମ ବ୍ରହ୍ମକୁ ହେଜ ।ଘୋଷା।
ଅର୍ଜୁନକୁମର ଅଭିନ୍ନ ସୁନ୍ଦର ଭକ୍ତ ପ୍ରାଣପ୍ରିୟ ରସିକ ରାଜ
ଭକ୍ତ ସାଙ୍ଗେ ଲୁଚକାଳି ଖେଳୁଛନ୍ତି ଅନାହତ ପୁରେ ଅଜପାକୁଞ୍ଜ । ୧
ତ୍ରିକୁଟରେ ନେତ୍ର ଥୟ ଯେ କରିଛି ଦର୍ଶନ କରିଛି ବ୍ରହ୍ମଙ୍କ ତେଜ
କାନସିରି ଫୁଲ ବର୍ଣ୍ଣ ସମତୁଲ ଜ୍ୟୋତିଯନ୍ତ୍ର ପାତି ଜ୍ୟୋତିକୁ ହେଜ । ୨
ଶିଖରୂଳେ ଆଖି ରଖିଲେ ନ ଲାଖି ଝିଙ୍କି ନେବ ରସ ରାଜ
ଯେବେ ତୁ ଟାଣିଲେ ନ ଫେରିବ ଆଉ ଲାଖିଯିବ ପାଦ ସରୋଜ ।୩

—●—

# ଦ୍ୱାବିଂଶ ଅଧ୍ୟାୟ

## ଶିଶୁପାଳ ବଧ

( ରାଗ – ବଙ୍ଗଳାଶ୍ରୀ )

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ କର ଆହେ ସୁଜ୍ଞଜନ
ପଦପଦକରେ କୃଷ୍ଣ ପ୍ରେମରସ ସରିତ ପ୍ରବହମାନ । ୧
ଆଦ୍ୟେ ଶ୍ରୀକୃଷ୍ଣଙ୍କୁ ଅଗ୍ର ପୂଜ୍ୟ ମାନଂ ଦେବାରୁ କୁନ୍ତୀ କୁମର
ପ୍ରତିବାଦ କରି ଶିଶୁପାଳ ବୀର କଲା ବିଷ ଉଦ୍‌ଗାର । ୨
ଯୁଧିଷ୍ଠିର, ବ୍ୟାସ, ଭୀଷ୍ମ, ଦ୍ରୋଣ, କୃଷ୍ଣ ସଭଙ୍କ ଦୁର୍ଗୁଣ ଗାଇ
ତିରସ୍କାର କଲା ସଭାରେ ପାମର ବଡ଼ିମାପଣ ଦେଖାଇ । ୩
କହିଲା ଏମନ୍ତ ପବିତ୍ର ସଭାରେ ଅନେକ ସମ୍ମାନୀୟ
ବ୍ୟକ୍ତିମାନେ ଉପସ୍ଥିତ ଥାଉଁଥାଉଁ କପରି କଲ ଅନ୍ୟାୟ ? ୪
କୃଷ୍ଣଙ୍କୁ କପରି ପ୍ରଥମରେ ଅର୍ଘ୍ୟ ପ୍ରଦାନ କଲ ରାଜନ
ଏଥୁଁ ଜଣାଯାଏ ତୁମ୍ଭମାନଙ୍କର ଚିତ୍ତବୃତ୍ତି ଅଟେ ହୀନ । ୫
ଭକ୍ଷକ ବ୍ରାହ୍ମଣ ବୋଲିରେ ପଣ୍ଡିତ ଅପୂଜ୍ୟ କଲ ପୂଜନ
ସାଆଁନ୍ତେ ନ ପୂଜ ସାମନ୍ତେ ପୂଜିଲ ହରାଇ ଆପଣା ଜ୍ଞାନ । ୬
ଏ ଜାଗର କର୍ତ୍ତା ରାଜାଯୁଧିଷ୍ଠିର ଜାରଜାତକା କଥିତ
ତାଙ୍କ ପରାମର୍ଶ ଦାତା ଯେଉଁ ଭୀଷ୍ମ ନିମ୍ନଗାମିନୀର ସୁତ । ୭
କୃଷ୍ଣଙ୍କୁ ଯେ ଅର୍ଘ୍ୟ ପ୍ରଦାନ କରିଲେ ସେ ଦୁଇ ଜନଙ୍କ ସୁତ
ଯାହାଙ୍କୁ ସେ ଅର୍ଘ୍ୟ ପ୍ରଦାନ କରିଲେ ସେ ନୀଚକୁଳେ ସମ୍ଭୂତ । ୮
ଏପରି ଅନ୍ୟାୟ ଅବିଚାର କଥା ଦେଖି ଏ ରାଜ ସଭାରେ
ମୌନବ୍ରତ କରି ଯେ ସର୍ବେ ରହିଛ ମୂକ ବଧିର ପରିରେ । ୯
ଯୋଗ୍ୟ ବ୍ୟକ୍ତିଙ୍କର ପ୍ରକୃତ ସମ୍ମାନ ନାହିଁ ଏହି ସଭାସ୍ଥଳେ
ଶିଶୁପାଳର ଏ ଦୃଢ଼ୋକ୍ତି ଶ୍ରବଣେ ଦୁଷ୍ଟନୃପେ ମଜ୍ଜିଗଲେ । ୧୦
କରତାଳି ଦେଇ ସମର୍ଥନ କଲେ ଉତ୍ସାହିତ ଶିଶୁପାଳ
କହିଲା ଏ ସଭା ସ୍ଥଳେ ଉପସ୍ଥିତ ବୃଦ୍ଧ ମାନ୍ୟ ମହୀପାଳ । ୧୧

ମାତ୍ର ସେମାନଙ୍କୁ ମାନ୍ୟ ନ କରଣ କୃଷ୍ଣେ କଲ ଅର୍ଘ୍ୟଦାନ
ଯୋଗ୍ୟତାର ଠାରୁ ଅଧିକ [illegible] ଯୋଗ୍ୟେ କଲ ପ୍ରଦାନ । ୧୨
କୌଣସି ରାଜ୍ୟର ରାଜା ସେ ନୁହଇଁ ନୁହେଁ ମଧ୍ୟ ରାଜସୁତ
ବୟସରେ ଜ୍ୟେଷ୍ଠ ମଧ୍ୟ ସେ ନୁହଇଁ ପରନ୍ତୁ ଅଟେ କନିଷ୍ଠ । ୧୩
ଅଗ୍ରପୂଜ୍ୟ ବ୍ୟକ୍ତି ଗଣଙ୍କ ମଧ୍ୟରେ ନୁହେଁ ସେ ତାଲିକା ଭୁକ୍ତ
ବିଶେଷେ ତା ପିତା ବୃଦ୍ଧ ବସୁଦେବ ଏ ସଭାରେ ଉପସ୍ଥିତ । ୧୪
ତୁମ୍ଭ ପ୍ରିୟ କାର୍ଯ୍ୟ ସମ୍ପାଦନ ଜାଣି ବୋଲି ଯଦି ଭାବୁଥାଅ
ବନ୍ଧୁର ବୁଦ୍ଧିରେ ତାକୁ ଅର୍ଘ୍ୟ ଦେବା ଠିକ୍ ନୁହେଁ ନରବର । ୧୫
କାରଣ ତୁମ୍ଭର ଚିର ଶୁଭଧ୍ୟାୟୀ ପୂଜ୍ୟ ଦ୍ରୁପଦ ରାଜନ
ସଭାସ୍ଥଳେ ବିଦ୍ୟମାନ ଥାଇଁ କୃଷ୍ଣେ କିମ୍ପା କଲ ଅର୍ଘ୍ୟଦାନ ? ୧୬
କୃଷ୍ଣଙ୍କୁ ଯଦିବା ଆଚାର୍ଯ୍ୟ ବୋଲିଣ ତୁମ୍ଭେମାନେ ଭାବୁଥାଅ
ଦ୍ରୋଣାଚାର୍ଯ୍ୟ ଉପସ୍ଥିତ ଥାଇଁ ଥାଇଁ ଯୋଗ୍ୟ କି ନନ୍ଦ ତନୟ ? ୧୭
ଋତ୍ୱିକ ଭାବିଣ କୃଷ୍ଣଙ୍କୁ ଯଦ୍ୟପି ଅଗ୍ର ମାନ୍ୟ ସ୍ଥାନ ଦିଅ
ଋତ୍ୱିକ ଗରିଷ୍ଠ ଋଷି ବ୍ୟାସଦେବ ପ୍ରତି ଏହା ତ ଅନ୍ୟାୟ ? ୧୮
ଆହେ ଯୁଧିଷ୍ଠିର ଏ ରାଜ ସଭାରେ ଶସ୍ତ୍ରଶାସ୍ତ୍ରରେ ନିପୁଣ
ପରଶୁରାମ ବିଦ୍ୟା ବିଶାରଦ ଦ୍ରୋଣ,ଶାନ୍ତନୁ ନୃପ ନନ୍ଦନ । ୧୯
ଉପସ୍ଥିତ ଥାଇଁ ତାଙ୍କୁ ଅଗ୍ର ପୂଜ୍ୟ ନ କଲ କିମ୍ପା ରାଜନ
ମାନୀ ଦୁର୍ଯ୍ୟୋଧନ ମହାଦାନୀ କର୍ଣ୍ଣ ନ କଲ କିମ୍ପା ସମ୍ମାନ ? ୨୦
ସେ ନୁହେଁ ଋତ୍ୱିକ, ନୃପତି, ଆଚାର୍ଯ୍ୟ କିମ୍ପା ଦେଲ ତାକୁ ଅର୍ଘ୍ୟ
ଏ ମହାସଭାକୁ ଡକାଇ ଲଜ୍ଜିତ ନ କଲ କି ନୃପବର୍ଗ ? ୨୧
ସଭା ମୁଖ ଚାହିଁ ବୋଲେ ଶିଶୁପାଳ ଆହେ ନରପତିଗଣ
ରାଜଚକ୍ରବର୍ତ୍ତୀ ହେବାକୁ ଯୁଧିଷ୍ଠି ଯଦି ଆମ୍ଭେ ମତଦାନ । ୨୨
କରିଛେ ସଭାରେ ତଦ୍ୱାରା ତାଙ୍କର ପରାକ୍ରମେ ଭୀତ ହୋଇ
କିମ୍ବା କୃପା ପ୍ରାପ୍ତି ଅବା ଧନଲାଭ ଆଶା ରଖି କରି ନାହିଁ । ୨୩
ଅଥବା ସେ ଆମ୍ଭ ଶତ୍ରୁତା କରିଲେ ହେବ ଆମ୍ଭ ସର୍ବନାଶ
ଏ ପ୍ରକାର ଭୟ ନାହିଁ ଆମ୍ଭ ମନେ ନୋହୁ ଆମ୍ଭେ କଣା ଦାସ ।୨୪
ସେ ଧର୍ମାନୁସାରେ ପ୍ରଜା ପାଳିବାରୁ ତହିଁକ ରକ୍ଷଣ ଦୃଷ୍ଟି
ରାଜଚକ୍ରବର୍ତ୍ତୀ ହୋଇବାକୁ ଆମ୍ଭେ ଦେଇଥିଲେ ତ ସମ୍ମତି । ୨୫

ମାତ୍ର ସେ ସଭାରେ ଆମ୍ଭମାନଙ୍କର କରିଛନ୍ତି ଅସମ୍ମାନ
ତେଣୁ ତାଙ୍କୁ ଆମ୍ଭେ ଧର୍ମାତ୍ମା ବୋଲିଣ କମ୍ପାଇ କରିବା ମାନ୍ୟ ? ୨୬
ଏଣୁ ତାଙ୍କୁ ଆମ୍ଭେ ଧର୍ମାତ୍ମା ନ କହି ଦୁରାତ୍ମା କହିବା ଭଲ
ଭଣ୍ଡ ଧାର୍ମିକ, ଠକ, ପ୍ରବଞ୍ଚକ ଛଳି ପୂଜକଙ୍କୁ ସଲ । ୨୭
ସଭାରେ ଅଯୋଗ୍ୟ ପାତ୍ରକୁ ଆଦ୍ୟରେ ଅର୍ଘ୍ୟ ପ୍ରଦାନ କରିଣ
କେବଳ ଆମ୍ଭଙ୍କୁ ନୁହେଁ ସେ ନିଜକୁ କରି ଅଛନ୍ତି ନିନ୍ଦନ । ୨୮
କୃଷ୍ଣ ମୁଖ ଚାହିଁ ବୋଲେ ଶିଶୁପାଳ ଶୁଣରେ ନନ୍ଦ ନନ୍ଦନ
ଭାବ ବିହ୍ୱଳିତ ହୋଇ ଯୁଧିଷ୍ଠିର ଯେବେ କଲେ ଅର୍ଘ୍ୟଦାନ । ୨୯
ତୁମ୍ଭେ କେଉଁପରି ଗ୍ରହଣ କରିଲୁ ଭୁଲି ସଭା ଶିଷ୍ଟମତି
କି ଅବା ସମ୍ମାନ ପାଇଁ ତୁ ବ୍ୟାକୁଳ ଥିଲୁ ଆରେ ମୂଢ଼ମତି ? ୩୦
ବଳକା ଅନ୍ନର ତଳୁ ଯେଉଁପରି ନିଅନ୍ତି ନାହିଁ କେ ଜନ
ଶ୍ୱାନର ଆହାର ହୁଏ ଅବଶେଷେ ତଦ୍ରୂପ ତୋର ସମ୍ମାନ । ୩୧
ତୋତେ ପରିହାସ କରିବା ନିମନ୍ତେ ଏ ସବୁର ଆୟୋଜନ
ତଦ୍ୱାରା ତୋହର ସମ୍ମାନରେ ହାନି ହୋଇଅଛି ବୋଲି ଘେନ । ୩୨
ତୋତେ ଜା ଯଦ୍ୟପି ଅଜ୍ଞାନୀ ପାଣ୍ଡବେ ଅର୍ଘ୍ୟ କରିଲେ ପ୍ରଦାନ
ତୁ ତୋର ଯୋଗ୍ୟତା ବିଷୟ ନ କରି କିପରି କଲୁ ଗ୍ରହଣ ? ୩୩
ଅଗ୍ରପୂଜ୍ୟ ପରି ମହାର୍ଘ୍ୟ ସମ୍ମାନ ଗ୍ରହଣୁ ହୁଏ ପ୍ରତିତ
ଗୋପନରେ ଯଜ୍ଞ ଘୃତ ପାନେ ଶ୍ୱାନ ହୁଏ କି ଗୌରବାନ୍ୱିତ ? ୩୪
ଅନ୍ଧକୁ ସୁନ୍ଦର ଦ୍ରବ୍ୟ ପ୍ରଦର୍ଶନ କିମ୍ବା କ୍ଲୀବେ କନ୍ୟାଦାନ
କଲଭଳି ଏହା ଉପହାସ କଥା ବୋଲି ତୁ ମନରେ ଘେନ । ୩୫
ରାଜସିଂହାସନୁ ବଞ୍ଚିତ ବ୍ୟକ୍ତିର ପକ୍ଷେ ରାଜୋଚିତ ପୂଜା
ଗ୍ରହଣ କରିବା ନିଶ୍ଚିତ ଭାବରେ ଅଟଇ ଦାରୁଣ ଲଜ୍ଜା । ୩୬
ରାଜଚକ୍ରବର୍ତ୍ତୀ ପଦ ଅଭିଳାଷୀ ମନ୍ଦ ବୁଦ୍ଧି ଯୁଧିଷ୍ଠିର
ଜରଦ୍‌ଗବ ଭୀଷ୍ମ ହୀନମନ୍ତ ଦ୍ରୋଣ ସବେ ଏକ ଆଖଡ଼ାର । ୩୭
ଏମାନଙ୍କ ସଙ୍ଗ ତେଜି ପଳାଇବା ସ୍ୱଜନ୍ୟାଚିତ ପ୍ରମାଣ
କଟୂକ୍ତି ବଚନ କହି ଶିଶୁପାଳ ଉଠିଲା ସଭା ତେଜିଣ । ୩୮
ଶିଶୁପାଳ ସଙ୍ଗେ ଦୁଷ୍ଟ ରାଜାମାନେ ଉଠିଲେ ତେଜି ଆସନ
ଶିଶୁପାଳର ଏ ଆସ୍ଫାଳନ ଦେଖି କୋଳିଲେ ପାଞ୍ଚାଳ ଗଣ । ୩୯

" ଆହେ ଶିଶୁପାଳ ହେଲ କି ପାଗଳ ଆପଣା ଜ୍ଞାନ ହରାଇ
ସର୍ବମାନ୍ୟ, ସର୍ବ ବନ୍ଦ୍ୟ ଯେଉଁ କୃଷ୍ଣ ତାହାଙ୍କୁ ଚିହ୍ନିଲ ନାହିଁ ? ୪୦
ଯାଦବ ବଂଶରେ ସମ୍ଭୂତ ଶ୍ରୀକୃଷ୍ଣ ବସୁଦେବଙ୍କର ସୁତ
ତାଙ୍କର ପିଉଷୀ ତୁମ୍ଭର ଜନନୀ ପାଣ୍ଡବେ ମଧ୍ୟ ସୌଭ୍ରାତ ! ୪୧
ଭାରତର ଶ୍ରେଷ୍ଠ ରାଜବଂଶେ ଭଗ୍ନୀ ଦେଇଛନ୍ତି ବସୁଦେବ
ଭୋଜବଂଶୁ ପୁଣି କନ୍ୟା ନେଇଛନ୍ତି ବୃଷ୍ଣିବଂଶୀ ବସୁଦେବ । ୪୨
ତୁମ୍ଭର ଆତ୍ମୀୟ ଶ୍ରୀକୃଷ୍ଣ, ପାଣ୍ଡବେ, ବନ୍ଧୁ, ବାନ୍ଧବ, ସ୍ୱଜନ
ମାତକୂଳେ ଜାତ କହିବାର ଅର୍ଥ ଅଜ୍ଞତାର ଏ ପ୍ରମାଣ । ୪୩
ବିଶୁଦ୍ଧ କ୍ଷତ୍ରିୟ କୁଳେ କୃଷ୍ଣ ଜନ୍ମ ରାଜବଂଶେ ଅଗ୍ରଗଣ୍ୟ
ପିତାମାତା ଦୁଇ କୁଳରେ ଗରିଷ୍ଠ କିମ୍ପା କହ କରି ନ୍ୟୂନ ? ୪୪
ଧର୍ମରାଜ ଯୁଧିଷ୍ଠିର ମହାମତି ଶିଶୁପାଳ ମୁଖ ଚାହିଁ
କହିଲେ ବିନୀତ ଅନୁନୟ ହୋଇ ଆହେ ଚେଦି ନରସାଇଁ । ୪୫
ତୁମ୍ଭର ମାଉସୀ ପୁଅ ଭାଇ ଆମ୍ଭେ ଆପଣଙ୍କୁ କରୁ ମାନ୍ୟ
ଆପଣଙ୍କ ମୁଖେ ଅନୁଚିତ ବଚନ ଶୋଭାପାଏ ନାହିଁ ଜାଣ । ୪୬
ଏ ମହାସଭାରେ ଆପଣଙ୍କ ଠାରୁ ବହୁ ବୟସ୍କ ନୃପତି
ଜ୍ଞାନୀ, ମାନୀ,ଗୁଣୀ ଉପସ୍ଥିତ ଥାଇ ମୌନ ହୋଇ ବସିଛନ୍ତି । ୪୭
ସେମାନେ କୃଷ୍ଣଙ୍କ ଅଗ୍ରମାନ୍ୟତାକୁ ନୀରବରେ ସମର୍ଥନ
କରୁଥିବା କାଳେ ଆପଣ ସଭାରେ ଉତ୍ତେଜିତ କି କାରଣ ? ୪୮
କୃଷ୍ଣ ଓ ଭୀଷ୍ମଙ୍କୁ ଆମେ ଓ କୌରବେ ବୁଝିଅଛୁଁ ଯେଉଁପରି
ଆପଣ ସେପରି ବୁଝିତ ନାହାଁନ୍ତି ମୋ ବିଚାରେ ଦଣ୍ଡଧାରୀ । ୪୯
ସେ ଦୁଇ ଜଣଙ୍କ ସମ୍ବନ୍ଧେ ଆପଣ ଉପଯୁକ୍ତ ତତ୍ତ୍ୱମାନ
ଲାଭ କରିବାକୁ ଆଶା କରୁ ଆମ୍ଭେ ଭୁଲ ଚବପର ଜ୍ଞାନ । ୫୦
ଧର୍ମରାଜଙ୍କର ବିନୟ ବଚନ ଶୁଣି କହୁଛନ୍ତି ଭୀଷ୍ମ
ଆହେ ଯୁଧିଷ୍ଠିର କୃଷ୍ଣ ଅନାଦର କରେ ଯେ ତା ମତି ଭ୍ରମ । ୫୧
ସେହିପରି ମୂଢ଼ ବ୍ୟକ୍ତି ନିକଟରେ ଅନୁନୟ ଓ ବିନୟ
ପ୍ରକାଶ କରିବା ଅନ୍ୟାୟ ହୋଇବ ତହିଁକି ନ ଦିଅ ମନ । ୫୨
ସଭାରେ ଏପରି ନୃପତି ନାହାଁନ୍ତି ଯାହାଙ୍କୁ ତେଜ ବଳରେ
ପରାଜିତ କରି ନାହାନ୍ତି ଶ୍ରୀକୃଷ୍ଣ ବାରମ୍ବାର ସମରରେ । ୫୩

ଶ୍ରୀକୃଷ୍ଣ କେବଳ ଆମର ଉପାସ୍ୟ, ନମସ୍ୟ ନୁହନ୍ତି ଜାଣ
ନିଖିଳ ଜଗତେ ପରମ ପୂଜ୍ୟ ସେ ସକଳେ କରନ୍ତି ମାନ୍ୟ । ୫୩
ଜ୍ଞାନାର୍ଜନୀ, କାର୍ଯ୍ୟକାରିଣୀ, ତଥା ଚ ଲୋକ ରଞ୍ଜନ ପ୍ରବୃତ୍ତି
ବିକାଶ ଘଟାଇ ଦେବକୀ ନନ୍ଦନ ପୂଜ୍ୟ ଚରାଚର ସୃଷ୍ଟି । ୫୫
ଯାହା ଯୋଗୁଁ କୃଷ୍ଣ ରାଜନୀତି କ୍ଷେତ୍ରେ ସମାଜ ବ୍ୟବସ୍ଥାପକ
ଗୌରବାନ୍ୱିତ ହୋଇପାରିଛନ୍ତି ଏଇସାରା ମର୍ତ୍ତ୍ୟଲୋକ । ୫୬
ବାଲ୍ୟ ଜୀବନରୁ ଆରମ୍ଭ କରିଣ ଆଜି ଦିବସ ପର୍ଯ୍ୟନ୍ତ
ଉନ୍ନତି ପଥରେ ଅଗ୍ରସର ହୋଇ ସ୍ୱଶକ୍ତିରେ ପ୍ରତିଷ୍ଠିତ । ୫୭
ଧର୍ମ ଅନୁସାରେ ଲୋକେ ସ୍ୱକର୍ତ୍ତବ୍ୟ ପାଳନ କରିବା ପାଇଁ
ପ୍ରେରିତ କରିବା ଏକମାତ୍ର ଧର୍ମ ଜୀବନର ବ୍ରତ ହୋଇ । ୫୮
ସିଏ ସ୍ୱୟଂ ଧର୍ମ ପ୍ରତି ନିଷ୍ଠା ରଖି ଧର୍ମର ରହସ୍ୟ ଜାଣି
ଧର୍ମ ଉପଦେଶ ଦେଇଛନ୍ତି ଲୋକେ ଧର୍ମ ଉପଦେଷ୍ଟା ଭଣି । ୫୯
ଶାସ୍ତ୍ର ପୁରାଣରେ କଥିତ ହୋଇଛି ଯହିଁ କୃଷ୍ଣ ତହିଁ ଧର୍ମ
ଧର୍ମ ଯେଉଁ ଠାରେ କୃଷ୍ଣ ସେହିଠାରେ ଧର୍ମକୃଷ୍ଣ ଭିନ୍ନାଭିନ୍ନ । ୬୦
ଏହି କାରଣରୁ ଯୋଗେଶ୍ୱର କୃଷ୍ଣ କଥିତ ପୁରୁଷୋତ୍ତମ
ମାନବୀୟ ଭାବନା ଉତ୍କର୍ଷତାକୁ କରୁଛି ପ୍ରତିପାଦନ । ୬୧
କୃଷ୍ଣ ଯେଉଁପରି ସଂଗ୍ରାମ ମୁଖର ସମଗ୍ର ଜୀବନ କାଳ
ଜନନୀ ଜଠରୁ ଜନମିଲା ଦିନୁ ହରିଛନ୍ତି ଶତ୍ରୁବଳ । ୬୨
ତେଣୁ କୃଷ୍ଣଙ୍କର ଚରିତ, ବ୍ୟକ୍ତିତ୍ୱ ଭାରତ ଭୂମଣ୍ଡଳରେ
ଅଦ୍ୱିତୀୟ ଭାବେ ସ୍ୱୀକୃତ ଲଭିଛି ପୁରାଣ ଇତିହାସରେ । ୬୩
ଶ୍ରୀକୃଷ୍ଣ ଚରିତ ଅତ୍ୟନ୍ତ ପବିତ୍ର ଶାସ୍ତ୍ର ପୁରାଣରେ ସାର
ସକଳ ଗୁଣର ପରିପୂର୍ଣ୍ଣ ଶକ୍ତି ରହିଅଛି କୃଷ୍ଣଙ୍କର । ୬୪
ଏକାଧାରରେ ସେ ରାଜନୀତିଜ୍ଞ ତଥା ଧର୍ମୋପଦେଶକ
ଧର୍ମ ସଂସ୍ଥାପକ ଧର୍ମ ସଂସ୍କାରକ ନବକ୍ରାନ୍ତି ବିଧାୟକ । ୬୫
ଯୋଗୀ, ଯୋଗେଶ୍ୱର, ଆଧ୍ୟାତ୍ମବାଦୀ ସେ ଜ୍ଞାନକର୍ମ ଉପାସକ
ଆର୍ଯ୍ୟ ମର୍ଯ୍ୟାଦାର ଯଥାର୍ଥ ରକ୍ଷକ ଧର୍ମ ନ୍ୟାୟର ପାଳକ । ୬୬
ସ୍ୱୟଂଶକ୍ତି ବଳେ ଆଦର୍ଶ ସାମ୍ରାଜ୍ୟ କରି ଅଛନ୍ତି ସ୍ଥାପନ
ରାଜାମାନଙ୍କର ନିର୍ମାତା ଅଟନ୍ତି ସ୍ଥାପିଛନ୍ତି ରାଜଧର୍ମ । ୬୭

ରାଜସିଂହାସନ ଠାରୁ ଦୂରେ ରହି ସାର୍ବଭୌମ୍ୟ ସାମ୍ରାଜ୍ୟର
ସଂସ୍ଥାପକ ଭାବେ କଠିନ ସମସ୍ୟା ସମ୍ମୁଖୀନ ନିରନ୍ତର । ୬୮
ତାଙ୍କର ବଳିଷ୍ଠ ନେତୃତ୍ୱ ବଳରେ ସଦୁପାୟରେ ସଙ୍ଗଠିତ
ଧର୍ମ ରାଜତନ୍ତ୍ର ପ୍ରତିଷ୍ଠା ଦିଗରେ କଠିନ କର୍ତ୍ତବ୍ୟନିଷ୍ଠ । ୬୯
ସର୍ବଜନ ମାନ୍ୟ ସର୍ବ ଜନାଦୃତ ସର୍ବଜନ ପୂଜ୍ୟ କୃଷ୍ଣ
ସକଳ କର୍ମର ପ୍ରେରଣା ଦାୟକ ସକଳ ଜନ ବନ୍ଦନ । ୭୦
ଏ ଧର୍ମ ସଭାରେ ବହୁତ ବୟସ୍କ ତଥା ପୂଜନୀୟ ବ୍ୟକ୍ତି
ଉପସ୍ଥିତ ଥିଲେ ମଧ୍ୟ ମୁଁ କୃଷ୍ଣଙ୍କୁ ଜାଣେ ଯୋଗ୍ୟତମ ବ୍ୟକ୍ତି । ୭୧
ଅସୀମ ଶକ୍ତିର ଅଧିକାରୀ କୃଷ୍ଣ ବାସୁଦେବ ନାମେ ଖ୍ୟାତ
ତାଙ୍କର ଭିତରେ ଅଖିଳ ବ୍ରହ୍ମାଣ୍ଡ ଗୋଟି ନିତ୍ୟ ବିରାଜିତ । ୭୨
ବିପ୍ରକୁଳେ ଜ୍ଞାନ ଗରିଷ୍ଠ ଯେ ବିପ୍ର ଆଦ୍ୟରେ ପାଆନ୍ତି ପୂଜା
କ୍ଷତ୍ରିୟ ଗଣରେ ଯିଏ ବଳବାନ ଆଦ୍ୟରେ ପୂଜନ୍ତି ପ୍ରଜା । ୭୩
ରାଜନ୍ୟ ବର୍ଗରେ ପୂଜ୍ୟ ସେ ଅଟନ୍ତି ରାଜାଏ କରନ୍ତି ମାନ୍ୟ
ବୈଶ୍ୟଙ୍କ ମଧ୍ୟରେ ଧନାଢ୍ୟ ବ୍ୟକ୍ତିଙ୍କୁ ମିଳଇ ଆଦ୍ୟ ସମ୍ମାନ । ୭୪
ନିଜର ସମାଜ ମଧ୍ୟେ ଅଗ୍ରପୂଜ୍ୟ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ
କିନ୍ତୁ କୃଷ୍ଣଙ୍କର ପୂଜା ସର୍ବଜନ ବିଦିତ ହୋ ନିରଙ୍କୁଶ । ୭୫
ଦୁଇଟି କାରଣ ରହିଛି ତହିଁରେ ଶୁଣ ତାହା ଧର୍ମରାଣ
ବେଦବେଦାଙ୍ଗରେ ପାରଦର୍ଶୀ କୃଷ୍ଣ ଏହା ପ୍ରଥମ କାରଣ । ୭୬
ଅସୀମ ଶକ୍ତିର ଅଧିକାରୀ କୃଷ୍ଣ ଏହା ଦ୍ୱିତୀୟ କାରଣ
ଯଶ, ଶ୍ରୀ, ଦକ୍ଷିଣା, କୀର୍ତ୍ତି, ଧୈର୍ଯ୍ୟ, ବୁଦ୍ଧି, ଲଜ୍ଜା, ଶୌଚ, ବିଦ୍ୟା, ଦାନ
ବିନୟ, ସନ୍ତୋଷାଦି ଗୁଣାବଳୀର ସେ ତ ସାଗର ସଦୃଶ
ଏକାଧାରେ ସିଏ ଋତ୍ୱିକ, ସମ୍ବନ୍ଧୀ, ସ୍ନାତକ, ଗୁରୁ ବିଶେଷ । ୭୮
ପ୍ରିୟଜନ ପଣେ ସେ ପରମ ପ୍ରିୟ ବିଶ୍ୱାସୀ, ବନ୍ଧୁ, ମଇତ୍ର
ତାଙ୍କପରି ବନ୍ଧୁ ନିଖିଳ ଜଗତେ ନ ମିଳନ୍ତି ଜଣେ ମାତ୍ର । ୭୯
ତେଣୁ ସେ ସଭିଙ୍କ ପ୍ରଣମ୍ୟ, ନମସ୍ୟ ମାନ୍ୟ ଗଣେ ସର୍ବମାନ୍ୟ
ଚରାଚର ବିଶ୍ୱ ସୃଷ୍ଟି ସ୍ଥିତି-ଲୟ କର୍ତ୍ତା ମଧ୍ୟେ ଅଗ୍ରଗଣ୍ୟ । ୮୦
ଅବ୍ୟକ୍ତ ପ୍ରକୃତି ସତ୍ୟ ସନାତନ ସର୍ବଭୂତ ଅଧୀଶ୍ୱର
ଅନାଦି, ଅନନ୍ତ, ନିତ୍ୟ ନିରଞ୍ଜନ ଜଗତର ମୂଳାଧାର । ୮୧

ମନ, ବୁଦ୍ଧି, ଅହଂକାର, ମହତତ୍ତ୍ୱ ସଙ୍ଗେ ମଞ୍ଚ ମହାଭୂତ
ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ ନକ୍ଷତ୍ରାଦି ଦୃଶ୍ୟ ଅଦୃଶ୍ୟ ବସ୍ତୁ ସମସ୍ତ । ୮୨
ଶ୍ରୀକୃଷ୍ଣଙ୍କ ଠାରେ ନିତ୍ୟ ପ୍ରତିଷ୍ଠିତ ସର୍ବ ଶକ୍ତିର ଆଧାର
ବେଦର ମଧ୍ୟରେ ଯେହ୍ନେ ଅଗ୍ନି ହୋତ୍ର ଛନ୍ଦରେ ଗାୟତ୍ରୀ ସାର । ୮୩
ମନୁଷ୍ୟ ମାମାନଙ୍କ ମଧ୍ୟରେ ଯେପରି ମାନନୀୟ ନରପତି
ଜଳସ୍ରୋତ ମଧ୍ୟେ ସାଗର ଯେପରି ବ୍ୟାପୀଅଛୁ ବସୁମତୀ । ୮୪
ନକ୍ଷତ୍ରମାନଙ୍କ ମଧ୍ୟରେ ଯେପରି ଚନ୍ଦ୍ର ଜ୍ୟୋତ୍ସ୍ନା ବିକଶିତ
ତେଜସ୍କ୍ରିୟତାରେ ତପନ ଯେସନେ ଗଗନେ ଉଦ୍‌ଭାସିତ । ୮୫
ପର୍ବତ ମାନଙ୍କ ମଧ୍ୟରେ ଯେପରି ପ୍ରସିଦ୍ଧ ସୁମେରୁ ଗିରି
ପକ୍ଷୀଙ୍କ ମଧ୍ୟରେ ବିନତା ନନ୍ଦନ ଯେହ୍ନେ ଶ୍ରେଷ୍ଠ ପକ୍ଷଧାରୀ । ୮୬
ସେହିପରି ଏହି ସୃଷ୍ଟି ସମ୍ଭାରରେ କୃଷ୍ଣ ହିଁ ଅତୁଳନୀୟ
ତାହାଙ୍କ ମହତ୍ତ୍ୱ ବୁଝିବା କ୍ଷେତ୍ରରେ ଶିଶୁପାଳ ଶିଶୁପ୍ରାୟ । ୮୭
ଶିଶୁପାଳ ପରି ଶ୍ରୀକୃଷ୍ଣ ବିଦ୍ୱେଷୀ ମୂଢବ୍ୟକ୍ତି ଏ ସଭାରେ
ବସିବାରେ ଆଦୌ ଅଧିକାର ନାହିଁ ରହିଁଲେ ଯାଉ ବାହାରେ । ୮୮
ବ୍ୟାସ ବୋଲୁଛନ୍ତି ଏ ମହା ସଭାରେ ପଦ୍ମ ପଳାଶ ନୟନ
କୃଷ୍ଣେ ଅନୁରକ୍ତ ନ ଥିବା ଲୋକର ନାହିଁ କିଛୁ ପ୍ରୟୋଜନ । ୮୯
ତା ମୁଖ ଦର୍ଶନ ତା ସଙ୍ଗେ ଆଳାପ କରିବା ଅଟେ ବର୍ଜନ
ସଭାସ୍ଥଳ ଛାଡ଼ି ପଳାଇବା ଭଲ ବିଚାରନ୍ତି ସାଧୁଜନ । ୯୦
ବ୍ୟାସଦେବଙ୍କର ବକ୍ତବ୍ୟ ଶେଷରେ ସହଦେବ ମନ୍ତ୍ରୀବର
କହିଲେ କୃଷ୍ଣଙ୍କ ଅଗ୍ର ପୂଜନରେ ଅସହ୍ୟ ବୋଧ ଯାହାର । ୯୧
ସେହିପରି ନୀଚ ଲୋକର ମସ୍ତକେ କରେ ମୁଁ ପାଦ ପ୍ରହାର
ସହଦେବଙ୍କର ଅହଂପୂର୍ଣ୍ଣ କଥା ଶୁଣି ଦୁଷ୍ଟ ଗରଗର । ୯୨
ଯାଗଶାଳେ ଗୋଳମାଳ କରିବାକୁ ହୋଇଗଲେ ସଙ୍ଗଠିତ
ଏହା ଦେଖି ଧର୍ମରାଜ ଯୁଧିଷ୍ଠିର ଅତିଶୟ ବିଚଳିତ । ୯୩
ଧର୍ମ ନନ୍ଦନଙ୍କୁ ସାନ୍ତ୍ୱନା ଦେଇଣ କହୁଛନ୍ତି ଗଙ୍ଗାସୁତ
ଭୟର କାରଣ ନାହିଁ ଧର୍ମରାଜ ହେ ଦୂତ କର ଚିତ୍ତ । ୯୪
ସିଂହ ଶାବକର କ୍ଷତି ସାଧନରେ ଶୃଗାଳେ ହେବେ କି କ୍ଷମ
ଶୋଇଥିବା ସିଂହ ସମ୍ମୁଖରେ ଶ୍ୱାନ ପ୍ରାୟ କରନ୍ତି ଗର୍ଜନ । ୯୫

ବୃଷ୍ଣି ବଂଶର ଏ ପରାକ୍ରମୀ ସିଂହ ସମ୍ମୁଖେ ନୃପେ ମଣ୍ଡନ
ଥିବାକାଳେ ଏହି ହତଭାଗ୍ୟ କରେ ଅଯଥାରେ ଗରଜନ । ୯୬
କେଶରୀ ଶାବକ ଜାଗ୍ରତ ହୋଇଲେ ଚଳାଇବ ସ୍ଥାନ ତେଜି
ସେ ଯାଏଁ ଅପେକ୍ଷା କର ଧର୍ମରାଜ ଶ୍ରୀହରି ନାମକୁ ଭଜି । ୯୭
କୃଷ୍ଣତ ସାମାନ୍ୟ ମନୁଷ୍ୟ ନୁହଁନ୍ତି ସର୍ବ ଜୀବ ଜଗତର
ସୃଷ୍ଟି ଓ ସଂହାର କରିତା ଅଟନ୍ତି ସେ ଯାଏଁ ଅପେକ୍ଷା କର । ୯୮
ଭୀଷ୍ମଙ୍କର କଥା ଶୁଣି ଶିଶୁପାଳ ହସି କହିଲ ସଭାରେ
କୃଷ୍ଣ ଅଲୌକିକ ସତ୍ତାର ଆଧାର ବୋଲି କହ ଅଯଥାରେ । ୯୯
ତହାର ଆମ୍ଭଙ୍କୁ ଭୟଭୀତ କରି ରଖିବାକୁ ଚେଷ୍ଟା କର
ତୁମ୍ଭର ସ୍ପର୍ଦ୍ଧାକୁ ପ୍ରଶଂସା ନ କରି ରହି ପାରୁ ନାହିଁ ସ୍ଥିର । ୧୦୦
ତୁମ୍ଭ ଚରି ଖାର ଯୋଦ୍ଧାର ତୁଣ୍ଡରେ ଏହିପରି ସ୍ତୁତିଗାନ
ଲଜ୍ଜାର କାରଣ ବସ୍ତୁତେ ମନରେ ନାହିଁ ମୋର ସମର୍ଥନ । ୧୦୧
ବିଜ୍ଞ ବ୍ୟକ୍ତିମାନେ ପ୍ରଶସ୍ତି ଗାନରେ ଗୁରୁତ୍ୱ ଦିଅନ୍ତି ନାହିଁ
ତେଣୁ ତୁମ୍ଭ କଥା ଆଗ୍ରାହ୍ୟ କରୁଛି ଏ ରାଜସଭାରେ ମୁହିଁ । ୧୦୨
ଏବେ ମୁଁ ଜାଣିଲି ତୁମ୍ଭଠାରେ ଜ୍ଞାନ ସତ୍ତ୍ୱ ଯେ କେବଳ ନାହିଁ
ପୁରୁଷ ପଣର ସତ୍ତ୍ୱ ମଧ୍ୟ ନାହିଁ କ୍ଳୀବତ୍ୱ ପ୍ରକାଶ ପାଇ । ୧୦୩
ଶିଶୁପାଳର ଏ ଆସ୍ଫାଳନ ଶୁଣି କୋପାନ୍ୱିତ ବାୟୁସୁତ
ଭୀମକୁ ବୁଝାଇ କହିଲେ ଗାଙ୍ଗେୟ ଭୀମସେନ ହୁଅ ଶାନ୍ତ । ୧୦୪
ସଭାକୁ ଡ଼କାଇ ରୋକ ଆରମ୍ଭିଲେ ନାଶପିବ ଧର୍ମକର୍ମ
ଅଜ୍ଞାନ ବଶତଃ ଆସ୍ଫାଳନ କରେ ତା କଥା ମନେ ନ ଘେନ । ୧୦୫
ସଭାରେ ଶ୍ରୀକୃଷ୍ଣ ନୀରବ ରହିବା ବୁଝସେ କଥାର ତନ୍ତ୍ର
ଶିଶୁପାଳ ତାଙ୍କ ପିଉଷୀ ତନୟ ସମ୍ପର୍କେ ଅଟଇ ଭ୍ରାତ । ୧୦୬
ପିଉଷୀଙ୍କ ପାଦ ଛୁଇଁଣ ଶପଥ କରିଛନ୍ତି ଯଦୁନାଥ
ଏକଶତ ଦୋଷଯାଏଁ କ୍ଷମା ଦେବେ ପାଉଥିଲେ ହେଁ ଆଘାତ । ୧୦୭
ଏହାର ସୁଯୋଗ ନେଇ ଏ ପାମର ସ୍ପର୍ଦ୍ଧା କରୁଛି ପ୍ରକାଶ
କୃଷ୍ଣଙ୍କ ହାତରେ ଏହାର ମରଣ କାଳେ ହୋଇବ ଅବଶ୍ୟ । ୧୦୮
ଭୀଷ୍ମକଥା ଶୁଣି ଦୁଷ୍ଟ ଶିଶୁପାଳ କଲା ଉଚେ ଅଟ୍ଟହାସ୍ୟ
ଅସହ୍ୟ ହେବାରୁ କ୍ରୁଦ୍ଧ ଧରି ହାତେ ଧାଇଁଲେ ମାଦ୍ରୀଙ୍କ ଶିଷ୍ୟ । ୧୦୯

କ୍ରୋଧେ କମ୍ପମାନ ହୋଇ ଶିଶୁପାଳ ଉଠାଇଲା ଧନୁର୍ବାଣ
ବିଚାରିଲେ କୃଷ୍ଣ ମୁଁ ଯେବେ ଏହାର ଏଠାରେ ନ ନେବେ ପ୍ରାଣ ।୧୧୦
ଏହା ପରକ୍ରମେ ପାଣ୍ଡୁ ପାଞ୍ଚ ପୁତ୍ରେ ପ୍ରାଣେ ହୋଇବେ ବିନାଶ
ଜରାସନ୍ଧ ଠାରୁ ଶ୍ରେଷ୍ଠ ବୀର ଏହି ଶତ୍ରୁ କୁ ଯମ ସଦୃଶ । ୧୧୧
ସାମାନ୍ୟ ମାନବ ନୁହେଁ ଶିଶୁପାଳ ବୈକୁଣ୍ଠର ଦ୍ୱାରପାଳ,
ବ୍ରହ୍ମଶାପ ପାଇ ଜାତ ହୋଇଅଛି ଅନ୍ୟରେ ନୁହେଁ କବଳ । ୧୧୨
ସର୍ବଦା ମୋ ସଙ୍ଗେ ଶତ୍ରୁତା କରଇ ସହିଲିଣି ଶତବାର
ଆଜ ସହିବାକୁ ଧୈର୍ଯ୍ୟ ମୋର ନାହିଁ ପାଉ ଏ ଶାସ୍ତି ଏଥର । ୧୧୩
ଆମ୍ଭ ଉପକାର ଭୁଲି ଅପକାର କରୁଥାଏ ନିରନ୍ତର
ଦ୍ୱାରକା ଦହନ ପାଇଁ ଷଡଯନ୍ତ୍ର କରିଥିଲା ଦୁରାଚ୍ଚର । ୧୧୪
ସୌବୀର ନବର ଗାମିନୀ ମାନିନୀ ବଭ୍ରୁବାହନର ପତ୍ନୀ
ମାତୁଳ ନନ୍ଦିନୀ ଭଦ୍ରାଙ୍କ ଭଗିନୀ ସଙ୍ଗ ଲୋଡ଼ିଲା ଅଜ୍ଞାନୀ । ୧୧୫
ଏ ମହା ପାପିଷ୍ଠ ମୋ ପ୍ରିୟ ସଙ୍ଗିନୀ ରୁକ୍ମିଣୀ ବିବାହ ପାଇଁ
ଦୁଷ୍ଟ ନୃପ ଗୋଷ୍ଠୀ ଗଠନ କରିଲା ମୋତେ ମାରିବାର ପାଇଁ । ୧୧୬
ଏତେ ଅପରାଧ ସତ୍ତ୍ୱେ ଏ ଦୁଷ୍ଟର ଦୋଷ କରିଅଛି କ୍ଷମା
ମାତ୍ର ତା ଔଦ୍ଧତ୍ୟ କ୍ରମେ ବୃଦ୍ଧି ପାଇ ଡେଇଁ ଗଲାଣି ତା ସୀମା । ୧୧୭
ତା ଅପରାଧର ଉପଯୁକ୍ତ ଶାସ୍ତି ମୋ ହସ୍ତରେ ପ୍ରାଣଦଣ୍ଡ
ସୁଦର୍ଶନ ଚକ୍ର ପେଶି ସଭାସ୍ଥଳେ ଛେଦନ କଲେ ତା ମୁଣ୍ଡ । ୧୧୮
ଶିଶୁପାଳ ଆତ୍ମ ଜ୍ୟୋତି କୃଷ୍ଣ ଅଙ୍ଗେ ଆସି ହୋଇଗଲା ଲୀନ
ସମବେତ ସର୍ବେ ଏ ବିଚିତ୍ର ଦୃଶ୍ୟ ଦେଖି ହେଲେ ମୂହ୍ୟମାନ । ୧୧୯
ବ୍ୟାସଙ୍କୁ ପୁଚ୍ଛିଲେ ଏହାର ରହସ୍ୟ ବିନୟରେ ଧର୍ମବଣ
ବୋଲୁଛନ୍ତି ବ୍ୟାସ ବିଷ୍ଣୁ ଭକ୍ତ ଥିବା କଥାର ଏ ନିଦର୍ଶନ । ୧୨୦
ବୈକୁଣ୍ଠପୁରର ଦ୍ୱାରପାଳ ଏହି ଶ୍ରୀହରିଙ୍କ ପ୍ରିୟ ଭକ୍ତ
ବ୍ରହ୍ମ ଅଭିଶାପ ପାଇ ମର୍ତ୍ତ୍ୟପୁରେ ଆସି ହୋଇଥିଲା ଜାତ । ୧୨୧
ସତ୍ୟଯୁଗେ ମୁର ତ୍ରେତାରେ ରାବଣ ଶିଶୁପାଳ ଦ୍ୱାପରରେ
କୃଷ୍ଣ ହାତେ ମରିବାକୁ ଇଚ୍ଛା କରି ଶତ୍ରୁତା କଲା କୃଷ୍ଣରେ । ୧୨୨
ଶେଷ ଅବତାରେ ଚକ୍ରେ ଶିରଚ୍ଛେଦ ହୁଅନ୍ତେ ପାଇଲା ମୁକ୍ତି
କୃଷ୍ଣ ହାତେ ମରି କୃଷ୍ଣ ଶରୀରରେ ମିଶିଲା ତା ଆତ୍ମଜ୍ୟୋତି । ୧୨୩

ଯିଏ ଯେଉଁପରି ଭଜଇ ଶ୍ରୀହରି ଫଳପାଏ ସେହିପରି
ପରମ ଦୟାଳୁ ଦେବ ଦଇତ୍ୟାରି କରିଥାନ୍ତି ଭବୁ ପାରି । ୧୨୪
କେ ଭଜନ କରେ ଶତ୍ରୁ ଅନୁବନ୍ଧେ କଏ ବା ମିତ୍ର ଭାବରେ
କାମ ଭାବନାରେ କେ ଭଜନ କରେ କେ ଭଜଇ ଭକ୍ତିଭରେ । ୧୨୫
କାମ-କ୍ରୋଧ ଭୟ-ବୈର-ମିତ୍ର-ସ୍ନେହ ଯେଉଁ ଭାବେ ଯେ ଭଜଇ
ଅନ୍ତିମ କାଳରେ କମଳ ପୟରେ ସେ ଭାବେ ଆଶ୍ରୟ ପାଇ । ୧୨୬
ଏମନ୍ତ ଦୟାଳୁ ପ୍ରଭୁଙ୍କ ପୟରେ ସାଧୁଜନେ ରଖ ମତି
ଭ୍ରମେ ପଡି ତାଙ୍କୁ ନ ଭଜେ ଯେ ଜନ ନ ପାଏ ପରମ ଗତି । ୧୨୭
ସର୍ବଦା ଶ୍ରୀହରି ଦୈତ୍ୟ ହିତକାରୀ ପ୍ରଭୁରେ ବୈରିତା କରି
ପ୍ରଭୁ ହାତେ ମରି ମୋକ୍ଷ ଗତି ପାଇ ତରିଯାନ୍ତି ଭବପାରି । ୧୨୮
ସଭାସଦ୍‌ଗଣେ ସମବେତ କଣ୍ଠେ କଲେ କୃଷ୍ଣ ସ୍ତୁତି ଗାନ
ନିରବେ ରାଜାଏ ବସିଲେ ସଭାରେ ଶାନ୍ତ ହୋଇଲା ସ୍ଥାନ । ୧୨୯
ସ୍ୱହସ୍ତେ ଅକ୍ଷତ ଧରି ଧର୍ମରାଜ ମାନ୍ୟ କଲେ ନରନାଥ
ବସନ, ଭୂଷଣ, ଅକ୍ଷତ, ଚନ୍ଦନ ଦେଲେ ନେଇ ଧୃତବସ୍ତ୍ର । ୧୩୦
ବେଦ ବିଧାନରେ ହୋମ ଯଜ୍ଞ କାର୍ଯ୍ୟ ଆରମ୍ଭ କଲେ ବ୍ରାହ୍ମଣ
ଘଣ୍ଟ ଘଣ୍ଟାସ୍ୱନେ କମ୍ପେ ଯାଗ ଶାଳ ଭାଟେ କଲେ ସ୍ତୁତିଗାନ । ୧୩୧
ରାଜସୂୟ ଯାଗ ମଣ୍ଡପ ମହିମା କେ କରେ ମୁଖେ ବର୍ଣ୍ଣନ
ଏକଶ ଦ୍ୱାତ୍ରିଂଶ ପଦେ ବୃନ୍ଦ ଦାସ ଅଧ୍ୟାୟ କଲା ସମ୍ପୂର୍ଣ୍ଣ । ୧୩୨

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକାଲୀଳା ଖଣ୍ଡେ ଶିଶୁପାଳବଧ ଆଖ୍ୟାନେ
ନାମ ଦ୍ୱାତ୍ରିଂଶ ଅଧ୍ୟାୟ ସମ୍ପୂର୍ଣ୍ଣ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

ବୋଲି—

ମନ ଅନାରେ ଅନାଥ ନାଥ !
ଅନନ୍ତ ଗୁମ୍ଫାରେ ବଜେ ଅର୍ଜ୍ଜୁନ ସୁତ ॥ ଘୋଷା ॥

ହେରି ରହିଛନ୍ତି ଦେଖ ଅନେକ ଭକ୍ତ
ତାଳ ମାରି ନାଚେ କଏ ଗାଇଣ ଗୀତ । ୧

ଜଗତ ମୋହନ ରୂପ ଧରିଛନ୍ତି ତ
ସଜାଇ ଅଛନ୍ତି ଭକ୍ତେ ଦେଇଣ ଚିତ୍ତ । ୨
ତୁଳସୀ, ମାଳତୀ ମାଳ କଣ୍ଠେ ମଣ୍ଡିତ
ଶୁକ୍ଳ ପାଟ ବସ୍ତ୍ର ଶିଖି ଅଙ୍ଗେ ଶୋଭିତ । ୩
ଏମନ୍ତ ସୁନ୍ଦର ବେଶ ଦେଖା ନାହିଁ ତ
ଅମିୟ ଆନନ୍ଦ ହାସ୍ୟ ହରଇ ଚିତ୍ତ । ୪
ବ୍ରହ୍ମା, ଶିବ, ଇନ୍ଦ୍ର, ଚନ୍ଦ୍ର ଦେବେ ବନ୍ଦିତ
ଦର୍ଶନେ ଦେବ ଦଇତ୍ୟ ହୁଅନ୍ତି ପ୍ରୀତ । ୫
ମୁକ୍ତିଦାତା ଅଟନ୍ତି ସେ ପ୍ରାଣୀ ଜଗତ
ସାଷ୍ଟାଙ୍ଗରେ ପ୍ରଣିପାତ କରନ୍ତି ଭକ୍ତ । ୬
ଅଭୁକ୍ତ ସାଙ୍ଗର ସଙ୍ଗେ ବସି ସଙ୍ଗୀତ
ବୃନ୍ଦାବନ ବୁଲି ବୁଲି ଗାଉଛୁ ଗୀତ । ୭

# ତ୍ରୟୋବିଂଶ ଅଧ୍ୟାୟ
## ହୋମଯଜ୍ଞାରମ୍ଭ

( ରାଗ - ବସନ୍ତ ଭୈରବ )

ସୁଜ୍ଞଜନେ ଶୁଣ କୃଷ୍ଣ ଚରିତ ମାନସ
ଝରଝର ଝରୁଅଛି କୃଷ୍ଣ ପ୍ରେମ ରସ
ଶିଶୁପାଳ ହତ ଅନ୍ତେ ସକଳ ରାଜନ
ଆସନେ ବସିଲେ ହୋଇ ଧୀରସ୍ଥିର ମନ
ଶିଶୁପାଳ ତନୟକୁ ଡ଼କାଇ ଅଣାଇ
ବସାଇଲେ ସଭାମଧ୍ୟେ ଧର୍ମ ନରସାଇଁ । ୧

ଯାଜ୍ଞିକ ବିପ୍ରଙ୍କୁ ଘେନ ଧୌମ୍ୟ ପୁରୋହିତ
ପୁରୋଧା ବରଣ ହେଲେ ଆହୁତ ଅମିତ୍ର
ଚତୁର୍ବେଦୀ ବିପ୍ରଗଣ ବରଣ ହୋଇଲେ
ଯେ ଯାହା ପୀଠ଼ ଆସନ ମାଡ଼ଣ ବସିଲେ
ସହସ୍ର ସଂଖ୍ୟାରେ ଶିଷ୍ୟ ଘେନ ବେଦବ୍ୟାସ
ଯାଗଶାଳେ ସମାରୋହ କରିଲେ ପ୍ରବେଶ । ୨

ରାଜଋଷି, ଦେବଋଷି, ବ୍ରହ୍ମଋଷି ଗଣେ
ମାନ୍ୟ କରି ବସାଇଲେ କୃଷ୍ଣାଜିନାସନେ
ସ୍ୱହସ୍ତରେ ଶୂଳ ଧରି ଋଷି ମାରକଣ୍ଡ
ବେଦ ବିଧାନେ ଖୋଳିଲେ ଶୁଭେ ଯାଗ କୁଣ୍ଡ
ପୂର୍ବରେ ମାର୍କଣ୍ଡ ଋଷି ଦକ୍ଷିଣେ ବଶିଷ୍ଠ
ପଶ୍ଚିମେ ଅଗସ୍ତି, ଉତ୍ତରରେ ବିଶ୍ୱାମିତ୍ର । ୩

ଗୃହିଦ୍ୱାରେ ଗୃହି ଋଷି ହୋଇଲେ ବରଣ
ସହସ୍ର ସଂଖ୍ୟାରେ ଶିଷ୍ୟ ସଙ୍ଗତେ ଘେନଣ
ବାର ବିଶ୍ୱ ଦେବା ସାତ ମନୁ ଯେ ପୁରୁଷ
ଶୂନ୍ୟ ଦେବତାଏ ପାଞ୍ଚ ସନାକାଦି ଦଶ

ବ୍ରହ୍ମା–ବିଷ୍ଣୁ-ଶିବ ଏବଂ ତିନି ଦଇବତ
ସୋମ ଜଙ୍ଗମ ତେଉଣି ଲକ୍ଷ ପରିମିତ । ୪
ଛୁଟି ବସ୍ତ୍ରାସୀନ ହେବାପରେ ଧର୍ମସାଇଁ
ବସିଲେ ସ୍ତ୍ରୀଙ୍କ ଶାଖାଶାଳେ କୃଷ୍ଣ ପାଦଧାୟୀ
ବାମ ପାର୍ଶ୍ୱେ ଯାଜ୍ଞସେନୀ ଦ୍ରୁପଦ କୁମାରୀ
ଦକ୍ଷିଣ ପାର୍ଶ୍ୱରେ ବସି ଦେବ ଦଇତ୍ୟାରି
ଧୌମ୍ୟ ପୁରୋହିତ ମନ୍ତ୍ର ଉଚ୍ଚାରଣ କରି
ଯଜ୍ଞକର୍ମ ଆରମ୍ଭିଲେ ଶୁଭାକଳ ଧରି । ୫
ଚତୁର୍ବେଦ ମହାବାକ୍ୟ ଗାଇଲେ ବ୍ରାହ୍ମଣ
ବେଦ ବିଧାନରେ ଯାଗ କଲେ ଆରୋପଣ
ଯଜ୍ଞକୁଣ୍ଡ ସମାର୍ଜନ କରିଲେ ମାର୍କଣ୍ଡ
ଅଗ୍ନି ଦେବତା ବିଜସ୍ୱ କଲେ ଯଜ୍ଞକୁଣ୍ଡ,
ପ୍ରଥମେ ଆହୁତି ଦେଲେ ବୈଶ୍ୱାନର ମୂଳେ
ଘୃତ ଶକାଇଲେ ଅଗ୍ନିଦେବ ନେତ୍ରସ୍ଥଳେ । ୬
ଓମ୍ ସ୍ୱାହାଃ ଉଚ୍ଚାରଣେ ଛାଡ଼ି ଦେଲେ ଘୃତ
ପାଞ୍ଚଜନ୍ୟ ଶଙ୍ଖ ସ୍ୱନ କଲେ ଯଦୁନାଥ
ବ୍ରାହ୍ମଣମାନେ ଉଚ୍ଚରେ କଲେ ବେଦ ଧ୍ୱନି
ମଙ୍ଗଳ ଗୀତ ଗାଇଲେ ସୁଶୀଳା କାମିନୀ,
ଉଚ୍ଚ ମୁଖେ କୀର୍ତ୍ତି ଗାନ କଲେ ଚଣ୍ଡ ପୁଜ
ଗ୍ରହଶାନ୍ତି ମନ୍ତ୍ର କାଣ୍ଡି ପଢ଼ିଲେ ପଣ୍ଡିତ । ୭
ନାନାବିଧ ବାଦ୍ୟନାଦ ହେଲା ଅନାହତ
ହୋମଯଜ୍ଞ କାର୍ଯ୍ୟ ବିଧିମତେ ଅବ୍ରେପିତ
ଘୃତ ପାନେ ପ୍ରଜ୍ୱଳିତ ହୋଇଲେ ଅନଳ
ସୁଧିଷ୍ଠି ଦେବ ଛାଡ଼ିଲେ ଅଞ୍ଜୁଳି ତଣ୍ଡୁଳ,
ଊର୍ଦ୍ଧ୍ୱଗାମୀ ନ ହୋଇଲା ଶିଖା ବୈଶ୍ୱାନର
ଏହା ଦେଖି ଋଷି ବିପ୍ରେ କରିଲେ ବିଗ୍ଭର । ୮
ଅଗ୍ନି ତେଜ ହୀନ ଦେଖି ପୁଚ୍ଛିଲେ ଦୁର୍ବାସା
ହେ ମାର୍କଣ୍ଡ ! ନ ଦିଶଇ କିମ୍ପା ଅଗ୍ନିଶିଖା ?

ତୁମ୍ଭପରି ମୁନି ଦେଲେ ପ୍ରଥମ ଆହୁତି
ଊର୍ଦ୍ଧ୍ୱ ଶିଖା ନ ହୋଇଲା କମ୍ପା ଅଗ୍ନି ଜ୍ୟୋତି ?
ମାର୍କଣ୍ଡ କହିଲେ ଶୁଣ ଆହେ ମୁନିବର
ବର୍ତ୍ତମାନ ଭୋଗ ଯାଏ ମାସ ଯେ ମକର । ୯

ମକର ମାସେ ଆଦିତ୍ୟ ଅନଳ ଉଦୟେ
ସେହି ହେତୁ ବୈଶ୍ୱାନର ଦଣନ୍ତି ଏ ପ୍ରାୟେ
ବଶିଷ୍ଠ କହିଲେ ମୁନି ଏମନ୍ତ ନୁହଇ
ଯଜ୍ଞ ଅନଳରେ କାହିଁ ଆଦିତ୍ୟ ଦଶଇ ?
ନିଜେ ଯାଗନିକ [illegible] ଷି ମାରକଣ୍ଡ
ତହିଁକି ଆଦିତ୍ୟ ତେଜ ହେବ କି ପ୍ରଚଣ୍ଡ ? ୧୦

ବଦନ୍ତି ନାରଦ ସର୍ବେ କହୁଛ ଅନ୍ୟଥା
ଶାସ୍ତ୍ରାନୁସାରେ ନ କହ ଯଥାର୍ଥ ବାରତା
ଦୁର୍ବାସା କହିଲେ ତୁମ୍ଭେ କଳପ୍ରିୟ ମୁନି
ଗତ ଆଗତ ଭବିଷ୍ୟ ପାର ସବୁ ଜାଣି
କାହିଁ ପାଇଁ ନ ଉଠିଲା ଶିଖା ଅନଳରୁ
ସେ କଥା କହ ବିସ୍ତାରି ଶାସ୍ତ୍ର ପ୍ରମାଣରୁ । ୧୧

ନାରଦ କହିଲେ ଶୁଣ ଯଥାର୍ଥ ବଚନ
ଅପୁତ୍ରିକ ଅଟନ୍ତି ତ ଯୁଧିଷ୍ଠିର ରାଜନ
ସନ୍ତାନ ନ ଥିଲେ ଧର୍ମକର୍ମ ହାନି ହୁଏ
ତେଣୁ କରି ଅଗ୍ନି ଦେବ ଆହୁତି ନ ନିଏ
ନାରଦଙ୍କ ଶ୍ରୀମୁଖରୁ ନିଷ୍ଠୁର କଥା ଶୁଣି
ସ୍ତମ୍ଭୀଭୂତ ହୋଇଗଲେ ଧର୍ମ, ଚକ୍ରପାଣି । ୧୨

ସଭା ସ୍ତମ୍ଭୀଭୂତ ଜାଣି ବ୍ୟାସ ମହାଜ୍ଞାତା
ସଭା ମଧ୍ୟେ ବୋଲୁଛନ୍ତି ବିସ୍ତାରିଣ କଥା
ଯୁଧିଷ୍ଠିର ଅପୁତ୍ରିକ ହୋଇଲେ କପରି ?
ପାଞ୍ଚ ଭାଇ ଏକ ଆତ୍ମା ଜାଣ ହେତୁ କରି,
ହିଡ଼ମ୍ବାସୁରୀ ଗର୍ଭରେ ଭୀମ ଔରସରେ
ଘଟୋତ୍କଚ ପୁତ୍ର ଜାତ ହିଡ଼ମ୍ବ ବନରେ । ୧୩

ସମ୍ରାଟ ଭରତ ବଂଶେ ପ୍ରଥମ ସନ୍ତାନ
କୁରୁ ସାମ୍ରାଜ୍ୟ ମଣ୍ଡଳମଣି ସେ ନନ୍ଦନ,
ଉତ୍ତରାଧିକାରୀ ସୂତ୍ରେ ଅଟେ ଜ୍ୟେଷ୍ଠ ସୁତ
ଏ ଧର୍ମ ସାମ୍ରାଜ୍ୟେ ଯୁବରାଜପଦେ ଯୋଗ୍ୟ,
ଭୀମ ଔରସେ ହିଡ଼ିମ୍ବୀ ଗର୍ଭରୁ ଉତ୍ପନ୍ନ
ଘଟୋତ୍କଚ ନାମ ତାର କାନନ ସୃଜନ । ୧୪

ପାଞ୍ଚ ପାଣ୍ଡବେ ଯେ ହେଉ ଏକ ଆତ୍ମା ପ୍ରାୟ
ଭୀମ ତନୟ ନୁହେଁ କି ଯୁଧିଷ୍ଠିର ତନୟ ?

ହିଡ଼ିମ୍ବକ ବନେ ଧର୍ମରାଜ ଯୁଧିଷ୍ଠିର
ଅଭିଷେକ କରିଛନ୍ତି ଶିରେ ଥୋଇ କର
ଏଣୁ ଅପୂର୍ବ କି ହେଲେ କପର୍ଦି ଯୁଧିଷ୍ଠି
ହେ ନାରଦ କହ ନାହିଁ କିମ୍ପା ଶୁଣ ଚନ୍ତି । ୧୫

ନାରଦ କହିଲେ ଯେବେ ଏ କଥା ପ୍ରମାଣ
ଜାଣିଶୁଣି ପୂର୍ବେ କିମ୍ପା ନ କଲ ବରଣ
ବେଦଶାସ୍ତ୍ର ବକ୍ତା ହୋଇ ହେଲ ବାଟବଣା
ଏ ମହା ଯାଗକୁ ପୁତ୍ର ବେଗ କରି ଅଣା,
ଭୀମସେନେ ଆଜ୍ଞା ଦେଲେ ଦେବ ନାରାୟଣ
ମନ ସୂତ୍ରେ ନାମ ଧରି ଡାକ ହେ। ନନ୍ଦନ । ୧୬

ମୁଖଦ୍ୱାରେ ପ୍ରାଣବାୟୁ କୁମ୍ଭକ କରିଣ
ଜଳପାନ ପ୍ରାୟ ବାୟୁ ଗର୍ଭକୁ କ୍ଷେପିଣ
ଅଜପା ସୂତ୍ରେ ଡାକିଲେ ଧରି ପୁତ୍ର ନାମ
କୁମର ଜାଣିଲା ପିତା କରିଲେ ସ୍ମରଣ,
ମାତା ଆଜ୍ଞା ମାଗେ ଯାଗେ ଆସିବା ନିମିତ୍ତ
ହିଡିମ୍ବି କି ବୋଲେ ପୁତ୍ର ଶୁଣ ମୋ ଉଦନ୍ତ । ୧୭

ମାତା କଥା ଗୋଟି ମଣିଥିବୁ ହାରଧାର
ରାଜସଭା ମଧ୍ୟେ ମାନ୍ୟ ପାଇବୁ କୁମର
ପ୍ରଥମେ ନମିବୁ ଯାଇ ପିତା ଭୀମସେନ
ଦ୍ୱିତୀୟରେ ପ୍ରଣିପାତ ହୋଇବୁ ଶ୍ରୀକୃଷ୍ଣ,

ବ୍ରାହ୍ମଣ୍ୟେ ଧନ୍ୟ ପୁରୁଷ ଚତୁର୍ଥେ ଯୁଧିଷ୍ଠି
ଅନ୍ୟ କାହାରିକୁ ଆଜ ନ କରୁ ପ୍ରଣତି । ୧୮

ଘୋଟକୋଚ ବୋଲେ ମାତ ଅନ୍ୟାୟ କହିଲୁ
ନାରୀ ସୁଲଭ ବୁଦ୍ଧିରେ ନାରୀକୁ ନିନ୍ଦିଲୁ
ଯୁଧିଷ୍ଠିର କୋଳେ ଥିବେ ଦ୍ରୁପଦ ଦୁହିତା
ନମସ୍କାର କରୁଥିବେ ଲକ୍ଷେ ନରପତି,
ପ୍ରଣାମ ନ କଲେ ତାଙ୍କୁ ଅଭିଶାପ ଦେବେ
ଅନ୍ୟାୟ କହୁଛୁ ମାତା ସପତ୍ନୀ ଭାବେ । ୧୯

ହିଡ଼ିମ୍ବି କା ବୋଲେ ତୁହି ବନ ଅଧିପତି
ବଜ୍ରକବଚ କୁଳରେ ହୋଇଛୁ ଉତ୍ପତ୍ତି,
କୋଟି ତୀର୍ଥ ଜଳଧରି କ୍ଷେହାଧି ପୁଷ୍କର
ଅଭିଷେକ କରିଛନ୍ତି ତୋହର ଏ ଶିର,
ଅଣ ଅଭିଷେକୀ ଜନେ ନ କରୁ ଜୁହାର
ସର୍ବସ୍ଥଳେ ସମ୍ମାନୀୟ ଅଭିଷେକୀ ବୀର । ୨୦

ପାଣ୍ଡବଙ୍କୁ ନମସ୍କାର ନୁହଇଁ ଯୁକତେ
ସ୍ତ୍ରୀ ଗୁରୁକୁ ନମସ୍କାର କରିବୁ କେମନ୍ତେ ?
ମାତା ପ୍ରତିହିଂସା ବହ୍ନି କୁମର ହୃଦରେ
ଦଗ୍‌ଧ କଲା ପଞ୍ଚପ୍ରାଣ ବିବେକ ସଂହାରେ,
ତ୍ରିଶିର ନିଃଶ୍ୱାସ ବହ୍ନି ହେଲା ପ୍ରଜ୍ୱଳିତ
ଥରିଲା ଭୟେ ଶରୀର ବାତାହତ ପତ୍ର । ୨୧

ପୁତ୍ର ହୃଦେ ଭୟ ଜାଣି କବଚ ନିନ୍ଦିନୀ
ଚଳିଗଲା ଯାତଣାରେ ପୁତ୍ର ସଙ୍ଗେ ଘେନି,
ମାତା ପୁତ୍ର ବେନି ପାଦେ କଲେ ପ୍ରଣିପାତ
ପତ୍ନୀ ପୁତ୍ରେ ଭୀମସେନ କଲେ କୋଳାଗତ,
ନନ୍ଦନକୁ ଘେନି ଭୀମ ଭିତରକୁ ଗଲେ
ହିଡ଼ିମ୍ବୀ ଅସୂର୍ଯ୍ୟ ଦ୍ୱାର ଦେଶରେ ରହିଲେ । ୨୨
ଆଗେ ଆଗେ ବାସୁଦେବ ପଛେ ଭୀମସେନ
ମଧ୍ୟେ ରହିଲେ ଘଟୋତ୍କଚ ହିଡ଼ିମ୍ବୀ ନନ୍ଦନ,

ଆସ୍ଥାନ ତଳକୁ ଆସି ଶ୍ୟାମର ନନ୍ଦନ
ମୂର୍ଦ୍ଧ୍ନି ଦେବଙ୍କ ପାଦେ କରିଲେ ପ୍ରଣାମ,
ଶ୍ରୀକୃଷ୍ଣ କହିଲେ ସ୍ୱାମୀ ଅବଧାନ କର
ହିଡ଼ମ୍ବକ ବନରାଜା କରନ୍ତି ଜୁହାର । ୨୩

ଧର୍ମର ଆଶ୍ରିତ ବୋଲି ଆଜ୍ଞା ଅବଧାରି
ଶ୍ରୀଗୁମୂରେ ଡଭଅଛୁ ଶିରେ କର ଧରି,
ଦ୍ରୋପଦୀ ଦେବୀଙ୍କୁ ଯହୁଁ ନ କଲା ଜୁହାର
ହଭରେ ପାଇଲେ କୃଷ୍ଣା ଅପମାନ ଘୋର,
କ୍ରୋଧରେ କହିଲେ ଦେବୀ ମାତା ଆଜ୍ଞା ପାଇ
ମତ୍ତଗର୍ବେ ହେୟଜ୍ଞାନ କଲୁ ଆମ୍ଭ ଠାଇଁ । ୨୪

ମୁହିଁ ଯାଜ୍ଞସେନୀ ଧର୍ମରାଜ ପାଟବଂଶୀ
ପାଣ୍ଡବଙ୍କ ଶତଗୁଣେ ଅଟେ ଗୁରୁହଂସୀ,
ବ୍ରାହ୍ମଣ ରଜା ଦ୍ରୁପଦ ଦେବଙ୍କ ଦୁହିତା
ଅସୁର କୁଳରେ ଜାତ ଅଟେ ତୋର ମାତା,
ମାତାର ଗୁଣରେ ତୁହି ଅଟୁ ମହାଦୁଷ୍ଟ
ତେଣୁ ଗର୍ବେ ନମସ୍କାର ନ କଲୁ ପାପିଷ୍ଠ । ୨୫

ଏ ମହାସଭାକୁ ଯେଣୁ କରିଲୁ ଅବଜ୍ଞା
ଆୟୁଦ୍ଧ ଶକ୍ତି ଘାତରେ ମରିବୁ ମୋ ଆଜ୍ଞା
କ୍ରୋଧେ ଅଭିଶାପ ଦ୍ୟନ୍ତେ ଦ୍ରୁପଦ କୁମାରୀ
ବେଗେ ଘଟୋତ୍କଚ ତହୁଁ ପଳାଇଲା ଡରି
ଦ୍ୱାରେ ଥାଇ ହିଡ଼ିମ୍ବିକା ସବୁ ଶୁଣୁଥିଲେ
ଗଦଗଦରେ ଠେଲି ଦେଇ ଭିତରେ ପଶିଲେ । ୨୬

ଲାଜ ଭୟ ସଙ୍କୋଚିତ ମନୁ ଦୂର କରି
ଦ୍ରୋପଦୀ ଦେବୀଙ୍କୁ ସ୍ନେହିଁ ବୋଲେ ଦୟା କରି
ମୋ ଅଜ୍ଞାନ ବାଳସୁତ ତାକୁ କଲୁ କୋପ
ସଭାକୁ ଡକାଇ ଆଣି ଦେଲୁ ଅଭିଶାପ,
ତୁହି ଯେବେ ହୋଇଥାନ୍ତୁ ଗର୍ଭଧାରୀ ମାତା
ଅଭିଶାପ ଦେବା ପାଇଁ କରନ୍ତୁ କି ଚିନ୍ତା । ୨୭

ପାଞ୍ଚାଳୀ ଅହଂକାରେ ହରାଇଛୁ ଜ୍ଞାନ
ପ୍ରବଞ୍ଚ ପ୍ରକୃତି ତୋର ନାରୀ କୁଳେ ହୀନ,
ଯେଉଁ ଅଭିଶାପ ଦେଲୁ ହୋଇବ ମଙ୍ଗଳ
କ୍ଷତ୍ରିୟ ଶକ୍ତି ପଡ଼ିବ କ୍ଷତ୍ରି ବକ୍ଷସ୍ଥଳ
ସେ ଶକ୍ତି ପୃଷ୍ଠ ଦେଶରେ ଯଦି ପଡ଼ିଥାନ୍ତା
ପୃଷ୍ଠଭଙ୍ଗ ପ୍ରାୟ କ୍ଷତ୍ରି ନର୍କରେ ପଡ଼ନ୍ତା । ୨୮

ଆଜିଲ ଆଣ୍ଠୁକୁଡ଼ ତୋର ନାହାନ୍ତି ସନ୍ତାନ
ତଥାପି ମୁଁ ଅଭିଶାପ ଦେଉ ଅଛି ଶୁଣ
ପାଞ୍ଚ ପୁତ୍ର ଜାତ ହେବେ ପାଞ୍ଚ ଔରଷରେ
ସାତବର୍ଷେ ନାଶଯିବେ ଅଯୁଦ୍ଧ କ୍ରମରେ
ଦେଖ ହେ। ସୁବର୍ଣ୍ଣ ଜନେ ଆସ୍ପୃହା ବୁଦ୍ଧିକୁ
ଅଭିଶାପ ବହିଲି ଆଣି ଭବିଷ୍ୟତକୁ । ୨୯

ଶ୍ରୀକୃଷ୍ଣ ଚୁହିଁଲେ ବ୍ୟାସଦେବଙ୍କ ବଦନ
ବୋଲୁଛନ୍ତି ବ୍ୟାସଦେବ ଏ କଥା ପ୍ରମାଣ,
ଭାରତ ସମରେ ଏହା ହୋଇବ ଘଟଣ
ବେନ ନାରୀଙ୍କ ଅଭିଶାପ ହୋଇବ ପୂର୍ଣ୍ଣ,
ଯାଗ ଜଜ୍ଞ, ହାଣ୍ଡି ଦାନ୍ତ, ନାରୀର ବଚନ
ଗୋଟିଏ ନ ହୋଇ ସର୍ବଦା ଦୁଇଟି ଜାଣ । ୩୦

ଦେଖ ହେ ସୁବର୍ଣ୍ଣ ଜନେ ଯାଗ କରିମନ୍ତ
ନାରୀ ଅହଂକାର ଯୋଗୁ ବଂଶ ବିନଶ୍ୟନ୍ତି,
ରାଜସୂୟ ଯାଗଶାଳେ ଯୁଧିଷ୍ଠିର ବଂଶ
ସପତ୍ନୀ କଳହରୁ ହୋଇଲି ବିନାଶ,
ଗଙ୍ଗାମାତା କହିଥିବା କଥା ହେଲି ସତ୍ୟ
ଶାନ୍ତନୁ ବଂଶେ ନ ରହିବେ ଜଣେ କେ ସୁତ । ୩୧

ବସିଲେ ଧର୍ମଙ୍କ କୋଳେ ଭୀମସେନ ସୁତ
ହବର୍ଭାଗ ଦେଲେ ଲୁଚି ଶିଖା ପ୍ରଜ୍ଜ୍ୱଳିତ,
ହୋମଯଜ୍ଞ କାର୍ଯ୍ୟ ତହୁଁ ହୋଇଲି ଆରମ୍ଭ
ଘୃତ ପାନ ପାଇ ତୋଷ ହେଲେ ଅଗ୍ନିଦେବ

ଜୟ ଜୟ ଯଦୁନାଥ ଜଗତ ଜୀବନ
ଭଙ୍ଗାଗଡ଼ା ଦୁଇକାର୍ଯ୍ୟ ତୁମ୍ଭର ଭିଆଣ । ୩୨
ନଷ୍ଟୁର ହୃଦୟ ଚୋର କାର୍ଯ୍ୟ ନଷ୍ଟାପର
ପରାପର ଜ୍ଞାନ ଶୂନ୍ୟ ଅକର୍ମା ଠାକୁର
ଶରଣ ରକ୍ଷଣ ସ୍ୱାମୀ ପରିତ୍ରାଣ କର
ଶରଣ ରକ୍ଷଣେ ଶରଣଦ ଧାମ ତୋର
ତେତିଶ ପଦେ ଅଧ୍ୟାୟ ହୋଇଲା ସମ୍ପୂର୍ଣ୍ଣ
ବୃନ୍ଦାବନ ପଶି ଅଛୁ ପାଦରେ ଶରଣ । ୩୩

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ହୋମପଞ୍ଚରତ୍ନେ
ନାମ ତ୍ରୟୋବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।

ଶ୍ରୀକୃଷ୍ଣାର୍ପଣମସ୍ତୁ ।

ବୋଲି —

ବଡ଼ କଟକିଆ ନନ୍ଦ ବଳାରେ
ଭଲ ଲଗାଇଛୁ ବସି ଲୀଳାରେ ॥ ଘୋଷା ॥
ଚକ୍ରକୂଟ ବୁଦ୍ଧି ତାର ନ ଜାଣନ୍ତି ବ୍ରହ୍ମାହର
ମାୟା ମନୁଷ୍ୟ ରୂପେ କରେ ଲୀଳାରେ । ୧
ଜାତ ହୋଇ କାରାଗାରେ
ଲୁଚିଲା ଯାଇ ଗୋପରେ
କୂଟ କରି କଂସ ମାମୁଁ ବଂଶ ନାଶିଲାରେ । ୨
ବୋଲାଇ ପାଣ୍ଡବ ମିତ୍ର ଭିଆଇଲା କୁରୁକ୍ଷେତ୍ର
କୁରୁକୁଳ ବିନାଶନେ କୂଟ ରଚିଲାରେ । ୩
ପଞ୍ଚ କଟକରେ କୁନ୍ତୀ କୁମରେ କଲା ନୃପତି
ସପ୍ତରଥୀ ହାତେ ଭଣଜା ମରାଇଲାରେ । ୪
ବିନାଶି ଆପଣା ବଂଶ ଆପଣେ ହେଲା ବିନାଶ
ବଂଶବୁଡ଼ା ବୋଲି ନାମ ଜଗେ ରଖିଲାରେ । ୫
ସେ ବଂଶବୁଡ଼ା ଠାକୁର ଚରଣେ କୋଟି ଜୁହାର
କରଇ ସଂସାର ଛଡ଼ା ଦାସ ବୃନ୍ଦାରେ । ୬

# ଚତୁଃତ୍ରିଂଶ ଅଧ୍ୟାୟ

## ଦୈତ୍ୟପତି ବିଭୀଷଣଙ୍କ ଯାଗ ଦର୍ଶନ

( ରାଗ — ମଙ୍ଗଳ )

ଶୁଣ ସୁଜନେ ଶ୍ରୀକୃଷ୍ଣ ଚରିତ ମାନସ
ରାଜସୂୟ ଯାଗ ହେଲା ଚଉଦ ଦିବସ
ବିଧିମତେ ଯାଗ କାର୍ଯ୍ୟ ହୁଏ ସମ୍ପାଦନ
ଚତୁର୍ଦ୍ଦଶ ଲୋକେ ଯାଗ ଦେଖି ହେଲେ ଧନ୍ୟ ।୧

ବଦନ୍ତି ବ୍ୟାସଦେବ ଶୁଣ ଧର୍ମରାୟେ
ମର୍ତ୍ତ୍ୟପୁରୁ ଆସି ନାହିଁ ପ୍ରତାପୀ ରାଜାୟେ
ଶ୍ରୀରାମଙ୍କ ପ୍ରିୟଭକ୍ତ ମନ୍ତ୍ରୀ ବିଭୀଷଣ
ସ୍ୱର୍ଣ୍ଣପୁରୀ ଲଙ୍କାର ସେ ଅଟନ୍ତି ରାଜନ ।୨

ପରମ ବୈଷ୍ଣବ ସେହି ଶ୍ରୀରାମ ଭକତ
ଦୈତକୁଳ ଶିରୋମଣି ରାବଣର ଭ୍ରାତ
ପଚାରିଲେ ଧର୍ମରାଜ ଆହେ ଯଦୁନାଥ
ଲଙ୍କାଗଡ଼େ ଯିବା ପାଇଁ କାଏ ସାମରଥ ? ୩

କହନ୍ତି କୃଷ୍ଣଚନ୍ଦ୍ର ଶୁଣ ଦେବ ଧର୍ମ
ଲଙ୍କାଗଡ଼େ ଯିବା ପାଇଁ ଘଟୋତ୍କଚ କ୍ଷମ
ଅନ୍ତରୀକ୍ଷେ ଗତି କରେ ଅସୁରଙ୍କ ରଥ
କୁମରେ ପେଶିଲେ ଦୈତ୍ୟ ଆସିବ ନିଶ୍ଚିତ ।୪

ଆଜ୍ଞା ଦେଲେ ବାସୁଦେବ ଘଟୋତ୍କଚେ ଚାହିଁ
ବିଭୀଷଣେ ବରିଆଣ ଲଙ୍କାଗଡ଼େ ଯାଇ
ଅନ୍ତରୀକ୍ଷେ ଯାନ ବାହି ପବନ କୁମର
ଆଜ୍ଞାପତ୍ର ଘେନ କରେ ଚଳିଲେ ସତ୍ୱର ।୫

ଘଟୋତ୍କଚ ପ୍ରବେଶିଲେ ଯାଇଁ ଲଙ୍କାପୁରେ
ବିଭୀଷଣ ବସିଛନ୍ତି ସମ୍ଭବେ ସଭାରେ
ସଭାସ୍ଥଳେ ପ୍ରବେଶିଣ ଭୀମଙ୍କ ନନ୍ଦନ
ଡାକଦେଲେ ଆଜ୍ଞା ପତ୍ର ଘେନ ବିଭୀଷଣ ।୬

ବିଭୀଷଣ ବୋଲେ ମୁହିଁ ଦୈତ୍ୟ ରାଜେଶ୍ୱର
ଅନ୍ୟ ଠାକୁର ନ ଜାଣେ ଅଛୁ କେ ମୋହର
ମୋହ ଠାକୁର ରାବଣ ଥିଲେ ତ୍ରେତା ଯୁଗେ
ଶ୍ରୀରାମ ବଧିଲେ ତାଙ୍କୁ ପତ୍ନୀଚୌର ରାଗେ । ୭
ରାବଣ ମଲରୁ ରାମ ହୋଇଲେ ଠାକୁର
ଏହାଛଡ଼ା ନ ଜାଣଇ ଅନ୍ୟକେ ଠାକୁର
ଘଟୋତ୍କଚ ବୋଲେ ରାମ ଶ୍ରୀକୃଷ୍ଣ ରୂପରେ
ଏବେ ଯାତ ହୋଇଛନ୍ତି ଦ୍ୱାରକା ନଗରେ । ୮
ଯାଦବ ବଂଶରେ ପ୍ରଭୁ ହୋଇଛନ୍ତି ଜାତ
ଅରୁଣ ତେଜଙ୍କ ନାତି ବସୁଦେବ ସୁତ
ଅଷ୍ଟ ବର୍ଷେ ଅଷ୍ଟମଲ୍ଲ କରିଲେ ନିଧନ
କଂସ, ଜରା, ଶିଶୁପାଳ ଆଦିଦୁଷ୍ଟ ଗଣ । ୯
ଏବେ ବିଜେ କରିଛନ୍ତି ରାଜସୂୟ ଯାଗେ
ଲକ୍ଷେ ରାଜା ଖଟିଛନ୍ତି ଧର୍ମ ମାହାଭରେ
ସୋମବଂଶେ ପାଣ୍ଡୁ ସୁତ ରାଜା ଯୁଧିଷ୍ଠିର
କରୁଛନ୍ତି ରାଜସୂୟ ଯାଗ ନୃପବର । ୧୦
ଯୁଧିଷ୍ଠିରଙ୍କ ଅନୁଜ ନାମ ଭୀମସେନ
ମହାପରାକ୍ରମୀ ସେହି ପବନ ନନ୍ଦନ
ତାହାଙ୍କ ନନ୍ଦନ ମୁହିଁ ଘଟୋତ୍କଚ ନାମ
ହିଡ଼ିମ୍ବିକା ମାତା ମୋର ଜାଣ ଦୈତ୍ୟରାଣ । ୧୧
ଭୀମଙ୍କ କନିଷ୍ଠ ଭ୍ରାତା ଧନଞ୍ଜୟ ବୀର
ଧରନ୍ତି ଗାଣ୍ଡିବ ଧନୁ ମନଭେଦ ଶର
ଶ୍ରୀକୃଷ୍ଣ ଅର୍ଜୁନ ବେନି ଅଟନ୍ତି ଏକାତ୍ମା
କି ବର୍ଣ୍ଣିବ ଦୈତ୍ୟ ପତି ତାହାଙ୍କ ମହିମା ? ୧୨
ଅର୍ଜୁନ କନିଷ୍ଠ ଭ୍ରାତା ନକୁଳ କୁମାର
କୁମାର ପଣରେ ପାଟ ଅଛି ସ୍ୱର୍ଗପୁର
କୁନ୍ତି ମୁନେ ମହାବ୍ରତ କରିଲେ ଧାରଣ
ତାହାଙ୍କ କନିଷ୍ଠଭ୍ରାତା କରେ ମନ୍ତ୍ରୀପଣ । ୧୩

ଜ୍ୟେଷ୍ଠ ଭ୍ରାତା ଯୁଧିଷ୍ଠିର ଭାରତର ରାଜା
ଲକ୍ଷେ ରାଜା କରୁଛନ୍ତି ତାଙ୍କ ପାଦ ପୂଜା
ସାକ୍ଷାତରେ ଧର୍ମ ନିରଞ୍ଜନ ଅବତାର
ଖଟିଛନ୍ତି ନାରାୟଣ ତାହାଙ୍କ ପୟର । ୧୪

ଶ୍ରୀମୁଖରେ ଆଜ୍ଞାତୋତେ ଦେଇଛନ୍ତି ଧର୍ମ
ରାଜସୂୟ ଯାଗେ ଯାଇ କରିବ ଦର୍ଶନ
ଘଟୋତ୍କଚ ଏଷ୍ଟା କଥା ଶୁଣି ବିଭୀଷଣ
ଶ୍ରୀରାମ କହିବା କଥା କରିଲେ ସ୍ମରଣ । ୧୫

" କହିଥିଲେ ରଘୁନାଥ ଦ୍ୱାପର ଯୁଗରେ
ଜାତ ହେବେ ନିରଞ୍ଜନ ହସ୍ତିନା ନଗରେ
ରାଜସୂୟ ମହାଯାଗ କରିବେ ମହୀରେ
ଦର୍ଶନ ପାଇବୁ ମୋର ସେ ମହାଯାଗରେ । ୧୬

ଏବେ ସେହି ଶୁଭବେଳ ଆସି ଉପଗତ
ଦର୍ଶନ ନିମନ୍ତେ ଡାକଛନ୍ତି ରଘୁନାଥ
ସହସ୍ର ରଥେ ପୂରାଇ ବହୁ ଧନରତ୍ନ
ଅଙ୍ଗରକ୍ଷ ସଙ୍ଗେ ଘେନି ଚଳିଲେ ରାଜନ । ୧୭

ଆଗେ ଆଗେ ଚଳିଗଲେ ଭୀମଙ୍କ ନନ୍ଦନ
ବାର୍ତ୍ତା ଦେଇଲ ବିଭୀଷଣ କଲେ ଆଗମନ
ବହୁବଳବାନ ଦୈତ୍ୟ ସଙ୍ଗେ ଆସିଛନ୍ତି
ମନ୍ଦର ଭୂଧର ପ୍ରାୟ ରୂପ ପ୍ରକାଶନ୍ତି । ୧୮

ଘଟୋତ୍କଚ କଥାଶୁଣି ଦେବ ଯଦୁନାଥ
ସ୍ମରଣ କରିଲେ ହୃଦେ ବୀର ହନୁମନ୍ତ
ବିଜେ କଲେ ହନୁମାନ ଘେନି ଅଙ୍ଗବଳ
ପ୍ରଣିପାତ ହେଲେ ମାନ୍ୟେ ପ୍ରଭୁ ପାଦତଳ । ୧୯

ହନୁମାନଙ୍କୁ ଦେଖିଣ ସଭାରେ ରାଜାଏ
ବୋଲନ୍ତି ଏ ରାମଭକ୍ତ ପବନ ତନୟେ
ଶୁଣିଥିଲୁ ନାମ କର୍ଣ୍ଣେ ଦେଖିଲୁ ନୟନେ
ନୟନ ପବିତ୍ର ହେଲା ଯାଗ ଆଗମନେ । ୨୦

ହନୁମନ୍ତେ ସମାଦର କରି ଯଦୁନାଥ
କହିଲେ ତୋ ଯୋଗୁଁ ହେବ କାର୍ଯ୍ୟ ସମୁଚିତ
ଦକ୍ଷିଣରେ ହନୁମାନ ବାମେ ବୃକୋଦର
ଦୁଇ ଭାଇଙ୍କି ଘେନିଣ ଚଳିଲେ ଶ୍ରୀଧର । ୨୧

ପଛରେ ଗୋଡ଼ାଇ ଗଲେ ବିନତା ନନ୍ଦନ
ଚଳିଗଲେ ଯଦୁନାଥ ବରି ବିଭୀଷଣ
ଶଙ୍ଖ ଚକ୍ର-ଗଦା-ପଦ୍ମ ଶାରଙ୍ଗ ଧାରଣ
ପୃଷ୍ଠ ଦେଶରେ ତୂଣୀର ଦିଶେ ଶୋଭାବନ । ୨୨

କାଖେ ଯୋଡ଼ ସ୍ୱର୍ଣ୍ଣ ବେତ ଜାକିଛନ୍ତି ହରି
ବିଭୀଷଣଙ୍କୁ ପାଛୋଟି ଗଲେ ଅଙ୍କଶାର
ରାମକୃଷ୍ଣ ବେନି ରୂପ ଧରିଛନ୍ତି ହରି
ଦୁହିଁ ଦେଖି ବିଭୀଷଣ ହେଲେ ନିଜଭୁଲ । ୨୩

ବୋଲେ ହେତା ଯୁଗୁଁ ପ୍ରଭୁ ପାଦରେ ଶରଣ
କୃଷ୍ଣ କମଳାସ୍ୟ କାନ୍ତି ଦେଖି ହେଲି ଧନ୍ୟ
ଶ୍ରୀକୃଷ୍ଣ କହିଲେ ଆହେ ଲଙ୍କ ଅଧିପତି
ରାଜସୂୟ ଯାଗ ଦେଖି ଚିତ୍ତ କର ଶାନ୍ତି । ୨୪

ନରାକାର ଅବତାର ଯୁଧିଷ୍ଠିର ସ୍ୱାମୀ
ଦୁଃଖ ଦୂର ହୋଇଯିବ ଚରଣେ ପ୍ରଣମି
ହନୁମାନ ଦେଖି ଦୈତ୍ୟ ଭୟକୁ ପାଇଲେ
ଦୈତ୍ୟେ ଭୀତ ହେବା ଦେଖି ବିଭୀଷଣ ବୋଲେ । ୨୫

ମୋହର ନିମନ୍ତେ ଡାକି କହନ୍ତୁ ହନୁକୁ
ଦୟାକରି ଥାଉ ହନୁ ଦାନବ ଦଳକୁ
ଶ୍ରୀକୃଷ୍ଣ କହିଲେ ତୁମ୍ଭେ ଚିନ୍ତା କର ନାହିଁ
ଏମି ଆଜ୍ଞା ମେଣ୍ଟିବାକୁ କେ କ୍ଷମ ନୁହଇଁ । ୨୬

ବିଭୀଷଣ ଆଣିଥିବା ଧନରତ୍ନ ମାନ
ଭଣ୍ଡାର ଘରେ ରଖିଲେ ନେଇ ଦୂତଗଣ
ଅସୁର ସମ୍ରାଟ ଘେନି ଦେବ ଚକ୍ରଧର
ଗାଢ ଗତି କରି ଗଲେ ପୂର୍ବ ସିଂହ ଦ୍ୱାର । ୨୭

ସେ ଦ୍ୱାରକୁ ଜଗିଛନ୍ତି ପ୍ରଦ୍ୟୁମ୍ନ କୁମାର
କୃଷ୍ଣ ସମ ଶୌର୍ଯ୍ୟ ବୀର୍ଯ୍ୟ କୃଷ୍ଣ କଳେବର
ଗୋବିନ୍ଦ ପୁଚ୍ଛିଲେ ଦ୍ୱାରେ ଶୁଣରେ ପ୍ରଦ୍ୟୁମ୍ନ
ଏ ଅଟନ୍ତି ଲଙ୍କାଗଡ଼ ରାଜା ବିଭୀଷଣ । ୨୮

ଦ୍ୱାର ଛାଡ଼ ଦେଲେ ଆମ୍ଭେ ଭିତରକୁ ଯିବୁ
ଯୁଧିଷ୍ଠିର ଠାକୁରଙ୍କୁ ଦର୍ଶନ କରିବୁ
ବାସୁଦେବ ବାକ୍ୟ ଶୁଣି ସମ୍ବର ଅରିର
କହିଲେ ବନା ଆଜ୍ଞାରେ ଛାଡ଼ିବି କପଟ ? ୨୯

ବିଭୀଷଣ ସଙ୍ଗେ ଘେନି ଦେବ ଦାମୋଦର
ପ୍ରବେଶ ହୋଇଲେ ଯାଇଁ ଦକ୍ଷିଣ ଦୁଆର
ସାମ୍ବ କୁମର ସେଠାରେ ଜଗିଅଛି ଦ୍ୱାର
ଆଜ୍ଞା ନ ଥିବାରୁ ବାଟ ନ ଛାଡ଼ଇ ବୀର । ୩୦

ଶ୍ରୀକୃଷ୍ଣ କହିଲେ ସାମ୍ବ ଏ କୁମର ନାମ
ଜାମ୍ବବାନ କନ୍ୟା ଜାମ୍ବବତୀର ନନ୍ଦନ
ଦେଖ ମୋର ପୁତ୍ରମାନେ ମହା ବଳବାନ
କରୁଛନ୍ତି ଧର୍ମରାଜା ପାଦେ ଭୃତ୍ୟପଣ । ୩୧

ସେ ମୋହର ଇଷ୍ଟ ଗୁରୁ ମୁଁ ତାଙ୍କ ଆଶ୍ରିତ
ଠାକୁରଙ୍କ ପାଦତଳେ ହେବ ପ୍ରଣିପାତ
ଏହାଶୁଣି ବିଭୀଷଣ ହୃଦେ ବିସ୍ମରଇ
ଆନନ୍ଦେ ଠାକୁର ତୋହ ଛଡ଼ା ନ ଜାଣଇ । ୩୨

ଜଗତର ନାଥ ତୁମ୍ଭେ ସ୍ୱୟଂ ପରଂ ବ୍ରହ୍ମ
ଅନ୍ୟମାନେ ପୁରୁଷ ତୁ ପୁରୁଷ ଉତ୍ତମ
ତୁମ୍ଭେ ମୋର ଗୁରୁଇଷ୍ଟ ନମସ୍ୟ ପ୍ରଣମ୍ୟ
ତୁମ୍ଭଠାରୁ ବଡ କଏ ନ ବୁଝଇ ମନ ? ୩୩

ବିଭୀଷଣ ଦେଖେ ସର୍ବ କାର୍ଯ୍ୟେ ନାରାୟଣ
ସର୍ବ ବ୍ୟାପକ ହୋଇଣ କରିଅଛନ୍ତି କର୍ମ
ରୂପ ଏକ ନାମ ଭିନ୍ନ ଶ୍ରୀରାମ, ଶ୍ରୀକୃଷ୍ଣ
ଜଁର କରଉ ଅଛନ୍ତି ସର୍ବ କର୍ମମାନ । ୩୪

ନିର୍ଲିପ୍ତ ପୁରୁଷ ଲୀଳା କରନ୍ତି ରଚନ
ଭକ୍ତର ମର୍ଯ୍ୟାଦା ପାଇଁ କରେ ଭୃତ୍ୟପଣ
ହୃଦ ମଧ୍ୟେ ବିଭୀଷଣ ଏମନ୍ତ ଭାବଣ
ଶ୍ରୀହରିଙ୍କୁ ଅନ୍ତର୍ଗତେ କରିଲେ ସ୍ମରଣ । ୩୫

ଯୋଡାହାତ କରି ଭକ୍ତେ କହିଲେ ଶ୍ରୀହରି
ଆମ୍ଭର ଇଷ୍ଟ ଅଟନ୍ତି ଧର୍ମ ଦଣ୍ଡଧାରୀ
ଯହିଁ ଧର୍ମ ତହିଁ ବାସ ଅଟଇ ମୋହର
ଧର୍ମ ଥିଲା ପ୍ରାଣୀର ମୁଁ ଚରଣେ କିଙ୍କର । ୩୬
ଧର୍ମ ଅଟେ ସୃଷ୍ଟି ବୀଜ କରେ ସଂସ୍ଥାପନ
ଧର୍ମର ସୁରକ୍ଷା ପାଇଁ ମର୍ତ୍ତ୍ୟେ ଅବତୀର୍ଣ୍ଣ
ଧର୍ମ ସଂସ୍ଥାପନ ପାଇଁ ଧର୍ମଙ୍କ ନନ୍ଦନ
ଯୁଧିଷ୍ଠିର ନାମେ ଜାତ ଧର୍ମ ନିରଞ୍ଜନ । ୩୭
ନିର୍ବାଣ ଦାୟକ ଏହି ଧର୍ମ ଯୁଧିଷ୍ଠିର
ଦ୍ୱାପର ଯୁଗେ କେବଳ ହୁଅନ୍ତି ଅବତାର
ଭାଗ୍ୟେ ଥିଲେ ତାହାଙ୍କର ମିଳଇ ଦର୍ଶନ
ଭଗବାନ ଠାରୁ ଧର୍ମ ଅଟେ ବଡ଼ଜଣ । ୩୮
ପରସ୍ପର କଥାବାର୍ତ୍ତା ହୋଇ ଚାଲିଗଲେ
ପଶ୍ଚିମ ଦ୍ୱାରରେ ଯାଇଁ ପ୍ରବେଶ ହୋଇଲେ
ଦ୍ୱାର ଜଗି ରହିଛନ୍ତି ଗଦ ମହାବୀର
ଆଜ୍ଞା ନ ଥିବାରୁ ବୀର ନ ଛାଡ଼ିଲା ଦ୍ୱାର । ୩୯

ସେ ଦ୍ୱାରରୁ ଚାଲିଗଲେ ବିଭୀଷଣ ନେଇ
ବୋଲନ୍ତି ବଳେ ଦର୍ଶନ କରିଅନ୍ତି ନେଇ
ଧର୍ମରାଜ ଯୁଧିଷ୍ଠିର ଆଜ୍ଞାକୁ ଡରଇ
ସେ ମୋର ପରମ ଇଷ୍ଟ ଆଜ୍ଞା ନ ମେଣ୍ଟଇ । ୪୦
ବିଭୀଷଣେ ପାକଶାଳ ଦେଖାଅନ୍ତି ନେଇ
ଦେଖିଣ ଆଶ୍ଚର୍ଯ୍ୟ ହେଲେ ଲଙ୍କାଗଡ଼ ସାଇଁ
କୃଷ୍ଣ ନାରୀଏ ଯୋଗାଡନ୍ତି ପାକ ପଦାର୍ଥ
ବିବିଧ ରନ୍ଧନ ବିପ୍ରେ କରନ୍ତି ପ୍ରସ୍ତୁତ । ୪୧

ଟାକଶାକୁ ଚଳିଗଲେ ଗଙ୍ଗା ନଦୀ କୂଳେ
ଭିନ ପଦ୍ମ ବୋଝ ଫଳ ଓଜାଡ଼ନ୍ତି ଚଳେ
ମୃଗ, ଗଣ୍ଡା, ବାର୍‌ହା ଆଦି ପଶୁପକ୍ଷୀ ମାଂସ
ନାବରେ ପୂରାଇ ଆଣେ କହିତ ନରେଶ । ୪୨
ଭୁଞ୍ଜନ୍ତି ଲଙ୍କାର ଦୈତ୍ୟ ଯମୁନା କୂଳରେ
ଚରଚ୍ଚ କରନ୍ତି ହନୁ ରହିଣ ସେଠାରେ
ବିଭିଷଣଙ୍କୁ ଦେଖାନ୍ତି ଦେବ ଦାମୋଦର
ଦେଖି ଚମତ୍କୃତ ହେଲେ ଲଙ୍କ ଅଧୀଶ୍ବର । ୪୩
ବିଭୀଷଣ ବୋଲେ ଦେବ ତୁମ୍ଭର ଏ କୃତ୍ୟ
ପାଣ୍ଡବଙ୍କ ନାମ ଭବେ କରିଅ ଉଦିତ
ଯୁଧିଷ୍ଠିର କିବା ଶକ୍ତ ତ୍ରୈଲୋକ୍ୟ ଜୀବଙ୍କୁ
ଚରଚ୍ଚ କରି ସନ୍ତୋଷ କରିବ ସଭିଙ୍କୁ ? ୪୪
କିଏ ଦିଏ, କିଏ ନିଏ, କେଉଁଠାରୁ ଆସେ
ସମସ୍ତ ଘଟଣ ହୁଏ ତୁମ୍ଭର ଆଦେଶେ
କି ବିଚିତ୍ର ଅଟେ ପ୍ରଭୁ ତୁମ୍ଭଙ୍କୁ ଏ ମାନ
ଯେ ପଡ଼ି ଦାତା ଅଟନ୍ତି ପ୍ରାଣୀ ଯେ ଛପନ । ୪୫
ବିଭୀଷଣ ଘେନି ଚଳିଗଲେ ଯଦୁନାଥ
ଭଣ୍ଡାର ଘର ସମ୍ମୁଖେ ହେଲେ ଉପସ୍ଥିତ
ଶ୍ରୀମାନ ଗୋବିନ୍ଦ ଠିଆ ଭଣ୍ଡାର ଗୃହରେ
ବତିଶ ସହସ୍ର ଯୋଦ୍ଧା ଅଛନ୍ତି ସଙ୍ଗରେ । ୪୬

ଗୋବିନ୍ଦ କହିଲେ ଦେଖ ଆହେ ଲଙ୍କପତି
ମାମୀ ଦୁର୍ଯ୍ୟୋଧନ ଏହି କୁରୁକୁଳ ପତି
ପନ୍ନଗ ନାରାୟଣ ଏ ବିଷ୍ଣୁଙ୍କ ସମାନ
ଅନର୍ଘମଣି ମୁକୁଟ ମଥାରେ ମଣ୍ଡନ । ୪୭

କୋଟି ପାଦେ କମଳାମା କନ୍ଧେ ବସିଛନ୍ତି
ଗୃଲନ୍ତେ ଅବେଣ୍ଣ ପଦ୍ମ ଫୁଟେ ବସୁମତୀ
ଶଙ୍ଖନିଧି, ପଦ୍ମନିଧି ବେନି କର ତଳେ
ପଥର ଖାଲଟେ ରତ୍ନ କରସ୍ପର୍ଶ କଲେ । ୪୮

ଗ୍ରୈବଣୀ ଲକ୍ଷଣେ ପୂର୍ଣ୍ଣ ମାନ ଚକ୍ରବର୍ତ୍ତୀ
ଏହା ସୈନ୍ୟବଳେ ଭଙ୍ଗେ ସାଗରର ଶକ୍ତି
ଏତେ ବଡ଼ ନୃପ ଧର୍ମ ଭଣ୍ଡାରଂକାରୀ
ଏଥୁ ବୃଦ୍ଧ ଧର୍ମଧ୍ୱଜ ମହିମା କପଳ ? ୪୯

ବିଭୀଷଣ ବୋଲେ ସବୁ ତୁମ୍ଭ କୃତ୍ୟ ଦେବ
ଜାଣି ଭଣ୍ଡାର ଦେଇଛୁ ଯେଣୁ ନ ସରିବ
ଭଣ୍ଡାର ଦ୍ୱାରେ ରହିଣ ଦେଖେ ବିଭୀଷଣ
ଘଡ଼ିକେ ଦାନ ହୋଇଲ ଆଣିଥିବା ଧନ । ୫୦

ଧନରତ୍ନ ଦାନେ ଧର୍ମ ବହୁ କୀର୍ତ୍ତି ଅର୍ଜି
ନିର୍ଲିପ୍ତ ଭାବେ ଦିଅନ୍ତି ଭଣ୍ଡାର ବିସର୍ଜି
ଭଣ୍ଡାର ରକ୍ଷକ ଯେଣୁ ମାମା ଦୁର୍ଯ୍ୟୋଧନ
ଭାରେ ମାଗିଲେ ଦି ଭାର ଦେଉଥାନ୍ତି ଦାନ । ୫୧

ଭାରେ ବ୍ୟୟ ହେଲେ ବୃଦ୍ଧି ହୁଏ ପାଞ୍ଚ ଭାର
ଦୁର୍ଯ୍ୟୋଧନ କର ସ୍ପର୍ଶେ ନ ସରେ ଭଣ୍ଡାର
ବିଭୀଷଣ ବୋଲେ ଧର୍ମ ଜୀବନ ତୋ ସାଧୁ
ଧନେ ସମ ନ ହୋଇବେ ତୋତେ ସପ୍ତ ସିନ୍ଧୁ । ୫୨

ଏମନ୍ତ ସମୟେ ହେଲା ମଧ୍ୟାହ୍ନ ସମୟ
ସୁଗନ୍ଧ ତୈଳ ଦେନଲେ ଲକ୍ଷେ ନରବୟ
ତିଳ, ଅଏଁଳା, କୁଙ୍କୁମ, କସ୍ତୁରି, କର୍ପୂର
ଅଙ୍ଗଲଗି ହେଲେ ନୃପେ ଯା ଲେଙ୍ଗା ଯାହାର ।୫୩

ଜାହ୍ନବୀ ଜଳରେ ପଶି ସମ୍ପାଦିଲେ ସ୍ନାନ
ସ୍ନାନ ଶେଷେ ହେଉଛନ୍ତି ବସନ ଭୂଷଣ
ଜାଈ, ଜୂଈ, ଜବା, ମଲ୍ଲୀ, ବକୁଳ, ମାଳତୀ
କୁମୁଦ, କମଳ, କିଆ, ଚମ୍ପକ, ସେବତୀ । ୫୪

ନନ୍ଦନ କାନନୁ ପୁଷ୍ପ ଗନ୍ଧର୍ବେ ତୋଳିଣ
ଆକାଶ ଗଙ୍ଗା ଜଳରେ ପେଷନ୍ତି ବନ୍ଦନ
ଗଙ୍ଗାଜଳୁ ସଦ୍ୟ ପୁଷ୍ପ ଦେନ ନୃପ ଗଣ
ଉଲ୍ଲସିତ ମନେ ଗନ୍ଧ କରନ୍ତି ମଣ୍ଡନ । ୫୫

ରାଜସୂୟ ଯାଗ କାଳେ ଜାହ୍ନବୀ ପାବନ
ପୃଷ୍ଠବର୍ତ୍ତୀ ହୋଇଅଛୁ କିବା ଆଜ୍ଞା ମାମୀ ?
ବୃଷ୍ଟି ସଙ୍ଗେ ସୁରଗଙ୍ଗା ନୀର ବିନ୍ଦୁମାନ
ରାଜାଙ୍କ ମସ୍ତକେ ପଡ଼ି କରେ ପୂଣ୍ୟଦାନ । ୫୬
ଦିବ୍ୟ ଆଭରଣ ମାନ କୁବେର ଦେଲେଣି
ଲକ୍ଷେ ରାଜାଙ୍କର ଅଙ୍ଗ କରାନ୍ତି ମଣ୍ଡନ
ବସନ ଭୂଷଣ ହୋଇ ପୃଥ୍ୱୀ ନର ପାଳେ
ମଣ୍ଡପ ଶାଳକୁ ଯାଇ ଭୋଜନେ ବସିଲେ । ୫୭
ଅଷ୍ଟ ରତ୍ନରେ ନିର୍ମିତ ସୁଦିବ୍ୟ ଆସନ
ସୁବର୍ଣ୍ଣ ପାତ୍ର ମାନଙ୍କେ ଯୋଗାଉନ୍ତି ଅନ୍ନ
ବହୁ ପ୍ରକାର ବ୍ୟଞ୍ଜନ ଦିବ୍ୟ ରସାମୃତ
ପରଷନ୍ତି ଋତ୍ୱିଗଣେ ଭୋଜନ ନିମିତ୍ତ । ୫୮
ରାଜକାର୍ଯ୍ୟ ସମ୍ପଦରେ ଭୋଜନ ବିଧାନ
ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ଷଡ଼ରସ ମାନ
ଭୁଞ୍ଜନ୍ତି ନୃପତି ଗଣ ଯାର ଯାହା ଇଚ୍ଛା
ପରଷନ୍ତି ଆଦି ଅନ୍ନ ବିପ୍ରେ ମନ ଇଚ୍ଛା । ୫୯
କର୍ପୂର, ମରିଚ ପଣା ସୁମିଷ୍ଟ ସଲିଳ
ପାନ କରନ୍ତି ରାଜାଏ ହୋଇ ଉତ୍ଫୁଲ୍ଲ
ଗୋରସ ଦିଅନ୍ତି ଷଡ଼ରସ ଭୋଜନାନ୍ତେ
ମଧୁ ଆପ୍ୟାୟନ କରି ଉଠନ୍ତି ନୃନାଥେ । ୬୦
ପରିବେଷଣ ସମୟେ ଦୁଗ୍ଧ ମଧୁ ଧାର
ବହିଯାଏ ଧରା ପୃଷ୍ଠେ ହୋଇ ଦୁଇଧାର
ପ୍ରହରକ ଯାଏଁ ଧାର ହୁଏ ପ୍ରବାହିତ
ପାନ କରୁଥାନ୍ତି ପ୍ରାଣୀ ହୋଇ ଆନନ୍ଦିତ । ୬୧
ଆଚମନ ସ୍ଥାନେ ବିଜେ ହେଲେ ନୃପଗଣେ
ବହିଯାଏ ଘୃତ ଧାର ନଦୀର ସମାନେ
ଆଚମନ ସାରି ନୃପେ ନିଅବକାଶରେ
କର୍ପୂର ବିଡ଼ିଆ ପାନ ଭୁଞ୍ଜନ୍ତି ସୁଖରେ । ୬୨

ଗୀତେ ନୃତ୍ୟେ ମୋହୁଥାନ୍ତି ବିଳାସୀ ବନିତା
ଅଦୃଷ୍ଟ ଅଶ୍ରୁତ ପୂର୍ବ ରାଜସୂୟ କଥା
ଶ୍ରୀକୃଷ୍ଣ କହିଲେ ଦେଖ ଧର୍ମଙ୍କ ସାମର୍ଥ୍ୟ
ଲକ୍ଷେ ମାତ୍ର ସ୍ୱର୍ଣ୍ଣ ପାତ୍ର ଯୋଗାଡ଼ନ୍ତି ନିତ୍ୟ । ୬୩
ରାଜାଙ୍କେ ଲକ୍ଷେକ ମାତ୍ର ଝର ଆଦି କରି
ଭୋଜନାନ୍ତେ ବୋହି ନ୍ୟନ୍ତି ଲକ୍ଷେ ପରିଚାରୀ
ଜାହ୍ନବୀ ଜଳରେ ନେଇ ବୁଡ଼ାଇ ଦିଅନ୍ତି
ଉଚ୍ଛିଷ୍ଟ ପାତ୍ରେ ଭୋଜନ ଆଉ ନ ଦିଅନ୍ତି । ୬୪
ପୃଚ୍ଛା କଲେ ବିଭୀଷଣ କେବଣ କାରଣ
ଗଭୀର ଜଳେ ଫିଙ୍ଗିଲେ ସୁବର୍ଣ୍ଣ ବାସନ ?
ଗୋବିନ୍ଦ କହିଲେ ଶୁଣ ହେ ଲଙ୍କ ରାଜନ
ନିତ୍ୟ ନୂତନ ବାସନେ ଭୁଞ୍ଜାଅନ୍ତି ଅନ୍ନ । ୬୫
ଦେବଙ୍କ ଯୋଗାଡ଼ ଏହା ସ୍ୱର୍ଗୀୟ ସମ୍ପଦ
ରାବଣ ଭୟେ ରଖିଲେ ନେଇଣ ସମୁଦ୍ର
ସେ ଦିବ୍ୟ ବାସନ ମାନ ବରୁଣ ରାଜନ
ରାଜସୂୟ ଯାଗ କାର୍ଯ୍ୟେ ଯୋଗାନ୍ତି ବହନ । ୬୬
ଧର୍ମ ଆଜ୍ଞା ବଳେ ଦେଖ ଜଳଚର ଗଣ
ପୃଷ୍ଠେ ବହି ଆଣୁଛନ୍ତି ସୁବର୍ଣ୍ଣ ବାସନ
ବିଭୀଷଣ ପୃଚ୍ଛେ ଦେବ ଏ ବଡ଼ ଆଶ୍ଚର୍ଯ୍ୟ
ଅନ୍ୟ.ଯଜ୍ଞେ ଦେଖି ନାହିଁ ଦେଖୁ ଅଛୁ ଆଜ ? ୬୭

ରାଜୂସି ଯାଗ ସମ୍ପଦ ନ ହୁଅଇ କଳି
ଧନେ ମାନେ ଧର୍ମରାଜ ସର୍ବେ ଗଲେ ବଳି
ଏସବୁ ମହିମା ତୋର ଅଟେ ନାରାୟଣ
ଯୁଧିଷ୍ଠିର କିବା ଶକ୍ତି ନିମିତ୍ତ ପ୍ରମାଣ । ୬୮

ଛତିଶ କର ପରିଚ୍ଛା ଭୀଷ୍ମ ମହାରଥି
ଅନେକ ଯତ୍ନରେ ଆଦି ଅନ୍ନ ପରଷନ୍ତି
ଭୁଞ୍ଜନ୍ତି ଆନନ୍ଦେ ବସି ଜଗତର ପ୍ରାଣୀ
କୋଟିଏ ଜଣ ଭୁଞ୍ଜିଲେ ହୁଏ ଶଙ୍ଖ ଧ୍ୱନି । ୬୯

ବିଭୀଷଣ ଘେନ କୃଷ୍ଣ ପାର୍ଶ୍ୱେ ଠିଆ ହେଲେ
ଏକଶତ ଶଙ୍ଖ ଧ୍ୱନି ଦଣ୍ଡକେ ଶୁଣିଲେ
ଶଙ୍ଖ ସ୍ୱନ ଶୁଣି ସର୍ବେ କଲେ ପଳାୟନ
ଅଗ୍ନି ନେଇ ରୁଷି ପଇ ଜଳିଲେ ଦହନ । ୭୦

ଅକସ୍ମାତ ବୃଷ୍ଟି ହୋଇ ଧୋଇଗଲା ପାଂଶ
ପରିଷ୍କାର ହୋଇଗଲା ଛଇଶାଳ ଅଂଶ
କଣପୂ ରୁଦ୍ରଙ୍କ ଶତ ସଂଖ୍ୟାରେ ସନ୍ତାନ
ସ୍ୱର୍ଣ୍ଣ ସମାର୍ଜନୀ ଧରି ସଫା କଲେ ସ୍ଥାନ । ୭୧

ତଥିପରେ ପକାଇଲେ ଗୋଛେର ନେଇଣ
ଚନ୍ଦନ ଛେର ପକାନ୍ତି ତା'ପରେ ତକ୍ଷଣ
ତଦନ୍ତେ ବସିଲେ ଲୋକେ ଭୋଜନ ନିମନ୍ତେ
ଶୃଙ୍ଖଳିତ ଭାବେ କାର୍ଯ୍ୟ ହୁଏ ଆଜ୍ଞାମତେ । ୭୨

ଏ ବିଚିତ୍ର ଦୃଶ୍ୟ ଦେଖି ରାଜା ବିଭୀଷଣ
କାରଣ ପୁଚ୍ଛନ୍ତେ ତାଙ୍କୁ କହିଲେ ଶ୍ରୀକୃଷ୍ଣ
ଧର୍ମରାଜା ଆଜ୍ଞା ବଳେ ଏସବୁ ଘଟଣ
ଖଟିଛନ୍ତି ନାଗନର ସୁରନର ଗଣ । ୭୩

ବହୁତ ପ୍ରଶଂସା କଲେ ଧର୍ମଙ୍କୁ ଶ୍ରୀକୃଷ୍ଣ
ତାହାଙ୍କ ପାଦେ ପଡ଼ିବ ହେ ଲଙ୍କ ରାଜନ
ଏ ପୃଥ୍ୱୀରେ ଜନ୍ମିଥିଲେ ବହୁ ନରବର
ଜାନୁହଣ୍ଡ, ମାନଧାତା, ବେଣୁ, ମହାତ୍ମନ । ୭୪

ଏତେ ବଡ଼ ଯାଗ କେହି ନ ପାରିଲେ କରି
ଦ୍ୱାପରେ ଯାଗ କରନ୍ତି ଧର୍ମ ଦଣ୍ଡଧାରୀ
ଗୃହଯୁଗେ ଧର୍ମରାଜ କ୍ଷମତା ମହାନ
ତେଣୁ ଏ ଯାଗ କରନ୍ତି ଯୁଧିଷ୍ଠିର ରାଜନ । ୭୫

ବିଭୀଷଣ ବୋଲେ ଦେବ ବୁଝିଅଛୁ ହୃଦେ
ଏତେକ ସମ୍ପଦ ତାର ତୋହର ପ୍ରସାଦେ
ଲୋକେ କହୁଛନ୍ତି ଯାଗ କରେ ଯୁଧିଷ୍ଠିର
ମାତ୍ର ମୁଁ ଦେଖୁଛି ଯାଗ କରନ୍ତି ଶ୍ରୀଧର । ୭୬

ଶ୍ରୀକୃଷ୍ଣ କହିଲେ ଧର୍ମେ କଲେ ତୁ ଦର୍ଶନ
କୋଟିଏ ଜନ୍ମର ପାପ ହୋଇବ ଖଣ୍ଡନ
ତାହାଙ୍କ ପାଦେ ସହସ୍ର ପ୍ରଣାମ କରିବୁ
ଠାକୁରଙ୍କ ଆଜ୍ଞା ହେଲେ ଭୂମିରୁ ଉଠିବୁ । ୭୭
ଏହା ଶୁଣି ବିଭୀଷଣ ଭାବେ ହୃଦଗତେ
ତୋହ ବିନା ଆନ କିଏ ନ ଜାଣେ ଜଗତେ
ତା'ମନ ବୁଝି ଭାବନ୍ତି ମନ ବୁଦ୍ଧି କଲି
ଅସାଧ ରାଜାଙ୍କୁ କମ୍ପା ସଭାକୁ ଡାକିଲି ? ୭୮
ତହୁଁ ଚଳିଗଲେ ବାସୁଦେବ ବିଭୀଷଣ
ଉତ୍ତର ଦ୍ୱାରେ ମିଳିଲେ ଯାଇଁ ଦୁଇଜଣ
କୋଟିଏ ଗର୍ଥ ଧେନଣ କ୍ଷେତ୍ରାଦ ପୁଷ୍କର
ଖଟିବାକୁ ବସିଅଛୁ ଆନେକାନ ଦୁଆର । ୭୯
ସେ ଦ୍ୱାରର ଦ୍ୱାରପାଳ ସାତ୍ୟକି ପ୍ରବର
ବିଭୀଷଣ ସେନ ଦେବ ପଶିଲେ ଭିତର
ପାରୁଣ,' ମହା ପାତ୍ରଣ ମନ୍ତ୍ରୀ ସହିତରେ
ଚଳିଗଲେ ବିଭୀଷଣ କୃଷ୍ଣଙ୍କ ସଙ୍ଗରେ । ୮୦
ବିଭୀଷଣେ ଦେଖି ନୃପେ ହେଲେ ସ୍ତମ୍ଭୀଭୂତ
ବୋଲନ୍ତି ଏ ଲଙ୍କନାଥ ରାବଣର ଭ୍ରାତ
ବିଭୀଷଣ ରୂପ ଶୋଭା ଜଗତ ମୋହଇ
ସାକ୍ଷାତ ମାନବା ବିଷ୍ଣୁ ପ୍ରାପ୍ତ ହିଶୁଥାଇ । ୮୧
ଦେଖି ରାଜାଏ ବୋଲନ୍ତି ନେତ୍ର ହେଲା ଧନ୍ୟ
ତେପନ ଯୁଗର ରାଜା କରିଲୁ ଦର୍ଶନ
ପୁଣ୍ୟ ଫଳ ଲଭ ଆସି ରାଜସୂୟ ସଭା
ଧର୍ମ ନୃପଙ୍କ ପ୍ରଭାବେ ପୃଥ୍ୱୀ ପାଏ ଶୋଭା । ୮୨
ଦେଖିଣ ଆନନ୍ଦ ହେଲେ ଋଷି ବିପ୍ର ମୁନି
କଲ୍ୟାଣ ବାଞ୍ଛା କରିଲେ କରି ବେଦ ଧ୍ୱନି
ରାମପ୍ରିୟ ଭକ୍ତ ଦେଖି ରାମ ପ୍ରେମ ସ୍ରୋତେ
ନିମଗ୍ନ ହୋଇଲେ ସର୍ବେ ପ୍ରେମାଶ୍ରୁ ନିର୍ଗତେ । ୮୩

ବିଭୀଷଣ ସହିତରେ ଦେବକୀ ନନ୍ଦନ
ଆହ୍ଵାନ ଚଳେ ମିଳିଲେ ସମ୍ଭ୍ରମେ ଯାଇଁଣ
ଗୋବିନ୍ଦ ବୋଇଲେ ଦେବ ଏ ବିଶ୍ରବା ସୁତ
ଶ୍ରୀ ଗ୍ରମୂରେ ଉପଗତ ଦର୍ଶନ ନିମିତ୍ତ । ୮୪
ସ୍ତ୍ରୀ ହାନ୍ଧ ଡ଼ାକ ଦେଇ ଉଚେ ବନମାଳୀ
ଆପଣେ ପାଦେ ପଡ଼ଣ ହେଲେ ନଉତ୍ଥଳ ।
ବିନପୁ ବାକ୍ୟେ ବନ୍ଧଣ ଧର୍ମ ଦେବ ସାଇଁ
ତନ ପାବଛର ତଳେ ଶୋଇଲେ ଗୋସାଇଁ ।୮୫
ଏ ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ହେଲେ ବିଭୀଷଣ
ନିରେଖି ରୁହିଁଲେ ନେତ୍ରେ ଧର୍ମଙ୍କ ବଦନ
ଅବଗତ ହେଲେ ହୃଦେ ନୃହନ୍ତି ମାନବ
ଯାହାଙ୍କ ପାଦେ ପ୍ରଣାମ କରନ୍ତି କେଶବ । ୮୬
ଶୁକ୍ଳାମ୍ବର ବିଷ୍ଣୁ ଏହି ଅଟନ୍ତି ପ୍ରତ୍ୟକ୍ଷେ
ଏହା ବିଚାରି ପ୍ରଣାମ କଲେ ସମ୍ମୁଖେ ।
ଯୁଧିଷ୍ଠି ପାଦେ ନମିଲେ ଦେବ ନାରାୟଣ
ତାଙ୍କ ପାଦ ତଳେ ନମେ ବିଶ୍ରବା ନନ୍ଦନ । ୮୭

ଜିତ ପ୍ରସାଦ ବୋଲିଣ ଅର୍ଜୁନ ଜଣାଏ
ନମ୍ରନ୍ତି ଯଦୁପତି ଆହେ ଧର୍ମରାୟେ ।
ଶୁଣି ଯୁଧିଷ୍ଠି କହିଲେ ଯାଅରେ ନକୁଳ
ବାଞ୍ଛାସିଦ୍ଧ ହେଉ ବେଗେ ଶ୍ରୀହରିଙ୍କି ତୋଳ । ୮୮
ନକୁଳ କହିଲେ ଅଜ୍ଞା ଦେଲେ ଧର୍ମରାଣ
ଉଠନ୍ତୁ ହେ ହରିବୋଲି ଉଠାନ୍ତି ମୋହନ ।
ଉଠି ବସି ବିଭୀଷଣ ଶିରେ ହାତ ଦେଇ
କହିଲେ ତୁ ନ ଉଠିବୁ ପ୍ରଭୁ ଆଜ୍ଞାନାହିଁ । ୮୯
ବିଭୀଷଣ ରହେ ମାନି ପ୍ରଭୁଙ୍କ ବଚନ
ଆଡ ହୋଇଣ ଧର୍ମଙ୍କୁ ଜଣାନ୍ତି ଶ୍ରୀକୃଷ୍ଣ
"ସ୍ଵାମୀ ଲଙ୍କା ଗଡ଼ ରଜା ବୀର ବିଭୀଷଣ
ଶ୍ରୀ ଗ୍ରମୂରେ କରୁଛନ୍ତି ଭୂମିଷ୍ଠ ପ୍ରଣାମ । ୯୦

ଶୁଣି ବାମ ପାଦ ଶୂଳ କହିଲେ ଯୁଧିଷ୍ଠି
ହେ ହରି ! ବିଭୀଷଣଙ୍କୁ କହ କଥି ଉଠି ।
କୃଷ୍ଣ ବଚନେ ଉଠିଲେ ଲଙ୍କା ଅଧିପତି
ଉଠିପୁଣି ନିରେଖନ୍ତି ଧର୍ମ ରାଜ ମୂର୍ତ୍ତି । ୯୧

କୃଷ୍ଣ କହିଲେ ଏ ଯେବେ ନର ହୋଇଥାନ୍ତା
ମୋହର ନମସ୍କାରେ କି ବର୍ତ୍ତିଣ ରହନ୍ତା ?
ଶ୍ରୀକରେ ଅର୍ଘ୍ୟ ଘେନିଣ ରାଜା ବିଭୀଷଣ
ଯୁଧିଷ୍ଠିରଦେବଙ୍କ ପାଦ କଲେ ବନ୍ଦନ । ୯୨

ସ୍ୱହସ୍ତେ ଯୁଧିଷ୍ଠି ଦେବ ଦେଲେ ଜୟମାଳା
ବହୁ ପୁରୁଷାର୍ଥ କଲେ ପଣ୍ଡୁ ରାଜା ବଳା
ଆସନରେ ବସାଇଲେ ନେଇ ନାରାୟଣ
ଲକ୍ଷେ ରାଜା ଗହଣେ ବସିଲେ ବିଭୀଷଣ । ୯୩

ରାଜସୂୟ ଯାଗ ସଭା ପନ୍ଦର ଦିବସେ
ଦେବେ ପୁଷ୍ପ ବୃଷ୍ଟି କଲେ ଆକାଶୁ ହରଷେ ।
ହେ ଦୀନ ବାନ୍ଧବ ହରି କମଳ ଲୋଚନ
ସିନ୍ଧୁ ସୁତା କମଳାଙ୍କ ପ୍ରାଣ ପ୍ରିୟଧନ । ୯୪

ରାଜସୂୟ ଯାଗ ପ୍ରଭୁ ଆପଣେ ସ୍ଥାପିଲ
ପାଣ୍ଡବଙ୍କ ଯଶ କୀର୍ତ୍ତି ମର୍ତ୍ତ୍ୟେ ରଖାଇଲ ।
ପଞ୍ଚାନବେ ପଦେ ଅଧ୍ୟା ହୋଇଲ ସମ୍ପୂର୍ଣ୍ଣ
ବ୍ରଜ ଦାସ ପଦ୍ମ ପାଦେ ପଶିଲ ଶରଣ । ୯୫

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ଦୈତ୍ୟପତି ବିଭୀଷଣଙ୍କ
ଯାଗ ଦର୍ଶନ ବର୍ଣ୍ଣନେ ନାମ ଚତୁଃ ତ୍ରିଂଶ ଅଧ୍ୟାୟ
ସଂପୂର୍ଣ୍ଣ । ଶ୍ରୀକୃଷ୍ଣାର୍ପଣମସ୍ତୁ ।

**ବୋଲି -**

ଭଜମନ ବ୍ରଜବନ ରସ ରାଜାଙ୍କୁ
ନେତ୍ରେ ରଞ୍ଜି ଦିବ୍ୟାଞ୍ଜନ ପ୍ରେମରେ କରି ଲୋଚନ
ରସିକ ଶେଖର ପଦ୍ମର ସରୋଜକୁ । ଘୋଷା
ଚନ୍ଦ୍ର ପ୍ରଭା ଜିଣି ଶୋଭା ଶରୀର କ ମନୋଲୋଭା
ତ୍ରିଭଙ୍ଗ ଭଙ୍ଗିମା ଠାଣି - ବ୍ରଜରାଜଙ୍କୁ
ଦ୍ୱିଭୁଜ ମୂରଲୀ କର ନବ କିଶୋର ସୁନ୍ଦର
ନାଗର ନଟବର ନାଟୁଆ ରାଜାଙ୍କୁ ।
ନାନା ରତ୍ନେ ବିଭୂଷିତ କର୍ଣ୍ଣେ କୁଣ୍ଡଳ ଲୋଳିତ
କେୟୂର କଙ୍କଣ ପୀତାମ୍ବର ସାଜକୁ
ମସ୍ତକେ ମୟୂର ଚୂଳ କଣ୍ଠେ ମାଳତୀର ମାଳ
ସୁଶୋଭିତ ଜାନୁଯାଏ ପଦ କଞ୍ଜକୁ ।
ଚନ୍ଦନେ ଚର୍ଚ୍ଚିତ ଅଙ୍ଗ ଭକ୍ତଭାବ ଅନୁରାଗ
ବକ୍ଷସ୍ଥଳେ କୌସ୍ତୁଭ ମଣି ରାଜକୁ
ବ୍ରହ୍ମା-ବିଷ୍ଣୁ-ଶିବାଦିରେ ବନ୍ଦିତ ବିଶ୍ୱ ସଂସାରେ
ବୃନ୍ଦାବନ ପ୍ରଣମଇ ଅଗ୍ର ପୂଜ୍ୟଙ୍କୁ ।

●

# ପଞ୍ଚତ୍ରିଂଶ ଅଧ୍ୟାୟ

## ନାଗରାଜ ଅନନ୍ତଙ୍କ ଯାଗଦର୍ଶନ

( ରାଗ - ଭୈରବ )

ଶ୍ରୀ କୃଷ୍ଣ ଚରିତ ମାନସ ଶୁଣ ସୁଜନ
ଝରୁଅଛି କୃଷ୍ଣ ପ୍ରେମ ରସ କର ପାନ । ୧
ଆସ୍ଥାନପରେ ବିଜୟ ଧର୍ମ ଯୁଧିଷ୍ଠିର
ଦର୍ଶନ ନିମନ୍ତେ ଗଲେ ଦ୍ରୁପଦ କୁମର । ୨
ଜାତିରେ ବ୍ରାହ୍ମଣ ସେ ଯେ ବୃତ୍ତିରେ କ୍ଷତ୍ରିୟ
ଯଜ୍ଞ ଅଗ୍ନିରୁ ସଂଜାତ ରୂପ ଜ୍ୟୋତିର୍ମୟ । ୩
ଲମ୍ବିତ ଯୁଡା, କନ୍ଧେ ଉତ୍ତରୀ, କୁଶ ହସ୍ତ
ଦେଖିଣ ଧର୍ମ ରାଜନ ହୋଇଲେ ପ୍ରଣତ । ୪
କର ପ୍ରସାରି କଲ୍ୟାଣ କଲେ ଧୃଷ୍ଟଦ୍ୟୁମ୍ନ
ଦେଖିଣ ବିସ୍ମିତ ହେଲେ ସକଳ ରାଜନ । ୫
ତ୍ରୈଲୋକ୍ୟ ନାଥ ବନ୍ଦନ କରେ ଯା ଚରଣ
ଶୁକ୍ଳାମ୍ବର ବିଷ୍ଣୁ ରୂପ ସେ ଧର୍ମ ରାଜନ । ୬
ଲକ୍ଷେ ନୃପତି ଖଟନ୍ତି ଯାହା ପାଦ ତଳେ
ପାଦ ଅଙ୍ଗୁଷ୍ଠି ଲାଗିଛି ନୃପଙ୍କର ଶିରେ । ୭
ଜଗତେ ଯାହା ମହିମା ଅଟେ ଅଗୋଚର
ଧୃଷ୍ଟଦ୍ୟୁମ୍ନେ, କେଉଁ ପରି କଲେ ନମସ୍କାର ? ୮
ଏମନ୍ତ ଘଟଣା ଯହୁଁ ଶ୍ରୀ ହରି ଦେଖିଲେ
ଅଧର କମ୍ପାଇ ମହା କ୍ରୋଧରେ ପୁଚ୍ଛିଲେ ? ୯
ବିଚିତ୍ର ମଣୁଛି ଦେବ ଆପଣଙ୍କ କଥା
ଧୃଷ୍ଟଦ୍ୟୁମ୍ନେ କମ୍ପା ହୁଇ ନୁଆଁଇଲ ମଥା ? ୧୦
ବୋଲୁଛନ୍ତି ଯୁଧିଷ୍ଠିର କୃଷ୍ଣା ଜ୍ୟେଷ୍ଠ ଭ୍ରାତା
ତାହାଙ୍କୁ ଦେଖି ମାନ୍ୟାର୍ଥେ ନୁଆଁଇଲି ମଥା । ୧୧

ଯୁଧିଷ୍ଠିରଙ୍କ ଅଭିମତ ଶୁଣି ହୃଷିକେଶ
ବ୍ୟାସ ଦେବଙ୍କୁ ଅନାଇଁ ପୁଚ୍ଛିଲେ ସନ୍ଦେଶ । ୧୨
କହ ଆହେ ଋଷିବର ଶାସ୍ତ୍ରୀୟ ବିଧାନ
ଶଳାକୁ ଜୁହାର ହେବା ଅଛୁକି ପ୍ରମାଣ ? ୧୩
ବ୍ୟକ୍ତ କଲେ ବ୍ୟାସ ଦେବ ଶାସ୍ତ୍ରର ବିଧାନେ
ଜ୍ୟେଷ୍ଠ ଶଳାକୁ ଜୁହାର ନାହିଁ କେଉଁ ସ୍ଥାନେ ।୧୪
ପୁରାଣ ଭାଷାରେ ଶଳା ଭୃତ୍ୟଙ୍କ ସମାନ
ତେଣୁ ଶାଳକକୁ ମାନ୍ୟ ହୋଇଛି ବାରଣ । ୧୫
କ୍ରୋଧରେ ପୁଚ୍ଛିଲେ କୃଷ୍ଣ ଆରେ ଧୃଷ୍ଟଦ୍ୟୁମ୍ନ
ଧର୍ମ ନୃପତିଙ୍କୁ କମ୍ପା କରିଲୁ କଲ୍ୟାଣ ? ୧୬
ସମ୍ଭ୍ରମଟି ଭଗ୍ନ କରି ଅରଜିଲୁ ଦୋଷ
ଚନ୍ଦପେଶି ଶିର ତୋର ଛେଦିବ ଅବଶ୍ୟ । ୧୭
ସିଂହାସନେ ବସି କୃଷ୍ଣା ଦେଖୁଥିଲେ ଦୃଶ୍ୟ
ବଞ୍ଚିଲେ ଚକ୍ରେ ଶିର ଛେଦିବେ ଅବଶ୍ୟ । ୧୮
ବ୍ୟାସ ଦେବଙ୍କୁ ଅନାଇଁ କହିଲେ ବିକଳେ
ଭାଇ ମୋର ନାଶ ଯାଏ ରଖ ଅବହେଳେ । ୧୯
ବୋଲୁଛନ୍ତି ବ୍ୟାସ ଦେବ ଆହେ ବାସ୍ପୁଣ
ସାମାନ୍ୟ ନମଣ ଏହି ଦ୍ରୁପଦ ନନ୍ଦନ । ୨୦
ସୋମକ ବ୍ରହ୍ମା ଅନଳୁ ହୋଇଛନ୍ତି ଜାତ
ତାହାଙ୍କ ବଳେ ଯୁଧିଷ୍ଠି ଯୁଦ୍ଧେ ସୁରକ୍ଷିତ । ୨୧
କୃଷ୍ଣଙ୍କ କର୍ଣ୍ଣେ କହିଲେ ବ୍ୟାସ ଦେବ ଗୁପ୍ତେ
ଯୁଦ୍ଧେ ଦ୍ରୋଣ ନାଶ ଯିବେ ଧୃଷ୍ଟ ଦ୍ୟୁମ୍ନହାତେ । ୨୨
ଦୋଷ କରିଥିଲେ ମଧ୍ୟ ଦ୍ରୁପଦ ନନ୍ଦନ
ଧର୍ମହିତେ କ୍ଷମା କରି ଦିଅ ନାରାୟଣ । ୨୩
ଶୁଣି ଶାନ୍ତ ହେଲେ ମନେ ଦେବ ଚକ୍ରଧର
ଧୃଷ୍ଟ ଦ୍ୟୁମ୍ନ ପୂଜା କଲେ ଧର୍ମଙ୍କ ପୟର । ୨୪
ଏ ଦୃଷ୍ଟାନ୍ତ ଦେଖି ନୃପେ ନିଶ୍ଚିତ ହୋଇଲେ
ସର୍ବମାନ୍ୟ ଯୁଧିଷ୍ଠିର ଅବସାର ଛଳେ । ୨୫

ଧର୍ମର ଅବମାନନା ଯେଜନ କରିବ
ସୁଦର୍ଶନ ଚକ୍ରେ ଶିର ଛେଦନ ହୋଇବ । ୨୬
ଦେଖ ହେ। ସୁବିଜ୍ଞ ଜନେ କୃଷ୍ଣ ଚକ୍ରକୂଟ
ଆଶ୍ରିତ ଜନକୁ କଲେ ଜଗତରେ ଶ୍ରେଷ୍ଠ । ୨୭
ପରୋକ୍ଷରେ ଶିକ୍ଷାଦେଲେ ଲକ୍ଷେ ନାରନାଥ
ଧର୍ମ ଦ୍ରୋହୀ ହେଲେ ହେବ ନଷ୍ଟେ ଶିରକାଟ ।୨୮
ଏଣୁ ଭୟଭୀତ ହୋଇ ପୃଥ୍ୱୀ ରାଜନ
ଧର୍ମ ନୃପତିଙ୍କ ପଦେ ପଶିଲେ ଶରଣ । ୨୯
ମାୟାଧରଙ୍କର ମାୟା କେ ପାରିବ ବୁଝି
ନିଃଶ୍ୱାସକେ ବୁଦ୍ଧି ଏକ ସେ ପାରନ୍ତି ଖଞ୍ଜି । ୩୦
କାଳଞ୍ଜନ ଜଣାଇଲ ହେ ଧର୍ମ ରାଜନ
ବିରାଟ ରାଜା ଲୋଡନ୍ତି ଚରଣ ଦର୍ଶନ । ୩୧
ପଚାରିଲେ ବାସୁଦେବ ବ୍ୟାସ ମୁଖ ଚୁହିଁ
ଦର୍ଶନକୁ ଆସିବେ କି ବିରାଟ ନୃସାଇଁ ? ୩୨
ବ୍ୟାସଦେବ ବୋଲୁଛନ୍ତି ହେ ନନ୍ଦ ନନ୍ଦନ
ଗୁପତ କଥା ଏ ଦେବ କରନ୍ତୁ ଶ୍ରବଣ । ୩୩
ଅଜ୍ଞାତ ବାସ କରିବେ ଧର୍ମଦେବ ସୁତ
ବର୍ଷେ ତେର ଦିନ ଯାଏଁ ହୋଇବେ ଗୁପତ ।୩୪
ବିରାଟ ରାଜ୍ୟେ ଗୋପନ ହେବେ ଦେବ ଧର୍ମ
ପାଣ୍ଡବଙ୍କୁ ରଖିବାକୁ ସେ କେବଳ କ୍ଷମ । ୩୫
ବିରାଟ ଯେହ୍ନେ ନ ଦେଖେ ଧର୍ମଙ୍କ ବଦନ
ସେହ୍ନ ପରି କରିଅ ଦର୍ଶନ ଆୟୋଜନ । ୩୬

ଯେପରି ବିରାଟ ଦେଖି ଚହ୍ନି ନ ପାରିଇ
ସେପରି ବ୍ୟବସ୍ଥା କର ଲକ୍ଷ୍ମୀ ଦେବାସାଇଁ । ୩୭

ବ୍ୟାସ ବାକ୍ୟେ ବାସୁ ଦେବ ଚକ୍ର କୂଟ କଲେ
ବିରାଟଙ୍କୁ ଆଣିବାକୁ ଭୀମକୁ ପେଶିଲେ । ୩୮

ପ୍ରଭୁଙ୍କ ଆଦେଶ ପାଇ ଚଳଗଲ ଭୀମ
ଭୀମଙ୍କୁ ଦେଖି ବିରାଟ ରାଜା ମତିଭ୍ରମ । ୩୯

ଶୂନ୍ୟରେ ଟେକି ଆଣିଣ ବିରାଟ ରାଜନ
ଧର୍ମ ରାଜ ପାଦ ତଳେ ପକାଇଲେ ଭୀମ । ୪୦
ଚକ୍ର କୂଟ ବୁଦ୍ଧି କରି ଦେବ ନାରାୟଣ
ବିରାଟ ସମ୍ମୁଖେ ଚକ୍ର କରିଲେ ସ୍ଥାପନ । ୪୧
ବିରାଟ ରାଜାଙ୍କୁ ଧର୍ମ ହୋଇଲେ ଅଦୃଶ୍ୟ
କେବଳ ପାଦ ଅଙ୍ଗୁଳି ହୋଇଲକ ଦୃଶ୍ୟ । ୪୨
ଭୀମ ଭୟେ ଭୂମି ପରେ ସାଷ୍ଟାଙ୍ଗରେ ଶୋଇ
ବିଦ୍ୟୁ ପ୍ରଭା ପ୍ରାୟ ଜ୍ୟୋତି ଦେଖିଲେ ନୃସାଇଁ । ୪୩
ଗୋବିନ୍ଦ କହିଲେ ଏହି ଅଟେ ବଡ ମନ୍ଦ
କୀଚକ ବଳେ ହରିଲ ଦିଗର୍ତ୍ତି ସମ୍ପଦ । ୪୪
ଭୀମ ବୋଲେ ସେହି ଦୋଷେ ଦେଉଛୁ ଏ ଦଶା
ଶ୍ରୀକୃଷ୍ଣ କହିଲେ ଯାକୁ ସଭାରେ ନ ବସା । ୪୫
ଠାକୁରଙ୍କ ଆଜ୍ଞା ପାଇ ବୀର ବୃକୋଦର
ବିରାଟଙ୍କୁ ବସାଇଲା ବାହାର ସଭାର । ୪୬
ହେଲେ ହେଁ ବିରାଟ ରାଜା ଧର୍ମପ୍ରିୟଜନ
ଧର୍ମର ସୁରକ୍ଷା ପାଇଁ ପାଇଲେ କଷଣ । ୪୭
ନାରଦ କହିଲେ ଶୁଣ ଦେବ ନାରାୟଣ
ଦେବ-ଦୈତ୍ୟ ନରପତି ସଭାରେ ଆସୀନ । ୪୮
ପାତାଳରୁ ଆସିନାହାଁ ବାସୁକୀ ରାଜନ
ତେଣୁ ରାଜସୂୟ ଯାଗ ରହିଛି ଅପୂର୍ଣ୍ଣ । ୪୯
ପୃଚ୍ଛା କଲେ ଯୁଧିଷ୍ଠିର ବହିଛି ମେଦିନୀ
କପରି ଆସିବେ ସେହି କହ ଅଛ ମୁନି ? ୫୦
ଧର୍ମ କଥା ଶୁଣି କୃଷ୍ଣ ଚାହିଁଲେ ଅର୍ଜୁନ
ବାସୁକୀ ଡାକିବା ପାଇଁ ଚଳିଲେ ବହନ । ୫୧
ପାତାଳ ପୁରେ ପହଞ୍ଚି ବୀର ଧନଞ୍ଜୟ
ଯାଗକୁ ବରଣ କଲେ ନାଗକୁଳ ରାୟ । ୫୨
ହସିକହେ ନାଗ ରାଜା ଅର୍ଜୁନ ବଚନେ
ନ ଜାଣନ୍ତି କି ମୋ ଦୁଃଖ ଦେବ ନାରାୟଣେ ? ୫୩

ପୃଥିବୀର ମହାଭାରା କରିଛୁ ଧାରଣ
ମୂର୍ଦ୍ଧ୍ନି ଗଲେ ରସାତଳ ବସୁନ୍ଧରା ଜାଣ । ୫୪
ନାଗରାଜା କଥା ଶୁଣି ବିଚାରିଲେ ପାର୍ଥ
ଯାହାସେ କହିଲେ ଅଟେ ବଚନ ଯଥାର୍ଥ । ୫୫
ମାତ୍ର ଯାଗେ ନ ଗଲେ ରାଗ କରିବେ କୃଷ୍ଣ
ଏକଥା ବିଚାରି ମନେ କହିଲେ ଅର୍ଜ୍ଜୁନ । ୫୬
ନିର୍ଭୟରେ ଯାଅ ରାଜା ରାଜସୂୟ ଯାଗେ
ଫେରିଲ ପର୍ଯ୍ୟନ୍ତ ପୃଥ୍ୱୀ ରହିବ ମୋ ଭାଗେ । ୫୭
ଏହା କହଣ ଅର୍ଜ୍ଜୁନ ଅଜପା ସୂତରେ
ତକାସନରେ ବସିଲେ ବାସୁକୀ ନବରେ । ୫୮
ଗାଣ୍ଡିବ ଧନୁ ହଳକୁ ଜାନୁପରେ ଥୋଇ
ଆର ହଳେ ପୃଥ୍ୱୀକୁ ରଖିଲେ ଡ଼େରା ଦେଇ । ୫୯
ସ୍ଥିର ହୋଇ ରହିଲ ଯହୁଁ ଧରଣୀ ପୃଷ୍ଠ
ଫେରୁ କାଢି ଯାଗ ଶାଳେ ଚଳଲେ ଅନନ୍ତ । ୬୦
ନାଗ ରାଜା ଆଗମନ ଜାଣି ନାରାୟଣ
ଅଧା ବାଟକୁ ଆସିଲେ ସ୍ୱାଗତ କରଣ । ୬୧
ଅନନ୍ତ କାନ୍ତୁ ଅନନ୍ତ ଅନନ୍ତ ରସନା
ବନ୍ଦି ହୋନ୍ତୁ ଥିଲେ ହୃଦେ କୃଷ୍ଣ ନନ୍ଦ କାହ୍ନା । ୬୨
ଭାଗ୍ୟୋଦୟ ହୋଇବାରୁ ପାଇଲେ ଦର୍ଶନ
କୃତ୍ୟ କୃତ୍ୟ ହୋଇ ପାଦେ ପଶିଲେ ଶରଣ । ୬
ଗୋବିନ୍ଦ କହିଲେ ଖଟ ଧର୍ମ ଯୁଧିଷ୍ଠିକ
ତୁମ୍ଭେତ ଆସିଲ ପାର୍ଥ ଗଲେ କେଉଁଠିକି ? ୬୪
ଅନନ୍ତ ନାଗ କହିଲେ ତୁମ୍ଭେ ସର୍ବଜ୍ଞାତ
ତୁମ୍ଭ ଆଜ୍ଞରେ ପୃଥିବୀ ବହିଛନ୍ତି ପାର୍ଥ । ୬୫
ଅନନ୍ତଙ୍କୁ ଘେନି ସଙ୍ଗେ ଚଳିଲେ ଶ୍ରୀକୃଷ୍ଣ
ଦର୍ଶନ କରିଲେ ଧର୍ମ ରାଜାଙ୍କ ବଦନ । ୬୬
ଆସ୍ଥାନରେ ବସିଛନ୍ତି ଯୁଧିଷ୍ଠି ରାଜନ
ନାଗ ରାଜନ ପୂଜିଲେ ଧର୍ମଙ୍କ ଚରଣ । ୬୭

ଧର୍ମାଦେଶ ହେଲା ବସ ସଭାରେ ଯାଇଁଣ
ସୁବର୍ଣ୍ଣ ଆସନ ପରେ ବସିଲେ ରାଜନ । ୬୮

ନାଗରାଜା ଦେଖି ନୃପେ ହୋଇଲେ ଆନନ୍ଦ
ବସିଲେ ସଭାରେ ପୂର୍ଣ୍ଣ ଲକ୍ଷେକ ନରେନ୍ଦ୍ର । ୬୯

ଯମୁନା ନଦୀ ତୀରରେ ସର୍ବେ କଲେ ବାସ
ଗୋପାଳ ବାଳକେ ଯୋଗାଇ ଦେଲେକଗ୍ରାସ । ୭୦

କ୍ଷୀର ମଧୁ ଆପ୍ୟାୟନେ ସର୍ବେ ହେଲେ ତୋଷ
ଗରୁଡ଼ ଚର୍ଚ୍ଚା କରନ୍ତି ଦେଇ ସୁଧାରସ । ୭୧

ଖାଦ୍ୟ ଖାଦକ ଭାବନା ନ ରହିଲ ତହିଁ
ଖାଦ୍ୟର ସେବକ କାର୍ଯ୍ୟ ଖାଦକ କରଇ । ୭୨

ରାଜସୂୟ ଯାଗ ଅଟେ ଧର୍ମ ମହାସଭା
କାହାର ବଳେ କାହାକୁ କେ ଲଂଘିବ ଅବା ? ୭୩

ଦେବ-ଦୈତ୍ୟ-ନାଗ-ନରପତିଙ୍କ ମିଳନ
ବସିଛନ୍ତି ଲକ୍ଷେ ରାଜା ଧର୍ମଙ୍କ ଅଧୀନ । ୭୪

ରାଜ ଚକ୍ରବର୍ତ୍ତୀ ନୃପେ ଯୁଧିଷ୍ଠି ରାଜନ
ସମବେତ ନୃପେ କଲେ ସ୍ୱୀକୃତି ପ୍ରଦାନ । ୭୫

ଘୃତାହୁତି ଦେଲେ ବିପ୍ରେ ବେଦ ମନ୍ତ୍ର ପଢ଼ି
ବ୍ରହ୍ମହତ୍ୟା ଦୋଷ ଗଲା ପାଣ୍ଡୁଙ୍କର ଛାଡ଼ି । ୭୬

ଛଅସ୍ତୋଇ ପଦେ ଅଧ୍ୟା ହୋଇଲା ସମ୍ପୂର୍ଣ୍ଣ
ବୃନ୍ଦାବନ ଭଣେ କୃଷ୍ଣ ଚରଣେ ଶରଣ । ୭୭

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ମଥୁରା-ଦ୍ୱାରକା ଲୀଳାଖଣ୍ଡେ ନାଗରାଜ ବାସୁକିଙ୍କ
ଯାଗ ଦର୍ଶନେ ନାମ ପଞ୍ଚବିଂଶ ଅଧ୍ୟାୟ ସଂପୂର୍ଣ୍ଣ ।

ଶ୍ରୀକୃଷ୍ଣାର୍ପଣମସ୍ତୁ ।

# ଷଡତ୍ରିଂଶ ଅଧ୍ୟାୟ

## ଦୂର୍ଯୋଧନଙ୍କ ଅପମାନ ଓ ଯାଗ ପୂର୍ଣ୍ଣାହୁତ

( ରାଗ - ବଙ୍ଗଳା ଶ୍ରୀ )

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ କର ହେ। ସୁଜନ
ରାଜସୂୟଯଜ୍ଞ ଐଶ୍ୱର୍ଯ୍ୟ ଦେଖିଣ ଈର୍ଷ୍ୟାନ୍ୱିତ ଦୁର୍ଯୋଧନ । ୧
ତାହାମନ କଥା ଜାଣି ପାରି କୃଷ୍ଣ କରନ୍ତି ମନେ ବିଚାର
ବଡ଼ ଅଭିମାନୀ ମାନ୍ୟ ନ କରିବ ସଭାସ୍ଥଳେ ଯୁଧିଷ୍ଠିର । ୨
ଏ ରାଜସଭାରେ ଯଦି କୁରୁପତି ନପଡ଼ିବ ପାଦତଳେ
ରାଜଚକ୍ରବର୍ତ୍ତୀ ବୋଲି ନମାନିବେ ଭାରତର ନରପାଳେ । ୩
ଏଣୁ ଆଗକରି ମୟ ଦୈତ୍ୟଡାକ ଗଢିଛନ୍ତି ସିଂହାସନ
ଯହିଁଚକ୍ର କୂଟେ ମାନୀଦୁର୍ଯ୍ୟୋଧନ ଗରବ କରିବେ ଚୂର୍ଣ୍ଣ । ୪
ଶୂନ୍ୟରେ ଓହଳା ରାଜ ସିଂହାସନେ ଧର୍ମରାଜ ସମାସୀନ
ତେରଟି ପାବଚ୍ଛ ପଡ଼ିଛି ସେଠାକୁ ଅତ୍ୟନ୍ତ ଭାବେ ମସୃଣ । ୫
ସିଂହାସନତଳ ଭୂମିରେ ସ୍ଫଟିକ ପଥର ହୋଇଛି ବଚ୍ଛା
ସ୍ଫଟିକ ପଥରେ ରାସ୍ତା ବିନିର୍ମିତ ପରିମଳ ଶୁକ୍ଳସ୍ୱଚ୍ଛା । ୬
ରାସ୍ତା ବେନି ପାର୍ଶ୍ୱେ ସ୍ଫଟିକ ତଡ଼ାଗ ସ୍ୱଚ୍ଛଜଳେ ପରିପୂର୍ଣ୍ଣ
ସଲିଳ ସ୍ଫଟିକ ସମାନ ଦିଶନ୍ତି ସହଜେ ନୁହେଁ ବାରଣ । ୭
ସ୍ଫଟିକର ଶୋଭା ସଲିଳ ସାଦୃଶ୍ୟ ସଲିଳ ସ୍ଫଟିକ ଦୃଶ୍ୟ
ବିବେକ ବିଧ୍ୱଂସ ଅଟେ ଯେ ପୁରୁଷ ସ୍ପଷ୍ଟ ଅସ୍ପଷ୍ଟ ସାଦୃଶ୍ୟ । ୮
ଧର୍ମରାଜନଙ୍କୁ ମାନ୍ୟଯେ କରନ୍ତି ତାହାଙ୍କୁ ରହସ୍ୟ ସ୍ପଷ୍ଟ
ମାନ ଅଭିମାନେ ପୂରିଛି ଯା ଚିତ୍ତ ତାହାକୁ ଦିଶେ ଅସ୍ପଷ୍ଟ । ୯
ମନେ ଗର୍ବ ବହି କୁରୁ ଭୂପ ଯାଇଁ ଚଳିଲେ ଦର୍ଶନ ପାଇଁ
ଜଳକୁ ସ୍ଫଟିକ ଭ୍ରାନ୍ତି ଚଳିଯାନ୍ତେ ପଡ଼ିଲେ ଜଳରେ ଯାଇଁ । ୧୦
ଦେଖି କର ତାଳି ମାରି ଭୀମସେନ ଉଚ୍ଚେ କଲେ ଅଟ୍ଟହାସ୍ୟ
ଲଜ୍ଜେ ନରପତି ବସିଲେ ସଭାରେ ଲଜ୍ଜିତ କୌରବ ଈଶ । ୧୧

ମୂର୍ଦ୍ଧାଁ ମାଡ଼ି ଚଳେ କରିବୃନ୍ଦ ପଡ଼ନ୍ତେ ଧର୍ମ ପାଦେ ଲାଗେ ଶିର
ବେକ ମାଡ଼ି ବସି ବୋଲେ ଭୀମସେନ ପାଦେ ପଡ଼େ କୁରୁବୀର । ୧୨

" ଜିତ ପ୍ରସାଦଏ ବୋଲନ୍ତେ ଅର୍ଜ୍ଜୁନ ଆଜ୍ଞା ଦେଲେ ନୃପବର
ରାଜାଙ୍କୁ ଉଠାଇ ବସାଅ ସଭାରେ ମାନ୍ୟ କରି ବୃକୋଦର । ୧୩

ଆଜ୍ଞା ପାଇଭୀମ ଦୁର୍ଯ୍ୟୋଧନେ ନେଇ ବସାଇଲେ ସ୍ୱର୍ଣ୍ଣାସନେ
ଅପମାନ ପାଇ ପଳାଇଲା ରାଜା ନରହ୍ୱ ଦଣ୍ଡେ ସେ ସ୍ଥାନେ । ୧୪

ଆପଣା ଦୋଷରୁ ଅ.ପେ ଲଜ୍ଜାପାଇ ପଳାଇଲେ କୁରୁପତି
ହିଂସା କପଟରେ ପୂରିଛି ଯା ହୃଦ ବେଳକେ ମିଳଇ ଶାସ୍ତି । ୧୫

କର୍ଣ୍ଣ, ଦୁଃଶା, ଶଲ୍ୟ, ଶକୁନି ସହିତ ସଭାରୁ ଗଲେ ପଳାଇ
ଦୁଷ୍ଟରାଜାମାନେ ଆସନ ତେଜିଣ ପଛରେ ଗଲେ ଦୌଡ଼ାଇ । ୧୬

ଯଜ୍ଞେ ପୂର୍ଣ୍ଣାହୁତି ଦେଲେ ଋଷି ବିପ୍ରେ ରାଜ ସୂୟ ଯାଗ ଶେଷ
ରାଜଚକ୍ରବର୍ତ୍ତୀ ସମ୍ମାନେ ଭୂଷିତ ହୋଇଲେ ଧର୍ମ ନରେଶ । ୧୭

ନୃପେ ଉପଦେଶ ଦେଲେ ଧର୍ମଈଶ ନିଜ ଯାହା ରାଜ୍ୟକୁ ପାଳ
ଏକରାଜା ଆନ ରାଜ୍ୟର ସୀମାକୁ କରିବ ନାହିଁ କବଳ । ୧୮

ଭାଇ ଭାଇ ହୋଇ ଚଳୁଥିବ ସର୍ବେ ପରସ୍ପରେ ପ୍ରୀତିଭାବ
ଯେତେବେଳେ ଆମ୍ଭେ ଲୋଡ଼ୁଥିବୁ ଆସି ଦରଶନ ଦେଉଥିବ । ୧୯

ଧର୍ମରେ ପ୍ରଜାଙ୍କୁ ପାଳନ କରିବ ପୁଣ୍ୟ ପ୍ରାପ୍ତ କରି ଜ୍ଞାନ
ଆଦେଶ ଅମାନ୍ୟ କଲେ ଧର୍ମଦଣ୍ଡ ପାଇବ ହେ। ନୃପଗଣ । ୨୦

ରାଜାଏ ପ୍ରକାଶ କଲେ ଆନୁଗତ୍ୟ କହିଲେ କଲୁ ଶପଥ
ରାଜ ଚକ୍ରବର୍ତ୍ତୀ ଆଜ୍ଞାକୁ ପାଳିବୁ କରିଲୁ ଶିବାର ସତ୍ୟ । ୨୧
ଭୀମସେନ ବୋଲେ ଧର୍ମରାଜା ଆଜ୍ଞା ଯେହ କରିବ ଲଂଘନ
ଅବାଧ୍ୟକୁ ବଧ କରିବାକୁ ବାଧ୍ୟ ହୋଇବ ବାକ୍ୟମୋ ଶୁଣ । ୨୨
ଧର୍ମ ପାଦ ଛୁଇଁ ସତ୍ୟ କରି ନୃପେ ଯିବା କାଳେ ନିଜ ଦେଶେ
" ମହାରାଜା ଯୁଧି-ଷ୍ଠିରେ ସମ୍ବୋଧନ କରି କହିଲେ ହରଷେ । ୨୩
"ଆହେ ମହାରାଜ ନିର୍ବିଘ୍ନେ ଆପଣ କେବଳ ଏଯଜ୍ଞ କର୍ମ
ସୁ ସମ୍ପନ୍ନ କରି ନାହାନ୍ତି ପରନ୍ତୁ ଅର୍ଜିଛନ୍ତି ବହୁ ପୁଣ୍ୟ । ୨୪
ଏହି କାର୍ଯ୍ୟ ଦ୍ୱାରା ଆପଣ ନିଜକୁ ସୌଭାଗ୍ୟର ଅଧିକାରୀ
କରି ନିଜ ବଂଶ ଯଶ ମର୍ଯ୍ୟାଦାକୁ ବଢ଼ାଇଛ ଦଣ୍ଡଧାରୀ । ୨୫

ଆପଣଙ୍କ ଦ୍ୱାରା ଆମନ୍ତ୍ରିତ ତଥା ଅଭ୍ୟର୍ଥିତ, ଆପ୍ୟାୟିତ
ହୋଇ ଆମ୍ଭେ ମାନେ ନିଜକୁ ମଣୁଛୁ ଅଧିକ ଗୌରବାନ୍ୱିତ । ୨୬
ବର୍ତ୍ତମାନ ଆମ୍ଭେ ଫେରିବାକୁ ଚାହୁଁ ଆଦେଶ କରି ପ୍ରଦାନ
ଏହା କହି ନୃପେ ଯୋଡ଼ ହସ୍ତ ହୋଇ ନିରବେ ଦଣ୍ଡାୟମାନ । ୨୭
ନୃପତି ମାନଙ୍କ ପ୍ରୀତିପୂର୍ଣ୍ଣ କଥା ଶ୍ରବଣେ ଧର୍ମ ରାଜନ
ଅଶ୍ରୁ ଛଳ ଛଳ ନେତ୍ରେ ନୃପ ଗଣେ କଲେ ପ୍ରେମ ଆଲିଙ୍ଗନ । ୨୮
ନିମନ୍ତ୍ରିତ ରାଜା ମାନଙ୍କୁ ଅମୂଲ୍ୟ ବସ୍ତ୍ର ରତ୍ନ ଅଳଙ୍କାର
ରଥ, ଗଜ, ଅଶ୍ୱ ଆଦି ବହୁଦ୍ରବ୍ୟ ଦେଲେ ପ୍ରୀତି ଉପହାର । ୨୯
ବିଦାୟ ସମୟେ ଉପସ୍ଥିତ ଯେତେ ଋଷି, ବିପ୍ର, ଦଣ୍ଡଧାରୀ
ଧର୍ମଙ୍କ ପ୍ରଶଂସା କରୁଥିବା କାଳେ ଅର୍ଦ୍ଧ ସ୍ୱର୍ଣ୍ଣ ପୁଚ୍ଛ ଧାରୀ । ୩୦
ନେଉଳ ଗୋଟିଏ ପହଞ୍ଚି ପୁଚ୍ଛକୁ ଦେଖାଇ ବୋଲେ ରାଜନ
ଦେଖ ମୋର ଏହି ପୁଚ୍ଛ ଅର୍ଦ୍ଧ ସ୍ୱର୍ଣ୍ଣ ହୋଇ ଅଛୁ ଧର୍ମ ରାଣ । ୩୧
ବାକି ଅର୍ଦ୍ଧେ ପୁଚ୍ଛ ସୁବର୍ଣ୍ଣ ହେବାକୁ ଆସିଥିଲି ଯାଗ ସ୍ଥାନ
ଭାବିଥିଲି ପୂରା ପୁଚ୍ଛ ସ୍ୱର୍ଣ୍ଣ ହେବ ମାତ୍ର ନ ହୋଇଲା ପୂର୍ଣ୍ଣ । ୩୨
ଏଥିରୁ ଜାଣିଲି ରାଜସୂୟ ଯାଗ ପୁଣ୍ୟଫଳୁ ବିପ୍ରଦାନ
ଅଧିକ ଭାବରେ ମୂଲ୍ୟବାନ ଅଟେ କହୁଛି ସେ କଥା ଶୁଣ । ୩୩
ଅବନ୍ତୀ ନଗରେ ଦରିଦ୍ର ବିପ୍ରେକ କୁଟୁମ୍ବ ତା ଚାରିଜଣ
ବ୍ରାହ୍ମଣ, ବ୍ରାହ୍ମଣୀ, ପୁତ୍ର, ପୁତ୍ର ବଧୂ ଦୁଃଖରେ କାଟନ୍ତି ଦିନ । ୩୪
ଭିକ୍ଷା ବୃତ୍ତି କରି ଜୀବନ ବଞ୍ଚାନ୍ତି ଅତ୍ୟନ୍ତ ଗରିବ ସେହି
ତିନି ଦିନ ଯାଏଁ ଉପାସେ ରହିଲେ ଅନ୍ନ ମୁଠିଏ ନ ପାଇ । ୩୫
କାହୁଁ କିଛି ଅଟା ମାଗି ଆଣି ଗୃହେ ପିଷ୍ଟକ ତିଆରି କରି
ଭୋଜନ ସମୟେ ଅକସ୍ମାତ୍ ଦ୍ୱାରେ ମିଳିଲା ଆସି ଭିକାରି । ୩୬
କହିଲା ବିଗତ ଚାରିଦିନ ହେଲା ପେଟରେ ପଡ଼ିନି ଅନ୍ନ
ମୋତେ ମୁଠେ କିଛି ଖାଇବାକୁ ଦେଇ ରଖ ମୋହର ଜୀବନ । ୩୭
ଭିକ୍ଷୁକର କଥା ଶୁଣି ସେ ବ୍ରାହ୍ମଣ ଆପଣା ଭୋଜ୍ୟ ପଦାର୍ଥ
ଭୋଜନ ନ କରି ଭିକ୍ଷକକୁ ଦେଲେ ମାତ୍ର ନପୂରିଲା ପେଟ । ୩୮
ପୁଣି ସେ ମାଗନ୍ତେ ଜଣ ଜଣ କରି ଘରେ କୁଟୁମ୍ବ ଯେତେକ
ନିଜନିଜ ଭାଗ ଭିକ୍ଷକକୁ ଦେଲେ ହେଉଥିଲେ ତାଙ୍କ ଭେକ । ୩୯

ଗୃରଜଣଙ୍କର ପିଷ୍ଟକ ଖାଇଣ ଭିକ୍ଷୁକ ସନ୍ତୁଷ୍ଟ ହେଲେ
ତାହାଙ୍କ ସନ୍ତୁଷ୍ଟେ ସନ୍ତୁଷ୍ଟ ହୋଇଲେ ଗୃହପ୍ରାଣୀ ଅବହେଳେ । ୪୦
ସେହି ପୁଣ୍ୟ ଫଳେ ବିପ୍ର ପରିବାର ସ୍ୱର୍ଗକୁ କଲେ ଗମନ
ସେ ଉଚ୍ଛିଷ୍ଟପଙ୍କେ ମୋ ପୃଷ୍ଠ ବସନ୍ତେ ହୋଇଗଲା ଅର୍ଦ୍ଧସ୍ୱର୍ଣ୍ଣ । ୪୧
ବାକି ଅର୍ଦ୍ଧେ ପୃଷ୍ଠ ସୁବର୍ଣ୍ଣ ହେବାକୁ ଆସିଥିଲି ଯଜ୍ଞ ସ୍ଥାନ
ଭାବିଥିଲି ପୁଣି ପୃଷ୍ଠସ୍ୱର୍ଣ୍ଣ ହେବ ମାତ୍ର ବିଷାଦିତ ମନ । ୪୨
ବୁଝିଲି ଏଥିରୁ ଦରିଦ୍ର ବିପ୍ରର ଦାନଠାରୁ ରାଜାଦାନ
କୌଣସି ଗୁଣରେ ଅଧିକ ନୁହଇଁ ହେତୁ କର ଧର୍ମ ରାଣ । ୪୩
ଏମନ୍ତ କହିଣ ସେ ନକୁଳ ବର ଶରୀର ତ୍ୟାଗ କରିଣ
ଦେଖୁଛନ୍ତି ସର୍ବେ ସ୍ୱର୍ଗେ ଚଳି ଗଲା ଦେବଯାନ ଆରୋହଣ । ୪୪
ଆଘାତ ପାଇଣ ପୁଚ୍ଛିଲେ କୌନ୍ତେୟ ବ୍ୟକ୍ତକର ଯଦୁନାଥ
କାର୍ଯ୍ୟରେ କେଉଁଠି ତ୍ରୁଟି ରହିଗଲା ଦର୍ଶାଇ ଦିଅ ତଡ଼ିତ । ୪୫
ଯଥା ଶାସ୍ତ୍ର ବିଧି ବିଧାନରେ ଯାଗ କାର୍ଯ୍ୟ ହୋଇଲା ଶେଷ
ମାର୍କଣ୍ଡ ଋଷି ଯଜ୍ଞାହୁତି ଦେଲେ କେଉଁଠି ରହିଲା ଦୋଷ ? ୪୬
ଆମନ୍ତ୍ରିତ ସର୍ବେ ପରମ ସନ୍ତୋଷେ ବିଦାୟ ନେଇ ଅଛନ୍ତି
କାହାରି ମନରେ ବିଷାଦ ତ ନାହିଁ ତ୍ରୁଟି ରହିଲା କେଉଁଠି ? ୪୭
ବିନମ୍ର ଭାବରେ କହିଲେ ଶ୍ରୀକୃଷ୍ଣ ସହଦେବ ସର୍ବଜ୍ଞାତ
ତାଙ୍କୁ ପଚାରନ୍ତୁ ଏହାର କାରଣ କହିପାରିବେ ଯଥାର୍ଥ । ୪୮
ସହଦେବ ମୁଖ ଚାହିଁ ପଚାରିଲେ କହ ଏଥିର କାରଣ
ହସ୍ତ ରେଖା ଚାହିଁ ବୋଲନ୍ତି ସତେ ଶୁଣନ୍ତୁ ଧର୍ମ ରାଜନ । ୪୯
ଏଯାଏଁ ଏ ଯଜ୍ଞ କାର୍ଯ୍ୟ ସରି ନାହିଁ ତଥାପି ଅଛି ଅପୂର୍ଣ୍ଣ
ହସ୍ତିନା ନଗରରେ ବାହ୍ଲିକ ନାମରେ ବୃଦ୍ଧ ମୋଚି ଏକ ଜଣ । ୫୦
ବାର୍ଦ୍ଧକ୍ୟ ହେତୁ ସେ ଆସି ନ ପାରିଣ ଉପବାସେ କାଟେ ଦିନ
ଯଜ୍ଞାନ୍ନ ଭକ୍ଷଣେ ଯଦ୍ୟପି ତାହାର ହୋଇଛି ପ୍ରବଳ ମନ । ୫୧
ସହ ଦେବ ମୁଖୁ ନସ୍ତା କଥା ଶୁଣି କୃଷ୍ଣଙ୍କୁ ପୁଚ୍ଛିଲେ ଧର୍ମ
ହେ ଗୋବିନ୍ଦ ! ଏହା ପ୍ରତିକାର କର ହେବ ହେଲେ ଯାଗ ପୂର୍ଣ୍ଣ । ୫୨
ଶ୍ରୀକୃଷ୍ଣ କହିଲେ ବାହ୍ଲିକ ମୋଚିକୁ ଯଥା ବିଧି ଆମନ୍ତ୍ରଣ
କରିଣ ଅତିଥି ଜ୍ଞାନରେ ତାହାର ସେବାପୂଜା କ୍ରିୟମାଣ । ୫୩

ପ୍ରଭୁ ପରାମର୍ଶ କ୍ରମେ ଧର୍ମରାଜ ଆଦେଶିଲେ ଭୀମସେନ
ଭ୍ରାତାଙ୍କ ଆଦେଶ ପାଇ ଚାଲିଗଲେ କରିବାକୁ ନିମନ୍ତ୍ରଣ । ୫୪
ଶତ ଶତ ଋଷି ବ୍ରାହ୍ମଣ, ନୃପତି ଉତ୍ସୁକେ ଗୃହେଁ ଅଛନ୍ତି
ରଥରେ ବସାଇ ବୃଦ୍ଧ ବାହ୍ଲିକଙ୍କୁ ନେଇ ଆସିଲେ ମାରୁତି । ୫୫
ଆଖିରେ ନେଞ୍ଜରା ବହିଯାଉ ଅଛି ଥର ଥର ଗୋଡ ହାତ
ଶୁକ୍ଳବର୍ଣ୍ଣ କେଶ ମଳିନ ଚାବେଣ ପାଟିରେ ନଥାଇ ଦାନ୍ତ । ୫୬
ଭଲକରି କାନେ ଶୁଣି ପାରୁ ନାହିଁ ଆଖିକୁ ନ ହୁଏ ଦୃଶ୍ୟ
ମୁଖର ବଚନ ବୁଝି ହେଉ ନାହିଁ ଶହେରୁ ବେଶୀ ବୟସ । ୫୭
କୃଷ୍ଣ ପରାମର୍ଶେ ସମ୍ରାଟ କୌନ୍ତେୟ ସୁବର୍ଣ୍ଣ ଝରିରେ ଜଳ
ନେଇ ସ୍ୱୟଂ ତାଙ୍କ ପାଦ ଧୋଇ ଦେଇ ପୋଛିଲେ ଧରି ଦୁକୂଳ । ୫୮
ଆସନେ ବସାଇ ପାଦ୍ୟ ଅର୍ଘ୍ୟ ଦେଇ କହିଲେ ଧର୍ମ ରାଜନ
ଆପଣଙ୍କୁ ଯାଗେ ଆଣି ନପାରି ମୁଁ ଅଟେ ବଡ ଦୋଷୀ ଜନ । ୫୯
ଦୋଷ ମୋର କ୍ଷମା କରହୋ ବାହ୍ଲିକ ! କହି ଧଇଲେ ପୟର
ଧର୍ମ ନୃପତିଙ୍କ ସରଳ ଚରିତ୍ର ଦେଖି ଟମା ନେତଶିର । ୬୦
ବିଚଳିତ ହୋଇ କରଯୋଡ଼ି କହେ ସାମାନ୍ୟ ମୁଁ ମୋଚି ଜଣେ
ପାଦୁକା ତିଆରି ମରାମତି କରି ପେଟ ପୋଷେ ଅନୁକ୍ଷଣେ । ୬୧
ଜାତିରେ ଅଙ୍ଗବ ଦୃଷ୍ଟିଁ ମୋ କୁତ୍ସିତ ମାଟକୁଳେ ମୋର ଜନ୍ମ
ଏ ପବିତ୍ର ଯଜ୍ଞ ପୀଠେ ଉପସ୍ଥିତ ହେବାକୁ ମୁଁ ଅଭାଜନ । ୬୨
ବାର୍ଦ୍ଧକ୍ୟ ହେତୁ ମୁଁ ଚଳି ନ ପାରଇ ଇନ୍ଦ୍ରିୟ ଗଣ ଅଚଳ
ଅଜଗର ଧର୍ମ ପାଳି ପଡ଼ି ଅଛି ସ୍ମରି କୃଷ୍ଣ ଆତ୍ମାରାମ । ୬୩
ରାଜ ଚକ୍ରବର୍ତ୍ତୀ ହୋଇଣ ଆପଣ ମୋହ ପରି ଜଣେ ହୀନ
ମୋଚିର ଚରଣ ଧୋଇ ଦେବାରୁ ମୁହିଁ ଅପରାଧି ଜନ । ୬୪
ବାହ୍ଲିକ କଥାକୁ ଶୁଣି ଯୁଧିଷ୍ଠିର କହିଲେ ମୁଁ ଅପରାଧୀ
ଅନ୍ଧ, ବୃଦ୍ଧ, ହସ୍ତ ମାଗି ବଇରାଗୀ ସେବ ନାହିଁ ଯଥା ବିଧି । ୬୫
ରାଜ ଦରବାରେ ପଦ ପଦବୀରେ ଉଚ୍ଚନୀଚ ଥାଇପାରେ
ମାତ୍ର ସଭିଙ୍କର ଦେହେ ଥିବା ଆତ୍ମା ସମାନ ସବୁ କ୍ଷେତ୍ରରେ । ୬୬
ସକଳ ଘଟରେ ବିଜେ ଭଗବାନ ବସନ୍ତ ସମାନ ଭାବେ
ଏ ଭାବନା ବଳେ ସେବକ ତୁମ୍ଭର ଭୁଲି ନପାରିବ ଲବେ । ୬୭

ସ୍ୱାମୀ, ସତ୍ୟବାଦୀ ପରଜା ବତ୍ସଳ ନୃପନ୍ତ ମଣେ ମୋହର
ଯେଉଁ ଗର୍ବଥିଲା ତାହା ଦୂର ହେଲା ସେବକ ମୁଁ ଜଗତର । ୬୭
ସେବ୍ୟ ଭବେ ତୁମ୍ଭେ ମୋ ପୂଜା ଅର୍ଚ୍ଚନା ସେନା କଲ ଯଜ୍ଞ କାର୍ଯ୍ୟ
ସ ମ୍ପୂର୍ଣ୍ଣ କରାନ୍ତୁ ଆହେ ମହାତ୍ମନ୍ କହିଦେଲେ ଭୂରିଭୋଜ । ୬୮
ଭୂରି ଭୋଜନରେ ଆପ୍ୟାୟିତ ହୋଇ ହରଷ ମନେ ବିଦାୟ
ନେଇଣ ବାଲ୍ମୁକ ଚଳଲେ ସ୍ୱସ୍ଥାନେ ତୋଷହେଲେ ଧର୍ମ ରାଣା । ୬୯
ସଭିଙ୍କ ମୁଖରେ ହସ ଖେଳିଗଲା ସର୍ବେ କଲେ ଜୟ ଜୟ
ଜଣ ଜଣ କର କୋଳାଗ୍ରତ କରି ବିଦାୟ ଦେଲେ କୌନ୍ତେୟ । ୭୦
ରାଜଧାନୀ ଶେଷ ସୀମା ଯାଏଁ ଗଲେ ବିଦାୟ ଦେବାର ପାଇଁ
ବିଦାୟ କାଳୀନ ଭାବ ଦ୍ରବଣତା ଭାଷାରେ କହି ନୁହଇଁ । ୭୧
ନାଗ ନୃପତିଙ୍କୁ ବିଦାୟ ଦେଇଣ କହିଲେ ଧର୍ମ ନରେଶ
ସ୍ୱ ପୁରକୁ ବେଗେ ଫେରିଯାଇ ଦେବ ମୋ ଭାଇ ପାର୍ଥଙ୍କୁ ପେଶ । ୭୨
ବିଦାୟ ହୋଇଣ ଚଳଲେ ବାସୁକ ମିଳଲେ ପାତାଳ ପୁରେ
ମହୀ ମହୀଶ୍ୱର ବନ୍ଦନ କରିଲେ ଆପଣା ଶିର କମଳେ । ୭୩
ନାଗବଳ ହେନ ପାର୍ଥ ପାଦ ପୂଜା କଲେ ବହି ଅନୁରାଗ
କନ୍ୟା ସନ୍ଧ୍ୟା ବାଳୀ ପାର୍ଥେ ବିଭା ଦେଲେ ନାଗରାଜା ମହାଭାଗ । ୭୪
ବାସବୀ ରହିଲେ ବାସୁକୀ ଭୁବନେ ସନ୍ଧ୍ୟାବାଳୀ ପ୍ରୀତି ଭୋଳେ
ରୁଷି ବିପ୍ର ଗଣେ କଲ୍ୟାଣ କରିଣ ବନାଶ୍ରମେ ଚଳିଗଲେ । ୭୫
ବହୁ ଧନ ରତ୍ନ ଦକ୍ଷିଣା ପ୍ରଦାନ କରି ଧର୍ମ ନରପତି
ଚରଣେ ପଡ଼ିଣ ପ୍ରଣତି କରିଲେ କହି ବିନୟ ଭାରତୀ । ୭୬
ବଶିଷଣେ କୋଳ କରି ଯୁଧିଷ୍ଠିର ସଶ୍ରଦ୍ଧେ ଦେଲେ ବିଦାୟ
ଦୈତ୍ୟ ବଳ ହେନ ଚଳିଲେ ରାଜନ କହି ଧର୍ମ ଜୟ ଜୟ । ୭୭
ଖଣ୍ଡେ ଦୂର ଯାଏଁ ବିଦାୟ .ଦେବାକୁ ସାଥିରେ ଗଲେ ଶ୍ରୀକୃଷ୍ଣ
ଭକ୍ତ ଭଗବାନ ବିଦାୟ ମୁହୂର୍ତ୍ତ କାରୁଣ୍ୟରେ ପରିପୂର୍ଣ୍ଣ । ୭୮
ଧୃତ ରାଷ୍ଟ୍ରେ ଗୃହେଁ କହିଲେ ଶ୍ରୀକୃଷ୍ଣ ବୁଝାଅ ତୁମ୍ଭର ସୁତ
ପୃଥ୍ୱୀରେ ଉଦିତ ହୋଇଲେ ପାଣ୍ଡବେ ନହୁଅନ୍ତୁ ଈର୍ଷାନ୍ୱିତ । ୭୯
ମନ୍ଦ ବୁଦ୍ଧି କଲେ ତୁମ୍ଭର ସନ୍ତାନେ ଆପେ ହୋଇବେ ବିନଷ୍ଟ
ପାଣ୍ଡବଙ୍କ ସଙ୍ଗେ ଭାତୃଭାବ କଲେ ସୁଖରେ ଭୋଗିବେ ରାଷ୍ଟ୍ର । ୮୦

ଧୃତରାଷ୍ଟ୍ର କହେ ହେ ପୁରୁଷୋତ୍ତମ ପୁତ୍ର ଦୋଷ କ୍ଷମା କର
ଏହା କହି ଅନ୍ଧ ରାଜାଙ୍କୁ ଘେନିଣ ଚଳିଲେ ହସ୍ତିନାପୁର । ୮୧
ରାଜସୂୟ ଯଜ୍ଞ ସମାପନ ଅନ୍ତେ ଆଶ୍ରମ ଗମନ କାଳେ
ବ୍ୟାସ ମହାଋଷି ଯୁଧିଷ୍ଠିରେ ଡାକି କହିଲେ କଥାର ଛଳେ । ୮୨
ଆଜଠାରୁ ତେର ବର୍ଷ ଗତ ଅନ୍ତେ ହେବ ଭାରତ ସମର
ଦୁର୍ଯ୍ୟୋଧନ ଅପରାଧେ କ୍ଷତ୍ରିୟ ସମରେ ହେବେ ସଂହାର । ୮୩
ନିମିତ୍ତ ହୋଇଣ ସମର କରିବ ଏହା ନିୟତି ବିଧାନ
କୁରୁକ୍ଷେତ୍ରେ, ଧର୍ମକ୍ଷେତ୍ରେ, ଧର୍ମ ଯୁଦ୍ଧ କରିବାକୁ ତୁମ୍ଭ ଜନ୍ମ । ୮୪
ଦୁର୍ବଳର ସୁରକ୍ଷା, କ୍ଷୁଧାର୍ତ୍ତଙ୍କୁ ଖାଦ୍ୟ ଅସହାୟଙ୍କୁ ସାହାଯ୍ୟ
ସଙ୍ଗେ ଐଶ୍ୱର୍ଯ୍ୟ ଜୀବନ ଯାପନ ଧର୍ମ ନୃପତିଙ୍କ କାର୍ଯ୍ୟ । ୮୫
ନିୟତିର ଇଚ୍ଛା ପୂରଣ ନିମନ୍ତେ ଭାରତ ଯୁଦ୍ଧ ସମ୍ଭବ
ରାଜସୂୟ ଯଜ୍ଞ ସେ ଧର୍ମ ଯୁଦ୍ଧର ଅଟଇ ଅଗ୍ରମାରମ୍ଭ । ୮୬
ଆଦ୍ୟରେ ଆହୂତି ହେଲା ଜରାସନ୍ଧ ଯାଗଶାଳେ ଶିଶୁପାଳ
ଭାରତ ସମରେ କୌରବ ସହିତ ନାଶଯିବେ କ୍ଷତ୍ରିକୁଳ । ୮୭
ପୃଥିବୀରେ ଯେଉଁ ସମସ୍ୟା ରହିଛି ତାହା ସମାଧାନ ପାଇଁ
ମାନବ ସମାଜେ ଯୁଦ୍ଧ ରକ୍ତପାତ ଅପରିହାର୍ଯ୍ୟ ଅଟଇ । ୮୮
ଦୁର୍ଜ୍ଜନ ଦଳନ କରିବା ନିମନ୍ତେ ରକ୍ତକ୍ଷୟ ଅନିବାର୍ଯ୍ୟ
ଯୁଦ୍ଧ ରକ୍ତ ପାତ ଏହି କାରଣରୁ କରଣୀୟ ଧର୍ମରାଜ । ୮୯
ନିଷ୍ଠା ବାକ୍ୟ ଭଣି ବ୍ୟାସ ମହ ଋଷି ଆଶ୍ରମେ କଲେ ଗମନ
ଯୁଦ୍ଧ ଯଜ୍ଞ ଶୁଭାରମ୍ଭ ଜାଣି ଧର୍ମ ହୋଇଲେ ଚିତ୍ତେ ବିଷର୍ଣ୍ଣ । ୯୦
ରାଜସୂୟ ଯଜ୍ଞ ଐଶ୍ୱର୍ଯ୍ୟ ଦେଖିଣ ସକଳେ ଆଶ୍ଚର୍ଯ୍ୟାନ୍ୱିତ
କଉରବ ଶତ ଭ୍ରାତାଏ ଈର୍ଷ୍ୟାରେ ହେଉଥାନ୍ତି ଛଟପଟ । ୯୧
ସମଗ୍ର ପୃଥିବୀ ପାଣ୍ଡୁ ପୁତ୍ରଙ୍କର ପ୍ରତିଷ୍ଠା ଦେଖି ଶଙ୍କିତ
ଧର୍ମ ଯୁଧିଷ୍ଠିର ରାଜାଙ୍କ ଅଧୀନେ ଲୋକମତ କେନ୍ଦ୍ରୀଭୂତ । ୯୨
ଯୁଧିଷ୍ଠି କହିଲେ ହେ ନନ୍ଦ ନନ୍ଦନ ଚକ୍ରବର୍ତ୍ତୀ ହେବା ପାଇଁ
ଯୋଗ୍ୟତା ମୋହର ନାହିଁ ଚକ୍ରଧର ଏସବୁ ତୁମ୍ଭରି ପାଇଁ । ୯୩
ତୁମ୍ଭର କରୁଣା ବିନା ଏଡ଼େ କାର୍ଯ୍ୟ ସମ୍ଭବ ନୁହଇଁ ଭବେ
ଏ କୃତିତ୍ୱ ମୋର ନୁହେଁ ଚକ୍ରଧର ତୁମ୍ଭର ବୋଲି ମୁଁ ଭାବେ । ୯୪

ତେଣୁ ଏ ଜଗତ ଯେତେବେଳେ କରେ ମୋହର ପ୍ରଶଂସା ଗାନ
ଆନନ୍ଦ ହୋଇବା ପରିବର୍ତ୍ତେ ମୁହିଁ ହୋଇଯାଏ ମ୍ରିୟମାଣ । ୯୫
ମୋ ମଥାରେ ପ୍ରଭୁ ଶିରପା ବାନ୍ଧିଣ ହେଉ ଅଛ ଆନନ୍ଦିତ
ମାତ୍ର ମୋ ଦୃଷ୍ଟିରେ ଏସବୁ ତୁମ୍ଭର ସେବକ ମୁଁ ପାଦାଶ୍ରିତ । ୯୬
ମୋନାମକୁ ଯେବେ ଉଦିତ କରାଇ ତୁମ୍ଭେ ହୁଅ ଉଲ୍ଲସିତ
ମାତ୍ର ମୋ ଦୃଷ୍ଟିରେ ମୁଁ ଅସମର୍ଥ ଚିତ୍ତ ମୋର ବିଷାଦିତ । ୯୭

ଶ୍ରୀକୃଷ୍ଣ କହିଲେ-ଭାଇ ଯୁଧିଷ୍ଠିର ବିନମ୍ରୀ ହୋଇବା ଭଲ
ମାତ୍ର ଆପଣାକୁ ହୀନ ମଣିବାଟା ଭଲ ନୁହେଁ ମହାରାଜ । ୯୮
ତୁମ୍ଭେ କର୍ମ ଯୋଗୀ ଆମ୍ଭେ ସହଯୋଗୀ କର୍ତ୍ତାପିନା ଭୁଞ୍ଜେ ଫଳ
ତୁମ୍ଭେ ଧର୍ମବନ୍ତ ପ୍ରାଣୀ ହୋଇବାରୁ ଖଟି ଅଛୁ ପାଦ ତଳ । ୯୯
କେବଳ ଧର୍ମ ହିଁ ପୃଥିବୀକୁ ରକ୍ଷା କରିଅଛି ଧର୍ମ ସୁତ
ତେଣୁ ତୁମ୍ଭ ହାତେ ଧର୍ମ ରକ୍ଷା ଭାର ରାଜସୂୟ ଯାଗୁଁ ଅର୍ପିତ । ୧୦୦
ଧର୍ମର ରକ୍ଷକ ଅଟନ୍ତି ନୃପତି ନୃପତିଙ୍କୁ ରଖେ ଧର୍ମ
ଧର୍ମରକ୍ଷକର ମୁଁ ଅଟେ ରକ୍ଷକ ରକ୍ଷା କରିବା ମୋ ଧର୍ମ । ୧୦୧
ତୁମ୍ଭେ ଧର୍ମପତି ଆମ୍ଭେ ଧର୍ମ ଶକ୍ତି ତୁମ୍ଭ ଆମ୍ଭ ପ୍ରିୟ ଭାବ
ଏକର ଅଭାବେ ଅନ୍ୟଟି ଦୁର୍ଲ୍ଲଭ ସେବକ ମୁଁ ତୁମ୍ଭେ ସେବ୍ୟ । ୧୦୨
ବହୁତ ବିନୟ ବଚନେ ଶ୍ରୀକୃଷ୍ଣ କହିଲେ ମନାଇ ଧର୍ମ
ତୁମ୍ଭେ ଧର୍ମ ରାଜା ଆମ୍ଭେ ଧର୍ମ ପ୍ରଜା ପାଳିବୁ ଧର୍ମ ବଚନ । ୧୦୩
ଉପଦେଶ ଛଳେ କହିଲେ ଶ୍ରୀହରି ଆହେ ଧର୍ମ ନର ନାଥ
ନିସ୍ତାର ସହିତ ପ୍ରଜାଙ୍କୁ ପାଳନ କର ନିଜ ପୁତ୍ରବତ୍ । ୧୦୪
ଦେବତାଙ୍କ ସଙ୍ଗେ ଦେବ ରାଜଙ୍କର ଯେହ୍ନେ ଅଖଣ୍ଡ ମିତ୍ରତା
ଅଛି ଯେହ୍ନପରି ଆପଣ କରନ୍ତୁ ପ୍ରଜାଙ୍କ ସଙ୍ଗେ ମିତ୍ରତା । ୧୦୫
ଆପଣଙ୍କ ବନ୍ଧୁ ବାନ୍ଧବ ସହିତ କର ଅନୁରୂପ ଭାବ
ପବିତ୍ର ବନ୍ଧୁତା ପ୍ରତିଷ୍ଠା ହୋଇଲେ ଶାନ୍ତି ବିରାଜିବ ଦେବ । ୧୦୬

ପ୍ରଭୁଙ୍କ ଅଭୟ ବଚନେ ଆଶ୍ୱସ୍ତ ହେଲେ ଯୁଧିଷ୍ଠି ରାଜନ
କହିଲେ ପ୍ରଭୁଙ୍କ ଇଚ୍ଛା ପୂର୍ଣ୍ଣ ହେଉ ଇଚ୍ଛାମୟ ନାରାୟଣ । ୧୦୭
ଧର୍ମଙ୍କୁ ଡଆଣ୍ଟି ଯଶୋଦା ନନ୍ଦନ ଚଳିଲେ ଦ୍ୱାରକା ପୁର
ବିପିନ ବିହାରୀ ଧର୍ମପାଦ ଧରି କରଇ ଶତ ଜୁହାର । ୧୦୮

ଦ୍ୱାରକାପୁରରେ ପହଞ୍ଚି ଶ୍ରୀହରି ଦେଖିଲେ ଦୁର୍ମତି ସାଲ୍ୱ
ଜନମ କାଳରୁ କୃଷ୍ଣରେ ବଇରି କରୁଅଛି ଗୋଳମାଳ । ୧୦୯
ଯାଗେ ଶିଶୁପାଳ ନିହତ ହେବାରୁ ପ୍ରତିଶୋଧ ନେବା ପାଇଁ
ଅଗବକ ଯେନ ମୁଢରେ ପଶିଛି କୃଷ୍ଣରେ ବଇରି ହୋଇ । ୧୧୦
ସୁଦର୍ଶନ ଚକ୍ରେ ମସ୍ତକ ଛେଦନ କଲେ ଦେବ ନାରାୟଣ
ତାହା ଅମ୍ବଲଙ୍କ ଜ୍ୟୋତି ରୂପଧରି କୃଷ୍ଣ ଅଙ୍ଗେ ହେଲା ଲୀନ । ୧୧୧
ଜୟ ଓ ବିଜୟ ସାଲ୍ୱ ଶିଶୁପାଳ ନାମେ ମର୍ତ୍ତ୍ୟେ ଜନ୍ମି ଥିଲେ
କୃଷ୍ଣ ହସ୍ତେ ମରି ତୃତି ଜନ୍ମଶେଷେ ବୈକୁଣ୍ଠ ପୁରେ ଚଳିଲେ । ୧୧୨
ସାଲ୍ୱ ଶିଶୁପାଳ ହତ ହୋଇବାରୁ ଦନ୍ତବକ୍ର, ବଦୂରଥ
କୃଷ୍ଣ ସଙ୍ଗେ ଘୋର ସମର କରିଣ ଜୀବନେ ହୋଇଲେ ହତ । ୧୧୩
ଏ ଦୁଇ ଅସୁର ପୂତନା ସୋଦର ଥିଲେ ବଡ ଅତ୍ୟାଚାରୀ
କୃଷ୍ଣରେ ବୈରତା କରି ବେନଭାଇ ଅନ୍ତଃ କାଳେ ଗଲେ ତରି । ୧୧୪
ପରମ ଦୟାଳୁ ଅଟନ୍ତି ଶ୍ରୀହରି ଶତ୍ରୁକୁ କରନ୍ତି ମୁକ୍ତ
ଏମନ୍ତ ଦୟାଳୁ ପ୍ରଭୁ ଯେ ନ ଭଜେ ଅଟଇ ସେ ମୂଢ଼ମତି । ୧୧୫
ସଭିଙ୍କୁ ବିଦାୟ ଦେଇ ଧର୍ମରାୟ ରାଜକାର୍ଯ୍ୟେ ଦେଲେ ମନ
ବ୍ୟାସ, ବାସୁଦେବ ବଶିଷ୍ଠ କୃପାରୁ ରାଜସୂୟ ଯାଗ ପୂର୍ଣ୍ଣ । ୧୧୬
ଜୟଜୟ ଗୁରୁ ପ୍ରେମ କଳ୍ପତରୁ ଜୟକୃଷ୍ଣ ଅଭିରାମ
ଅଭିନ୍ନ ସୁନ୍ଦର ଅର୍ଜୁନ କୁମର କୃଷ୍ଣାମାତା ପ୍ରାଣଧନ । ୧୧୭
କରମଳା କାନ୍ତ କାଳିଆ ସାଆନ୍ତ ଶିରଣି ଖିଆ ଠାକୁର
ସୁଭଦ୍ରା ନନ୍ଦନ ଭକ୍ତ ପ୍ରାଣଧନ ଚରଣେ କୋଟି ଜୁହାର । ୧୧୮
ରାଇଦାସ ମଠ ଦକ୍ଷିଣରେ ବାସ ବାଇ ଅଭିରାମ ଦାସ
ଅଭିନ୍ନ ସୁନ୍ଦର ଶ୍ୟାମ କଳେବର ଅମିୟ ଆନନ୍ଦ ହାସ୍ୟ । ୧୧୯
ଏକ ଶହ ବିଂଶ ପଦରେ ଅଧ୍ୟାୟ ଶେଷ କଲା ବୃନ୍ଦାଦାସ
ଆହେ ସୁଜ୍ଞଜନେ କରେ ନିବେଦନ ନ ଘେନିବ ଥିଲେ ଦୋଷ । ୧୨୦

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ମଥୁରା-ଦ୍ୱାରକା
ଲୀଳାଖଣ୍ଡେ ରାଜା ଦୁର୍ଯ୍ୟୋଧନଙ୍କ ଅପମାନ ଓ ଯାଗ ପୂର୍ଣ୍ଣାହୁତି
ବର୍ଣ୍ଣନେ ନାମ ଷଡ଼ବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣ ।

ଶ୍ରୀକୃଷ୍ଣାର୍ପଣମସ୍ତୁ ।

**ବୋଲି —**

କୃଷ୍ଣ ନାମ ବଡ଼ ମିଠାରେ ସଙ୍ଗାତ
କୃଷ୍ଣ ନାମ ବଡ଼ମିଠା
ଥରେ ସେ ନାମକୁ ରସନା ଚୃଖିଲେ
ସଂସାର ଲାଗଇ ସିଠା । ୧

କୃଷ୍ଣ ନାମ ଦୁଇ ଅକ୍ଷରରେ ବୋଳା
କାଣ୍ଡିଆ କାଠିର ଅଠା
ସେ ନାମେ ଲଟର ପଟର ହୋଇଲେ
ବାନ୍ଧି ରଖେ ନନ୍ଦ ବେଟା । ୨

କୃଷ୍ଣ ନାମ ଗାଇ ନାରଦ ମହର୍ଷି
ବୁଲିଲେ ଜଗତ ଗୋଟା ।
କୃଷ୍ଣ ନାମ ପ୍ରେମ ଗାଇ ପଞ୍ଚାନନ
ବୁଲନ୍ତି ମାରି ଲେଙ୍ଗଟା । ୩

କୃଷ୍ଣ ନାମ ଗାଇ ଶିରମଣି ରାଈ
ଗୋପ ବାଣ୍ଟେ ହଟହଟା
ରଜାପୁଅ ହୋଇ ଭିକାରି ହୋଇଲେ
ପାଣ୍ଡୁଙ୍କର ପାଞ୍ଚ ବେଟା । ୪

କୃଷ୍ଣା କୃଷ୍ଣ ନାମ ଭଜନ କରନ୍ତେ
କୌରବେ କରିଲେ ଥଟ୍ଟା
ସାନ୍ନୁ ଯୋଡ଼ିବନ ଦର୍ଶନ ନିମନ୍ତେ
ଫେଡ଼ିଲେ ଅଣ୍ଟା ଚାଲଟା । ୫

କୃଷ୍ଣ ନାମ ଭଜ ମୂଢ଼ ବୃନ୍ଦାବାସ
ବୁଲଇ ହୋଇ ନଲଠା
କେ କରେ ଆଦର କଏ ଅନାଦର
କଏ ବା ମାରେ ଗୋଇଠା । ୬

# ସପ୍ତତ୍ରିଂଶ ଅଧ୍ୟାୟ

## ଦୁର୍ଯ୍ୟୋଧନଙ୍କ ପ୍ରତିଶୋଧ ଚିନ୍ତା

( ରାଗ - ବଙ୍ଗଳାଶ୍ରୀ )

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ କର ଜନେ ଦେଇ ଚିତ୍ତ
ଯାଗେ ଅପମାନ ପାଇ ଦୁର୍ଯ୍ୟୋଧନ ଅତ୍ୟନ୍ତ ଭାବେ କୋପିତ । ୧
ମନ୍ତ୍ରୀ, ମିତ୍ର, ସଖା ସହିତ ମନ୍ତ୍ରଣା କରେ ବସି କୁରୁରାଣ
ବୋଲେ ଧନମାନ ଯଶ ଗଉରବେ ପାଣ୍ଡୁ ପୁତ୍ରେ ସର୍ବମାନ୍ୟ । ୨
ରାଜସୂୟ ଯାଗେ ରାଜଚକ୍ରବର୍ତ୍ତୀ ମର୍ଯ୍ୟାଦା ଅର୍ଜ୍ଜନ କଲେ
ଲକ୍ଷେ ନରପତି ଅସୀମ ଭଣ୍ଡାର ଦେଇ ଚରଣେ ଖଟିଲେ । ୩
କ୍ରୁଦ୍ଧ କରି ମୁହିଁ ବହୁଦାନ ଦେଲି ଭଣ୍ଡାର ସରିବା ପାଇଁ
ଦେଇ ଦେଇ ମୁହିଁ ହାଲିଆ ହୋଇଲି ଧନତ ସରିଲା ନାହିଁ । ୪
ବହୁ ଧନ ରତ୍ନ ପାଇ ବିପ୍ରଗଣେ ବୁଲିଲେ ପ୍ରଶଂସା ଗାଇ
ଧନରତ୍ନେ ଧର୍ମ ଚିହ୍ନାକର ପ୍ରାପ୍ୟ ଭୂଣ୍ଡ ବାଜିଦ ଶୁଭଇ । ୫
ଆମର ସମ୍ପଦ ତୁଳନାରେ ତାଙ୍କ ସମୃଦ୍ଧି ଅତୁଳନୀୟ
ଆମଠୁ ତାଙ୍କର ବଳ ଅପ୍ରମିତ ବୀରପଣରେ ଅଜେୟ । ୬
ଖାଣ୍ଡବ ପ୍ରସ୍ଥରେ ତାଙ୍କ ରାଜ ଧାମ ଐଶ୍ୱର୍ଯ୍ୟରେ ପରିପୂର୍ଣ୍ଣ
ରମଣୀୟ ରାଜ ପ୍ରାସାଦର ଶୋଭା ତୁଳନେ ହସ୍ତିନା ନ୍ୟୁନ । ୭
ରାଜା, ପ୍ରଜା, ରାଜକର୍ମଚାରୀଙ୍କର ସମ୍ମିଳିତ ଉଦ୍ୟମରେ
ସୁଦୃଢ଼ ଶାସନ କରୁଛନ୍ତି ଧର୍ମ ଭ୍ରାତା ସଙ୍ଗେ ଗର୍ଭପୁରେ । ୮
ଦିନୁ ଦିନ ବଢେ ସେମାନଙ୍କ ଶକ୍ତି ପୁଣିଜନ ସମର୍ଥନ
ପ୍ରଜାଏ ତାହାଙ୍କ ଗୁଣ ବଖାଣନ୍ତି ଆମ୍ଭର ଯେ ନିନ୍ଦା ଗାନ । ୯
ପ୍ରତ୍ୟହ ଯୁଧିଷ୍ଠି ସହସ୍ରେ ସ୍ନାତକ ସେତେ ସଂଖ୍ୟକ ବ୍ରାହ୍ମଣ
ଭୂରି ଭୋଜନରେ ତୁଷ୍ଟ କଲା ପରେ ଆପଣେ ଭୁଞ୍ଜନ୍ତି ଅନ୍ନ । ୧୦

ବାରୁଣାବତରେ ଜଣେ ହେଲେ କେହି ରହନ୍ତ ନାହିଁ ଅଭୁକ୍ତ
ରୋଗୀଙ୍କୁ ଔଷଧ ପଥ୍ୟ ଯୋଗାଉନ୍ତି ବାସଗୃହ ବାସଚ୍ୟୁତ । ୧୧
ଆମ୍ଭ ବଳଠାରୁ ସେମାନଙ୍କ ବଳ କୌଶଳ ଅଟେ ଅଧିକ
ମିତ୍ର ରାଜା ମାନେ ସାମରିକ ଶକ୍ତି ଯୋଗାଇଥାନ୍ତି ଅଧିକ । ୧୨
ବନବାସ କାଳେ ତୃଷ୍ଣାପ୍ପୁ ପାଣ୍ଡବ କାନନ ବାସୀଙ୍କ କୁଳେ
କୃଷ୍ଣ ପର ମର୍ଶେ ବିବାହ ବନ୍ଧନେ ଆବଦ୍ଧ ହୋଇ ରହିଲେ । ୧୩
ଅଧିକାଂଶ ରାଜା ତାହାଙ୍କ ଅଧୀନେ ବଶ୍ୟତା ସ୍ୱୀକାର କଲେ
ମିତ୍ର ରାଜ୍ୟ ଅବା କରଦ ରାଜ୍ୟର ମାନ୍ୟତା ପ୍ରାପ୍ତ ହୋଇଲେ । ୧୪
ପାଣ୍ଡୁ ପାଞ୍ଚପୁତ୍ରେ ସମର କୁଶଳୀ ସମର ଶାସ୍ତ୍ରେ ପଣ୍ଡିତ
ସଂଗଠିତ ଭାବେ ଶତ୍ରୁ ସେନାଙ୍କୁ କରିଥାନ୍ତି ବିପର୍ଯ୍ୟସ୍ତ । ୧୫
ତଦ୍ୱାରା ଭାରତେ ଧର୍ମ ସିଂହାସନ ଦୃଢ଼େ ହୋଇଛି ସ୍ଥାପିତ
ତାଙ୍କ ତୁଳନାରେ ଆମ୍ଭର ସାମ୍ରାଜ୍ୟ ବରଂ ଶଂକା ଜର୍ଜରିତ । ୧୬
ଯାହାଙ୍କୁ ଜୀବନେ ମାରିବାକୁ ଆମ୍ଭେ ଯୋଜନା କରିଣ ଥିଲେ
ସେମାନେ ବିପଦୁ ରକ୍ଷା ପାଇ ଆମ୍ଭ ବିପଦ କାରଣ ହେଲେ । ୧୭
ଅସହ୍ୟ ଯନ୍ତ୍ରଣା ମଧ୍ୟରେ ମୁଁ ଆଜ ମନେ କରେ ଅସହାୟ
ଆତ୍ମହତ୍ୟା ଛଡ଼ା ମୋହର ଆଗରେ ଦେଖୁନ ଅନ୍ୟ ଉପାୟ । ୧୮
କର୍ଣ୍ଣ କହୁଛନ୍ତି ପାଣ୍ଡବଙ୍କର ଏ ନିଜସ୍ୱ ଅର୍ଜିତ ବିଭୂ
ଏଥିରେ ତୁମ୍ଭର ଈର୍ଷ୍ୟା କରିବାରେ ମୋ ବିଚାରେ ଅନୁଚିତ । ୧୯
ଏଥିପାଇଁ ତୁମ୍ଭେ ନିଜକୁ କାହିଁକି ବୋଧ କର ଅସହାୟ
ତୁମ୍ଭଙ୍କୁ ସାହାଯ୍ୟ ଦେବାକୁ ଅଛନ୍ତି ବନ୍ଧୁ, ମିତ୍ର, ଭ୍ରାତା, ଚୟ । ୨୦
ତୁମ୍ଭେ ଇଚ୍ଛା କଲେ ସମଗ୍ର ପୃଥିବୀ କରିପାର କରାୟତ
ତୁମ୍ଭର ସପକ୍ଷେ ରହି ଅଛୁ ଆମ୍ଭେ ଧରି ହସ୍ତେ ଅସ୍ତ୍ର ଶସ୍ତ୍ର । ୨୧
ବୀର ଅଗ୍ରଗଣ୍ୟ ରଥୀ ମହାରଥୀ ଦଣ୍ଡକେ ଜିଣିଲେ ପୃଥ୍ୱୀ
ଅସୀମ ଶକ୍ତିର ଅଧିକାରୀ ହୋଇ ଚିନ୍ତା ନ କର ନୃପତି । ୨୨
ମିତ୍ରଙ୍କ କଥାରେ ପ୍ରଭାବିତ ହୋଇ ବୋଲୁଛନ୍ତି ଦୁର୍ଯ୍ୟୋଧନ
ଗୃହ ପାଣ୍ଡବଙ୍କୁ ପରାଜିତ କରି ରାଜ୍ୟ କରିବା ହରଣ । ୨୩
ରାଜା କଥା ଶୁଣି ମନ୍ତ୍ରୀ ବୋଲୁଛନ୍ତି ଅସ୍ତ୍ରଧର କୁରୁ ସାଇଁ
ଜୟ କରିବାକୁ ଚାହିଁଲେ ଯୁଦ୍ଧରେ ଜୟୂତ ହୁଅଇ ନାହିଁ । ୨୪

ସମ୍ମୁଖ ସମରେ ସେମାନଙ୍କୁ ଜୟ କରିବାର ଆଶା ନାହିଁ
କୌଶଳେ କ୍ରମରେ ଜୟ କରିବାକୁ ଉପାୟ ଚିନ୍ତୁଛି ମୁହିଁ । ୨୫
ତାହା ଦ୍ୱାରା ବିନା ଯୁଦ୍ଧ ରକ୍ତପାତେ ବିଜୟୀ ହୋଇ ପାରିବା
ପଶାଖେଳେ ପଣ ରଖି ପରାଜିତ କରି ରାଜ୍ୟ ଘେନିଯିବା । ୨୬
ଅକ୍ଷକ୍ରୀଡ଼ା ପ୍ରତି ଯୁଧିଷ୍ଠିରଙ୍କର ରହିଛି ବେଶୀ ଆସକ୍ତି
ଆଗ୍ରହତା ଠାରୁ ଖେଳେ ନିପୁଣତା ନାହିଁ ତାଙ୍କର ସେମିତି । ୨୭
ଖେଳେ କୁଟିଳତା ଅକ୍ଷ କ୍ଷେପଣରେ ଗଣନା ଜାଣନ୍ତି ନାହିଁ
ବ୍ୟସନ ହେଉଛି ତାଙ୍କ ଦୁର୍ବଳତା ସେହି ଛିଦ୍ର ପଥଦେଇ । ୨୮
ପାଣ୍ଡବ ସମ୍ପଦ ହରଣ କରିବା କପଟ ପଶା ଖେଳାଇ
ଆମ୍ଭ ପଟମଣେ ଅକ୍ଷକ୍ରୀଡ଼ା ପାଇଁ ଆମନ୍ତ୍ରଣ କର ତୁହି । ୨୯
ଦ୍ୟୁତକ୍ରୀଡ଼ା ପାଇଁ ଆହ୍ୱାନ କରିଲେ ରାଜୋଚିତ ଧର୍ମ ମତେ
ସେ ନିଶ୍ଚେ ଖେଳରେ ଯୋଗଦେବେ ଆସି ଅନ୍ୟଥା ନକରି ଏଥେ । ୩୦
କପଟ ପଶାରେ ମୁହିଁ ଧୁରନ୍ଧର ତୁମ୍ଭ ପ୍ରତିନିଧି ହୋଇ
ଖେଳେ ଯୋଗଦେଇ ହରାଇବି ଧର୍ମ ରକ୍ତପାତ ଲୋଡ଼ାନାହିଁ । ୩୧
ପଶା ଖେଳିବାରେ ପାରଙ୍ଗମ ମୁହିଁ ମୋହ ସମାନ ଖେଳାଳୀ
ଭାରତ ମଣ୍ଡଳେ ବିରଳ ଅଟନ୍ତି ହାରିବେ ମୋ ସଙ୍ଗେ ଖେଳି । ୩୨
ଦୁର୍ଯ୍ୟୋଧନ ପୁଚ୍ଛେ ଏ ବିଦ୍ୟା କେଉଁଠୁ ଶିଖିଲୁ କହ ମାତୁଳ
ଶକୁନି କହିଲେ ଜନକ ଗାନ୍ଧାର ସାଧିଥିଲେ ଅକ୍ଷଖେଳ । ୩୩
ଜାହ୍ନବୀ ତାହାଙ୍କୁ ବର ଦେଇଥିଲେ ତୋହର ମରଣ କାଳେ
ତୋହ ଦକ୍ଷ ହସ୍ତ ଅସ୍ଥିକୁ ନେଇଣ କାଠି ସାର ନିର୍ମାଣିଲେ । ୩୪
ଖେଳରେ ନିଶ୍ଚୟ ବିଜୟ ହୋଇବ ହାରିଯିବେ ପ୍ରତିପକ୍ଷ
ପିତାଙ୍କ ଆଦେଶେ ସାର କାଠି ବେନି ତିଆରି ରଖିଛି ଦେଖ । ୩୫
ଯୁଧିଷ୍ଠିର ଦେବ ପଶା ଖେଳିବାକୁ କର ତୁହି ଆମନ୍ତ୍ରଣ
ତୁମ୍ଭ ପକ୍ଷରୁ ମୁଁ ଖେଳିବି ତା ସଙ୍ଗେ ତୁମ୍ଭେ ଯୋଗାଇବ ପଣ । ୩୬
ଖେଳେ ଯୁଧିଷ୍ଠିର ପରାଜିତ କରି ଘେନିବା ରାଜ୍ୟ ସମ୍ପଦ
ସତ୍ୟ କରାଇଣ ବନେ ପଠାଇଣ କରାଇବା କୂଟେ ବଧ । ୩୭
ଏ ବିଷୟରେ ଆଗ ପିତାଙ୍କ ପାଖରୁ ଅନୁମତି ନେଇଆସ
ଆଉସବୁ କଥା ଦାୟିତ୍ୱ ମୋହର ମୋଠାରେ ରଖ ବିଶ୍ୱାସ । ୩୮

ମାମୁଁ, ମିତ୍ର, ଦୁଃଶା ସଙ୍ଗେ ଦୁର୍ଯ୍ୟୋଧନ ଚଳିଲେ ରାଜାଙ୍କ ପାଶେ
କହିଲେ ପାଣ୍ଡବ ପ୍ରତିପତ୍ତିକୁ ଦେଖି ଆମ୍ଭ ମନେ ଈର୍ଷ୍ୟା ଆସେ । ୩୯
ତଦ୍ଦ୍ୱାରା ଦମ୍ଭ, ରାଗ, ଅହଂକାର ସମୂଳେ ହୋଇଛି ଚୂର୍ଣ୍ଣ
ଶତ୍ରୁ ସମ୍ମୁଖରେ ନିଜକୁ ମନେଇ ହୀନବୀର୍ଯ୍ୟ ଶକ୍ତିଶୂନ୍ୟ । ୪୦
ଯୁଧିଷ୍ଠିରକୁ ମୁଁ ତାହା ସୌଭାଗ୍ୟରୁ ବଞ୍ଚିତ ନକଲି ଯାଏଁ
ଶାନ୍ତିରେ ବିଶ୍ରାମ କରି ନ ପାରିବି ତେଣୁ କହୁଅଛି ରାଏ । ୪୧
ଯୁଧିଷ୍ଠିରକୁ ମୁଁ ପଶା ଖେଳିବାକୁ ଭାବୁଛି ଦେବି ଆହ୍ୱାନ
ମାମୁଁର କପଟ ପାଶାରେ ହାରିଲେ ହରିବି ଐଶ୍ୱର୍ଯ୍ୟମାନ । ୪୨
ରାଜ୍ୟ ସିଂହାସନ କରଗତ କରି ପଠାଇ ଦେବି କାନନ
ଏଥିପାଇଁ ମୋତେ ଅନୁମତି ଦିଅ କରୁଅଛି ନିବେଦନ । ୪୩
ପୁତ୍ର କଥା ଶୁଣି ପିତା ଧୃତରାଷ୍ଟ୍ର କହିଲେ ଶୁଣ ନନ୍ଦନ
ଅକ୍ଷ କ୍ରୀଡ଼ାରେ ଯେ ଆସକ୍ତ ହୁଅଇ ନାଶଯାଏ ରାଜ୍ୟ ଧନ । ୪୪
ଓଜଶକ୍ତି ସହ ସାମ୍ରାଜ୍ୟ ବିନାଶ ଅଚିରେ ହୋଇଣ ଯାଏ
ମଣରଖି ପଶା ଖେଳିବା ଅଧର୍ମ ମୋ ମନକୁ ନଯୋଗାଏ । ୪୫
ପାଣ୍ଡବଙ୍କ ପ୍ରତି ଏପରି ବିଦ୍ୱେଷ ଭାବ ପୋଷଣ କରିବା
ତୁମ୍ଭର ପକ୍ଷରେ ଶୋଭାପ୍ରଦ ଏ ନାହିଁ ମନେ ହେଉଛି କର ବାବା । ୪୬
ଯେଉଁମାନେ ନିଜ ସମ୍ପଦେ ସନ୍ତୁଷ୍ଟ ଧର୍ମନିଷ୍ଠ ତାଙ୍କୁ କହି
ନିଜ ବାହୁବଳେ ବିପୁଳ ଐଶ୍ୱର୍ଯ୍ୟ ଅର୍ଜିଲେ ପାଣ୍ଡୁ ଭାଇ । ୪୭
ତୁମ୍ଭେ ଶତଭ୍ରାତା ତୁମ୍ଭର କ୍ଷମତା ବଳେ କର ଉପାର୍ଜନ
ବୀରଭୋଗ୍ୟା ଅଟେ ଏହି ବସୁନ୍ଧରା ଧନ ତୁମ୍ଭେ ପରିପୂର୍ଣ୍ଣ । ୪୮
ପୃଥ୍ୱୀରେ ବିଭବ ପୂରି ରହିଅଛି ସବୁଠୁହେଁ କବଳିତ
ତୁମ୍ଭ ବାହୁବଳେ ଅସୀମ ସମ୍ପତ୍ତି କରିପାର କରସ୍ଥିତ । ୪୯
ଅନ୍ୟର ସମ୍ପଦ ଦେଖି ଈର୍ଷାତୁର ହେଉଅଛ ଅକାରଣ
ଏହାଠାରୁ ବଳି କାପୁରୁଷ ପଣ କିସ ଅଛିରେ ନନ୍ଦନ ? ୫୦
ବୁଝାଇ କହିଲେ ପିତା ଧୃତରାଷ୍ଟ୍ର ଶୁଣ ପୁତ୍ର ଦୁର୍ଯ୍ୟୋଧନ
ତୁମ୍ଭ ବିପକ୍ଷରେ ଯୁଧିଷ୍ଠିର କେବେ ନ ବହେ ବିଦ୍ୱେଷ ମତି । ୫୧
ଦେଖିଛତ ତୁମ୍ଭେ ଭାଗ ହେଲ ବେଳେ କେତେ ବା ଥିଲା ସମ୍ବଳ
ଖାଣ୍ଡବ ପ୍ରସ୍ଥକୁ କୂଟେ ଦେଇଥିଲ ନ ଫଳେ ଯେଉଁଠି ଫଳ । ୫୨

ପରିଶ୍ରମ କରି ଝାଙ୍ଗର ଭୂଇଁକୁ କରିଲେ ଅମଳକ୍ଷମ
ସାମାନ୍ୟ ସମ୍ବଳ ଅବଲମ୍ବନରେ ଅର୍ଜିଲେ ବିତ୍ତ ଅସୀମ । ୫୩
ତୁମ୍ଭେ ସେହିପରି ଉଦ୍ୟୋଗ କରିଲେ ତାଙ୍କୁ ଟପିଯିବ ପୁତ୍ର
ଭାଇଙ୍କ ଭାଗ୍ୟ ଭାବିଲେ ନିନ୍ଦିତ ହୋଇବ ଜଗତେ ମାତ୍ର । ୫୪
ତୁମ୍ଭେ ଚେଷ୍ଟା କଲେ ରାଜସୂୟ ଠାରୁ କରି ପାର ବଡ଼ ଯାଗ
ପାଣ୍ଡବେ ସହାୟ ହୋଇଲେ ତୁମ୍ଭଙ୍କୁ ଦୁର୍ଲ୍ଲଭ ଐଶ୍ୱର୍ଯ୍ୟ ଭୋଗ । ୫୫
ଭାଇର ଐଶ୍ୱର୍ଯ୍ୟ ଦେଖି ମି୍ୟମାଣ ହେବାରେ କି ପ୍ରୟୋଜନ
ଆପଣାର ଭାଗ୍ୟ ଉଦୟ ନିମନ୍ତେ କରି ଶ୍ରମ ବହୁଗୁଣ । ୫୬
ନିଜ ଉପାର୍ଜିତ ସମ୍ବଳ ସୁରକ୍ଷା ତଥା ରକ୍ଷଣା ବେକ୍ଷଣ
ଜାତହିଁ ସମୃଦ୍ଧି ବୃଦ୍ଧିର କାରଣ ହେତୁ କରିବେ ନନ୍ଦନ । ୫୭
ଅସଦ୍ ଉପାୟେ ଉପାର୍ଜିତ ଧନ ରହେ ନାହିଁ ଚିରଦିନ
ଏଣୁ ଏ ଭାବନା ପରିତ୍ୟାଗ କରି କର ନ୍ୟାୟେ ଉପାର୍ଜନ । ୫୮
ପିତାଙ୍କର କଥା ଶୁଣି ଦୁର୍ଯ୍ୟୋଧନ ଅବଶ୍ୟ ହେଲେ ମଉନ
ମାତ୍ରକ ମନରୁ ଅନ୍ତର ନ ହେଲା ପାଇଥିବା ଅପମାନ । ୫୯
ଶତ ଉପକାର ଭୁଲିଯାଏ ମନ ଭୁଲେ ନାହିଁ ଅପମାନ
ପ୍ରତିଶୋଧ ନେବା ନିମନ୍ତେ ଉପାୟ ଖୋଜୁଥାଏ ଚିରଦିନ । ୬୦
ଇହ ଜନମରେ ସମ୍ଭବ ନ ହେଲେ ପରଜନ୍ମେ ଉଭ ସାଧି
ଶାସ୍ତ୍ର ପୁରାଣରେ ଅନେକ ଦୃଷ୍ଟାନ୍ତ ରହିଛି ବଚନ ସିଦ୍ଧି । ୬୧
କୁଟ କଥା କହି କପଟୀ ଶକୁନି କରୁଥାଏ ଉତେଜିତ
ଶକୁନି କଥାରେ ପଡ଼ି କୁରୁପତି କ୍ରୋଧ ଅଗ୍ନି ପ୍ରଜ୍ୱଳିତ । ୬୨
କୁରୁପତି କାନେ ପକାଇ କହିଲା ପାଣ୍ଡବ-ପଞ୍ଚାଳ-କୃଷ୍ଣ
ଏହି ତିନି ମହାଶକ୍ତିକୁ ଜିଣିବା ତୁମ୍ଭ ପକ୍ଷରେ କଠିନ । ୬୩
ମୋ ମତେ ତାହାଙ୍କୁ ବଳେ ଜିଣିବାଠୁଁ କୌଶଳେ ଜିଣିବା ଭଲ
କୌଶଳେ ଶୃଗାଳ ସିଂହେ ପକାଇଲା ଗଭୀର କୂପର ଜଳ । ୬୪
ମନ୍ତ୍ରୀ କଥା ଶୁଣି କହେ କୁରୁମଣି କହିଲୁ ଯଥାର୍ଥ ତୁହି
ଲେଉକିକ ଜ୍ଞାନ ବିନା ଶାସ୍ତ୍ରଜ୍ଞାନ ଲଭେ କାମ ଦେବ ନାହିଁ । ୬୫
ଆହାର୍ଯ୍ୟ ପଦାର୍ଥ ଉଦରମଧ୍ୟରେ ଥିଲେ ଯେପରି ଆହାର୍ଯ୍ୟ
ବସ୍ତୁ ରସ ଅସ୍ୱାଦନ କରେ ନାହିଁ ସେପରି ତୁମରି କାର୍ଯ୍ୟ । ୬୬

ଦୃଢ଼ବ୍ରତ କହନ୍ତି ମନୁଷ୍ୟର ଆଚାର ଓ ବ୍ୟବହାର
ରୀତିନୀତି ଏକ ପ୍ରକାର ହେଲେ ହେଁ ରାଜଧର୍ମାନ୍ୟପ୍ରକାର । ୬୭
ସନ୍ତୋଷ ଓ କ୍ଷମା ସାଧାରଣ ମତେ ହେଲେ ହେଁ ମାନବ ଧର୍ମ
ନୃପତି ମାନଙ୍କ ପକ୍ଷରେ ଏ କଥା ନୁହେଁ ରାଜୋଚିତ କର୍ମ । ୬୮

ଦୁଃଶାସନ ବୋଲେ ଆହେ ପିତୃଦେବ ନ ଶୁଣ ନୀତି ବଚନ
ନ୍ୟାୟରେ ନ ହେଲେ ଅନ୍ୟାୟ ପନ୍ଥାରେ କରିବା ଶତ୍ରୁ ନିଧନ । ୬୯
ଯୁଦ୍ଧ ଦ୍ୱାରା ଅବା ଯୁଦ୍ଧ ନ କରିଣ ଶତ୍ରୁ ଅନିଷ୍ଟ ସାଧନ
ନିମନ୍ତେ ସମସ୍ତ କୌଶଳ ପ୍ରୟୋଗ କରିଥାଏ ବୁଦ୍ଧିମାନ । ୭୦
ଦଂଶନ କରିବା ନିମନ୍ତେ ଉଦ୍ୟତ ସର୍ପ ଯଦି ଥରେ ତଣ୍ଡି
ବା ପିଠି ପାଖକୁ ଆସେ ତେବେ ତାକୁ ଉଚିତ ମାରିବା ପିଟି । ୭୧
ଛାଡ଼ି ଦେଲେ ତାକୁ କାଲେ କାଳ ହେବ ଏକଥା ସତ୍ୟ ନିଶ୍ଚିତ
କ୍ରୂର ପ୍ରାଣୀ ପ୍ରତି ଶାନ୍ତ ବ୍ୟବହାର ନ ସୋହାଏ କଦାଚିତ । ୭୨
ଏପରି ନ୍ୟାୟରେ କ୍ରୋଧିତ ପାଣ୍ଡବେ ଛାଡ଼ିଦେଲେ ନିର୍ବିଘ୍ନରେ
ଆମ୍ଭମାନଙ୍କୁ ସେ ନିଃଶେଷ କରିବେ ଏହା ମୁଁ ବିଚାର କରେ । ୭୩
ଆମେ ସେମାନଙ୍କୁ ଯେପରି ସଭାରେ କରିଛୁ ଅପମାନିତ
ସେମାନେ ଆମକୁ କ୍ଷମା ଦେବେ ନାହିଁ ଏ କଥା ସତ୍ୟ ନିଶ୍ଚିତ । ୭୪
ମାତ୍ର ରକ୍ତପାତ ନ କରିଣ ଆମ୍ଭେ ପଶା ଖେଳେ ତାଙ୍କୁ ଜିଣି
ଦ୍ୱାଦଶ ବରଷ ବନେ ପଠାଇବୁ ଅଜ୍ଞାତ ବରଷେ ପୁଣି । ୭୫
ତେର ବର୍ଷ ଆମ୍ଭେ ନୃପତି ରହିଣ କରିବୁ ଦୃଢ଼ ଶାସନ
ଇତ୍ୟବସରରେ ସୈନ୍ୟ ଓ ସାମନ୍ତ ମିତ୍ର ସେନାପତି ଗଣ । ୭୬
ଆମ୍ଭର ଅଧୀନେ ରହିଣ ଥିବାରୁ ତେର ବର୍ଷ ଗତ ଅନ୍ତେ
ଯଦ୍ୟପି ସେମାନେ ସମର କରିବେ ଜିଣିକି ପାରିବେ ସତେ ? ୭୭
ତେର ବର୍ଷ ପରେ ରାଜ୍ୟକୁ ଫେରିଲେ ସେମାନଙ୍କୁ ପରାଜିତ
କରିବା ସହଜ ହେବ ଆମ ପକ୍ଷେ ଏହାହିଁ ଆମ୍ଭର ମତ । ୭୮
ଏଣୁ ଅନୁମତି ଦିଅ ନରପତି ମାତୁଳ କହିଲେ ଯାହା
ଅମଙ୍ଗଳ ହେବ ଜାଣି ଧୃତରାଷ୍ଟ୍ର ବାରଣ କଲେ ତାହା । ୭୯

କହିଲେ ପାଣ୍ଡବ କୁଳ ଉଦ୍ଧାରକ ସୋମବଂଶ ହେଲା ଧନ୍ୟ
ଏ ମହୀମଣ୍ଡଳେ କୀର୍ତ୍ତି ରଖାଇଲେ ଉଦିତ ହୋଇଲା ପୁଣ୍ୟ । ୮୦

ଧର୍ମରେ ଥିବାରୁ ଧନ-ଯଶ-କୀର୍ତ୍ତି ସକଳ ହୋଇଲେ ପ୍ରାପ୍ତି
ତୁମ୍ଭେ ତାଙ୍କ ବିତ୍ତ ହରି ନେଉଅଛ ପଡ଼ିବ ଘୋର ବିପତ୍ତି । ୮୧
ସେମାନେ ତ କେବେ ତୁମ୍ଭର ଅହିତ ଚିନ୍ତା ନ କରନ୍ତି ଶତ୍ରୁ
ତୁମ୍ଭେ କିମ୍ପା ତାଙ୍କ ମନ୍ଦ ଚିନ୍ତା କର ତହିଁରୁ ହୁଅ ବିରତ । ୮୨
ଏତିକି କହନ୍ତେ ପୁତ୍ରକୁ ଜନକ ନ ଶୁଣିଲା କୁରୁଙ୍କ ଗଣ
ଶକୁନି କହିଲା ଏ ବୃଦ୍ଧ ବୟସେ ବୁଦ୍ଧି ହେଲାଣି ତୋ ନାଶ । ୮୩
ଉପାୟ କରିଣ ହରିବୁ ସମ୍ପଦ ତହିଁକି ନ ହୁଅ ବ୍ୟସ୍ତ
ଆଦେଶ ନ ଦେଲେ ମରିବ ହୋଇଣ ଘର କୋଣେ ଯାଇ ବସ । ୮୪
ଶକୁନିର କୂଟ ଜାଲେ ନେଉଅଛି ଅବିବେକୀ ଦୁର୍ଯ୍ୟୋଧନ
ହିତ କହିଲେ ସେ ଅହିତ ମଣଇ ହିତାହିତ ଜ୍ଞାନଶୂନ୍ୟ । ୮୫
କ୍ରୋଧାନ୍ୱିତ ହୋଇ ବୋଲେ ଦୁର୍ଯ୍ୟୋଧନ ପାଣ୍ଡବ ମାନଙ୍କ ଧନ
ହରଣ କରିବା ପାଇଁ ଯେତେବେଳେ ଉତ୍କଣ୍ଠିତ ମୋର ମନ । ୮୬
ସେତେବେଳେ ତୁମେ ଅଯଥାରେ ନୀତିବଚନ ମାନ ଶୁଣାଇ
ମୋ ଲକ୍ଷ ପଥରୁ ଫେରାଇ ନେବାକୁ କରୁଥାଅ ଉଦ୍ୟମ ନାହିଁ । ୮୭
ନ୍ୟାୟ ନୀତି ଅନୁସରଣ କରିଲେ ନ ହେବ ଅଭୀଷ୍ଟ ପୂର୍ଣ୍ଣ
ଫଳ ଲାଭ ସମ୍ଭାବନା ଥିବା କାଳେ କିମ୍ପା କରୁଛ ବାରଣ ? ୮୮
କିଏ ଶତ୍ରୁ କିଏ ମିତ୍ର ଏ ସମ୍ପର୍କେ ବାନ୍ଧିବାନ୍ଧି ନୀତି ନାହିଁ
ସ୍ଥାନକାଳ ପାତ୍ର ଭେଦେ ଶତ୍ରୁ ମିତ୍ର ପ୍ରମାଣିତ ହୋଇ ଥାଇ । ୮୯
ଜଣକ ଜୀବନେ ଅନ୍ୟ ଜଣକର ଉପସ୍ଥିତି ଯଦି ଦୁଃଖ
ଦେଉଥାଏ ତେବେ ତାହା ପାଇଁ ସିଏ ଶତ୍ରୁ ରୂପେ ବିବେଚିତ । ୯୦
ପାଣ୍ଡୁ ପୁତ୍ରମାନେ ସୋଦର ହେଲେ ହେଁ ଶତ୍ରୁ ଅଟନ୍ତି ଆମର
ଶତ୍ରୁ ଅଭ୍ୟୁଦୟ ସମୟେ ସମୂଳେ ବିନାଶ କରିବା ସାର । ୯୧
ନ କଲେ ସେ ପରେ ଆମର ସମୃଦ୍ଧ ନାଶର ହେବେ କାରଣ
ଏଥିରୁ ସତର୍କ ରହିବାକୁ ମାମୁଁ ଚେତାଇ ଦିଅନ୍ତି ଜାଣ । ୯୨
ଏ ପଞ୍ଚ କଣ୍ଟକେ ମୋର ବୁଦ୍ଧିଦାତା ଅଟଇ ମାତୁଳ ମୋର
ତା ବୁଦ୍ଧି ବଳରେ ମୋ ସମୃଦ୍ଧି ବୃଦ୍ଧି ସାଧି ପାରେ ଶତ୍ରୁ ମୋର । ୯୩
ପୁଅର କଥାରେ ଅପମାନ ପାଇ ମଉନ ହେଲେ ରାଜନ
କହିଲେ ହେ ପ୍ରଭୁ ! ମୋ ପୁତ୍ର ଗଣକୁ ସଦ୍‌ବୁଦ୍ଧି କର ଦାନ । ୯୪

କର୍ଣ୍ଣ, ଦ୍ରୋଣୀ, ଦୁଃଶା, ଦୁର୍ଯ୍ୟୋଧନଙ୍କର କଥାକୁ ବିଶେଷ ଭାବେ
ସମର୍ଥନ କରୁଥିବା ଜାଣି ଅନ୍ଧ କହିଲେ ଗମ୍ଭୀର ଭାବେ । ୯୫
ବଳବାନ ବ୍ୟକ୍ତି ସହିତ କଳହ ନୁହେଁ ମୋର ଅଭିପ୍ରାୟ
ତେବେ ତୁମେ ଯାହା ଭଲ ଭାବୁ ଅଛ କର ତାହା ଆରେ ପୁଅ । ୯୬
ଏହା କହି ଅନ୍ଧ କାନ୍ଦ କାନ୍ଦ ହୋଇ ଉଚ୍ଚେ ଡାକଲେ ବିଦୁର
'ବି' ଅକ୍ଷର ଦୂର ହୋଇଣ ଶୁଭିଲା ପ୍ରତିଧ୍ୱନି "ଦୂର - ଦୂର" । ୯୭
ପ୍ରତିବାଦ କରି ବୋଲେ ଦୁର୍ଯ୍ୟୋଧନ କି ଲାଭ ତାହାଙ୍କୁ ଡ଼ାକି
କୌରବ ଅନ୍ନରେ ପାଳିତ ହୋଇ ସେ ପାଣ୍ଡବଙ୍କ ଶୁଭକାଂକ୍ଷୀ । ୯୮
ସେ ତୁମ ପାଖରେ ମୋ ବୁଦ୍ଧି ବୃତ୍ତିକୁ ପ୍ରମାଣ କରନ୍ତି ହେୟ
ମୋହ ମନ କଥା ତାଙ୍କୁ ଜଣାଇଲେ ପଣ୍ଡ ହୋଇବ ଉପାୟ । ୯୯
ଯେଣୁ ଏ ପ୍ରସ୍ତାବେ ଏକାନ୍ତେ ମୋ ଇଚ୍ଛା ଅନ୍ୟରେ କି ପ୍ରୟୋଜନ
ଏ ବିଷୟେ ତାଙ୍କ ମତ ଲୋଡା ନାହିଁ ଖୋଲି କହିଲି ରାଜନ । ୧୦୦
ପୁତ୍ର କଥା ଶୁଣି ବୋଲୁଛନ୍ତି ଅନ୍ଧ ନ କହ ନିନ୍ଦା ବଚନ
ବିଦୁର କେବଳ ଧର୍ମଜ୍ଞ ନୁହଁନ୍ତି ବିଶ୍ବସ୍ତ - ବିଜ୍ଞ - ବିଦ୍ୱାନ । ୧୦୧
ଅଭିଜ୍ଞ ସାମନ୍ତ ମନ୍ତ୍ରଣା ଦାୟକ ରାଜନୀତି ବିଶାରଦ
ଦୂର ଦୃଷ୍ଟି ସମ୍ପନ୍ନ ବ୍ୟକ୍ତି ଅଟନ୍ତି ଅମାୟିକ ସତ୍ୟସନ୍ଧ । ୧୦୨
ତାଙ୍କର ସମସ୍ତ ଜୀବନ ସମପୂ ଧର୍ମ କାର୍ଯ୍ୟେ ନିବେଦିତ
ପବିତ୍ର ଚରିତ୍ର ମହାସେ ଅଟନ୍ତି ଖଳବୁଦ୍ଧି ବିବର୍ଜିତ । ୧୦୩
ସର୍ବଦା ସେ କୁରୁ ପାଣ୍ଡବଙ୍କ ହିତ କାମନା ଚିନ୍ତା କରନ୍ତି
ଉଭୟଙ୍କ ମଧ୍ୟେ ମିତ୍ରତା ରହିଲେ କୁଳରେ ରହିବ ଶାନ୍ତି । ୧୦୪
ମୁହିଁ ଅଟେ ଅନ୍ଧ ମୋହର ସେ ନେତ୍ର ଛାଡ଼ି ନ ପାରିବି ମୁହିଁ
ଦୁର୍ଯ୍ୟୋଧନ ବୋଲେ ସେପରି ନେତ୍ରରେ ପ୍ରୟୋଜନ କିଛି ନାହିଁ ।୧୦୫
ମୋ ମତେ ସେ ନେତ୍ର ଫୁଟିଗଲେ ଭଲ ରହିଲେ ଆମର କ୍ଷତି
ସତ୍ୟ ଧର୍ମ ନାମେ ଗୋଟିଏ ପକ୍ଷକୁ ସମର୍ଥନ କରୁଛନ୍ତି । ୧୦୬
କଠିନ ବଚନ କହି ଦୁର୍ଯ୍ୟୋଧନ ଚିତ୍କାର କରି ଉଠିଲେ
ଅପମାନ ପାଇ ପିତା ଧୃତରାଷ୍ଟ୍ର ଚିନ୍ତାମଗ୍ନ ହୋଇଗଲେ । ୧୦୭
ଉପାୟ ହରାଇ ବୃଦ୍ଧ ଅନ୍ଧ ପିତା ପୁତ୍ର କଥାରେ ସମ୍ମତ
ମାତ୍ର ପ୍ରତିବାଦ କରିଲେ ଗାନ୍ଧାରୀ କହି ଏହା ଅନୁଚିତ । ୧୦୮

ସ୍ୱାମୀଙ୍କୁ ସତର୍କ କରାଇ କହିଲେ ନିର୍ବୋଧ ଅଶିଷ୍ଟ ସୁତ
ମାନଙ୍କ କଥାରେ ପଡ଼ି ଧର୍ମ ପଥ ତେଜିଲେ ହେବ ଅନିଷ୍ଟ । ୧୦୯
ଶାନ୍ତ ପାଣ୍ଡବଙ୍କୁ କ୍ରୋଧାନ୍ୱିତ କଲେ ପରିଣାମ ବିଷମୟ
ମାତ୍ର ପତ୍ନୀକଥା ପ୍ରତି କର୍ଣ୍ଣପାତ କଲେନି ହସ୍ତିନା ରାୟ । ୧୧୦
ପୁତ୍ରଙ୍କ ଇଚ୍ଛାକୁ ସମର୍ଥନ କରି ଖେଳିବାକୁ ଆମନ୍ତ୍ରଣ
କରିବାକୁ ମନେ ନିଶ୍ଚିତ କରିଲେ ଧୃତରାଷ୍ଟ୍ର ନରରାଣ । ୧୧୧
ଏକଶ ଏଗାର ପଦରେ ଅଧ୍ୟାୟ ଏଠାରେ ହୋଇଲା ଶେଷ
ବୃନ୍ଦାବାସ ବୋଲେ ଆହେ ସାଧୁ ଜନେ ପାନକର କୃଷ୍ଣରସ । ୧୧୨

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ମଥୁରା-ଦ୍ୱାରକା
ଲୀଳା ଖଣ୍ଡେ ଦୁର୍ଯ୍ୟୋଧନଙ୍କ ପ୍ରତିଶୋଧ ଚିନ୍ତା ବର୍ଣ୍ଣନେ ନାମ
ସପ୍ତତ୍ରିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ । ଶ୍ରୀ କୃଷ୍ଣାର୍ପଣମସ୍ତୁ ।

**ବୋଲି—**

କୃଷ୍ଣ ନାମ ବଡ ଖଟାରେ ସଙ୍ଗାତ, କୃଷ୍ଣ ନାମ ବଡ଼ଖଟା
ସେନାମ ଭଜନ କରିବା ଲୋକର କାଳପାକ ହଟ ହଟା । ଘୋଷା
ଦାନା କନା ସବୁ ମନା ହୋଇଯାଏ ଛଟ ପଟ ଜୀବନଟା
କେ କରେ ଆଦର କିଏ ଅନାଦର, କିଏବା କରଇ ଥଟ୍ଟା । ୧
କୃଷ୍ଣ ନାମ ଭଜି ଆନନ୍ଦ ମଠରେ ଖାଇଲି ଗୁରୁ ଗୋଇଠା
ଅନ୍ଧାର ଘରମୋ ଆଲୋକିତ ହେଲା, ଜଳିଲା ଜ୍ଞାନ ବଇଠା । ୨
ଚହ୍ଲିଲି ମୋ ଗୁରୁ କୃଷ୍ଣ ଅଭିରାମ ଧରିଲି ପାଦ ଦୁଇଟା
ଜପୁଥିବା ନାମ ଅଜପା ହୋଇଲା ସାଇତି ରଖିଲି ବଟା । ୩
ହଅଁ ହଅଁ ସଅଁ ସଅଁ ଶବ୍ଦଶୁଣି ଧନ୍ୟ ମୋ କାନ ଦୁଇଟା
ଅଇଁଠା ନାମଟା ନଅଇଁଠା ହେଲା ନ ଲାଗେ ଖଟା ବା ମିଠା । ୪
ଶିଖ ଚୂଳେ ଆଖି ରହିଲା ତ ଲକ୍ଷ ନ ପଡ଼ଇ ଆଖି ପଟା
ଯେତେ ମୁଁ ଟାଣିଲି ନ ଫେରିଲା ଆଉ ଟାଣିନେଲା ନନ୍ଦ ବେଟା । ୫
ବୃନ୍ଦାବାସ ବୋଲେ ତା ପ୍ରେମେ ପଡ଼ିଲେ ଅସାର ସଂସାର ଗୋଟା
ଯେତେ ମାଜି ଘସି ହେଲେ ନ ଛାଡଇ ଦେହରୁ କାଣ୍ଡିଆ ଅଠା । ୬

# ଅଷ୍ଟତ୍ରିଂଶ ଅଧ୍ୟାୟ

## ଯୁଧିଷ୍ଠିରଙ୍କୁ ଦ୍ୟୁତକ୍ରୀଡ଼ା କୁ ଆମନ୍ତ୍ରଣ

( ରାଗ - ବଙ୍ଗଳାଶ୍ରୀ )

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ କର ଜନେ ମନ ଦେଇ
ପଦ ପଦ କରେ ରସ ପୂରିଅଛି ପାନ କର ରସଗ୍ରାହୀ । ୧

ଡ଼ାକରା ପାଇଣ ଅମାତ୍ୟ ବିଦୁର ମିଳିଲେ ରାଜାଙ୍କ ଠାରେ
"ଆଜ୍ଞା ଦେଲେ ରାଜା ପଶା ଖେଳିବାକୁ ଡ଼ାକିଆଣ ଯୁଧିଷ୍ଠିରେ" । ୨

ଅମାତ୍ୟ କହିଲେ ଆହେ ମହାରାଜ ଆପଣଙ୍କ ଏ ଆଦେଶ
ଅଭିନନ୍ଦନୀୟ ବୋଲି ମୁଁ ନ କହେ ଅଭିଶାପ ଏ ବିଶେଷ । ୩

ଏହା ଦ୍ୱାରା ଭାଇ ଭାଇରେ ବିବାଦ ଲାଗି ହେବ ବଂଶ ନାଶ
ଏପରି ଆଭାସ ମିଳୁଛି କଥାରୁ ଖୋଲି କହିଲି ନରେଶ । ୪

ଶୁଣି ଜ୍ୟେଷ୍ଠ ଭ୍ରାତ କହିଲେ ସମସ୍ତ ଜଗତ ଦଇବାଧୀନ
ଦୈବ ପ୍ରତିକୂଳ ନ ହେଲେ ପ୍ରାଣୀର ନ ହୁଏ କ୍ଷତି ସାଧନ ? ୫

ତୁମ୍ଭେ ଯଥାଶୀଘ୍ର ଯାଇ ଯୁଧିଷ୍ଠିରେ କ୍ରୀଡ଼ା ପାଇଁ ଡାକି ଆଣ
ଅନିଚ୍ଛା ସତ୍ତ୍ୱେବ ଚଳିଲେ ବିଦୁର ଆଦେଶ କରି ପାଳନ । ୬

ପ୍ରଥମ ଚରଣ ଗୃଜନ୍ତୁ ଜାଣିଲେ ମନ ମଧ୍ୟରେ ବିଦୁର
ଅମଙ୍ଗଳ ନିଶ୍ଚେ ଘଟଣ ହୋଇବ ପଡ଼ିଲା ବିପଦ ଘୋର । ୭

ଖାଣ୍ଡବ ପ୍ରସ୍ଥରେ ମିଳିଲେ ବିଦୁର ଦେଖି ଧର୍ମ କଲେ ମାନ୍ୟ
କୁଟୁମ୍ବ ସହିତ ଚରଣେ ପ୍ରଣମି ବସାଇଲେ ଦିବ୍ୟାସନ । ୮

ପୃଚ୍ଛିବା ଆଗରୁ କହିଲେ ବିଦୁର ନୃପତି ଆଦେଶ ଶୁଣ
ପଶା ଖେଳିବାକୁ ମାମାଦୁର୍ଯ୍ୟୋଧନ କରିଅଛି ଆମନ୍ତ୍ରଣ । ୯

ପଶାଖେଳେ କାହା ମଙ୍ଗଳ ହୋଇନି ଘଟିଅଛି ଅଘଟଣ
ବାଦ ବିସମ୍ବାଦ ରକ୍ତକ୍ଷୟ ସଙ୍ଗେ ସ୍ୱଜନ ପ୍ରାଣ ନିଧନ । ୧୦

ଭୟଙ୍କର ଶୋକ ବିବରଣୀ ମାନ ଶୁଣିଅଛି ମୋର କର୍ଣ୍ଣ
ପଣ ରଖି ଯେଉଁ ଖେଳ ଖେଳାଯାଏ ବିବେକ ବିସ୍ମର ଶୂନ୍ୟ । ୧୧

ଏସବୁ କ୍ରୀଡାର ଗୁଣ ନଶାଗାନ ଆସକ୍ତି ଠାରୁ ପ୍ରବଳ
କ୍ରୀଡା ଆୟୋଜନେ ଅନିଚ୍ଛା ମୋହର ନ ପଣ ତହିଁ ଭୂପାଳ । ୧୨
କୁରୁକୁଳ ପତି ଅନ୍ଧ ଧୃତରାଷ୍ଟ୍ର ଅପତ୍ୟ ସ୍ନେହେ ମୋହାନ୍ଧ
ହୋଇ ଉପଦେଶ ଗ୍ରହଣ ନ କରି ମୋତେ ପେଷିଛୁ ଦୁର୍ମଦ । ୧୪
ବେତନ ଭୋଗୀ ମୁଁ ରାଜ କର୍ମଚାରୀ ଆସିଛୁ ଆଦେଶ ପାଳି
ଦ୍ୟୁତକ୍ରୀଡା ଆମନ୍ତ୍ରଣେ ସମର୍ଥନ ନାହିଁ ମୋର ଶତେ ଭଲି । ୧୪
ତୁମ୍ଭେ ଏବେ ଏହା ମନ୍ଦ ଆମନ୍ତ୍ରଣ କରି ପାର ପ୍ରତ୍ୟାଖ୍ୟାନ
ତହାର ଉଭୟ କୁଳର କୁଶଳ ହୋଇବ ଧର୍ମ ରାଜନ । ୧୫
କେବଳ ଆଦେଶ ମାନି ମୁଁ ଆସିଛୁ ନାହିଁ ମୋର ସମର୍ଥନ
ଏଥିକୁ ବିଚାର କର ଯୁଧିଷ୍ଠିର ଯେମନ୍ତ ଯୋଗାଏ ମନ । ୧୬
ଖୁଲ୍ଲତାତ କଥା ଶୁଣି ଯୁଧିଷ୍ଠିର କହିଲେ କ୍ଷତ୍ରିୟ ଧର୍ମ
ଯୁଦ୍ଧ, ଅକ୍ଷକ୍ରୀଡା ଆହ୍ୱାନ ଉପେକ୍ଷା କାପୁରୁଷତାର ଚିହ୍ନ ? ୧୭
ବିଦୁର କହିଲେ କ୍ଷତ୍ରି ଧର୍ମ ସଙ୍ଗେ ସମ ନୁହେଁ ରାଜଧର୍ମ
ରାଜାଙ୍କ ପ୍ରଥମ କର୍ତ୍ତବ୍ୟ ଅଟଇ ପ୍ରଜାଙ୍କ ହିତ ସାଧନ । ୧୮
ତାହାପରେ ନିଜ ବଂଶର ସୁରକ୍ଷା ଆପଣା ମର୍ଯ୍ୟାଦା ରକ୍ଷା
ସିଂହାସନ ନରପତି ରକ୍ଷା କାର୍ଯ୍ୟ ତଦନ୍ତେ କ୍ଷତ୍ରିୟ ଦୀକ୍ଷା । ୧୯
ନୃପତି ନିଜର କ୍ରୀଡାନନ୍ଦ ପାଇଁ ପ୍ରଜାଙ୍କର ଭବିଷ୍ୟତ
ପ୍ରତିହିଂସା ପରାୟଣ, ଅନ୍ୟାଚାରୀ ହାତରେ ନ କରେ ନ୍ୟସ୍ତ । ୨୦
ପରନ୍ତୁ ଏପରି ଦୁରବସ୍ଥା କାଳେ ମିଥ୍ୟାର ଆଶ୍ରୟ ନେଲେ
ରାଜଧର୍ମ ମତେ ଅନ୍ୟାୟ ହୁଏନା ବିଚାରନ୍ତି ମହୀପାଳେ । ୨୧
ଅମାତ୍ୟ ବିଦୁର ଯୁକ୍ତିରେ କୌନ୍ତେୟ ସନ୍ତୁଷ୍ଟ ହୋଇଲେ ନାହିଁ
ଖେଳୁଆଡ ମନୋବୃତ୍ତି ଧରି ରାଜା ସ୍ଥିରକଲେ ଯିବା ପାଇଁ । ୨୨
ନିମନ୍ତ୍ରଣ ରକ୍ଷା ପାଇଁ ଧର୍ମରାଜ ଭଳାନ୍ତେ ଆପଣା ମନ
ମାତା, ଭ୍ରାତା, ପତ୍ନୀ ବାରଣ କରିଲେ ଖେଳିବାକୁ ରକ୍ଷପଣ । ୨୩
ଦ୍ରୌପଦୀ କହିଲେ ପଶା ଖେଳିବାରେ ତୁମ୍ଭେ ତ ଅଟ ଦୁର୍ବଳ
ଦୁର୍ଯ୍ୟୋଧନ ସଙ୍ଗେ ବାଜିରେ ଖେଳିଲେ ହେବ ତୁମ୍ଭ ଅମଙ୍ଗଳ । ୨୪
ପଶାଖେଳିବାକୁ ବାରଣ କରନ୍ତେ ଧର୍ମ ରାଜଙ୍କୁ ଦ୍ରୌପଦୀ
ପତ୍ନୀଙ୍କୁ ଉତ୍ତର ଦେଇ ସେ କହିଲେ ନ ହୁଅଗୋ ପ୍ରତିବାଦୀ । ୨୫

ପାପ ଓ ଅଧର୍ମ ଚରମ ସୀମାରେ ନ ହୋଇଲେ ଉପଗତ
ତା ପ୍ରତି ବିଧାନ କରିହୁଏ ନାହିଁ ମତ ଶାସ୍ତ୍ରରେ କଥିତ । ୨୬

ଧର୍ମ ମାର୍ଗେ ଥିବା ଲୋକଙ୍କୁ ବିପତ୍ତି ଯଦ୍ୟପି ପଡ଼ଇ ଆସି
ପରିଶେଷେ ତାର ବିଜୟ ହୁଅଇ ଦୁଷ୍ଟଙ୍କୁ ମିଳଇ ଶାସ୍ତି । ୨୭

ବୁଝାଇ କହିଲେ ଧର୍ମ ଯୁଧିଷ୍ଠିର ଶୁଣ ମୋ ନିଷ୍ଠା ବଚନ
ବିଧାତା ବିଧାନ ଅନୁସାରେ ପ୍ରାଣୀ ଭୋଗେ ଶୁଭାଶୁଭ କର୍ମ । ୨୮

ଜ୍ୟେଷ୍ଠ ପିତା ଯେତେବେଳେ ଡାକଛନ୍ତି କପଟ ଥିବାର ଜାଣି
ଯିବାକୁ ପଡ଼ୁଛି କାରଣ ନିୟତି ଭିଆଇଛି ଏହା ଆଣି । ୨୯

ପ୍ରଭୁ ରାମଚନ୍ଦ୍ର ସ୍ଥିତପ୍ରଜ୍ଞ ବ୍ୟକ୍ତି ହୋଇଁ ଭ୍ରମେ ପଡ଼ିଗଲେ
ସ୍ୱର୍ଣ୍ଣ ମୃଗପଛେ ଗୋଡ଼ାଇ ଯାଇଣ ବହୁ ଦୁଃଖ ଭୋଗ କଲେ । ୩୦

ରାମ ଜାଣିଥିଲେ ସୁବର୍ଣ୍ଣର ମୃଗ ଥିବା କଥା ଅସମ୍ଭବ
ତଥାପି ସେ ସ୍ୱର୍ଣ୍ଣ ମୃଗ ଦେଖି ଗଲେ ବିଶ୍ୱର ନିୟତି ଭାବ । ୩୧

ସ୍ୱର୍ଣ୍ଣମୃଗ ପଛେ ସେ ଯାଇ ନ ଥିଲେ ନୁହନ୍ତା ସୀତା ହରଣ
ନ ମରନ୍ତା ଦୁଷ୍ଟ ରାବଣ ମହୀରୁ ବଢନ୍ତା ପୃଥ୍ୱୀ କଷଣ । ୩୨

ନିୟତିର ଏହି ଆହ୍ୱାନ ପଛରେ ମଙ୍ଗଳ ଭାବ ନିହିତ
ସର୍ବଦା ସତ୍ୟର ଜୟ ହୋଇଥାଏ ହେଲେ ପଥ କଣ୍ଟକିତ । ୩୩

ମାୟା ମୃଗପ୍ରତି ଆସକ୍ତ ନ ହେଲେ ପଡ଼ନ୍ତା ନାହିଁ ଦୁର୍ଗତି
ଦୁର୍ଜନ ଦଳନ କରିବାକୁ ଯାଇ ଶ୍ରୀରାମ ଭୋଗିଲେ ଶାସ୍ତି । ୩୪

ମୋହଗ୍ରସ୍ତ ବ୍ୟକ୍ତି ସତ୍ ଉପଦେଶ ନ ଶୁଣିଲେ ଯେ ଅବସ୍ଥା
ଭୋଗ କରିଥାଏ ତାହା ଧୃତରାଷ୍ଟ୍ର ଆହ୍ୱାନୁ ବୁଝ ସର୍ବଥା । ୩୫

ଜ୍ୟେଷ୍ଠ ଭ୍ରାତା ହୋଇ ସ୍ୱଜନ ରକ୍ଷଣ, ତୋଷଣ, ଲୋଭ ପ୍ରବଳ
ହେବାରୁ ଅନ୍ୟାୟ କାର୍ଯ୍ୟେ ସମର୍ଥନ ଦେଉଛନ୍ତି ମହୀପାଳ । ୩୬

ସ୍ମିତ ହାସ୍ୟ କରି କହିଲେ ଯୁଧିଷ୍ଠି ଶୁଣ କହୁଅଛି ସତ୍ୟ
ଆମ୍ଭ ପାଇଁ ନୁହେଁ କୌରବଙ୍କ ପାଇଁ ବିନାଶ କାଳ ଆଗତ । ୩୭

ଅମୋଘ ନିୟତି ଦୁର୍ଦ୍ଦିନ ସମୟେ କହୁଅଛି ପ୍ରରୋଚିତ
ଆମ୍ଭେ ତାଙ୍କ ଭାଗ୍ୟ ଚକ୍ରରେ ଜଡ଼ିତ ହୋଇଛେ ନିମିତ୍ତ ମାତ୍ର । ୩୮

ଜ୍ଞାତି ପରିଜନ ମାନଙ୍କ ମଧ୍ୟରେ ସକଳ କ୍ଷେତ୍ରରେ ଈର୍ଷ୍ୟା
ଅବଶ୍ୟମ୍ଭାବୀ ନ ହେଲେ ହେଁ ଦୁର୍ଲ୍ଲଭ ଶତ୍ରୁ ବିଦ୍ରୋହ ମନୀଷା । ୩୯

ଗୋଟିଏ ବଂଶର ଦୁଇଗୋଟି ଶାଖା ଶୌର୍ଯ୍ୟ ବୀର୍ଯ୍ୟ ପ୍ରଭାବରେ
ଅପର ଶାଖାକୁ ପରାହତ କରି ଉଠଇ ଉଚ୍ଚ ଶିଖରେ । ୪୦
ଦୁର୍ବଳ କଥିତ ଶାଖାକୁ ବିନାଶ କରିବାକୁ ଚକ୍ରେ କୂଟେ
ରାଜା ଅବସ୍ଥାରୁ ନଷ୍ଟ କରିବାକୁ ଅବିବେକୀ ମନ ଛୁଟେ । ୪୧
ସେପରି କ୍ଷେତ୍ରରେ ଅପର ପକ୍ଷର ଅନ୍ତରରେ ଈର୍ଷା ଜ୍ୱାଳା
ପ୍ରଜ୍ୱଳିତ ହେବା ସ୍ୱାଭାବିକ ଅଟେ ଏଥୁ ପ୍ରମାଣିତ ହେଲା । ୪୨
ନିୟତିର ଗତି କେ କଳି ପାରିବ କପାଳେ ଯାହା ଲିଖନ
ନିଶ୍ଚୟ ଘଟିବ ଅନ୍ୟଥା ନ ହେବ ତହିଁକି ହେବା କାରଣ । ୪୩

ଯଦି ମୁଁ ଜାଣୁଛି ଦ୍ୟୁତକ୍ରୀଡା ସଦା କଳହ ସୃଷ୍ଟି କରଇ
ତାହା ଜାଣି ବୁଦ୍ଧିମାନ ବ୍ୟକ୍ତି ହୋଇ ରହନ୍ତି ଖେଳୁ ଦୂରେଇ । ୪୪
ମାତ୍ର ଆମନ୍ତ୍ରଣ ଉପେକ୍ଷା କରିବା ନୁହଇଁ ନୀତି ମୋହର
ଆହୂତ ହୋଇଛୁ ଯେତେବେଳେ ମୁହିଁ ଯୋଗଦେବା କାର୍ଯ୍ୟ ମୋର । ୪୫

ଏହା କହି ଧର୍ମ ପଶା ଖେଳିବାକୁ ସମ୍ମତି କଲେ ପ୍ରଦାନ
ଭ୍ରାତାଗଣ ସଙ୍ଗେ ଧରି ହସ୍ତିନାକୁ ଚଳିଗଲେ ଧର୍ମଗଣ । ୪୬
ଶକୁନି କହିଲେ ଖେଳର ଯୋଗାଡ ହୋଇଅଛି ସମାପନ
ବିଳମ୍ବ ନ କରି ଖେଳେ ଯୋଗଦାନ କର ହେ ଧର୍ମ ନନ୍ଦନ । ୪୭
ମନ୍ତ୍ରୀ କଥା ଶୁଣି ଉତ୍ତରିଲେ ଧର୍ମ ପଶାଖେଳ ଅମଙ୍ଗଳ
ଏ ଖେଳକୁ ତ୍ୟାଗ କରିବାକୁ କହନ୍ତି ଅସିତ, ଦେବଳ । ୪୮
କ୍ଷତ୍ରିୟ ପ୍ରତିଷ୍ଠା ପଶାଖେଳେ ବାଜି ଜିଣିବାରେ ପ୍ରତିଷ୍ଠିତ
ନ ହୋଇ ପରନ୍ତୁ ଯୁଦ୍ଧେ ଶୌର୍ଯ୍ୟ ବୀର୍ଯ୍ୟ ହୋଇଥାଏ ପ୍ରକାଶିତ । ୪୯
ବୀରତ୍ୱ ପ୍ରତିଷ୍ଠା ପାଇଁ ଯୁଦ୍ଧ କ୍ଷେତ୍ର ଅଟଇ ପ୍ରକୃଷ୍ଟ ସ୍ଥାନ
ସମ୍ମୁଖ ସମରେ ଶତ୍ରୁକୁ ଜିଣିଲେ ବଢ଼େ ଯଶ ପରାକ୍ରମ । ୫୦
ସମର ପ୍ରାଙ୍ଗଣେ ଶତ୍ରୁକୁ ଜିଣିବା କ୍ଷତ୍ରିୟର ଧର୍ମନୀତି
ଖେଳରେ ଜିଣିଲେ ସମ୍ମାନ ନ ମିଳେ ଏହାହିଁ ମୋହର ଯୁକ୍ତି । ୫୧
ଯୁଧିଷ୍ଠିରଙ୍କ ମନୋଭାବ ବୁଝି ପାରି କହିଲେ ଶକୁନି ମନ୍ତ୍ରୀ
ଖେଳେ ନିନ୍ଦନୀୟ କିସ ବା ରହିଛି ବୁଝି ନ ପାରେ ନୃପତି । ୫୨

ସୁବିଜ୍ଞ ବ୍ୟକ୍ତିଙ୍କ ମଧ୍ୟେ ପଣ ରଖି ପାଣ୍ଡିତ୍ୟ ପରୀକ୍ଷା ହୁଏ
ପଣ୍ଡିତ ମୂର୍ଖଙ୍କୁ ପରାସ୍ତ କରିବା ନିନ୍ଦନୀୟ କାର୍ଯ୍ୟ ନୁହେଁ । ୫୩

ଧନୁ ବିଦ୍ୟାରେ ଯେ ପାରଙ୍ଗମ ବ୍ୟକ୍ତି ହୋଇଥାଏ ପ୍ରତିଦ୍ୱନ୍ଦୀ
ଯୁଦ୍ଧେ ପରାଜିତ କଲେ ନିନ୍ଦନୀୟ ହୁଅଇ କି ପ୍ରତିଦ୍ୱନ୍ଦୀ ? ୫୪
ଧର୍ମାନୁମୋଦିତ ଅଟେ ଏହି ରୀତି ଶକ୍ତିବାନ ଯେ ପୁରୁଷ
ଶକ୍ତିହୀନ ପୁଂସେ ପରାଜିତ କଲେ ଏଥିରେ ଅଧର୍ମ କିସ ? ୫୫

ସେହିପରି ଦ୍ୟୂତ କ୍ରୀଡ଼ାରେ ନିପୁଣ ଥାଇ ଅନିପୁଣ ବ୍ୟକ୍ତି
ଖେଳେ ପରାଜିତ ହେଲେ ନରନାଥ ଅନ୍ୟାୟ ହେଲା କେଉଁଠି ? ୫୬
ପଣ ରଖି ଖେଳ ଖେଳିବା ଦୃଷ୍ଟାନ୍ତମାନ ରହିଛି ଜଗତେ
ପୁଣ୍ୟ ଶ୍ଳୋକ ନଳ ରାଜା ପଣ ରଖି ଖେଳିଲେ ଭାଇର ସାଥେ । ୫୭

ଏ କ୍ରୀଡ଼ାକୁ କିମ୍ପା ନିନ୍ଦନୀୟ ବୋଲି କହୁଅଛ ଯୁଧିଷ୍ଠିର
ବୀରଭୋଗ୍ୟା ଏହି ପୃଥିବୀ ଅଟଇ ଅପୂଜ୍ୟ ତହିଁ ଅବୀର । ୫୮

ତୁମ୍ଭ ମନେ ଭୟ ଥିଲେ ଧର୍ମରାଜ ଖେଳେ ଯୋଗ ଦିଅ ନାହିଁ
ଧର୍ମ ଦୋହାଇଦେଇ ଦ୍ୟୂତକ୍ରୀଡ଼ା ନିନ୍ଦା ମୁଖେ ଶୋଭା ପାଏ ନାହିଁ । ୫୯
ଯୁଧିଷ୍ଠି ପୁଚ୍ଛିଲେ ତେବେ ମୋ ସହିତ କିଏ ସେ ଖେଳିବ ଖେଳ ?
ଦୁର୍ଯ୍ୟୋଧନ ବୋଲେ ତୁମ୍ଭ ଆମ୍ଭ ମଧ୍ୟେ ଅବଶ୍ୟ ହୋଇବ ଖେଳ । ୬୦
ମୋର ପ୍ରତିନିଧି ରୂପେ ମୋ ମାତୁଳ ଖେଳିବେ ବସିଣ ଖେଳ
ଖେଳ ପାଇଁ ପଣ ଯୋଗାଇ ଦେବି ମୁଁ ଲୋଡ଼ା ଯେତେକ ସମ୍ବଳ ।୬୧

ଦୁର୍ଯ୍ୟୋଧନ କଥା ଶୁଣି ଯୁଧିଷ୍ଠିର ଅନ୍ତରେ କଲେ ବିଚାର
ଦୁର୍ଯ୍ୟୋଧନେ ଖେଳେ ଜିଣିବା ସମ୍ଭବ ମନ୍ତ୍ରୀ କଠିନ ବ୍ୟାପାର । ୬୨
ଛଳେ ସେ କହିଲେ ପ୍ରତିଦ୍ୱନ୍ଦୀ ପାଇଁ ପ୍ରତିନିଧି ହୋଇ କଣେ
ଖେଳେ ଯୋଗ ଦେବା ବିଶୃଙ୍ଖଳା ରହିତ ବୋଲି ଧରୁଅଇ ମନେ । ୬୩

ପ୍ରତିଦ୍ୱନ୍ଦୀ ନିଜେ ଖେଳର ନିମନ୍ତ୍ରେ ଦେଇ ଥିବାରୁ ଆହ୍ୱାନ
ସେ ନିଜେ ଖେଳରେ ଯୋଗ ଦେବା ନୀତି ଅଟଇ ଶୃଙ୍ଖଳା ଜ୍ଞାନ ।୬୪
ମାତ୍ର ଦେଖୁଅଛୁ ଏଠାରେ ନିୟମ ପୂରାପୂରି ବ୍ୟତିକ୍ରମ
ପ୍ରତିଦ୍ୱନ୍ଦୀ ପରିବର୍ତ୍ତେ ପ୍ରତିନିଧି ଦେଉଅଛି ଉପସ୍ଥାନ । ୬୫
ଏଥୁ ଜଣାଯାଏ ଖେଳରେ ସ୍ୱଚ୍ଛତା ବାଧିତ ହେବ ନିଶ୍ଚୟ
ଅବା ମୋହ ଠାରୁ ହାରଯିବା ପାଇଁ ଦୁର୍ଯ୍ୟୋଧନ କରେ ଭୟ । ୬୬

ଏହା ଶୁଣି ମନ୍ତ୍ରୀ ଅବଜ୍ଞା ପୂର୍ବକ କହୁଛନ୍ତି କଟୁକଥା
ସକଳ କଥାରେ ଆପତ୍ତି କରିବା ତୁମ୍ଭ ହେବ ବୃଥା କଥା । ୬୭

ମନ୍ତ୍ରୀଙ୍କ ମନ୍ତବ୍ୟ ଶୁଣି ଯୁଧିଷ୍ଠିର କହିଲେ ଯଦ୍ୟପି ଗୃହେଁ
ତୁମ୍ଭ ସଙ୍ଗେ ମୁହିଁ ଖେଳିବି ଏ ଖେଳ ହୋଇ ମାତ୍ର ନରୂପାୟୁ । ୬୮

ରାଜାଙ୍କ ସହିତ ରାଜା ପ୍ରତିଦ୍ୱନ୍ଦୀ ହୋଇବା କ୍ଷତ୍ରିୟ ଧର୍ମ
ମନ୍ତ୍ରୀ ସଙ୍ଗେ ରାଜା ପ୍ରତିଦ୍ୱନ୍ଦୀ ହେବା ସମ୍ପୂର୍ଣ୍ଣରେ ବ୍ୟତିକ୍ରମ । ୬୯

ଏହା କହି ଧର୍ମ ବସିଲେ ଖେଳରେ ସଙ୍ଗେ ଘେନି ଚାରିଭ୍ରାତ
ଖେଳେ ହାରଜିତ ଜାଣିବା ନିମନ୍ତେ ଜନତା ଅପେକ୍ଷା ରତ । ୭୦

ମଣ୍ଡପେ ବସିଲେ ଭୀଷ୍ମ, ଭୂରି, ଦ୍ରୋଣ, କୃପାଚାର୍ଯ୍ୟ, ସୋମଦତ୍ତ
କର୍ଣ୍ଣ, ଅଶ୍ୱତ୍ଥାମା, ବିଦୁର, ସଞ୍ଜୟ, ଦୁର୍ଯ୍ୟୋଧନ ଶତଭ୍ରାତ । ୭୧

ବାଅସ୍ତରିଶ ପଦେ ଅଧ୍ୟାୟ ସମ୍ପୂର୍ଣ୍ଣ ସୁଜନେ ନ ଘେନ ଦୋଷ
ଶଙ୍କଟ ତାରିଣୀ ସହାୟ ହୁଅନ୍ତୁ ଅନ୍ତକରେ ବୃନ୍ଦାଦାସ । ୭୨

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ମଥୁରା - ଦ୍ୱାରକା
ଲୀଳା ଖଣ୍ଡେ ଯୁଧିଷ୍ଠିର ଦେବଙ୍କୁ ଦ୍ୟୁତକ୍ରୀଡ଼ାକୁ ଆମନ୍ତ୍ରଣ
ଆଖ୍ୟାନେ ନାମ ଅଷ୍ଟବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।

ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

—●—

## ତାରିଣୀ ପଞ୍ଚକ (୧)

**ବୋଲି—**

କରୁଅଛି ଜଣାଣ          କୃପାମୟୀ ଚରଣ
କମଳେ ଧ୍ୟାନ ଅକଞ୍ଚନ
କରମାତ କଲ୍ୟାଣ     କଟତା ତୁମେ ଜାଣ
କଷଣ କର ବିମୋଚନ ଗୋ କୃପାମୟୀ
କାଢ଼ କରୁଛି ନିବେଦନ
କୋଳ କରି ନିଅ ନନ୍ଦନ
କରକା ପ୍ରାୟ ଦୁଃଖ କର ଦୂର ପ୍ରତ୍ୟକ୍ଷ
କରଯୋଡ଼ି କରେ ଜଣାଣ ଗୋ । ୧

( ୨ )

ଖଟିଛନ୍ତି ଯାହାର ଖଜାରେ ବ୍ରହ୍ମାହର
ଖଗପତି, ସୁରଗଜନ
କ୍ଷଣକେ କରୁ ସୃଷ୍ଟି କ୍ଷଣକେ ନାଶୁ ସୃଷ୍ଟି
କ୍ଷଣ କ୍ଷଣକେ ଆନ ଆନ ଗୋ କୃପାମୟୀ
ଖଣ୍ଡା ଖର୍ପର କରେ ଧରି
ଖଣ୍ଡ ମା ଦୁର୍ଗତି ମୋହରି
ଖଗପି ମୂଢ଼ ଚିତ୍ତ ବୁଝି ନ ପାରେ ତତ୍ତ୍ୱ
କ୍ଷମା କର ଦୋଷ ଦାସର ଗୋ । ୨

( ୩ )

ଗର୍ବ ଗଞ୍ଜିମା ତୁମ୍ଭ ଗର୍ବ ନ ପାରୁ ସହ୍ଭ
ଗର୍ବୀଗର୍ବ କରୁ ଗଞ୍ଜନ
ଗୁରୁ ହୋଇ ମୋହର ଗୁପତ ତତ୍ତ୍ୱସାର
କର୍ଣ୍ଣରେ ପଶି ଦେଲୁ କହି ଗୋ କୃପାମୟୀ
ଜ୍ଞାନ ନେତ୍ର ହେଲା ଉଦିତ
ଗଗନେ ଜ୍ୟୋତି ପ୍ରକଟିତ
ଦ୍ୱାର ତୋହର ନାମ ପୂରିଲା ମନସ୍କାମ
ଗଣ୍ଡି ଧନ କଲି ନରତ ଗୋ ।

( ୪ )

ଘରଟି ଅଟେ ତୋର ଘୋଟିଛି ଦୁଃଖ ଘୋର
ଘଟ ବାସିମା ଦେନ ଆର୍ତ୍ତି
ଘଟଗ୍ରାମରେ ଘର ଘେରିଛି ବନ ଘୋର
ଘଣ୍ଟ ଘୋଡାଇ ରଖ ସୁତ ଗୋ କୃପାମୟୀ
ଘୃଣା ନ କର ତୋ ସନ୍ତାନ
ଘେନା କର ମା ନିବେଦନ
ଘୋର ବିପଦେ ପଡ଼ି ଘୋଷେ ନାମ ତୋହରି
ଘୂମାଇ ନ ପଡ଼ି କାନନ ଗୋ ।

( ୫ )

ଉଠଉଠ ଝଟକି ଉଣା କର ବାପଣି
ଉତ୍କଟ ହେଲା ବେଳୁ ବେଳ
ଉଚ୍ଛୁର କଲେ ମାତ      ଉଦ୍ଭବ ହଂସା ସତ୍ୟ
ଉର୍ଣ୍ଣନାଭ ଛନ୍ଦରୁ ଜାଲ ଗୋ, କୃପାମୟୀ
ଉତ୍କଣ୍ଠା ବଢ଼େ ଅନୁକ୍ଷଣ
ଉଦ୍ଧାର କର ତକ୍ଷଣ
ଉଦିତ ସୂର୍ଯ୍ୟ ସମ      ଉଜ୍ଜ୍ୱଳ ହେଉ ନାମ
ଉମା ଉମାପତି ଶରଣ ଗୋ ।

—*—

# ଊନ ଚତ୍ୱାରିଂଶ ଅଧ୍ୟାୟ

## ଦ୍ରୌପଦୀଙ୍କ ବସ୍ତ୍ରହରଣ

### ରାଗ - ଚୋଖି

କୃଷ୍ଣ ଚରିତ ମାନସ ପାନ କର ସୁଧୀରସ
ଖେଳ ମଣ୍ଡପେ ବସିଲେ ଧର୍ମ ରାଜନ
ପୂର୍ବରେ ପାଣ୍ଡୁ ନନ୍ଦନ ପଶ୍ଚିମରେ ଦୁର୍ଯ୍ୟୋଧନ
ମଧ୍ୟ ପୀଢ଼ରେ ଶକୁନି ମନ୍ତ୍ରୀ ଆସୀନ
ବୋଲେ ଶୁଣ ଖେଳ ନିୟମ
ହାରିଜିତ ଜଣାଯିବ ପଡ଼ିଲେ ଦାନ ।୧

ଦୁଇ ପକ୍ଷ ଦାନେ ଦାନେ ବାଛି ନିଅ ମନେମନେ
ଖେଳିବା ଆଗରୁ ରଖ ନିଜର ପଣ
ସମ୍ମତ ହୋଇ ନୃପତି ଦାନେ ଦାନେ ନେଲେ ଚିହ୍ନି
ଦୁର୍ଯ୍ୟୋଧନ ଗୁରି ପାଞ୍ଚ ଯୁଧିଷ୍ଠି ଦାନ
କାହ୍ନୁଙ୍କୁ କରି ସ୍ମରଣ
ଖେଳାଏ କପଟପଶା ଶକୁନି ରାଣ ।୨

ହାରିଲେ ଧର୍ମ ଯୁଧିଷ୍ଠି ଜିଣିଗଲେ ଧାର୍ତ୍ତରାଷ୍ଟ୍ରି
ମର୍କତ କୁଣ୍ଡଳ ଆଦି ପଦାର୍ଥ ମାନ
ସ୍ୱଳପ୍ପୁ ଯାର କାନେ ମନ୍ତ୍ରିତ ଦେଖିଣ ଥିଲେ
ସେ କୁଣ୍ଡଳ କର୍ଣ୍ଣେ ଥିଲେ ନୁହେଁ ମରଣ
ତା ଦେଖି କହିଲେ ଗାଙ୍ଗେୟ
ଖେଳରେ ନ ମାତ ପୁଅ ଘରକୁ ଯାଅ ।୩

ଖେଳେ ହାରିଲୁ ସର୍ବସ୍ୱ ରଥ ଗଜ ଓଟ ଅଶ୍ୱ
ଅଧିକ ଖେଳିଲେ ମନେ ବଢ଼ିବ ରୋଷ
ଭୀଷ୍ମଙ୍କ ବଚନେ କର୍ଣ୍ଣ କହେ ଚାହାନ୍ତି କାରଣ
ସେ ଯାହା ହାରିଲେ ନୁହେଁ ଦ୍ରବ୍ୟ ନିଜସ୍ୱ
ରଥ ଗଜ ଅଶ୍ୱ ମୁକୁଟ
ଜରାସନ୍ଧ ମାରି ଆଣିଥିଲେ ଏ ବସ୍ତୁ ।୪

ରାଜ୍ୟକୁ ହାରନ୍ତେ ଯେବେ   ଜାଣନ୍ତେ ହାରିଲେ ତେବେ
ତହୁଁ ସିନା ଜଣା ପାନ୍ତା ହାର ଓ ଜିତ
ଦୁର୍ଯ୍ୟୋଧନ ବୋଲେ ମିତ   ଯାହା କହିଲ ଯଥାର୍ଥ
ଅଚ୍ଛେଇ କଟକ ଅଟେ, ଆମ୍ଭର ବଡ଼
ମୋ ଖଗକୁ ରଖିଲ ପଣ
ଯୁଧିଷ୍ଠି କହିଲେ ତାହା ମୋହର ପଣ । ୫

କପଟୀ ଶକୁନି ମନ୍ତ୍ରୀ   ଗଡ଼ାଇଲ ପଶା କାଠି
ହାରିଗଲେ ଧର୍ମସୁତ ରାଜ୍ୟ ସମ୍ପଦ
ଗୃହଭ୍ରାତା ସହିତରେ   ଜିଣିଲେ ଅନ୍ଧ କୁମରେ
କହିଲେ ନ ସରେ କୌରବଙ୍କ ଆନନ୍ଦ
ଦର୍ପେ ପୁଚ୍ଛିଲେ ଦୁର୍ଯ୍ୟୋଧନ
ଆଉ କି ସମ୍ବଳ ଅଛି ଦେବାକୁ ପଣ ? ୬

ଶକୁନି ମୁଖକୁ ଚାହିଁ   ବୋଲୁଛନ୍ତି ଧର୍ମ ସାଇଁ
ମୋହର ଆତ୍ମାକୁ ଏବେ ରଖିଲ ପଣ
କର୍ଣ୍ଣ ଦୁଃଶାସନ ଦୁଇ   ହସିଲେ ଧର୍ମଙ୍କୁ ଚାହିଁ
ଯାବତ କାଳକୁ କଥା ରହିବ ଜାଣ
ଯୁଧିଷ୍ଠିର ଦାସ ହୋଇଲେ
ଭ୍ରାତାଙ୍କୁ ହରାଇ ଆପେ ପଣ ହୋଇଲେ । ୭

ହାରି ବସନ୍ତେ ଯୁଧିଷ୍ଠି   ପଚାରିଲ ଧାର୍ତ୍ତରାଷ୍ଟ୍ରି
ଆଉ କି ରଖିବ ପଣ ଅଛି ସମ୍ପତ୍ତି
ହନୁମନ୍ତ କଲ ପଣ   ଯଦି ଜିଣିବ ରାଜନ
ଫେରାଇ ଦେବ ତୁମ୍ଭର ସବୁ ସମ୍ପତ୍ତି
କହୁଛନ୍ତି ଧର୍ମ ରାଜନ
ପତ୍ନୀ ଯାଜ୍ଞସେନୀ ମୋର ରହିଲ ପଣ । ୮

ସକୂଟେ ବୋଲେ ଶକୁନି   ଖେଳେ ହାରିଲେ ନୃମଣି
ହରାଇବ ପଞ୍ଚରାଜ୍ୟ ପତ୍ନୀ ସହିତେ
ବାରବର୍ଷ ବନବାସ   ଭୋଗ କରିବ ଅବଶ୍ୟ
ବର୍ଷେ ତେର ଦିନ ପୁଣି ରହିବ ଗୁପ୍ତେ

'ଅଜ୍ଞାତ ସମୟେ ପ୍ରକାଶ
ହେଲେ ପୁଣି ବନବାସ ତେର ବରଷ । ୯

ସହଦେବ ସର୍ବଜ୍ଞାତ ବୁଝିଲା କଥାର ତତ୍ତ୍ୱ
ଅଜ୍ଞାତ ବାସେ ଘାତକ ହେବ ନିହତ
ଏଣୁ ସହଦେବ ମନ୍ତ୍ରୀ ପ୍ରକାଶ କଲେ ସମ୍ମତି
ମନ୍ତ୍ରୀଙ୍କ କଥାରେ ନୃପତି ସହମତ
ଶ୍ରବଣେ ସଭା ସ୍ତମ୍ଭୀଭୂତ
ଶକୁନି ମନ୍ତ୍ରୀ ମନରେ ହେଲା ଉଷତ । ୧୦

ବହୁଦିନର ଲକ୍ଷ ମୋର ପୂରଣ ହେବ ଏଥର
ସଭାଙ୍କ କକ୍ଷଣେ ପୁଣି ହେବେ ନିହତ
କରିବ ରକ୍ତେ ତର୍ପଣ କଚ ଶୁଖାଇବ ରଣ
ପିତା ପ୍ରାଣତ୍ୟାଗ କାଳେ କରିଛି ସତ୍ୟ
ପ୍ରତିଶୋଧ ସମୟାଗତ
ଉଦ୍ଦେଶ୍ୟ ପୂରଣ କର ଜାହ୍ନବୀ ମାତ । ୧୧

ଜିତ ବୋଲି ପଶା କାଠି ପାଡିଲା ମନ୍ତ୍ରୀ କପଟୀ
ପଡ଼ିଲା ଦାନ ହାରିଲେ ଧର୍ମ ଯୁଧିଷ୍ଠି
ଆଜ୍ଞା ଦେଲେ ଦୁର୍ଯ୍ୟୋଧନ ବାହୁ ଧରି ଦୁଃଶାସନ
ବସାଇଲା ସଭାତଳେ ଭାଇ ପାଞ୍ଚଟି
ପୁଣି ପାଇଲେ ଅପମାନ
ଗଦାକୁ ବୁଲାଇ ଭୀମ କରେ ଗର୍ଜନ । ୧୨

ଯୁଧିଷ୍ଠି କହିଲେ ଭାଇ ଚଞ୍ଚଳ କର ନାହିଁ
ସତ୍ୟ କରି କେଉଁ ପରି ହେବା ଅସତ୍ୟ
ମାନି ଭ୍ରାତାଙ୍କ ବଚନ ବସିଲେ ହୋଇ ମଉନ
ସାଧୁ ସାଧୁ ଯୁଧିଷ୍ଠିର ଶୁଭେ ଘୋଷଣା
ତାହାକୁ କରେ କୁରୁପତି
ତୁମ୍ଭେମାନେ ଭୃତ୍ୟ ମୋର ମୁହିଁ ନୃପତି । ୧୩

ରାଜ୍ୟ-ଧନ-ଭ୍ରାତା - ପତ୍ନୀ - ଆମ୍ଭାକୁ ହାରି ନୃମଣି
ଭୃତ୍ୟ ପ୍ରାୟ ସଭାସ୍ଥଳେ ବସିଲେ ସ୍ଥିର

ଆଜ୍ଞା ଦେଲା ଦୁର୍ଯ୍ୟୋଧନ  ବେଗେ ଯାଇଁ ଦୁଃଶାସନ
କେଶ ଧରି ଯାଜ୍ଞସେନୀ ଆଣ ସତ୍ୱର
ଧାଇଁଲା ଦୁଷ୍ଟ ଦୁଃଶାସନ
ମିଳିଲା ଖାଣ୍ଡବପ୍ରସ୍ଥେ କରି ଗର୍ଜ୍ଜନ । ୧୪

ଗର୍ଜ୍ଜି ତର୍ଜ୍ଜି ଦୁରାଚାର  ପ୍ରବେଶିଲା . ଅନ୍ତଃପୁର
ଦେଖି ଦ୍ୱାର ନରୋଧିଲେ କୁନ୍ତୀ ଜନନୀ
ଆଶ୍ୱାସନା କରି ମାତ  ପଚାରି ବୁଝିଲେ ତତ୍ତ୍ୱ
କିମ୍ପା କ୍ରୋଧ କରୁଅଛୁ ତୁ ଯାଜ୍ଞସେନୀ ?
ଦୁଃଶା ବୋଲେ ରାଜା ଆଦେଶ
ଧରି ନେବ ଯାଜ୍ଞସେନୀ ନ ଧର ଦୋଷ । ୧୫

ପଶା ଖେଳିକି ରଖି ପଣ  ହାରିଲେ ଧର୍ମରାଜନ
ଯାଜ୍ଞସେନୀ ସହିତ ରାଜ୍ୟ ସିଂହାସନ
ଜିଣିଲେ କୌରବ ପତି  ଦ୍ରୁପଦ ରାଜା ଦୁହିତା
ଯେନ ଜିତ ପଣ ଦ୍ରବ୍ୟ ରାଜା ବଚନ
ବାଧା ଦିଅ ନାହିଁ ଗୋ ମାତ
ବଳେ ଯେନ ଜିତ କୃଷ୍ଣା ବଚନ ସତ୍ୟ । ୧୬

କୋଇନ୍ତା କହିଲେ ସୁତ  କିମ୍ପା କହୁ ଅନୁଚିତ
ପାଞ୍ଚାଳୀକୁ ସଭା ମଧ୍ୟେ ନେବୁ କେମନ
ସେତ ବିବାହିତା ନାରୀ  କୁଳ ଗୌରବ ଭୂମିର
କୁରୁକୁଳ ଜ୍ୟେଷ୍ଠ ବଧୂ ସବୁରି ମାନ୍ୟ
ତାହାର କି ଦୋଷ ଅଛଇ
ମାତା କଥା ମାନ ପୁତ ଯାଅ ପଳାଇ । ୧୭

ଖେଳିବାରେ ହାରି ଜିଣ  ଘରର କଥା ବୋଲି ଜାଣ
ଭାଇ ଭାଇ ଖେଳେ ସୁତ ଗୋଳ ନ କର
କହନ୍ତେ ମାତା ଏସନ  ନ ଶୁଣିଲା ଦୁଃଶାସନ
ପେଲି ଦେଇ ଭିତରକୁ ଗଲା ପାମର
ବିକଳେ ବୋଇଲେ ପାଞ୍ଚାଳୀ
ପାକାସ୍ପର୍ଶ ହୋଇଅଛି ନ ଛୁଅଁ ବୋଲି । ୧୮

ଦୁଃଶାସନ ବୋଲେ ଶୁଣ ଛୁଣ୍ଡାଳୀ ରମଣୀ ହୋଇ
ଭଣ୍ଡାଇ କହୁଛୁ ଦେହ ଅସ୍ପୃଶ୍ୟ ତୋର
ତୋ ଦେହ ଛୁଇଁବ ମୁହିଁ ଦେଖିବା କିସ ହୁଅଇ
ଦୋଷଶୂନ୍ୟ ରମଣୀ କରେ ଛଳନା ଗିର
ଏମନ୍ତ କହି ଦୁଃଶାସନ
ବଳାତ୍କାରେ ନେଇ ଗଲା କେଶ ଧରିଣ । ୧୯

କେଶ ଧରି ଅଛି କରେ ପାଦ ନ ଲାଗେ ଭୂମିରେ
କରୁଣ କ୍ରନ୍ଦନେ କମ୍ପେ ରାଜ ନଗରୀ
ରାଜ୍ୟ ଲୋକ ଦୁଃଶାସନ ନେଇଗଲା ନାରୀ ରତ୍ନ
ପଛରେ ଗୋଡ଼ାଇଛନ୍ତି ପୁରୁଷ ନାରୀ
ପୁତ୍ରଙ୍କୁ ନିନ୍ଦନ୍ତି ସମସ୍ତେ
ପତ୍ନୀକୁ ପଣ ରଖିଲେ କେଉଁ କେମନ୍ତେ ? ୨୦
ଧିକ୍ ରାଜା ଦୁର୍ଯ୍ୟୋଧନ ହରାଇ ବସିଛି ଜ୍ଞାନ
କୂଟ କପଟିଆ ମନ୍ତ୍ରୀ କରିଲା ନଷ୍ଟ
ରାଜ୍ୟ ନାରୀ ନିର୍ଯ୍ୟାତନା ରାଜ ଧର୍ମେ ଅଛି ମନା
ହସ୍ତିନାପୁରୁ ଲକ୍ଷ୍ମୀ ହୋଇଲେ ନଷ୍ଟ
ନାରୀ ନିର୍ଯ୍ୟାତନା ଦୋଷରେ
ବୁଡ଼ିଯିବ କୁରୁକୁଳ ମହାପାପରେ । ୨୧
ସଭାତଳେ ପାଣ୍ଡୁ ପୁତ୍ରେ ବସିଛନ୍ତି ହେଟ ମାଥେ
ମିଳିଲା ପାଞ୍ଚାଳୀ ଧରି ଦୁଃଶା ପାମର
ଆକର୍ଷି ଧରିଛି କେଶ ଅସମ୍ଭାଳ ଅଙ୍ଗବାସ
ବକଳେ କାନ୍ଦନ୍ତି ଝରେ ଲୋତକ ଧାର
ଦୁଃଶାସନ ବୋଲେ ରାଜନ
କୃଷ୍ଣା ଧରି ଆଣିବା ହେଲା ଅକାରଣ । ୨୨
ରଜୋବତୀ ଅଛି ନାରୀ ଛୁଇଁଲେ ଭୁଟିବ ଶିରୀ
ଆଣିଅଛି ମାତ୍ର ରାଜା ଆଜ୍ଞାନୁସରି
ଦୁର୍ଯ୍ୟୋଧନ ବୋଲେ ତରୁଣୀ କହୁଛି କପଟ କରି
କରିଅଛି ପାଞ୍ଚ ପତି ଏକଇ ନାରୀ

ସଖୀ ହୋଇଲୁ କପଟ
ବସନ ଫେଡ଼ି ଦେଖିବା ଜାନୁ ଏହାର । ୨୩
କର୍ଣ୍ଣ ବୋଲେ ଦୁର୍ଯ୍ୟୋଧନ   ଅମ୍ବର ମତ ଏସନ
ଉଲଗ୍ନ କରରେ ଦୁଃଶା ବିଳମ୍ବ ନାହିଁ
ଆଜ୍ଞା ପାଇ ଦୁଃଶାସନ   ଫେଡ଼ନ୍ତେ ଅଙ୍ଗ ବସନ
ଦୁର୍ଯ୍ୟୋଧନ ଡାକ କହେ ଶୁଣିଲେ ତୁହ୍ନ
ଦେଖ ମାଈ ପତି ତୋହର
ଜଣେ କେହି ନ ହରନ୍ତି ଦୁଃଖକୁ ମୋର । ୨୪
ବନ୍ତ ଗଣମ ତାଙ୍କର   ମହାବୀର, ଧନୁର୍ଦ୍ଧର
ରକ୍ଷକ ପର ଶ୍ରୀକୃଷ୍ଣ ସଖା ତୁମର
ତୁମ୍ଭଙ୍କୁ ବିପଦ କାଳେ   ଉଦ୍ଧାରନ୍ତି ବାହୁବଳେ
ଏବେ କଥା ନ ଶୁଣନ୍ତି ଡାକ ମୋହର
ଆଜ କେ କରିବ ଉଦ୍ଧାର
ସ୍ୱାମୀ, ଉପସ୍ୱାମୀ ସବେ ହେଲେ ବଧିର । ୨୫
ସଭା ମୁଖ ଗୃହିଁ ସତୀ   ବକ୍ତିଲେ ଧୀରେ ଭାରତୀ
ସଭା ମଧ୍ୟେ ବସିଅଛ ମହତ ଜନ
ନାରୀର ସମ୍ମାନ ରକ୍ଷା   ଅଟଇ କ୍ଷତ୍ରିୟ ଦୀକ୍ଷା
ବିବସନା କରେ ଦୁଷ୍ଟ ଦେଖି ମଉନ
ଏହା କି ତୁମ୍ଭର ଧରମ
ସଭାସ୍ଥଳେ କୁଳବଧୂ ହେବା ଉଲଗ୍ନ ? ୨୬
ପତ୍ନୀ ଉପରେ ସ୍ୱାମୀର   ଥିଲେ ମଧ୍ୟ ଅଧିକାର
ଖେଳରେ ପତ୍ନୀକୁ ପଣ ରଖେ କି ପତି
କପଟ ପଶା ଖେଳାଇ   ଧର୍ମ ନୃପଙ୍କୁ ହରାଇ
ଅନ୍ୟାୟକୁ ସମର୍ଥନ କର କେମିତି
ନାରୀ ନିର୍ଯ୍ୟାତନା ଦେଖୁଛ
ମୂକଦ୍ରଷ୍ଟା ହୋଇ ଭ୍ରଷ୍ଟ କାର୍ଯ୍ୟ କରୁଛ ? ୨୭
ଶୁଣି ଦ୍ରୌପଦୀ ବଚନ   ବୋଇଲେ ଗଙ୍ଗା ନନ୍ଦନ
ପତ୍ନୀ ଅଟଇ ସର୍ବଦା ପତି ଅଧୀନ

ସେ ଯେବେ ରଖିଲେ ପଣ      କଏ କରିବ ବାରଣ
ପତିପତ୍ନୀ ସମ୍ପର୍କେ ଏତ ବାକ୍ୟ ଟାଣ
ସେ ଯେବେ ସହିଲେ ଲାଞ୍ଛନା
ପ୍ରତିବାଦ କେ କରିବ ନ ପାଏ ଜଣା । ୨୮

ଦେଖ ଦ୍ରୁପଦ ଦୁହିତା      ତୁମ୍ଭର ଯେ ପାଞ୍ଚ ପତି
ବସିଛନ୍ତି ସଭାତଳେ ହୋଇ ମୋଉନ
ନ କରନ୍ତି ପ୍ରତିବାଦ      ମନେ ନାହିଁ ଅବସାଦ
କି ଉତ୍ତର ଦେବୁ ଅମ୍ଭେ ସଭାର ଜନ
ପଚ୍ଚୁର ତୋହ ପାଞ୍ଚ ପତି
ସଭାକୁ ନ ଦିଅ ଦୋଷ ରାଜ ଦୁହିତା । ୨୯

ପତ୍ନୀ ଉପରେ ପତିର      ଚିରନ୍ତନ ଅଧିକାର
ସାମାଜିକ ରୀତି ମତେ ସ୍ୱୀକୃତ ଚିର
ଯେବେ ସ୍ୱାମୀ ଅଧିକାର      ହୋଇଗଲା ହସ୍ତାନ୍ତର
ପତ୍ନୀ କି ରହିବ ତାର ହୋଇ ନିଜର
ସ୍ୱାମୀ ପରାଜୟୁ ସହିତ
ପତ୍ନୀର ସ୍ୱାଧୀନ ସତ୍ତା ହୁଏ ବିଲୁପ୍ତ । ୩୦

ଅନ୍ୟ ଏକ ଯୁକ୍ତି ଶୁଣ      ପରର ଧନକୁ ପଣ
ରଖିବାରେ ପରାଧୀନ ବ୍ୟକ୍ତି ଅଯୋଗ୍ୟ
ଏ ଯୁକ୍ତିରେ ଧର୍ମ ସୁତ      ଆଗେ ହୋଇ ପରାଜିତ
ପାଞ୍ଚ ଭ୍ରାତାଙ୍କର ଯେଉଁ ଗୃହିଣୀ ଭୋଗ୍ୟ
ତାଙ୍କୁ ଖେଳରେ ଜ୍ୟେଷ୍ଠ ଭ୍ରାତ
ଏକାକି ପଣ ରଖିବାରେ ଅନୁଚିତ । ୩୧

ମାତ୍ର ଆର୍ଯ୍ୟ ଧର୍ମଶାସ୍ତ୍ର      ମତେ ସବୁ କାଳେ ପତ୍ନୀ
ସର୍ବୋତଭାବେ ସ୍ୱାମୀର ଅଟେ ଅଧୀନ
ଏକଥା କରି ବିଚାର      ଦ୍ୱନ୍ଦ ଜାତ ହୁଏ ମୋର
ମୀମାଂସା ଦେବାକୁ ଆମ୍ଭେ ଅଟୁ ଅକ୍ଷମ
ଏଣୁ ବସିଛୁ ହୋଇ ମୌନ
ପଚ୍ଚୁର ତୁମ୍ଭ ସ୍ୱାମୀଙ୍କୁ ସମାଧାନ । ୩୨

ବିଦ୍ୱାନ ଓ ବୁଦ୍ଧିମାନ   ରାଜନୀତିରେ ନିପୁଣ
ପରମ ଧାର୍ମିକ ସ୍ୱାମୀ ପାଣ୍ଡୁ ନନ୍ଦନ
ପତ୍ନୀଙ୍କୁ ରକ୍ଷଣ ପଣ   ଯଦି କଲେ ଖେଳେ ମନ
ସତ୍ୟ ବିଡ଼ମ୍ବନା ବୋଲି କଥା ପ୍ରମାଣ
କପଟ ପଶା ଏ ନୁହଇଁ
ବିନା ପ୍ରତିବାଦେ ଖେଳ ଅଛନ୍ତି ସାଇଁ । ୩୩

ଭୀମଙ୍କ ବଚନ ଶୁଣି   ବିଚଳିତ ପାଞ୍ଚସେନୀ
ସ୍ୱାମୀଙ୍କୁ ଚାହିଁଲେ ଦେବୀ ଅଶ୍ରୁ ନୟନେ
ନୀରବେ ବସି ଅଛନ୍ତି   ନ ଫୁଟେ ମୁଖୁ ଭାରତୀ
ଦେଖି ଦେବୀ ଗାଳି ଦେଲେ ହୀନ ବଚନେ
କୋପାନ୍ୱିତ ହୋଇ ମାରୁତି
କହିଲେ ମୋ ଦୋଷ ଦିଅ ନାହିଁ ଗୋ ସତୀ । ୩୪

ଶୁଣି ନାହିଁ ମୋର କର୍ଣ୍ଣ   ପତ୍ନୀଙ୍କୁ ରକ୍ଷଣ ପଣ
ପୁରୁଷ ଖେଳଇ ପଶା ଆନନ୍ଦ ପାଇଁ
ହେଲେ ହେଁ ରହିତା ନାରୀ   ବେଶ୍ୟା ଅବା ପରଗୃହୀ
ତଥାପି ଖେଳରେ ପଣ ଯୋଗାଏ ନାହିଁ
ବିଚିତ୍ର ଧର୍ମଙ୍କ ବିଧାନ
ଭ୍ରାତୃଭାର୍ଯ୍ୟା ସଙ୍ଗେ ଆତ୍ମା ରଖିଲେ ପଣ । ୩୫

ଭ୍ରାତାଙ୍କୁ ରଖିଲେ ପଣ   ଦୁଃଖ ନାହିଁ ମୋର ମନ
ଭାର୍ଯ୍ୟାଙ୍କୁ ରଖିବା ଘୋର ଦୋଷ ଅଟଇ
ସେହି ଦୋଷେ ଭ୍ରାତାଙ୍କର   ଛେଦିବି ମୁଁ ବେନି କର
ଏହା କହି ଖଡ଼୍ଗ ଧରି ହାଣି ଉଠଇ
ଭୀମଙ୍କୁ କହିଲେ ବିଭତ୍ସୁ
ପିତୃପ୍ରାୟ ଜ୍ୟେଷ୍ଠ ଭ୍ରାତା ନ ଧର ଦୋଷ । ୩୬

ସାମାନ୍ୟ ନାରୀର ପାଇଁ   ଭାଇରେ କଲେ ଲଢ଼େଇ
ଗୃହ କଳି ଲାଗି ଶାନ୍ତ ହେବ ବିପନ୍ନ
ସେ ଆମ୍ଭର ଜ୍ୟେଷ୍ଠ ଭ୍ରାତା   ଶୁଣିବୁ ତାଙ୍କ କଥା
ନ ମାନିଲେ ହେବା ଆମ୍ଭେ ମୁରଖ ଶୂନ୍ୟ ॰

ଏ ସମୟେ ଲୋଡ଼ା ଏକତା
ଅଭକ୍ତ ହୋଇଲେ ବଢ଼ିବ ଦୁରବସ୍ଥା । ୩୭
ଆଗରୁ ତ କେବେ ମୁହିଁ ଏ ସ୍ୱଭାବ ଦେଖି ନାହିଁ
ଜ୍ୟେଷ୍ଠ ସୋଦରଙ୍କୁ ତୁମ୍ଭେ ମାଣ ଗୋଡ଼ାଇ
ଅଭ୍ୟସ୍ତକେ ଅପମାନ ଦେଲେ ହେବ କ୍ଷତି ଜାଣ
ଶତ୍ରୁ ଏ ହସିବେ ଆମ୍ଭ ଛିଦ୍ରକୁ ପାଇ
ଏ କଥାକୁ କର ସ୍ମରଣ
ଖେଳର ନିଷ୍ପତ୍ତିକୁ କର ସମର୍ଥନ । ୩୮
ତଦ୍ୱାରା ଆମର ଯଶ କୀର୍ତ୍ତି ହୋଇବ ପ୍ରକାଶ
ବଢ଼ିବ ସମ୍ମାନ ଭାଇ ସଭା ସ୍ଥଳରେ
ରାଗ ଦ୍ୱେଷ କରି ଶାନ୍ତ ବସ ଧୈର୍ଯ୍ୟର ସହିତ
ଦେଖିବ ଧର୍ମର ଜୟ ନିଜ ନୟନରେ
ସହିଯାଅ ବାରେକ ମାତ୍ର
ପ୍ରତିବାଦ କର ନାହିଁ ଯୋଡ଼ୁଛି ହାତ । ୩୯
ଅର୍ଜୁନଙ୍କ କଥା ଶୁଣି କହିଲେ ଯାଜ୍ଞସେନୀ
ଜ୍ୟେଷ୍ଠ ଭ୍ରାତାଙ୍କ ନିନ୍ଦାକୁ ନ ପାର ସହି
ଅଥଚ ସଭାରେ ପତ୍ନୀ ହେଉଅଛି ହୀନମାନୀ
ନ କହୁଛ ପଦେ ହେଲେ ପତ୍ନୀର ପାଇଁ
ଧିକ୍ ତୁମ ସୋଦର ପ୍ରୀତି
କ୍ଷତ୍ରିୟ ଶ୍ରେଷ୍ଠ ହୋଇ ଅରଜ ଅକୀର୍ତ୍ତି । ୪୦
ସଭାକୁ ଚାହିଁ ବୋଲନ୍ତି ସତୀଙ୍କ ହୃଦରେ ଅଶାନ୍ତ
ଭଗିନୀ-ଜନନୀ-ଜାୟା-ଅବା ଦୁହିତା
ଯେ ଯେବେ ସଭାସ୍ଥଳରେ ଧର୍ଷିତା ହେବେ ବଳରେ
ଦେଖୁଥିବେ ଗୁରୁ ଇଷ୍ଟ ଚେତନ ମଥା
ମନେ କୁହ ଏ ଧର୍ମ ରହିତ
ବଧିର ହୋଇ ଅଛନ୍ତି ସଭା ପଣ୍ଡିତ । ୪୧
ଶୁଣି କୃଷ୍ଣାଙ୍କ ବଚନ ଧୃତରାଷ୍ଟ୍ରଙ୍କ ନନ୍ଦନ
ବିକର୍ଣ୍ଣ ଉଠି କହିଲେ ଦୃଢ଼ ବଚନ

କେବଳ ଧର୍ମଙ୍କ ପତ୍ନୀ ନୁହଁନ୍ତି ତ ପାଞ୍ଚହେଁ
ଅନ୍ୟ ଭାଇଙ୍କର ଅଛି ତାଙ୍କ ସମାନ
ଏକାକି ଧର୍ମଙ୍କ ନନ୍ଦନ
କୃଷ୍ଣାଙ୍କୁ ପଣ ରଖିବା ଅନ୍ୟାୟ ଜାଣ । ୪୨

ଯୁଧିଷ୍ଠି ଆଗେ ହାରିଲେ ନହେଁ ପତ୍ନୀ ପଣ କଲେ
ଅନ୍ୟାୟ ହୋଇ ଏଥା କୁହ ରାଜନ
ମୋ ବିଚାରେ କୁରୁପତି କୃଷ୍ଣାଙ୍କୁ ଜିଣି ନାହାଁନ୍ତି
ନ୍ୟାୟତଃ କୃଷ୍ଣା ନୁହନ୍ତି କୁରୁ ଅଧୀନ
ତାଙ୍କୁ ଅମର୍ଯ୍ୟାଦା କରିବା
ଉଚିତ ନୁହଇଁ ବୋଲି ବିଚାରେ ସର୍ବ । ୪୩

ମୃଗୟା, ବେଶ୍ୟା ଗମନ, ଅକ୍ଷକ୍ରୀଡ଼ା, ସୁରାପାନ
ନାରୀ ସମ୍ଭୋଗ ଅଟେ ଅଧିକ ଆସକ୍ତି
ବ୍ୟସନରେ ମତ୍ତ ହୋଇ ବିହ୍ୱଳ ଜ୍ଞାନ ହରାଇ
ଯେ କର୍ମ କରେ ଅମଣିଷରେ ଗଣତି
ଠିକ୍ କି ନାହିଁ ମୋ ସ୍ୱୀକୃତି
ବିରୋଧ କରୁଛି ମୁହିଁ ଏମନ୍ତ ଭ୍ରାନ୍ତି । ୪୪

ହୋଇ ରାଜ ଚକ୍ରବର୍ତ୍ତୀ ଧର୍ମ ନନ୍ଦନ ଯୁଧିଷ୍ଠି
ବ୍ୟସନେ ମତ୍ତ ହୋଇଣ ଖେଳିଲେ ଅକ୍ଷ
ଖେଳରେ ପତ୍ନୀକୁ ପଣ ରଖିବା କି ପ୍ରୟୋଜନ
ପରାଜିତ ପରାଧୀନ ହୋଇ ପ୍ରତ୍ୟକ୍ଷ
ଏଣୁ ଅଗୃହୀତ ଏ ପଣ
ବିରୋଧ କରୁଛି ମୁହିଁ ସଭା ମଧ୍ୟେ । ୪୫

କୃଷ୍ଣା ଅନ୍ୟ ଚାରି ପତି ଏଥିରେ ନାହିଁ ସମ୍ମତି
ଅନ୍ୟର ପତ୍ନୀକୁ କିମ୍ପା ରଖିଲେ ପଣ
କ୍ଷମତାର ଅପଚାର ନୁହେଁ କି ହେ ନୃପବର
କୃଷ୍ଣା ପ୍ରତି ଅତ୍ୟାଚାର ଅସମୀଚୀନ
ପାଞ୍ଚାଳୀ ନୁହନ୍ତି ବିଜିତା
ଦାସୀରେ ହୋଇବେ କିମ୍ପା ଦେବା ଲଜ୍ଜିତା? ୪୬

ଏ ଅଟେ ଅନ୍ୟାୟ ଘୋର      ସମର୍ଥନ ନାହିଁ ମୋର
କର ଯୋଡ଼ି କହେ ଭାଇ ହେନ ବଚନ
ଦ୍ରୁପଦଝିଅ ଯାଜ୍ଞସେନୀ      କୁଳବଧୂ ସେ ମାନନୀ
ସଭା ପରିଭବେ ହେବ ବଂଶ ନିଧନ
ମୁଁ ତୁମ୍ଭର କନିଷ୍ଠ ଭ୍ରାତା
ଉପେକ୍ଷା ନ କର ଭାଇ ମୋହର କଥା । ୪୭

ଶୁଣି ବିକର୍ଣ୍ଣ ବଚନ      ଅସନ୍ତୁଷ୍ଟ ହୋଇ କର୍ଣ୍ଣ
ପୃଚ୍ଛିଲେ ଭ୍ରାତା ବିପକ୍ଷେ କହୁ କିମ୍ପାଇଁ
କୃଷ୍ଣା ଉପରେ ଧର୍ମର      ଅଛି ଯେତେ ଅଧିକାର
ତାଙ୍କୁ ପଣ ରଖିବାରେ ଅନ୍ୟାୟ ନାହିଁ
ନ ଭାବ ଏ ନାରୀ ଲାଞ୍ଛନା
ସ୍ୱୟମ୍ବରେ ନ୍ୟାୟାନ୍ୟାୟ ପଡ଼ିଛି ଜଣା । ୪୮

ସ୍ୱୟମ୍ବରେ ଥିଲା ସର୍ତ୍ତ      ଯେ କରିବ ଲକ୍ଷ୍ୟ ଭେଦ
ବରଣ କରିବେ କୃଷ୍ଣା କ୍ଷତ୍ରିପ୍ରବର
ଜାତି-କୁଳ-ଗୋତ୍ର ମାନ      ବଂଶ ପରିଚୟ ପ୍ରଶ୍ନ
ଉଠାଇଲେ କିମ୍ପା ତହିଁ ଏ ରମାବର
ଶୌର୍ଯ୍ୟ ବୀର୍ଯ୍ୟ ପୁରୁଷାକାର
ଉପେକ୍ଷିତ ନ ହେଲା କି କର ବିଚାର ? ୪୯

ଅର୍ଜୁନଙ୍କୁ କନ୍ୟାଦାନ      ଦେବା ଯଦି ଥିଲା ମନ
ସ୍ୱୟମ୍ବର କଲେ କିମ୍ପା ବରି ନୃବର
ମଞ୍ଚକୁ ଡକାଇ ନେଇ      ଅପମାନ କଲେ ତହିଁ
ଫେରାଇଣ ଦେଲେ କହି ସୂତ କୁମର
ଏ ନାରୀ କରେ ପାଞ୍ଚ ପତି
ନାରୀ ଧର୍ମେ ବଡ଼ମନା ନୁହେଁ ଏ ସତୀ ? ୫୦

ଦୁର୍ଯ୍ୟୋଧନ ନୃପତିର      ହୋଇ ଅନୁଜ ସୋଦର
ଅଗ୍ରଜଙ୍କୁ ଅପମାନ ଦେଉ ସଭାରେ
ଭାଇ ହୋଇ ତୁ ଉଗାରି      ହେଉଛୁ କହ କିପରି
ଅବିବେକୀ ପଣ ବୋଲି ମୁହିଁ ବିଚାରେ

ଅରଣି ଘର୍ଷଣେ ଉତ୍ପନ୍ନ
ବହ୍ନି ଯେହ୍ନେ ଅରଣୀକୁ କରେ ଦହନ । ୫୧

ହେ ବିକର୍ଣ୍ଣ ସେହ୍ନପରି ବିନାଶୁ କୁଳ ତୋହର
କୁଳାଙ୍ଗାର ପୁତ୍ର ପରି କହୁ ଅସତ
ରାଜନୀତି ସୂକ୍ଷ୍ମ ତତ୍ତ୍ୱ ନ ବୁଝି ତାହାର ଅର୍ଥ
ଆମ୍ଭକୁ ଶୁଣାଉ ଜ୍ଞାନ ଚପଳ ମତି
ଧୃଷ୍ଟତା ନୁହେଁ କି ତୋହର
ଛୋଟ ମୁଖେ ବଡ କଥା ନୁହେଁ ସୁନ୍ଦର । ୫୨

ବହୁତ ଆଗରୁ କୃଷ୍ଣା ହୋଇଛନ୍ତି ପଣ ଜିତା
ସର୍ବସ୍ୱ ପଣେ ନୁହଁନ୍ତି କି ଅନ୍ତର୍ଭୁକ୍ତ
ଶୁଣି ରାଧେୟ ବଚନ ସଦର୍ପେ କୁରୁ ରାଜନ
ଆଜ୍ଞା ଦେଲେ ଦୁଃଶାସନେ ଫେଡ଼ ହେ ବସ୍ତ୍ର
କେଶ ଗୁଡ଼ି ବାମ ଧଇଲା
ବିବସନ କରିବାକୁ ବସ୍ତ୍ର ଟାଣିଲା । ୫୩

ଦେଖି ଏ ଅନ୍ୟାୟ ରୀତି ଯାଜ୍ଞସେନୀ ବୋଲୁଛନ୍ତି
ଭାରତୀୟ ସଂସ୍କୃତିରେ ନାରୀ - ପ୍ରଧାନ
ସର୍ବ ସ୍ଥଳରେ ମାନନୀ ହେଉଅଛି ହୀନମାନ
ସୋମବଂଶ ସିଂହାସନ କଳୁଷ ପୂର୍ଣ୍ଣ
ସ୍ୱାମୀ ଆଗେ ପତ୍ନୀ ଉଲଗ୍ନ
ଦଶାନନ ଠାରୁ ହୀନ କୁରୁ ରାଜନ । ୫୪

ନାରୀ ପ୍ରତି ନୃପତିର ନାରକୀୟ ଅତ୍ୟାଚାର
ସମୟର କାଳଗର୍ଭେ ଛପିବ ନାହିଁ
ଏ ଦେଶର ନାରୀ ଗଣ ନିନ୍ଦୁଥିବେ ଅନୁକ୍ଷଣ
ସ୍ୱେଚ୍ଛାଚାରୀ କୁରୁରାଜ ଦୁର୍ଗୁଣ ଗାଇ
ଯୁଗ ଯୁଗକୁ ରହିଲ କଥା
ଶୁଣି ସକଳେ ବସିଲେ ନୁଆଁଇ ମଥା । ୫୫

କେହି ନ କହିଲେ କିଛି ନୀରବତା ବ୍ୟାପିଅଛି
ଦୁଷ୍ଟ ଦୁର୍ଯୋଧନ ପ୍ରତି ଭୟ ତାଙ୍କର

ନମି କହେ କୁନ୍ତୀପତି   ଡାକ ପ୍ରଭୁ ଶ୍ରୀପତି
ରକ୍ଷୁ ଆସି ଏତେବେଳେ ଜନକୁ ମୋର
ସେ ପରା ତୋ ପ୍ରାଣ ନାଥ
ପୁଣି ପାଣ୍ଡବଙ୍କ ପଃ ପ୍ରାଣ କହିତ । ୫୬
ଶୁଣି ଉପହାସ ଉକ୍ତି   କୃଷ୍ଣା ଦେବୀ ବୋଲୁଛନ୍ତି
ଆରଜସାଣକୁ ନନ୍ଦା କର କମ୍ପାଇଁ
ଯା ନାମ କଲେ ସ୍ମରଣ   ଖଣ୍ଡଇ ଦୁଃଖିତ ମାନ
ଶରଣ ରକ୍ଷଣ ବାନା ଉଡ଼େ ଉଡ଼ଇ
ବିପଦ ଭଞ୍ଜନ ଗୋସାଇଁ
ଭବଭୟ ବିନାଶକ ସେ ଶ୍ରୀବତ୍ସାଙ୍କ । ୫୭
ଶୁଣି ବୋଲେ ଦୁର୍ଯ୍ୟୋଧନ   ଫେଡ ତା ଅଙ୍ଗବସନ
ଦେଖିବା କପଟ ଆସି ରଖିବ କୃଷ୍ଣ
ଆଜ୍ଞା ପାଇ ଦୁଃଶାସନ୍   ଧରି ଟାଣିଲ ବସନ
କୃଷ୍ଣା କଲେ କୃଷ୍ଣ ପାଦେ ଚିତ୍ତ ଅର୍ପଣ
ଦୁଇବାହୁ ଉର୍ଦ୍ଧ୍ୱେ ଟେକଣ
ଡାକିଲେ ରଖନ୍ତୁ ପ୍ରଭୁ ନାଥ ସମ୍ମାନ । ୫୮
ଯୁଦ୍ଧକ୍ଷେତ୍ରେ ଥାଇ କୃଷ୍ଣ   କୃଷ୍ଣାଙ୍କ ଆର୍ତ୍ତ ଶ୍ରବଣ
କରି କହିଲେ ସୂର୍ଯ୍ୟଙ୍କୁ କର ପୂରଣ
ଆକାଶରୁ ଶୂନ୍ୟବାଣୀ   ଶୁଣି ଦେବୀ ଯାଜ୍ଞସେନୀ
ସୂର୍ଯ୍ୟ ଦେବତାଙ୍କୁ କଲେ ହୃଦେ ସ୍ମରଣ
କହିଲେ ରଖିଲ, ରଖିଲ
ପଠାଇଲେ ବେନ ସୂର୍ଯ୍ୟ କିରଣମାଳୀ । ୫୯
ଫେଡନ୍ତେ ଅଙ୍ଗ ବସନ   ହୋଇଲ ଦେହ ଉଲଗ୍ନ
ଶୂନ୍ୟରୁ ଆସଇ ବସ୍ତ୍ର କୃଷ୍ଣା ଶରୀରେ
ଟାଣି ଅଶେଷ ବସନ   କ୍ଳାନ୍ତ ହେଲ ଦୁଃଶାସନ
ସଜ୍ଞାହୀନ ହୋଇ ପଡ଼ିଗଲ ଭୂମିରେ
ବୁଦ୍ଧି ନ ଖାଟେ ଦୁର୍ଯ୍ୟୋଧନ
ପୁଣି ପୁଣି ଆଜ୍ଞାଦିଏ ଫେଡ଼ ବସନ । ୬୦

ଅସମ୍ଭବ ଦେଖି ଭୀଷ୍ମ  କହିଲେ ହେ ଦୁର୍ଯ୍ୟୋଧନ
ଅଜ୍ଞାନ ହୋଇଁକୁ ଅବା ଜ୍ଞାନ ହରାଇ
ଦେଖୁ ନାହୁଁ କି କୃଷ୍ଣ  କରୁଛନ୍ତି ବସ୍ତ୍ରଦାନ
ଯେତେ ଫେଡ଼ୁଥିଲେ ତାହା ସରଇ ନାହିଁ
କେତେ ବସ୍ତ୍ର ପିନ୍ଧେ ତୋ ନାରୀ
ଫେଡ଼ିଲୁଣି କୋଟି ବସ୍ତ୍ର ନ ପାରୁ ବାରି ? ୬୧

ତଥାପି ଦେଉଛୁ କଷ୍ଟ  ସେ ଯେବେ ହୋଇବେ ରୁଷ୍ଟ
ପୋଡ଼ିପିବ ରାଜ୍ୟ ଶିଘ୍ର ତୋ ଭାଗ୍ୟ ମନ୍ଦ
କି ଲକ୍ଷଣେ ହେଲୁ ଜାତ  ବଂଶର ବିଧ୍ୱଂସ ହେତୁ
ଆଖି ଥାଉଁ ଥାଉଁ ତୁହି ହୋଇଲୁ ଅନ୍ଧ
ଦୁଃଖେ କହିଲେ ଗଙ୍ଗାସୁତ
ଶୁଣି କ୍ରୋଧ ପ୍ରକାଶିଲେ ଜଗତ ମାତ । ୬୨

ପ୍ରତିଜ୍ଞା କରିଣ ସତୀ  କହିଲେ କ୍ରୋଧେ ଭାରତୀ
“ କେଶ ମୋର ଆଜ ଠାରୁ ହେଲା ଉନ୍ମୁକ୍ତ
ଦୁଃଶାସନ ଭୁଜ ରକ୍ତେ  କେଶ ମୋର ଧୋଇ ହସ୍ତେ
ବନ୍ଧନ କରିବେ ଭୀମ ମୋ ପ୍ରିୟ କାନ୍ତ
ଜାଣିବାର ସତ୍ୟ ମୋ ବଚନ
ପତିବ୍ରତା ନାରୀ ପଣେ ରହିବ ଟାଣ । ୬୩

ଗର୍ଜି କହେ ଭୀମସେନ  ଶୁଣ ସର୍ବ ସଭାଜନ
ତେର ବର୍ଷ ତେର ଦିନ ବୁଲିବୁ ବନ
ବନବାସ ଶେଷ କରି  ଫେରିଲେ ହସ୍ତିନାପୁରୀ
ବିନାଶିବ କୁରୁବଂଶ  କରି ମୁଁ ରଣ
ଶତଭ୍ରାତା ଯୁଦ୍ଧେମାରିବ
ଦୁଃଶା ଭୁଜ ରକ୍ତେ କୃଷ୍ଣା କେଶ ବାନ୍ଧିବ । ୬୪

ଦେଖୁଥିବ ଦୁର୍ଯ୍ୟୋଧନ  ଶକୁନି, ମଇଁଷ, କର୍ଣ୍ଣ
ବିଦାରିବ ଦୁଃଶାସନ ବକ୍ଷ ହସ୍ତର ନଖେ
ରକ୍ତ ପାନେ ହେବି ଶାନ୍ତ  ଏ କଥା ଜାଣିବାର ସତ୍ୟ
ରକ୍ଷି ନ ପାରିବେ ଦୁଷ୍ଟେ କେହି ଜଗତେ •

ଦୁର୍ଯ୍ୟୋଧନ ଉରୁ ଭଙ୍ଗିବ
ଅନର୍ଘ ମଣିମୁକୁଟ ପାଦେ ଦଳିବ । ୬୫

ବହ୍ନି କନ୍ୟା ଯାଜ୍ଞସେନୀ ପ୍ରଜ୍ୱଳିତ କୋପ ଅଗ୍ନି
ଗୃହାନ୍ତେ ଜଳି ଉଠିଲା ହୋହସ୍ର ଅଗ୍ନି
ଅଦ୍ଭୂତେ ଜଗତ୍ତ ଗୃହ ଜଳି ଉଠିଲା ପ୍ରବଳ
ବସ୍ତ୍ରେ ଲାଗନ୍ତେ ନିଆଁ ହନୁମନ୍ତ ରାଣୀ
ଜନଶତ ଯାଆ ସଙ୍ଗରେ
ଉଲଗ୍ନେ ଧାଇଁ ମିଳିଲେ ସଭା ସ୍ଥଳରେ । ୬୬

ଲଜ୍ଜା ପାଇ ଦୁର୍ଯ୍ୟୋଧନ ହରାଇ ଆପଣାଙ୍କନ
ଆସ୍ଥାନ ଉପରୁ ତଳ ପଡ଼ିଲା ତଳେ
ଉପସ୍ଥିତ ସଭାଜନ ଭୟେ କଲେ ପଳାୟନ
କାନ୍ଦ୍ରନ୍ତ ନାରୀଗଣେ ପ୍ରାଣ ହକଳେ
ପାଖକୁ ଆସି ହନୁମନ୍ତ
କୃଷ୍ଣା ପାଦେ ପଡ଼ି କଲେ ବିନୟେ ସ୍ତୁତି । ୬୭

ଶାନ୍ତ ହୋଇ ଯୋଗମାୟା ଭଗ୍ନିକୁ କରିଲେ ଦୟା
ଦେବ ବସ୍ତ୍ର ଦେଇ ତାଙ୍କ ରଖିଲେ ମାନ
କରେ ଘେନ ଅର୍ଘ୍ୟ ଥାଳୀ ବନ୍ଦାଇଲେ ସବୁ ବାଳୀ
ଗାଇଲେ ବନ୍ଦନା ଗୀତ କର ଯୋଡ଼ଣ
ଶାନ୍ତ ହୋଇଲେ ଯାଜ୍ଞସେନୀ
ଶୂନ୍ୟେ ଶୁଭିଲା ଶବ୍ଦ " ସତୀ ଶିରୋମଣି " । ୬୮

ଦୁଃଖେ କହିଲେ ବିଦୁର ପଡ଼ିଲା ବିପଦ ଘୋର
ପ୍ରତିଜ୍ଞା ପାଳନେ ଭୀମ ଅତି କଠୋର
ତା ଠାରୁ କଠୋର ତମ କୃଷ୍ଣାଦେବୀଙ୍କ ବଚନ
କୁରୁକୁଳ ସମୂଳେ ହୋଇବେ ସଂହାର
ହଣିଲା ଆସି ମନ୍ଦ ବୁଦ୍ଧି
ସ୍ୱହସ୍ତେ ଜିହ୍ୱା ଛେଦନ କେ ପ୍ରତିକାରୀ । ୬୯

ବୋଇଲନ୍ତ ସଞ୍ଜୟ ମନ୍ତ୍ରୀ ଶୁଣ ଆହେ ନରପତି
ନ ହୁଆର ପୂର୍ବେ ତୁମ୍ଭ ଏତେକ ବୁଦ୍ଧି

କୂଟ କପଟେ ଶକୁନ ଭୁଆଇଲା ବୁଦ୍ଧ ଆଣି
ନଷ୍ଟପ୍ରୁ ଭୋଗିବ ରାଜା ପୁତ୍ରର କଷ୍ଟ
ଶ୍ରବଣେ ଅମ୍ବିକା ନନ୍ଦନ
ମନ୍ତ୍ରୀ ସହ ସଭାସ୍ଥଳେ କଲେ ଗମନ । ୭୦

ଦେଖି ପିତା ଆଗମନ ପାଣ୍ଡବେ କରିଲେ ମାନ୍ୟ
କୁମରଙ୍କୁ କୋଳ କରି କଲେ କଲ୍ୟାଣ
କହିଲେ ହେ ଧର୍ମ ଶିଷ୍ୟ ନ ଧର ମୋ ପୁତ୍ର ଦୋଷ
ବିବେକ ବିଧ୍ୱଂସ କର୍ମ ବୋଲି ଏ ଦେନ
କ୍ଷମା କରି ଦିଅ ନନ୍ଦନ
ଦୋଷୀକୁ କ୍ଷମା କରିଲେ ବଢ଼େ ସମ୍ମାନ ।୭୧

ବୋଲୁଛନ୍ତି ପାଣ୍ଡୁ ଶିଷ୍ୟ ନ ଦିଅ ତୋ ପୁତ୍ର ଦୋ
ଦୁର୍ଯ୍ୟୋଧନ ପର ଭାଇ ପାଦେ କାହିଁ
ସେ ଯେବେ ଦଣ୍ଡନ୍ତା ନାହିଁ ପ୍ରତିଷ୍ଠା ପାଆନ୍ତି କାହିଁ
ବୁଝନ୍ତେ ନାହିଁ ଲୋକେ ଧର୍ମର ବଡ଼ାଇ
ବଡ଼ ଉପକାରୀ ସୋଦର
ତା ଯୋଗୁଁ ବଢ଼ିଲା ଖ୍ୟାତି ଜଗତେ ମୋର । ୭୨

ନିଷ୍କପଟ ଧର୍ମବାଣୀ ଶ୍ରବଣେ ଅନ୍ଧ ଅନ୍ଧୁଣୀ
ବୋଇଲେ ଧନ୍ୟ ହୋଇଲୁ ତୋହ ବଚନେ
ଧନ୍ୟ ଧର୍ମ ଯୁଧିଷ୍ଠିର ଧନ୍ୟ ତୋହର ବିଗ୍ରହ
ଶତ୍ରୁ ପ୍ରତି କ୍ରୋଧ ନାହିଁ କାହିଁତେ ମନେ
କୁଳ ଉଦ୍ଧାରକ ନନ୍ଦନ
ତୋହ ଯୋଗୁଁ କୁରୁକୁଳ ହୋଇଲା ଧନ୍ୟ । ୭୩

ଯଥାର୍ଥେ ଉତ୍ତମ ସୁତ ଭବରେ ହେଲ ଉଦିତ
କୌଣସି ପରିସ୍ଥିତିରେ ନ ଛାଡ଼ ଧର୍ମ
ପରନ୍ତୁ ତେଜ ଜୀବନ ରକ୍ଷା କର ସତ୍ୟ ଧର୍ମ
ସେଥିପାଇଁ ସନ୍ତଙ୍କର ପ୍ରିୟ ଭଜନ
ଧର୍ମର ସୂକ୍ଷ୍ମ ଅତି ସୂକ୍ଷ୍ମ
ଅନୁଶାସନ ପାଳନେ ହୋଇଲ କ୍ଷମ । ୭୪

ଧୈର୍ଯ୍ୟ ଗୁଣ ଦେଖି ତୁମ    କହୁଛି ହୃଦୟଙ୍ଗମ
ଆମପ୍ରତି ରଖିଅଛୁ ହୃଦେ ସମ୍ମାନ
ଦେଖି ଆମର ଅନ୍ଧତ୍ୱ    ଜାଣି ତୁମ୍ଭ ମହତ୍ତ୍ୱ
କ୍ଷମା କର ହେଲ ଦୋଷ ମୋହ ନନ୍ଦନ
ମହତ ପଣ ଏ ତୁମ୍ଭର
ଅଜାତ ଶତ୍ରୁ ହୋଇଲ ପାଣ୍ଡୁ କୁମର । ୭୬

କୃଷ୍ଣାଙ୍କ ମୁଖରୁ ଶୁଣି    ବୋଲୁଛନ୍ତି କୁନ୍ତିସାଇଁ
କୋପ କର ନାହିଁ କୁରୁକୁଳ ମଣ୍ଡିନୀ
ବନ୍ଧୁ ଗଣ ମଧ୍ୟେ ଶ୍ରେଷ୍ଠ    ସତୀ ପଣରେ ଗରିଷ୍ଠ
କ୍ଷମା କର ଅପରାଧ ଧର୍ମ ଘରଣୀ
କହି ଧଇଲେ ବନ୍ଧୁ ହାତ
ଉତ୍ତର ନ ଦେଇ ଦେଖି ମୋହନ ବ୍ରତ । ୭୭

ବୋଲନ୍ତି ଗାନ୍ଧାରୀ ଦେବୀ    ତୁମ୍ଭ ମୋ କୁଳ ଗୌରବ
କୋପ କଲେ କୁରୁକୁଳ ହେବ ବିନାଶ
ନ ଧର ମୋ ପୂର୍ବ ଦୋଷ    ପ୍ରଦାନ କର ଆଶିଷ
ଜଣା କର ନାହିଁ ମା ଗୋ କରୁଣା ଲେଶ
ନାରୀ ଅଗ୍ରଗଣ୍ୟ ହୋଇଲୁ
ସଂସାର ଭିତରେ ଖ୍ୟାତ ଅର୍ଜ୍ଜନ କଲୁ । ୭୮

ପଶା ଖେଳ ପଣେତ    ବୁଡ଼ିଲେ କୌରବ ପତି
ପାଣ୍ଡବଙ୍କ ପରାକ୍ରମ କେଡ଼େ ମହାନ
କୃଷ୍ଣା ମାନ ରକ୍ଷା ପାଇଁ    ଧର୍ମର ପ୍ରତିଷ୍ଠା ପାଇଁ
କୋଟିବସ୍ତ୍ର ଦାନ କଲେ ଯଦୁ ନନ୍ଦନ
ଧନ୍ୟ ସେ ପ୍ରଭୁଙ୍କ ମହିମା
ରଖିଲେ ମହୀମଣ୍ଡଳେ ନାରୀ ଗରିମା । ୭୯

କୃଷ୍ଣାଙ୍କ ରକ୍ଷକ କୃଷ୍ଣ    କୃଷ୍ଣ ପ୍ରିୟ କୃଷ୍ଣା ଜାଣ
କୃଷ୍ଣ କୃଷ୍ଣା ସଖାସଖୀ ହେଲ ପ୍ରମାଣ
କୃଷ୍ଣାଙ୍କୁ ଦେଲେ ଦର୍ଶନ    କୃଷ୍ଣ ହନ୍ତି କୋପମାନ
କୃଷ୍ଣା ସଙ୍ଗ ଗୁଡ଼ କୃଷ୍ଣ ବୁଝନ୍ତି ପୂର୍ଣ୍ଣ

କୃଷ୍ଣ କୃଷ୍ଣା ଦୁଇ ଅଭିନ୍ନ
ଜାଣିଲେ ଜଗତ ଲୋକେ     କୃଷ୍ଣା ଆଖ୍ୟାନ । ୮୦

ଏ ତତ୍ତ୍ୱ ବୁଝି ଶକୁନ     ପ୍ରଣମିଲ ଯୋଡ଼ି ପାଣି
କୁରୁକୁଳ ବିନାଶିନୀ ସେ କାତ୍ୟାୟନୀ
ବହ୍ନି କନ୍ୟା ଯାଜ୍ଞସେନୀ     ପଞ୍ଚ ପାଣ୍ଡବ ଘରଣୀ
ଯୋଗମାୟା ଜାତ ହୋଇଅଛୁ ଅବନୀ
ଦୁର୍ଜ୍ଜନ ଦଳନ ନିମନ୍ତେ
ନିର୍ଯ୍ୟାତନା ସହୁଥିଲୁ ଧର୍ମଙ୍କ ହାତେ । ୮୧

କୁରୁକୁଳ ବିନାଶନ     ଜାଣି ଗନ୍ଧାର ନନ୍ଦନ
ଜାହ୍ନବୀ ସଲିଳେ କଲା ସ୍ନାନ ତର୍ପଣ
ପିତୃ ଅସ୍ଥିରେ ନିର୍ମିତ     ସାରିକାଠି ଏକତ୍ରିତ
କରି ଜାହ୍ନବୀ ଜଳେ କଲା ବିସର୍ଜ୍ଜନ
ବୋଲେ ମାଗୋ କର ଗ୍ରହଣ
ତୁମ୍ଭର କୃପାରୁ କାର୍ଯ୍ୟ ହେଲା ସାଧନ । ୮୨

ଆକାଶକୁ ଗୁହାଁ ରହେ     ଅଟ୍ଟହାସ୍ୟ କରି କହେ
ମୋ ବଂଶ ନିଧନ କରିଛୁ ଦୁର୍ଯ୍ୟୋଧନ
ତୋ ବଂଶ ନାଶିବା ପାଇଁ     ଯତ୍ନ କରି ଅଛି ମୁହିଁ
ଏବେ ହୋଇଲା ମୋର ଉଦ୍ଦେଶ୍ୟ ପୂରଣ
ତେର ବର୍ଷ ପରେ ଦିନାନ୍ତେ
କୁରୁକ୍ଷେତ୍ର ଯୁଦ୍ଧେ ନାଶ ଯିବ ସମସ୍ତେ । ୮୩

ଭଣଜା ରକ୍ତେ ତର୍ପଣ     କରି ମୁଁ ସୁଝିବି ଋଣ
ଶୋଣିତ ସ୍ରୋତରେ ଶାନ୍ତ ହେବ ଧରଣୀ
ଜନ୍ମିବେ ଧର୍ମ ରାଜନ     ଧର୍ମ ହେବ ସଂସ୍ଥାପନ
ମୃତ ଲୀଳା ଶେଷ କରିବେ ଚକ୍ରପାଣି
ରାଜା ହେବେ ଧର୍ମ ନନ୍ଦନ
ବଳି ପଡ଼ିବେ ସମରେ ଲକ୍ଷେ ରାଜନ । ୮୪

ସଙ୍ଗେ ଘେନି ଭାଇ ଭାର୍ଯ୍ୟା     ଫେରିଲେ ଯୁଧିଷ୍ଠିର ରାଜା
ଖାଣ୍ଡବ ନଗରେ ଯାଇଁ କଲେ ପ୍ରବେଶ

ମାତାଙ୍କ ଚରଣ ଛୁଇଁ   ପ୍ରଣମିଲେ ପାଣ୍ଡୁ ଭାଇ
କୋଳ କରିନେଲେ ମାତା କରି ଆଶିଷ
ପାଞ୍ଚଯେମା ଶିର ଆଘ୍ରାଣ
କରି କୋଳାଗ୍ରତ କଲେ ବିକ୍ଷୁବ୍ଧ ମନ । ୮୫

ଜନନୀଙ୍କ ପାଦ ଛୁଇଁ   କହିଲେ ରାଜ ତନୟୀ
କୁରୁସଭା ଅପମାନ ନ ପାରେ ସହି
ଦୁଷ୍କୃତ କର୍ମର ପାଇଁ   ଯଦି ଦଣ୍ଡ ନ ମିଳଇ
ଶାସନ ତନ୍ତ୍ରକୁ କେହି ମାନିବେ ନାହିଁ
ପବିତ୍ର ଭାରତ ଭୂଇଁରେ
ନାରୀ ନିର୍ଯ୍ୟାତନା ନଷ୍ଟ କରିବେ ନରେ । ୮୬

ରାଜାମହାରାଜା ମାନେ   ଆପଣା ଖିଆଲ ମନେ
କୁତ୍ସିତ ବାସନା ତୃପ୍ତ କରିବା ପାଇଁ
ସୁନ୍ଦରୀ ରମଣୀ ଦେଖି   ବଳାତ୍କାରେ ନେଇ ଟେକି
ବିବସନା କରାଇବେ ନିଃଶଙ୍କ ହୋଇ
ଦେଖିବେ ଉନ୍ମୁକ୍ତ ଯୌବନ
ଉନ୍ମାଦ ପିପାସା କରିବାକୁ ପୂରଣ । ୮୭

ଦୁର୍ଯ୍ୟୋଧନ, ଦୁଃଶାସନ,   କର୍ଣ୍ଣ, ଶକୁନି, ଦୁର୍ଜ୍ଜନ
କୃତ କର୍ମ ପ୍ରାୟଶ୍ଚିତ ଯଦି ନ ହେବ
ଭବିଷ୍ୟତେ ନାରୀଗଣ   ଭୋଗିବେ ଘୋର କଷଣ
ପୁରୁଷ ହାତରେ ହୋଇ ଖେଳନା ଦ୍ରବ୍ୟ
ଅନ୍ୟଥା ନ ହୋଇବ ବଚନ
ନାରୀ ଜଗତର ମା ଗୋ ଘେନ ଆହ୍ୱାନ । ୮୮

ସ୍ୱଭାବ ନାରୀ ଭୂଷଣ   ହେଲେ ହେଁ ସହିଷ୍ଣୁ ଗୁଣ
ଅନ୍ୟାୟକୁ ମୁଣ୍ଡ ପାତି ନ ପାରେ ସହି
ଦୋଷୀ ନ ପାଇଲେ ଦଣ୍ଡ   କି ମୂଲ୍ୟ ଶାସନ ଦଣ୍ଡ
ଦଣ୍ଡକର ଥାଉଁ ଭଣ୍ଡେ ପ୍ରବଳ ହୋଇ
ବିଚାର କର ଗୋ ଜନନୀ
ଅଭିଯୋଗ କରୁଅଛି ହତଭାଗିନୀ । ୮୯

ଗୁଲଦାସ ବୋଲେ ମାତ କର ଉପାୟ ଯଥାର୍ଥ
ଆରତ ଜନଙ୍କ ବେନ ହାତ ଗୁହାରି
ହୋଇ ତୁମ୍ଭେ ଜଗମାତା ବସ୍ଥିର ନ କଲେ କଥା
ଗ୍ରାସ କରିଯିବେ ଦୁଷ୍ଟେ ଏ ବସୁନ୍ଧରୀ
ପ୍ରବଳ ହେଲେଣି ଦୁର୍ଜନ
ନବେ ପଦରେ ଅଧ୍ୟାୟ ହେଲା ସମ୍ପୂର୍ଣ୍ଣ । ୯୦

**ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ**
**ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ଦ୍ରୌପଦୀଙ୍କ ବସ୍ତ୍ର ହରଣ**
**ଉପାଖ୍ୟାନେ ନାମ ଊନଚତ୍ୱାରିଂଶ ଅଧ୍ୟାୟ ସମାପ୍ତଂ ।**
**ଶ୍ରୀକୃଷ୍ଣାର୍ପଣ ମସ୍ତୁ ।**

—※—

## ବୋଲି — ତାରିଣୀ ପଞ୍ଚକ ( ୬ )

ଚଣ୍ଡମୁଣ୍ଡ ମର୍ଦ୍ଦିନୀ ଚରାଚର ପାଳିନୀ
ଚରଣେ ଆଶ୍ରିତ ହୋଇଛୁ
ଚଉକନା ଧରିଣ ଚାରି ପକା କଷଣ
ଗୃତକ ପ୍ରାୟ ଗୃହୀଁ ରହିଛୁ ଗୋ କୃପାମୟୀ
ଚଉଦ ଭୂବନ ଧୃକର ଚଉକ୍ଷଣା ରଖ ପୟର
ଚାଅଇ ଚେତନାରେ ଚଣ୍ଡିକା ଚରଣରେ
ଚଣ୍ଡି ନବେଣି ନିରନ୍ତର ଗୋ । ୧

ଛିନ୍ନମସ୍ତା ବଦନ ଛିନ୍ନ କର ବୃଜନ
ଛନ୍ଦବନ୍ଧ ଛୁଡ଼ି ମୋହର
ଛଡ଼ରଙ୍ଗ ଝିଞ୍ଜିଇ ଛଟ ପଟ ହୁଅଇ
ଛୁଟର କଣ୍ଟକ ଶରୀର ଗୋ କୃପାମୟୀ
ଛଳିବିବଶୀ କାଳ ଦୁଷ୍ମାଣ ଛିଦ୍ରଦଣ୍ଡି ହୁଏ କମ୍ପିତ

ଛତୁଆ ସଂକରନ୍ତ ଉଡ଼େ ଛନସ୍ ଛନ୍ଦୀ
ଛନ୍ନା କୋଟି ଜୀବ କାରଣ ଗୋ । ୨

ଜଗଦମ୍ବା ଭାରତ ଜଗଜ୍ଜନ ଆରତ
ଜଗଜ୍ଜନନୀ କର ଦୂର
ଜଗଝମ୍ପା ବଜାଇ ଜବାଧିକ ଆବେଷ୍ଟି
ଜମ୍ବୁଦ୍ୱୀପ ଜଞ୍ଜାଳ ହର ଗୋ କୃପାମୟୀ
ଜଗଦ୍ଗୁରୁ ଉଣ୍ଡିମ ପିଠରେ ଜଗଜ୍ଜନନୀ ଜୟ କହ
ଯାହାର ଲୋଡ଼ା ଯାହା ଯୋଗାଇ ଦେଉ ମାଆ
ଜଗତଜନ ହିତ ପାଇଁ ଗୋ । ୩

ଝାଡଖଣ୍ଡ ବାସିନୀ ଝାଡ଼େଶ୍ୱରୀ ଭବାନୀ
ଝଟିତ ଡେର ମା ଶ୍ରୁତିକ
ଝାଇଁଝାଇଁ ପବନ ଝଞ୍ଜିଆ ଜୀବନ
ଝାଇଁ ମାରୁ ନଏ ମତି କ ଗୋ, କୃପାମୟୀ
ଝାଳ ଗମଗମ ବଦନ ଝାଉଁଳ ପଡ଼େ ପଞ୍ଚପ୍ରାଣ
ଝଟଝଟକଣ୍ଠ ଝର ଝରାଅ ଝରଝର
ଝଙ୍କରିକାଙ୍କୁ ନିବେଦନ ଗୋ । ୪

ନମସ୍ତେ ନାରାୟଣୀ ନଗରଜ ନନ୍ଦିନୀ
ନବଶ୍ରୟ ଆଶ୍ରୟ ଦାତ୍ରୀ
ନକୁଳ କୋଳାଙ୍ଗିନୀ ନକୁଳା, ନିରଞ୍ଜନୀ
ନନ୍ଦନନ୍ଦନରାଣୀ ଦୁହିତା ଗୋ କୃପାମୟୀ
ନୁହେଁ ତୋ ସ୍ତୁତି ନିରୂପଣ ନଇଁଯାଉ ନୁହଇଁ ଆନ
ନିତ୍ୟ ଜନବାସିନୀ ନଖାୟୁଧ ବାହିନୀ
ନ କର ସୁତେ ହୀନମାନ ଗୋ । ୫

—●—

**ଅର୍ଥ**— ଚଉକନା - ଚାରିପାଖ ଧାଉଁଆ ଅଶ୍ୱ, ଚଉଦ୍ଭୁଜା - ଚତୁର୍ଭୁଜ, ଚୂକନ-ପାଡ, ଛନ୍ନଛନ୍ନ - ଥରଥର, ଛତ୍ତର-ବତ୍ତର - ଅସ୍ଥିର, ଶଙ୍କିତ, ଛନ୍ନବେଶୀ - ମାୟାବୀ, ଛତୁଆ ସଂକରନ୍ତ - ପଣା ସଂକ୍ରାନ୍ତ, ତାରିଣୀଙ୍କ ଆବିର୍ଭାବ

ଅଜୟ, ଜଗଦମ୍ବା ଶେରବାଦ୍ୟ, ଜବାଧିକ-ଦ୍ରୁତଗାମୀ
ଅଶ୍ୱ ବାହାନ, ଝଙ୍କରବନ୍ତ ଝର - ଗଙ୍ଗା, ବୈତରଣୀ
ପବନ ଧାର, ଝଙ୍କରକାଙ୍କୁ- ତାରତାରଣୀଙ୍କୁ, ନଖାୟୁଧ
ବାହନ - ବାଘ/ସିଂହ ବାହନ ।

—●—

# ଚତ୍ୱାରିଂଶ ଅଧ୍ୟାୟ
## ଖାଣ୍ଡବ ପ୍ରସ୍ଥରେ କୋଳାହଳ
### ରାଗ - ବଙ୍ଗଳାଶ୍ରୀ

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ କର ଆହେ ସୁଜ୍ଞଜନ
ପାଣ୍ଡବେ ବନକୁ ଯିବା କଥା ଶୁଣି ବିଷାଦିତ ପ୍ରଜାଗଣ । ୧
ସମାଦ ପ୍ରଚାର ହେବା ମାତ୍ରେ ଆସି ମିଳିଲେ ବନ୍ଧୁବାନ୍ଧବ
ଦ୍ୱାରକା, ପାଞ୍ଚାଳ, ଗୋପ, ମଧୁପୁର, ଚେଦି, କନୌଜ, ବିଦର୍ଭ । ୨
ରାଜା, ମହାରାଜା, ବନ୍ଧୁବର୍ଗ ସଙ୍ଗେ ମିଳିଲେ ଖାଣ୍ଡବ ପ୍ରସ୍ଥେ
ଭ୍ରାତା ହଳଧର ସଙ୍ଗେ ଚକ୍ରଧର ଆସିଲେ କୁଟୁମ୍ବ ସାଥେ । ୩
ଧର୍ମ ନୃପତିଙ୍କ ଚରଣେ ପ୍ରଣାମ କଲେ ଦେବକୀ ନନ୍ଦନ
ରାମଙ୍କ ପାଦରେ ଭୂମିଷ୍ଠ ପ୍ରଣାମ କଲେ ପାଣ୍ଡୁଙ୍କ ନନ୍ଦନ । ୪
ଧର୍ମ ଯୁଧିଷ୍ଠିର ବଦନକୁ ଚାହିଁ ପ୍ରକାଶ କଲେ ଶ୍ରୀକୃଷ୍ଣ
ଦ୍ୟୂତ କ୍ରୀଡା କାଳେ ସୌରଭ ନଗରରେ ରକ୍ଷା କରୁଥିଲି ରଣ । ୫
ରାଜସୂୟ ଯାଗେ ଦୁଷ୍ଟ ଶିଶୁପାଳ ବଧ କରିବାରୁ ମୁହିଁ
ମିତ୍ରହତ୍ୟା ଦୋଷେ ଦୁଷ୍ଟ ରାଜାମାନେ ଆକ୍ରମ କଲେ ଲଢ଼େଇ । ୬
ସେମାନଙ୍କୁ ହତ କରି ଦ୍ୱାରକାକୁ ଫେରି ଏ ସମ୍ବାଦ ପାଇ
ବସିଲା ସ୍ଥାନରୁ ଉଠି ଆସି ଅଛି ଘଟଣା ବୁଝିବା ପାଇଁ । ୭
ନଚେତ ମୁଁ କ୍ରୀଡାସ୍ଥଳକୁ ଆସିଣ ନିବୃତ୍ତ କରାଇଥାନ୍ତି
ପଶା, ବେଶ୍ୟା, ନିଶା, ମୃଗୟା, ବ୍ୟସନେ ଶ୍ରୀହୀନ ହୁଏ ନୃପତି । ୮
ଦ୍ୱାରକା ଗଡରେ ନ ଥିବାରୁ ମୁହିଁ ଘଟିଗଲା ଅଘଟଣ
ନିୟତି ବିଧାନ କେ କରିବ ଆନ ମନରେ ଦୁଃଖ ନ ଘେନ । ୯

କିଛି ନ ଜାଣିଲି ପରି ସେ କହିଲେ କଥାକୁ ଖଣ୍ଡନ କରି
କୃଷ୍ଣ କଥା ଶୁଣି କହୁଛନ୍ତି ଧର୍ମ ନ କହ ହରି ଏପରି । ୧୦
ଆହେ ଯଦୁନାଥ ହୋଇ ଯୋଡ଼ ହସ୍ତ ଜଣାଉଛୁ କୃତଜ୍ଞତା
ତୁମ୍ଭର ଦୟାରୁ କୁରୁସଭା ତଳେ ରକ୍ଷା ପାଇଲି ବନିତା । ୧୧
କୋଟିବସ୍ତ୍ର ଦେଇ ରଖିଲ ଇଜ୍ଜତ ଶରଣ ପଞ୍ଜର ହରି
ପାଣ୍ଡବେ ତୁମ୍ଭର ଚରଣେ ଆଶ୍ରିତ ସାହା କର ଚକ୍ରଧାରୀ । ୧୨
ତୁମ୍ଭ ଆଜ୍ଞା ବିନା ନହଲେ ତିରଣ ତୁମ୍ଭେ ତ ଜଗତ କର୍ତ୍ତା
କରି କରାଉଣ ଥାଅ ସବୁ ତୁମ୍ଭେ ତୋ ବିନା ଜଗତ ବୃଥା । ୧୩
ମହତ୍ତ୍ୱ ଗୁଣରୁ ମୁଖରେ ପ୍ରକାଶ ନ କର ନିଜର କୀର୍ତ୍ତି
କିଛି ନ ଜାଣିଲି ପରି କହୁଅଛ ଛଳନା ପୂର୍ଣ୍ଣ ଭାରତୀ । ୧୪
ଜ୍ୟେଷ୍ଠ ଭ୍ରାତାଙ୍କର ବିନମ୍ର ବଚନ ଶୁଣି ଦେବକୀ ନନ୍ଦନ
ଉତ୍ତର ନ ଦେଇ ନମ୍ର ମୁଖ ହୋଇ ରହିଲେ ଦଣ୍ଡାୟମାନ । ୧୫
ଅଭିମାନ କରି କହିଲେ ପାଞ୍ଚାଳୀ କୁରୁକୁଳ ବଧୂ ହୋଇ
କୁରୁସଭା ତଳେ ଲାଞ୍ଛିତ ହୋଇଲି ସ୍ୱାମୀ ଦେଖୁଥିଲେ ରହି । ୧୬
ତୁମ୍ଭ ପରି ପ୍ରଭୁ ଥାଇ ସଦ୍ଧା ମୋର ହୋଇଲା ଏପରି ଦଶା
ଇତର ଲୋକଙ୍କ ତୁମ୍ଭର ଉପରେ ରଖି ପାରିବ ଭରସା । ୧୭
କହୁଁ କହୁଁ କୃଷ୍ଣା ନୟନରୁ ନୀର ନଇଁ ପଡ଼େ ଧାର ଧାର
କୋହ, କ୍ରୋଧ ମିଶା କଣ୍ଠେ ସେ କହିଲେ ଶୁଣ ବାକ୍ୟ ନରଧାରୀ । ୧୮
ଯେତେ ଦିନ ଯାଏଁ ଭାରତ ଭୂଇଁରୁ କୌରବେ ନ ହେବେ ନାଶ
ଶପଥ କରୁଛି ସେତେ ଦିନ ଯାଏଁ ନ ବାନ୍ଧିବି ମୁକ୍ତ କେଶ । ୧୯
ଜାଣୁ ଏ ଜଗତ ଯେଉଁ ନାରୀ ଅଟେ ସଂହାର ସୃଷ୍ଟି କାରଣୀ
ଜଗତ ଜନନୀ କଲ୍ୟାଣୀ ହେଲେହେଁ ଧରେ ଶକ୍ତି ସଂହାରଣୀ । ୨୦
କ୍ଷମାମୟୀ ହୋଇ କ୍ଷମା ଦେବା ପାଇଁ ମୋ ହୃଦ ଆଜି କଠିନ
ସତ୍ୟ କରିଅଛି ଦୁଃଶାସନ ରକ୍ତେ କେଶ କରିବି ବନ୍ଧନ । ୨୧
ସତ୍ୟ କର ପ୍ରଭୁ ମୋହର ପ୍ରତିଜ୍ଞା ପୂରଣେ ହେବ ସହାୟ
ଅପମାନେ ମୋର ହୃଦୟ ଜଳୁଛି ପ୍ରବଳ ଦାବାଗ୍ନି ପ୍ରାୟ । ୨୨
ସ୍ୱସ୍ତି ଜଣାଇ କହିଲେ ଶ୍ରୀକୃଷ୍ଣ ପୂର୍ଣ୍ଣ ହେବ ମନବାଞ୍ଛା
ଭାରତ ଧର୍ମର ନଷ୍ଟପ୍ରାୟ ହୋଇବ ତାହାହିଁ ମୋହର ଇଚ୍ଛା । ୨୩

ଯୁଗେ ଯୁଗେ ଦୁଷ୍ଟ ଦଳନ ନିମନ୍ତେ ଧରଣୀ ରକ୍ତ ରଞ୍ଜିତ
ତୁମ୍ଭ ମାନରକ୍ଷା କରିବା ନିମନ୍ତେ କରୁଛି ସ୍ୱୀକାର ସତ୍ୟ । ୨୪

ଭାରତ ଯୁଦ୍ଧରେ କୌରବେ ମରିଲେ ପାଣ୍ଡବଙ୍କୁ ଦେବ ରାଜ୍ୟ
ପାଣ୍ଡବେ ମୋହର ପଞ୍ଚପ୍ରାଣ ପ୍ରାପ୍ୟ କରିବ ଯୁଦ୍ଧେ ସାହାଯ୍ୟ ।୨୫

ସାନ୍ତ୍ୱନା ଦେଇଣ କହିଲେ ଶ୍ରୀହରି ମନୁ ଶୋକ ପରିହର
ତୁମପ୍ରତି ଯେଉଁ ଅନ୍ୟାୟ ହୋଇଛି କରିବ ତା ପ୍ରତିକାର । ୨୬

ଭ୍ରାତା ଧୃଷ୍ଟଦ୍ୟୁମ୍ନ କହିଲେ ଭଉଣୀ ଶୋଚନା ନ କର ମନ
ଏ ଅପମାନର ପ୍ରତିଶୋଧ ପାଇଁ ଧରିବି ମୁଁ ଧନୁର୍ବାଣ । ୨୭

ନାରୀ ନିର୍ଯ୍ୟାତନା ଦଣ୍ଡ ସେ ଭୋଗିବେ ଦେଖିବେ ପୃଥିବୀ ଲୋକ
ରାମ ରାବଣକୁ ଦେଇଥିବା ଦଣ୍ଡ ଠାରୁ ଏ ବହୁ ଅଧିକ । ୨୮

ଦୃଷ୍ଟାନ୍ତ ହୋଇଣ ରହିବ ଏ କଥା ଗାଇବ ଶାସ୍ତ୍ର ପୁରାଣ
ଦୁର୍ଜ୍ଜନଙ୍କୁ ଦଣ୍ଡ ଦେଇ ଶିକ୍ଷିଛନ୍ତି ପାଞ୍ଚାଳ ରାଜ ନନ୍ଦନ । ୨୯

ଭ୍ରାତାଙ୍କ ମୁଖରୁ ସମ୍ବେଦନଶୀଳ କଥାଶୁଣି ଯାଜ୍ଞସେନୀ
ଅଧିକ ବିକଳେ କ୍ରନ୍ଦନ କରିଲେ ନେତ୍ରୁ ଝରେ ଅଶ୍ରୁ ପାଣି । ୩୦

ଦ୍ରୁପଦ କହିଲେ ଆହେ ଧର୍ମରାଜ ଛାଡ଼ିଦିଅ କନ୍ୟା ମୋର
ବନବାସ ଶେଷ ଯାଏ ମୁଁ ରଖିବ ଝିଅକୁ ନେଇ ମୋ ଘର । ୩୧

ସାଙ୍ଗସାଥି ମେଳେ ରହି ମୋ ଦୁହିତା ଭୁଲିଯିବ ଦୁଃଖଶୋକ
କାନନେ ଏକାକୀ ରହିଲେ ପାଞ୍ଚାଳୀ ଦୁଶ୍ଚିନ୍ତା ହେବ ଅନେକ ।୩୨

ଯୁଧିଷ୍ଠି କହିଲେ ଯାଅ ଯାଜ୍ଞସେନୀ ପିତୃଗୃହେ କରବାସ
ବନବାସ ଶେଷେ ପାଞ୍ଚଭାଇ ଯାଇଁ ମିଳିବୁ ପାଞ୍ଚାଳ ଦେଶ । ୩୩

କାନନକୁ ଗଲେ କଷଣ ଭୋଗିବ ସହି ନ ପାରିବ ଲବେ
ବିପଦ ସମୟେ ପ୍ରମାଦ ପଡ଼ିବ ସଙ୍ଗେ ରହିଥିଲେ ତୁମ୍ଭେ । ୩୪

ସ୍ୱାମୀ କଥା ଶୁଣି କହୁଛନ୍ତି କୃଷ୍ଣା ଶୁଣନ୍ତୁ ଧର୍ମ ରାଜନ
ଦୁଃଖକାଳେ ପତ୍ନୀ ପାଖରେ ନ ଥିଲେ କଷ୍ଟ ହୁଏ ଦୁଇଗୁଣ । ୩୫

ରାମଚନ୍ଦ୍ର ଯେବେ ବନବାସେ ଗଲେ ସାଥିରେ ବୈଦେହୀ ଥିଲେ
ମିଷ୍ଟଭାଷା କହି ସ୍ୱାମୀଙ୍କର ଦୁଃଖ ଲାଘବ କରୁ ଥିଲେ । ୩୬

ଯୁଧିଷ୍ଠି କହିଲେ ସୀତା ପାଇଁ ରାମ ହୋଇଲେ ବିପଦଗ୍ରସ୍ତ
ବହୁ ସାବଧାନେ ରଖିଥିଲେ ପତ୍ନୀ ତଥାପି ହରିଲା ଦୈତ୍ୟ । ୩୭

ଭୀମ କହୁଛନ୍ତି ସେ କଥାକୁ ଶୁଣ ଆମ୍ଭେଅଛୁ ପାଞ୍ଚ ଭାଇ
ଆମ୍ଭ ଠାରୁ କିଏ ଅଛି ବଳବାନ କୃଷ୍ଣାକୁ ନେବ ଛଡ଼ାଇ ? ୩୮
ସହଦେବ ମନ୍ତ୍ରୀ କହିଲେ ପାଞ୍ଚାଳୀ ସଙ୍ଗେ ଯାଉ ବନବାସ
ପୁଣ୍ୟ ତୀର୍ଥଜଳେ ସ୍ନାନ କରି କୃଷ୍ଣା ଲଭିବେ ଦେବ ଆଶିଷ । ୩୯
ଦୁଷ୍ଟ ଦୁଃଶାସନ ଧରିଅଛି କେଶ ତୀର୍ଥ ଜଳେ ସ୍ନାନ କଲେ
ସ୍ପର୍ଶ ଦୋଷମାନ ବିନାଶ ହୋଇବ କହନ୍ତି ମନ୍ତ୍ରୀପାଳେ । ୪୦
ଅଗ୍ନି ଓ ଜଳର ସମ୍ପର୍କକୁ ନେଇ ନଦୀତୀର୍ଥ ହେଲା ସୃଷ୍ଟି
ଗଙ୍ଗା, ଗୋଦାବରୀ, ଯମୁନା, କାବେରୀ, ବୈତରଣୀ, ସରସ୍ୱତୀ । ୪୧
ବୈଦିକ ଯୁଗରୁ ଅଗ୍ନି ଓ ଜଳର ସମ୍ପର୍କ ଶାସ୍ତ୍ରେ ସ୍ୱୀକୃତ
ଅଗ୍ନି - ବ୍ରହ୍ମ ଗୋଟି ବିଭିନ୍ନ କ୍ଷେତ୍ରରେ ଜଳବ୍ରହ୍ମେ ସମ୍ପର୍କିତ । ୪୨
ଆକାଶରେ ସୂର୍ଯ୍ୟ ବାଷ୍ପୀୟ କରଣେ କରନ୍ତି ଜଳ ଧାରଣ
ମେଘରେ ବିଜୁଳି ଅବସ୍ଥାନ କରି କରେ ବୃଷ୍ଟି ପ୍ରକରଣ । ୪୩
ପୃଥିବୀରେ ଥିବା ଜଳ ସ୍ୱଶରୀରରେ ଅଗ୍ନିକୁ କରେ ଧାରଣ
ସୂର୍ଯ୍ୟ ମଣ୍ଡଳରେ ପ୍ରବେଶିଣ ଜଳ ନାମ ବହେ ଅପ୍‌ସ୍ୱାନ । ୪୪
ନଦୀ ତୀର ହେଉଣେ ରାଜସୂୟ ଯଜ୍ଞ ବାଜପେୟ, ଅଗ୍ନିଷ୍ଟୋମ
ଯଜ୍ଞମାନ ହେଉଥିବାରୁ ସର୍ବଦା ନଦୀଜଳ ମହାପୁଣ୍ୟ । ୪୫
ପୁଣ୍ୟତୋୟା ନଦୀ ଜଳେ ସ୍ନାନ କଲେ ମିଳିଥାଏ ପୁଣ୍ୟ ଫଳ
ଯଜ୍ଞ, ବଳିଦାନ ଫଳ ପ୍ରାପ୍ତି ହୋଇ ବସଇ ସ୍ୱର୍ଗ ମଣ୍ଡଳ । ୪୬
ଜଳ ଆଉ ଅଗ୍ନି ପ୍ରକୃତି ପ୍ରଦତ୍ତ ଦୁଇ ଶ୍ରେଷ୍ଠ ଉପାଦାନ
ଏମାନଙ୍କ ଛଡ଼ା ଜୀବନ ଧାରଣ ଅସମ୍ଭବ ଧର୍ମସ୍ୱଣ । ୪୭
ଜଳର ପ୍ରବାହ ବୈଶ୍ୱାନର ଶିଖା ଦୁଇଟି ବଡ଼ ବିସ୍ମୟ
ଜନମ, ମରଣ ଜୀବନ ଯାପନ କ୍ଷେତ୍ରେ ବଡ଼ ଉପାଦେୟ । ୪୮
ଏଣୁ ନଦୀତୀର୍ଥ ମାନବାତ୍ମା ପକ୍ଷେ ଅଟଇ ସତୀର୍ଥ ସ୍ଥାନ
ଜଳ ଅଗ୍ନି ବିନା ଜୀବନ ଧାରଣ ଅସମ୍ଭବ ନରସ୍ୱଣ । ୪୯
ଯଜ୍ଞାଗ୍ନିରୁ ଯେଣୁ ଜାତ ଯାଜ୍ଞସେନୀ ଦାହିକା ଶକ୍ତି ସମ୍ପନ୍ନ
ତୀର୍ଥଜଳେ ସ୍ନାନ କଲେ ବହ୍ନି କନ୍ୟା ଶାନ୍ତହେବ ଦେହ ମନ । ୫୦
ଯଜ୍ଞ ଅଗ୍ନି ତଥା କ୍ରୋଧାଗ୍ନି ଶିଖାରେ ଯାଜ୍ଞସେନୀ ପ୍ରଜ୍ୱଳିତ
ଏହି ଦୁଇ ଅଗ୍ନି ସଂଘର୍ଷ ଜନିତ ଉଷ୍ଣତା ହୋଇବ ଶାନ୍ତ । ୫୧

ଶାନ୍ତକାନ୍ତ ରମ୍ୟ ବନ ଶୋଭା ସଙ୍ଗେ ଜାଙ୍ଗଳିକ ପରିବେଶ
ମନର ଉପରେ ପ୍ରଭାବ ପକାନ୍ତେ ଚିତ୍ତବୃତ୍ତି ହେବ ଶାନ୍ତ । ୫୨
ମନ୍ତ୍ରୀ କଥା ଶୁଣି ସମ୍ମତି ପ୍ରଦାନ କଲେ ଧର୍ମ ଯୁଧିଷ୍ଠିର
କଲ୍ୟାଣ କରିଣ ଦ୍ରୁପଦ ସ୍ୱଜନ ଚଳିଲେ ପାଞ୍ଚାଳପୁର । ୫୩
ବଧୂ ମୁଖ ଚୁମ୍ବି କହୁଛନ୍ତି କୁନ୍ତୀ ଶୁଣ ମାଗୋ ! ଯାଜ୍ଞସେନୀ
ତୁମ୍ଭେ ସତୀ, ସାଧ୍ୱୀ ରୂପଗୁଣବତୀ ଜାତ ହୋଇଛ ଅବନୀ । ୫୪
ନିଜର ସ୍ୱଭାବ ବଳରେ ଉଭୟ କୁଳକୁ କଲ ଉଜ୍ଜ୍ୱଳ
କି ସାନ୍ତ୍ୱନା ଦେବି ତୁମ୍ଭକୁ ବା ମୁହିଁ ନେତ୍ରୁ ଝରେ ଅଶ୍ରୁଜଳ । ୫୫
ବଧୂଙ୍କ ମସ୍ତକ ଆଘ୍ରାଣ କରିଣ କହୁଛନ୍ତି କୁନ୍ତୀ ମାତା
ସାବଧାନେ ବନେ କାଳ କଟାଇବ ସଙ୍ଗେ ଘେନ ପାଞ୍ଚ ଭର୍ତ୍ତା । ୫୬
ମୁଁ ଜାଣେ ମୋ ପୁତ୍ରେ ଆପଦ ବିପଦୁଁ କରିବେ ତୁମ୍ଭଙ୍କୁ ରକ୍ଷା
ସ୍ତ୍ରୀଭାବରେ ତୁମ୍ଭ ପାଖେ ପାଖେ ଥିବେ ନ କର ଦଣ୍ଡେ ଉପେକ୍ଷା । ୫୭
ତୁମ୍ଭର ଏ ଯଶ ଗୌରବ ରହିବ ଜଗତରେ ଚିରକାଳ
ଅପର ନାରୀର ଈର୍ଷ୍ୟାବସ୍ତୁ ହୋଇ ରହିଥିବ କାଳକାଳ । ୫୮
ତୁମ୍ଭ ହାତେ ମୋର ପାଞ୍ଚ ତନୟଙ୍କୁ ଆଜଠୁଁ କଲି ଅର୍ପଣ
ସ୍ନେହ, ଶ୍ରଦ୍ଧା, ପ୍ରୀତି ଦେଇ ମୋ ତନୟେ କରିବ ମାଗୋ ପାଳନ । ୫୯
ଯୁଧିଷ୍ଠିର ଦୋଷ ନ ଧରିବ ମନେ ସେ ତ ଧର୍ମାତ୍ମା ପୁରୁଷ
କପାଳ ଲିଖନ କେ କରିବ ଆନ ମଣିଷ ଭାଗ୍ୟର ଦାସ । ୬୦
ଭୀମ ପେଟ ଚିହ୍ନି ଭୁଞ୍ଜାଉଥିବ ଆହାରେ ତାହାର ପ୍ରିୟ
ନକୁଳ ଓ ସହଦେବେ ସ୍ନେହ କରି ଜିଣିବ ତାଙ୍କ ହୃଦୟ । ୬୧
ବଡ଼ ଅଭିମାନୀ ଅଟଇ ଅର୍ଜ୍ଜୁନ ତା ହୃଦ କରିବ ଜୟ
ପ୍ରକୃତିକୁ ଚିହ୍ନି ପରିଚର୍ଯ୍ୟା କଲେ ଜିଣିବ ପାଞ୍ଚ ହୃଦୟ । ୬୨
ପୁତ୍ରବଧୂ ହିତ ପାଣ୍ଡବ ଜନନୀ ରହିଲେ ବିଦୁର ଘରେ
ବୃଦ୍ଧା କାଳ ହେତୁ ବନେ ଯିବା ପାଇଁ ବାରଣ କଲେ ଧୀମତରେ । ୬୩
ଜ୍ୟେଷ୍ଠ ଭ୍ରାତା ପତ୍ନୀ ମାତୃତୁଲ୍ୟା ଜ୍ଞାନ କରି ଦେବର ବିଦୁର
ଦୂର ନ କରିଣ ପାଖେ ରଖାଇଲେ କରି ସ୍ନେହ ସମାଦର । ୬୪
ଗଲା ବେଳେ କୃଷ୍ଣ କହିଲେ ସୁଭଦ୍ରା ଗର୍ଭଅଛି ପାଞ୍ଚ ମାସ
ବନରେ ବୁଲିବା ସମ୍ଭବ ନୁହଇଁ ପିତୃଗୃହେ କରୁ ବାସ । ୬୫

କୁନ୍ତୀ ମାତା କଥା ଶୁଣି କୃଷ୍ଣ ହେ ଆନନ୍ଦ ହୋଇ ମନରେ
ଭଉଣୀକୁ ସଙ୍ଗେ ନେଇଣ ଚଳିଲେ ରହିବେ ଦ୍ୱାରକା ପୁରେ । ୬୬
ଗଲାବେଳେ କୃଷ୍ଣ କହିଲେ କୃଷ୍ଣାଙ୍କୁ ତୁମ ପ୍ରତି ଈର୍ଷା ମୋର
ତୁମପରି ନାରୀ ରତ୍ନକୁ ଧରିଣ ଭ୍ରମିବେ କାନନ ଘୋର । ୬୭
ପରମ ସୌଭାଗ୍ୟ ତୁମରି ଅଟଇ ସ୍ୱାମୀଙ୍କ ସଙ୍ଗେ ବିହାର
ମାତ୍ର ତେର ବର୍ଷ ବିରହ ବେଦନା ଭୋଗିବ ଭଉଣୀ ମୋର । ୬୮
ବଡ ଭାଗ୍ୟବତୀ ଦ୍ରୁପଦ ଦୁହିତା ଏଣୁ ଈର୍ଷା ତୁମ୍ଭ ଠାରେ
ବେଳେ ବେଳେ ତୁମ୍ଭ ଦୁଃଖେ ଭାଗି ହେବ ପ୍ରବେଶି ପର୍ଣ୍ଣ କୁଟୀରେ । ୬୯
ତୁମ୍ଭ ହାତରନ୍ଧା ଖାଇବା ନିମନ୍ତେ ହୋଇବ ତୁମ୍ଭ ଅତିଥି
ପାଣ୍ଡବଙ୍କୁ ଗୃହ ରହିବ କେମନ୍ତେ ସେମାନେ ମୋ ପ୍ରାଣସାଥି । ୭୦
ସମ୍ପ୍ରତି କହିଲେ ଦେବୀ ଯାଜ୍ଞସେନୀ ଏହା ମୋର ସଉଭାଗ୍ୟ
ଆମ ଦୁଃଖେ ଦୁଃଖୀ ହେବ ପଦ୍ମ ଆକ୍ଷି ମନେ କହି ଅନୁରାଗ । ୭୧
ମଝିରେ ମଝିରେ ଅତିଥି ହୋଇଲେ ପେଟପୁରା ଖୁଆଇବ
ଅତିଥି ସମ୍ମାନ ଈଶ୍ୱର ସମାନ ସ୍ନେହ ଶ୍ରଦ୍ଧା ଭରି ଦେବ । ୭୨
କାନନେ ସାକ୍ଷାତ ପ୍ରତିଶ୍ରୁତି ଦେଇ ବିଦାୟ ନେଲେ ଶ୍ରୀକୃଷ୍ଣ
ପାଣ୍ଡୁ ପାଞ୍ଚ ପୁତ୍ର ପତ୍ନୀ ଯାଜ୍ଞସେନୀ ପ୍ରସ୍ତୁତ ଯିବାକୁ ବନ । ୭୩
ଉପବାସେ ବସି ବୃଷ୍ଟି କଟାଇଲେ ଷଡ଼ଜଣ ଜଳାଗରେ
ବୃନ୍ଦାବନ ବୋଲେ ପାଳିଲ ଭକତ ସଜନ ହୁଅ ଧର୍ମଦ୍ୱାରେ । ୭୪
ପରସ୍ତୋତ୍ର ପଦେ ଅଧ୍ୟାୟ ସମ୍ପୂର୍ଣ୍ଣ ସୁଜନେ କର ଶ୍ରବଣ
କୃଷ୍ଣ ପ୍ରେମ ରସ ଧାର ବହିଯାଏ ସରିତ ସ୍ରୋତ ସମାନ । ୭୫

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ମଥୁରା-ଦ୍ୱାରକା ଲୀଳା ଖଣ୍ଡେ ଖାଣ୍ଡବ ପ୍ରସ୍ଥରେ କୋଳାହଳ ବର୍ଣ୍ଣନେ ନାମ

ଚତ୍ୱାରିଂଶ ଅଧ୍ୟାୟ ସମ୍ପୂର୍ଣ୍ଣ ।

ଶ୍ରୀକୃଷ୍ଣାର୍ପଣମସ୍ତୁ ।

ବୋଲି—

ଦ୍ୱାରକାଧୀଶ ହେ ! ଦୟା କର ଏକ ଜନେ
ଦାରୁଣ ଦୁଃଖରେ ପଡ଼ି ଡାକୁ ଅଛି
ନ ଶୁଭେ କି ଡାକ କର୍ଣ୍ଣେ ?
ଦ୍ୱାରକାଧିପତି ହୋଇ ସେବେ ଦୁଃଖ
ଦାଉରୁ ନ କର ତ୍ରାହି
ଜଏ ବା କାହିଁକି ତୁମ୍ଭଙ୍କୁ ଡ଼ାକିବ
ଦରବାରେ ଠିଆ ହୋଇ ।
ଦୁଇହାତ ଯୋଡ଼ି ଦୁଃଖ ଜଣାଉଛି
ହେନା କର ଦୟାନିଧି
ଦାମୋଦର ଦୁଃଖ ଦୂର କଲ ପରି
ଦୁଃଖ ହର ଜଗବନ୍ଧୁ ।
ବୋଲେ ବୃନ୍ଦାବନ ହେ ! ଦ୍ୱାରକାଧୀଶ
ତୁମ୍ଭେ ତ ଜଗତ ପତି
ଦୁଃଖ ଦରିଆରେ ଭାସୁ ଥାଏଁ ପଡ଼ି
ପଦ୍ମ ପାଦେ ଥାଉ ମତି ।

**ଇତି ମଥୁରା-ଦ୍ୱାରକା ଲୀଳାଖଣ୍ଡ ସମାପ୍ତ ।**

## ଶ୍ରୀକୃଷ୍ଣ ଚରିତ ମାନସ



ଏକ ମହାକାବ୍ୟ । ଏହାର ମହାନାୟକ ହେଉଛନ୍ତି ପୃଥିବୀର ଶ୍ରେଷ୍ଠତମ ତଥା ସୁବିଶାଳ ସମର ମହାକାବ୍ୟ ''ମହାଭାରତ''ର ମହାନାୟକ ଭଗବାନ କୃଷ୍ଣ ବାସୁଦେବଙ୍କ ଶ୍ରୀମୁଖ ନିଃସୃତ ଶ୍ରୀମଦ୍ ଭଗବତ ଗୀତାର ଅମର ବାଣୀ– ''ଯୁଦ୍ଧାୟ କୃତ ନିଶ୍ଚୟ'' ।

ମହାଭାରତକୁ ଉପଜୀବ୍ୟ କରି ବିଭିନ୍ନ ପ୍ରାନ୍ତୀୟ ଭାଷାରେ ରଚିତ ପ୍ରସିଦ୍ଧ ଉପନ୍ୟାସ, ଗଳ୍ପ, କାବ୍ୟ, କବିତା, ସନ୍ଦର୍ଭ, ସମୀକ୍ଷା, ସମାଲୋଚନାର ଭାଷା, ଶୈଳୀ, ଶବ୍ଦ ବିନ୍ୟାସ ଓ ଭାବାର୍ଥକୁ ଭିତ୍ତି କରି ଏକାଧିକ ରାଗ ରାଗେଣୀରେ ରଚିତ ଶ୍ରୁତିମଧୁର ତଥା ରସୋତୀର୍ଣ୍ଣ ସଙ୍ଗୀତରେ ଭରପୂର ''ଶ୍ରୀକୃଷ୍ଣ ଚରିତ ମାନସ'' ଔପନ୍ୟାସିକ ଶୈଳୀରେ ସଂପୂର୍ଣ୍ଣ ଏକ ନୂତନ ସାରସ୍ୱତ ସୃଷ୍ଟି । ଓଡ଼ିଆ ସାହିତ୍ୟରେ ଅନେକାନେକ କୃଷ୍ଣ କାବ୍ୟ କବିତା, ଗଳ୍ପ, ଉପନ୍ୟାସ ରଚିତ ହୋଇଥିଲେ ମଧ୍ୟ ଏକବିଂଶ ଶତାବ୍ଦୀର ନବବର୍ଷରେ ପ୍ରକାଶିତ ଏହି ମହାକାବ୍ୟ ଏକ ଅନବଦ୍ୟ ସୃଷ୍ଟି । ଆଶା ଓ ବିଶ୍ୱାସ ଏହା ନିଶ୍ଚିତ ରୂପେ ରସଗ୍ରାହୀ ତଥା ଆଧ୍ୟାତ୍ମବାଦୀ ପାଠକ, ପାଠିକା ମାନଙ୍କ ଅନ୍ତଃକରଣରେ ରେଖାପାତ କରିବ । ଏହାର ଚିନ୍ତନ ଓ ଚିତ୍ରଣ କାଳ ହେଉଛି ତିରିଶ ବର୍ଷରୁ ଉର୍ଦ୍ଧ୍ୱ ସମୟ । ଏହା ଚାରିଖଣ୍ଡରେ ବିଭକ୍ତ ଯଥା- ଗୋପଲୀଳା, ମଥୁରା- ଦ୍ୱାରକାଲୀଳା, ବନଲୀଳା ଓ ଭାରତ ଲୀଳା ଖଣ୍ଡ । ତନ୍ମଧ୍ୟରୁ ଗୋପଲୀଳା ଖଣ୍ଡ ଅଧୁନା ପ୍ରକାଶିତ । ଅନ୍ୟ ତିନିଖଣ୍ଡ କ୍ରମଶଃ ପ୍ରକାଶ ଅପେକ୍ଷାରେ ।

ଏ ଲେଖକଙ୍କର କ୍ରମାନ୍ୱୟ ସୃଷ୍ଟି ସମ୍ଭାର ହେଉଛି ଧର୍ମରାଷ୍ଟ୍ର, ଶ୍ରୀଶ୍ରୀମୃଗ ମହାଦେବ କଥନମ୍, ଶ୍ରୀଭଞ୍ଜ ଭୂମି କେନ୍ଦୁଝରୀ, ମହାଶାବରୀ ମା' ତାରିଣୀ, ପିତୃ ପ୍ରତିମ ଦାଶରଥି ଓ ଶ୍ରୀକୃଷ୍ଣ ଚରିତ ମାନସ ।


**ପ୍ରାପ୍ତିସ୍ଥାନ**

**ନୀଳାଚଳ ପ୍ରକାଶନୀ**

ନୀଳାଚଳ ପ୍ରେସ୍, ବଡ଼ବିଲ- ୭୫୮ ୦୩୫

ଜି - କେନ୍ଦୁଝର, ଫୋ- ୩୦୪୫୦